# ଜୀବନର ରଫ୍ ଖାତା

ଲେଖକ :
**ବିପିନ ବିହାରୀ ମିଶ୍ର**

ପ୍ରକାଶକ :
ଶ୍ରୀ ଗଙ୍ଗାଧର ତ୍ରିପାଠୀ
**ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ**
ବିନୋଦ ବିହାରୀ, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ : **୨୦୧୭**

ଅକ୍ଷରସଜ୍ଜା :
ମା'ଶାରଳା ଡି.ଟି.ପି., କଟକ

ମୁଦ୍ରଣ :
**ଶ୍ରୀଗୁରୁ ପ୍ରିଣ୍ଟର୍ସ**, କଟକ

ମୂଲ୍ୟ : **ଟ.୩୧୫.୦୦**

# JIBANARA ROUGH KHATA

*Writer :*
**Bipin Bihari Mishra**

*Published by :*
Sri Gangadhar Tripathy
**PRACHI SAHITYA PRATISTHAN**
Binode Behari, Cuttack-753002

**First Edition : 2017**

*Laser Typeset :*
**Maa Sarala D.T.P.**, Cuttack

*Printed at :*
**Sri Guru Printers**, Cuttack

**Price : ₹ 315.00**

# ଉତ୍ସର୍ଗ

ମୋର ଦିବଙ୍ଗତ ପିତା ବିଶ୍ୱମୋହନ ମିଶ୍ର
ମୋର ଦିବଙ୍ଗତା ମାତା ସୌଭାଗିନୀ ଦେବୀ
ଯେଉଁମାନେ ମୋ ଉପରେ ବହୁତ ଆଶା ଓ ଭରସା ରଖିଥିଲେ, ମୋତେ ମାଟିରୁ
ପିତୁଳା କଲେ ଓ ନିଜ ଆଦର୍ଶରେ ଅନୁପ୍ରାଣିତ କଲେ ସେଇ
ଦୁଇ ପବିତ୍ର ଆତ୍ମାକୁ...
ଓ
ମୋତେ ସଦାସର୍ବଦା ସାହାଯ୍ୟ ସମର୍ଥନ ଓ ଉତ୍ସାହିତ କରୁଥିବା ଧର୍ମପତ୍ନୀ
ଶ୍ରୀମତୀ ଜ୍ୟୋସ୍ନାମୟୀ ମିଶ୍ରଙ୍କୁ ଏ ପୁସ୍ତକଟି ଉତ୍ସର୍ଗ କଲି ।

# ମୁଖବନ୍ଧ

ଆତ୍ମଜୀବନୀ ଲେଖିବାରେ ମୋର ଆଦୌ ଇଚ୍ଛା ନଥିଲା । କାରଣ ଥିଲା ଅନେକ । ମୁଁ ଯେତେବେଳେ ନିଜକୁ ପଚାରିଛି – ମୁଁ କିଏ ? କାହିଁକି ? କାହା ପାଇଁ ? ତା'ର ଉତ୍ତର ପାଇନାହିଁ ଏପର୍ଯ୍ୟନ୍ତ । ମୋର ସମାଜରେ କି ପ୍ରତିଷ୍ଠା ଅଛି ଯେ ମୋ ଆତ୍ମଜୀବନୀ ଅନ୍ୟମାନେ ପଢ଼ିବେ ? ଦ୍ୱିତୀୟରେ ଅନେକ ସମୟରେ ଆତ୍ମଜୀବନୀ ଲକ୍ଷ୍ମଣରେଖାକୁ ଡେଇଁ ଆତ୍ମପ୍ରଶଂସା ଆଡ଼କୁ ମୁହାଁଇ ଯାଏ । ମୁଁ ସର୍ବସ୍ୱ ଆତ୍ମଜୀବନୀ ଯଥା ମୁଁ ଥିଲି ଆଦର୍ଶ ଛାତ୍ର, ମୁଁ ହେଲି ଆଦର୍ଶ ପୁତ୍ର, ଆଦର୍ଶ ସ୍ୱାମୀ, ଆଦର୍ଶ ପିତା, ଦକ୍ଷ ଲେଖକ ଇତ୍ୟାଦି ଅନେକ ଆତ୍ମଜୀବନୀରେ ବାରିହୋଇ ପଡ଼େ । ବହୁତ କମ୍ ଲୋକ ଦର୍ପଣ ଦେଖନ୍ତି ତେଣୁ ନିଜର ପ୍ରକୃତ ରୂପ ଜାଣିବାର ଅସମର୍ଥ ହୁଅନ୍ତି । କଲମ ଚାଲିଲା ବେଳେ ଝରିପଡ଼େ କେବଳ ଆତ୍ମପ୍ରଶଂସାର କାଳି । ଶୁଭେ ତଥା କଥିତ ଯୁଦ୍ଧ ଜୟର ଡିଣ୍ଡିମ ।

ଏହିଭଳି ଦ୍ୱନ୍ଦ୍ୱରେ ଥିବାବେଳେ ଥରେ ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁ (ସ୍ୱର୍ଗତ) ଓ ମୋ ସାନଭାଇ-ସମ ଜିତେନ୍ଦ୍ର ଦାସ (ଦାସ ବେନହୁର)ଙ୍କ ସହିତ ଖଣ୍ଡପଡ଼ା ଯାଇଥିଲି ଗୋଟିଏ ସାହିତ୍ୟ ସଭାରେ ଯୋଗଦେବା ପାଇଁ । ବାଟସାରା ଗପ ଚାଲିଥିଲା ଟାଙ୍ଗିରୁ ପଟାଙ୍ଗି ପର୍ଯ୍ୟନ୍ତ ହଠାତ୍ ନୀଳମଣିବାବୁ କହିଲେ, – ବିପିନ୍ ବାବୁ ଆପଣଙ୍କ ବହୁତ ଅଭିଜ୍ଞତା ଅଛି, ବର୍ଣ୍ଣନା ସୁନ୍ଦର କରୁଛନ୍ତି ଆତ୍ମଜୀବନୀ କାହିଁକି ଲେଖୁନାହାଁନ୍ତି ? ମୋର ଦ୍ୱନ୍ଦ୍ୱ ବିଷୟରେ କହିବାରୁ ତାଙ୍କର ଉତ୍ତର ଥିଲା – ଆପଣଙ୍କର ସମାଜରେ କ'ଣ ସ୍ଥାନ ନାହିଁ ? ଆପଣ ଲେଖନ୍ତୁ, ଆପଣଙ୍କ ଷାଠିଏ ବର୍ଷର ଅଭିଜ୍ଞତା ଅନ୍ୟମାନେ ଜାଣନ୍ତୁ । ତାଙ୍କୁ ଜିତୁବାବୁ ବେଶ୍ ସମର୍ଥ କଲେ ଓ ଆତ୍ମଜୀବନୀ ଲେଖିବା ପାଇଁ ନିଷ୍ପତ୍ତି ନେଲି । ପ୍ରସିଦ୍ଧ ଖବରକାଗଜ ସମ୍ବାଦ କଳିକାର ସଂପାଦକ ଶ୍ରୀ ଜୟାଶୀଷ ରାୟ ନିମନ୍ତ୍ରଣ କଲେ ତାଙ୍କ ଖବରକାଗଜରେ ପ୍ରତି ସପ୍ତାହରେ ଆତ୍ମଜୀବନୀ ଲେଖିବାକୁ ଓ "ଜୀବନର ରଫ୍‌ଖାତା" ଜନ୍ମ ନେଲା । ଶ୍ରୀ ଜୟାଶୀଷ ରାୟଙ୍କ ପ୍ରତି ମୁଁ କୃତଜ୍ଞ । ମହାପାତ୍ର ନୀଳମଣି ସାହୁ ବଞ୍ଚିଥିଲେ କେତେ ଖୁସି ହୋଇଥାନ୍ତେ ।

ଲେଖିବା ସମୟରେ ବିରାଟ ସମସ୍ୟାର ସମ୍ମୁଖୀନ ହେଲା ଅନେକ କଥା ଲେଖି ହୁଏ ନାହିଁ । କ'ଣ ଲେଖିବି ବା କ'ଣ ଛାଡ଼ିବି, ଏ ଏକ ବିରାଟ ପ୍ରଶ୍ନ । ଲେଖୁଲେଖୁ ବେଳେବେଳେ ବର୍ଣ୍ଣନା ଅତିରଞ୍ଜିତ ହୋଇଯାଏ ଓ ତାକୁ ସମ୍ଭାଳିବାକୁ ପଡ଼ିବ । ପୁଣି ଏମିତି ଲେଖିବାକୁ ହେବ ଯେ ପାଠକର ଆଗ୍ରହଟା ସବୁବେଳେ ଥିବ । ସେସବୁକୁ ମନରେ ରଖି ଲେଖିଲି, କେତେଦୂର ସମର୍ଥ ହୋଇଛି ପାଠକ ମହାଶୟମାନେ କହିବେ ।

କଟକର ବିଖ୍ୟାତ ପ୍ରକାଶନ ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ ମୋର ଅନେକ ପୁସ୍ତକ ପ୍ରକାଶନ କରିଛନ୍ତି । ପ୍ରକାଶକ ଶ୍ରୀ ଗଙ୍ଗାଧର ତ୍ରିପାଠୀ ଓ ତାଙ୍କ ଦୁଇପୁଅ (ଶକ୍ତି ଓ ବିଭୁ) ବହୁତ ଯତ୍ନ ଓ ଶ୍ରଦ୍ଧାର ସହିତ ଏ ପୁସ୍ତକ ପ୍ରକାଶନ କରିଛନ୍ତି । ମୁଁ ସେମାନଙ୍କ ପ୍ରତି କୃତଜ୍ଞ ।

ଯଦି ପୁସ୍ତକର କୌଣସି ଅଂଶ କାହା ମନରେ ଅସନ୍ତୋଷ ଜାତ କରେ, ମୁଁ କ୍ଷମା ମାଗିନେଉଛି କାରଣ ଘଟଣାଗୁଡ଼ିକୁ ମୁଁ ବର୍ଣ୍ଣନା କରିଛି ଏବଂ କୌଣସି ଅଂଶ ଉଦ୍ଦେଶ୍ୟ ମୂଳକ ନୁହେଁ ।

ପୁସ୍ତକ ଲେଖିବାର ବିଶେଷ ସାହାଯ୍ୟ କରିଥିବାରୁ ଅଗ୍ନିଶମ ବିଭାଗର ପ୍ରବୀରଙ୍କୁ ଅଶେଷ ଧନ୍ୟବାଦ ।



# ସୂଚୀପତ୍ର



❑❑❑

# ଜୀବନର ରଫ୍ ଖାତା

## ପ୍ରାକ୍ ସୂଚନା

ଜୁନ୍ ୩୦, ୨୦୦୫। ସବୁଦିନ ପରି ସକାଳୁ ଉଠି ନିତ୍ୟକର୍ମ କରି କିଛି ସମୟ ଚଲାବୁଲା ଓ ବ୍ୟାୟାମ କରି ଚା' ପିଇଲି। ତା' ପରେ ପୋଲିସ ପୋଷାକ ପିନ୍ଧିଲି-ଖାକି ଗାଭାଡ଼ିନ୍ ପ୍ୟାଣ୍ଟ, ଖାକି ସାର୍ଟ, କଳାଟାଇ, ଖାକି କୋର୍ଟ । ଛାତିରେ ମରା ହୋଇଥିଲା ଚକ୍‌ଚକ୍ କରୁଥିବା ପାଞ୍ଚଟା ମେଡ଼ାଲ ଓ ଗୋଟିଏ ଡିସ୍କ। କାନ୍ଧରେ ଅଶୋକ ଚକ୍ର ଓ ଖଣ୍ଡାର ପ୍ରତୀକ। ଠିକ୍ ଆଠଟା ବେଳେ ପ୍ୟାରେଡ଼ ଗ୍ରାଉଣ୍ଡରେ ପହଞ୍ଚିଲି। ଗାଡ଼ିରୁ ଓହ୍ଲାଇବା ମାତ୍ରେ ବାମ ପାଖେ ଖଣ୍ଡା ଝୁଲେଇ ଦିଆଗଲା ଓ ମଣ୍ଡପକୁ ଚଢ଼ିଗଲି ସାଲ୍ୟୁଟ ନେବା ପାଇଁ। ସଦରମହକୁମାରେ ଉପସ୍ଥିତ ଥିବା ସମସ୍ତ ପୋଲିସ, ଭିଜିଲାନ୍ସ, ହୋମ୍‌ଗାର୍ଡ଼ ଓ ଅଗ୍ନିଶମ ବିଭାଗ କର୍ମଚାରୀ ଉପସ୍ଥିତ ଥିଲେ। ତାଙ୍କ ସାଙ୍ଗକୁ ଅନ୍ୟ କର୍ମଚାରୀ ଓ ତାଙ୍କ ପିଲାଛୁଆମାନେ। ଶ୍ରେଷ୍ଠ ପୋଷାକ ପିନ୍ଧି ପୋଲିସ ବାହିନୀ ତରଫରୁ ମୋତେ ଦିଆଗଲା ଅଭିନନ୍ଦନ। ମୁଁ ସଂକ୍ଷିପ୍ତ ଭାଷଣରେ ଚାକିରୀ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସବୁବେଳେ ସହଯୋଗ ଓ ସମର୍ଥନ ପାଇଥିବାରୁ ସମସ୍ତଙ୍କୁ ଧନ୍ୟବାଦ ଦେଲି। ଶେଷ ବିଗୁଲ ବାଜିଲା।

ଦୀର୍ଘ ୩୮ ବର୍ଷର ପୋଲିସ ଚାକିରିର ଅବସାନ ହେବ ଦିନ ୨ଟାରେ । ପ୍ୟାରେଡ଼ ପରେ ପୋଲିସ ଅଫିସର ତାଙ୍କ ପରିବାର, କିଛି ମାନ୍ୟଗଣ୍ୟ ବ୍ୟକ୍ତି ଓ ସମ୍ବାଦଦାତାଙ୍କ ସହିତ ଜଳଯୋଗାଣ ପରେ ଘରକୁ ଫେରିବି ଓ ଦଶଟା ପୂର୍ବରୁ ଅଫିସରେ ପହଞ୍ଚିବି। ଚାକିରିରେ ଥିଲାବେଳେ ମୁଁ ଅଫିସ୍‌ରେ କେବେ ବିଳମ୍ବରେ ପହଞ୍ଚିନି; କିନ୍ତୁ ଅଫିସ ଛାଡ଼ିଲା ବେଳକୁ ବହୁତ ଡ଼େରି ହୁଏ। ତା'ର କାରଣ ମୁଁ ଯେଉଁଦିନର କାମ ସେଇଦିନ ସାରେ, ଘରକୁ ଫାଇଲ ନିଏ ନାହିଁ। ତେଣୁ ଜଳପାନ ପରେ ତରତରରେ ଘରକୁ ଫେରିଗଲି ଓ ମୁହଁରୁ ଝାଳ ପୋଛି ପୁଣି ଅଫିସ ଆସିଲି। ଅପେକ୍ଷା କରିଥାନ୍ତି ଓଡ଼ିଶା ଟିଭିର ରାଧାମାଧବ ଇଣ୍ଟରଭ୍ୟୁ କରିବା ପାଇଁ। ଦୀର୍ଘ ଅଧ ଘଣ୍ଟାର ଇଣ୍ଟରଭ୍ୟୁ ଓ ବିଭିନ୍ନ ପ୍ରକାର ପ୍ରଶ୍ନରେ ସେ ସୁସଜ୍ଜିତ ହୋଇ ଆସିଥାନ୍ତି। ଆପଣ କ'ଣ ଭାବୁଛନ୍ତି ? କିଛି

ବର୍ଷପରେ ସାରା ଓଡ଼ିଶାରେ ମାଓବାଦୀମାନେ ଆଧିପତ୍ୟ ବିସ୍ତାର କରିବେ ? ଦୃଢ଼ ଭାବରେ କହିଲି ନା। ନକ୍ସଲ ସମସ୍ୟା ବଢ଼ିବ କିନ୍ତୁ ମନେରଖନ୍ତୁ ଭାରତୀୟ ଜନତା ହିଂସାରେ ବିଶ୍ୱାସ କରେ ନାହିଁ ଓ ହିଂସା କରୁଥିବା ଗୋଷ୍ଠୀକୁ ସମର୍ଥନ କରେ ନାହିଁ। ନକ୍ସଲ ସମସ୍ୟା କିଛିବର୍ଷ ପାଇଁ ବଢ଼ିବ ସତ; କିନ୍ତୁ ଯାହା ଉପରକୁ ଉଠେ ତାହା ଦିନେ ନା ଦିନେ ତଳକୁ ଖସେ । ଅନ୍ୟଏକ ପ୍ରଶ୍ନ; ଆପଣ ଜଣେ ଦକ୍ଷ ପୋଲିସ ଅଫିସର ଓ ତା' ସାଙ୍ଗକୁ ଜଣେ ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ। ଆପଣଙ୍କ ସରକାରୀ କର୍ତ୍ତବ୍ୟ ସାହିତ୍ୟ ସେବାରେ ପ୍ରତିବନ୍ଧକ ହେଉଛି କି ? ଏଭଳି ପ୍ରଶ୍ନ ସାଙ୍ଗେ ମୁଁ ଅଭ୍ୟସ୍ତ ଓ ଉତ୍ତର ସ୍ୱତଃସ୍ଫୂର୍ତ୍ତ ଭାବେ ବାହାରି ଆସିଲା-କେବେ ନୁହେଁ, ବରଂ ସାହାଯ୍ୟ କରିଛି। କର୍ତ୍ତବ୍ୟ ସମ୍ପାଦନ କରିବା ସମୟରେ ବହୁତ ଚରିତ୍ର ଓ ଘଟଣା ଦେଖିଛି ଓ ଯଥେଷ୍ଟ ଉପାଦାନ ପାଇଛି। ପୋଲିସ ସେବା ଓ ସାହିତ୍ୟ ସେବା-ଗୋଟିଏ ହେଲା ବୃତ୍ତି ଓ ଆଉ ଗୋଟିଏ ପ୍ରବୃତ୍ତି। ମୋ କ୍ଷେତ୍ରରେ ସେମାନେ ହାତ ଧରାଧରି ହୋଇ ଚାଲିଛନ୍ତି। ବିଜ୍ଞ ରାଧାମାଧବଙ୍କ ଆଉ ଏକ ପ୍ରଶ୍ନଥିଲା ଯେ- ଆଉ ଅଳ୍ପ କେତେ ଘଣ୍ଟା ପରେ ଆପଣ ଚାକିରିରୁ ଓହରି ଯିବେ, ତା ପରେ ଆପଣଙ୍କ ପରିଚୟ କ'ଣ ହେବ ? ଭୂତପୂର୍ବ ଡିଜି କି ଲବ୍ଧପ୍ରତିଷ୍ଠ ସାହିତ୍ୟିକ ? ରାଧାମାଧବ ଟିକିଏ ଲାଜେଇ ଗଲେ କାରଣ ତା'ର କାରଣ ମୁଁ ମୁରୁକିହସା ଦେଇ ଉତ୍ତର ଦେଲି ଉଭୟ ଆଖ୍ୟା ହେଲେ କିଛି ଆପତ୍ତି ଅଛି କି ? ତାଙ୍କର ଶେଷ ପ୍ରଶ୍ନ ଥିଲା ଆପଣଙ୍କର ସ୍ୱପ୍ନର ପୋଲିସ କ'ଣ ?

ଏ ପ୍ରଶ୍ନର ଉତ୍ତର ମୁଁ ବହୁତ ଥର ଖୋଜିଛି। ଜଣେ ପୋଲିସ ଅଫିସର ଯିଏ ବିଭାଗକୁ ବହୁତ ଭଲ ପାଏ ଓ ବିଭାଗୀୟ କର୍ମଚାରୀଙ୍କ ଠାରୁ ସମସ୍ତ ପ୍ରକାର ସ୍ନେହ ଶ୍ରଦ୍ଧା ସମ୍ମାନ ପାଇଛି ସେ କ'ଣ ବିଭାଗକୁ ନେଇ ସ୍ୱପ୍ନ ଦେଖିବନି ? ହଁ, ମୁଁ ବହୁତଥର ଦେଖିଛି ଓ ଶେଷରେ ଯେଉଁ ସିଦ୍ଧାନ୍ତରେ ପହଞ୍ଚିଛି ତାହା ରାଧାମାଧବଙ୍କୁ କହିଲି "ଯେଉଁ ଦିନ ସବୁଠାରୁ ଅସହାୟ ଓ ଗରିବ ମଣିଷଟିଏ ନିର୍ଭୟରେ ଥାନା ଭିତରକୁ ପଶିବ ଓ ସନ୍ତୁଷ୍ଟ ହୋଇ ଫେରିବ, ସେଇଦିନ ମୁଁ ଜାଣିବି ମୋ ସ୍ୱପ୍ନର ପୋଲିସ ବାସ୍ତବରେ ପରିଣତ ହୋଇଛି।" ଉତ୍ତରରେ ରାଧାମାଧବ ଖୁବ୍ ସନ୍ତୁଷ୍ଟ ହେଲେ ଓ ଖୁବ୍ ଭଲ ହେଲା ବୋଲି କହି ତରବରରେ ଫେରିଗଲେ। ଶୀଘ୍ର ଷ୍ଟୁଡ଼ିଓରେ କ୍ୟାମେରା ନଦେଲେ ସନ୍ଧ୍ୟା ସାଢେ ସାତଟାରେ ପ୍ରସାରଣ ହୋଇପାରିବ ନାହିଁ। ଚାର୍ଜ ଦେଲାବେଳକୁ ଆସିବି କହି ସେ ଯାଇଥିଲେ ଓ ଆସିଲେ।

ଅଢ଼େଇଟା ବେଳେ ମୋଠାରୁ ଚାର୍ଜ ଗ୍ରହଣ କଲେ ଚାରିବର୍ଷ ଜୁନିଅର ସୁଚିତ୍ ଦାସ । ବେଶ୍ ଭଦ୍ର, ଅମାୟିକ ଓ ନିରପେକ୍ଷ। ସମସ୍ତ ଖବର କାଗଜ ଟିଭିର ପତ୍ରକାରମାନେ ରେଡ଼ି ହୋଇଥାନ୍ତି, ଚାର୍ଜ ଦିଆନିଆ ପରେ କରମର୍ଦ୍ଦନର ଫଟୋ

ଉଠାଇବା ପାଇଁ। ଥରେ ହେଲା, ପ୍ରସ୍ତାବ ଆସିଲା ସାର୍ ଆଉଥରେ ଦ୍ୱିତୀୟ ଥର ହେବାପରେ ପୁଣି ଜଣେ କହିଲେ ସାର୍ ଭଲ ହେଲାନି ଆଉଥରେ। ହସିହସି ଯୁବ ଫଟୋଗ୍ରାଫରକୁ ପଚାରିଲି କିଓ ପିଲେ, କ'ଣ ଚାହୁଁଛ ଆମର ହାତଗଣ୍ଠି ପଡୁ? ହସରେ ସମସ୍ତେ ଫାଟି ପଡ଼ିଲେ ଓ ଚାର୍ଜ ଦିଆନିଆର ବିଷଦ ବିବରଣୀ ସହିତ ଏହି ମନ୍ତବ୍ୟକୁ ନେଇ ଲଘୁ ପରିହାସ ହେଲା ବିଭିନ୍ନ ଖବର କାଗଜରେ।

ଡ଼ିଜି ଚାର୍ଜ ଦିଆନିଆକୁ ଗଣମାଧ୍ୟମ ବେଶ ପ୍ରାଧାନ୍ୟ ଦିଅନ୍ତି। ବିଦାୟୀ ଡିଜିକୁ ପଚରାଯାଏ ଅତୀତର ସାଫଲ୍ୟ ଓ ଭବିଷ୍ୟତରେ କାର୍ଯ୍ୟକ୍ରମ ଓ ନବାଗତଙ୍କୁ ପଚରାଯାଏ ବିଭିନ୍ନ ସମସ୍ୟାର ସମାଧାନ କରିବା ପାଇଁ ସେ କି ଯୋଜନା କରିଛନ୍ତି। ଫଟୋଉଠା ସରିଲା ପରେ ମୁଁ ଚାଲିଲି ତଳେ ଅପେକ୍ଷା କରିଥିବା ସମସ୍ତ ଅଫିସରଙ୍କ ଠାରୁ ବିଦାୟ ନେବାପାଇଁ । ନୂତନ ଡିଜି ପରମ୍ପରା ଅନୁଯାୟୀ ଦ୍ୱାରବନ୍ଧ ପର୍ଯ୍ୟନ୍ତ ଆସି ସାଲ୍ୟୁଟ୍ ମାରିଲେ ଓ ତାଙ୍କ ଆଇଜିଙ୍କୁ ପଠେଇଲେ ମୋତେ ଗାଡ଼ିରେ ବସେଇ ଦେବାପାଇଁ । ତଳେ ଡିଜିଙ୍କୁ ଛାଡ଼ି ସବୁ ସିନିଅର ଅଫିସର ଠିଆହୋଇ ଥାନ୍ତି ବ୍ୟାଣ୍ଡ ପାର୍ଟି ସହିତ । ବ୍ୟାଣ୍ଡପାର୍ଟି ଶେଷ ସମ୍ମାନ ଦେଖାଇଲେ ଓ ଅପେକ୍ଷା କରିଥିବା ସମସ୍ତ ଅଫିସରଙ୍କ ଠାରୁ ବ୍ୟକ୍ତିଗତ ଭାବେ ବିଦାୟ ନେଲି ସମସ୍ତଙ୍କ ସାଙ୍ଗେ କରମର୍ଦ୍ଦନ କରି। ଏଣିକି ସରକାରୀ ସମ୍ପର୍କ ତୁଟିଲା କିନ୍ତୁ ବ୍ୟକ୍ତିଗତ ସମ୍ପର୍କ ରହିଲା। ଅନେକଙ୍କ ସଙ୍ଗେ ସମ୍ପର୍କ ଏତେ ଭଲଥିଲା ଯେ ପରବର୍ତ୍ତୀ ସମୟରେ ମୋତେ ଲାଗିଲା ଯେ ଉପନିଷଦରେ ଠିକ୍ କୁହାଯାଇଛି "ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଷ୍ୟତେ'। ପୂର୍ଣ୍ଣରୁ ପୂର୍ଣ୍ଣ ଗଲେ ପୂର୍ଣ୍ଣରହେ। ଅଳ୍ପ କେଇଜଣଙ୍କ ସାଙ୍ଗରେ କେତେବେଳେ କେମିତି ମତଭେଦ ହୋଇଛି କିନ୍ତୁ ତାହା ସମ୍ପର୍କକୁ କ୍ଷୁଣ୍ଣ କରିନାହିଁ।

## (୨)

ଘରକୁ ଫେରିଲି, ପୋଲିସ ପୋଷାକ ଉତାରି ଦେଇ କିଛିକ୍ଷଣ ପାଇଁ ତାକୁ ଜାବୁଡ଼ି ଧରିଲି। ଆହ୍ଲାବାଦ୍‌ରେ ଏମ୍.ଏ. ଶେଷ ବର୍ଷରେ ଆଇ.ପି.ଏସ୍. ପାଇବାରେ ସଫଳ ହୋଇଥିଲି ଓ ମସୌରୀରେ ତିନି ମାସ ଟ୍ରେନିଂ, ନାଗପୁରରେ ପନ୍ଦର ଦିନ ଟ୍ରେନିଂ ପରେ ମାଉଣ୍ଟଆବୁରେ ପୋଲିସ ଟ୍ରେନିଂ କଲେଜରେ ପହଞ୍ଚିଲି। ମୋ' ପାଇଁ ଉଦ୍ଦିଷ୍ଟ ଥିବା ରୁମ୍‌ରେ ପଶି ଦେଖିଲି ଖଟ ଉପରେ ଥୁଆ ହୋଇଛି ଖାକି ପ୍ୟାଣ୍ଟ, ସାର୍ଟ, ବେଲ୍ଟ, ଟୋପି ଓ ବ୍ୟାଟର୍ଣ୍ଣ। ଖଟ ତଳେ ପ୍ୟାରେଡ଼ ଯୋତା, ପିଟି ଯୋତା ଓ କ୍ଲାସ ରୁମ୍ ଯୋତା । କାଲି ଦଶଟା ବେଳେ ପୋଷାକ ପିନ୍ଧି ଏକାଡ଼େମୀ ଯିବୁ। ୧୯୬୨ରେ କଲେଜ ପଢ଼ିଲା ବେଳେ ମୁଁ ଜାତୀୟ ସମର ଶିକ୍ଷାର୍ଥୀବାହିନୀରେ ଯୋଗଦାନ କରିଥିଲି। ଜୀବନରେ

ପ୍ରଥମ ଥର ପାଇଁ ଖାକି ପୋଷାକ ପିନ୍ଧି ଉଲ୍ଲସିତ ହେଲି। ସେତେବେଳେ ମୁଁ ହେଲି କ୍ୟାଡ଼େଟ୍ କିନ୍ତୁ ଆଜିଠାରୁ ପୂର୍ଣ୍ଣମାତ୍ରାରେ ଆଇ.ପି.ଏସ୍. ଅଫିସର। ମସୌରୀରେ ରୁମ୍ ବୟ ଡାକୁଥିଲା ସାର୍, ଏଇ ଠାରେ ଅର୍ଡ଼ର୍ଲି ଡାକିଲା ସାହେବ। ୧୯୬୭ ମସିହା ଜୁଲାଇ ୧୪ ତାରିଖ ପର୍ଯ୍ୟନ୍ତ ମୋର ପରିଚୟ ଥିଲା ବିପିନ ବିହାରୀ ମିଶ୍ର ଏମ୍.ଏ. ଫାଇନାଲ ଛାତ୍ର ଆହ୍ଲାବାଦ ବିଶ୍ୱବିଦ୍ୟାଳୟ। ଜୁଲାଇ ୧୭ରେ ମସୌରୀରେ ପହଞ୍ଚିଲା ମାତ୍ରେ ମୁଁ ହେଉଗଲି ସାର୍ ଓ ଅଳ୍ପ କେତେ ମାସ ପରେ ଖାକି ପିନ୍ଧା ସାହେବ। ଆହ୍ଲାବାଦରେ ଥିଲା ବେଳେ ପ୍ରତି ମାସରେ ବାପା ପଠାଉଥିବା ୧୩୦ ଟଙ୍କା ପାଉଥିଲି। ବାସ୍ତବରେ ୧୨୯ ଟଙ୍କା ୭୫ ପଇସା ପାଉଥିଲି କାରଣ ପୋଷ୍ଟମ୍ୟାନ୍ ବେଶ୍ ବନ୍ଧୁତାପୂର୍ଣ୍ଣ ଭାବ ଦେଖାଇ ପଚିଶ ପଇସା ରଖୁଥିଲେ। ସେତିକିରେ ତାଙ୍କର କପେ ଚାହା ଓ ଦୁଇଟି ସିଙ୍ଗେଡ଼ା ହୋଇଯିବ। ମସୌରୀରେ ମିଳିଲା ୫୫୬ ଟଙ୍କା। ଦରମା ୪୦୦ ମହଙ୍ଗା ଭତ୍ତା ୧୨୬ ଓ ପାର୍ବତ୍ୟ ଅଞ୍ଚଳ ପାଇଁ ଅଧିକ ଭତ୍ତା ୩୦ ଟଙ୍କା। ମାଉଣ୍ଟଆବୁର ଉଚ୍ଚତା କମ୍ ଥିବାରୁ ୩୦ ଟଙ୍କା କଟିଗଲା। କଟୁ, କିନ୍ତୁ ୫୨୬ ଟଙ୍କା କମ୍ କି? ମସୌରୀରେ ଯେଉଁଦିନ ୫୫୬ ଟଙ୍କା ମିଳିଲା ସେଦିନ ଟଙ୍କାକୁ ଦୁଇଥର ଗଣିଲି ଓ ପୋଷ୍ଟ ଅଫିସରେ ଆକାଉଣ୍ଟ ଖୋଲି ୧୦୦ ଟଙ୍କା ଜମା କଲି। ମାଉଣ୍ଟ ଆବୁରେ ଟଙ୍କା ଗଣିବାରେ କିଛି ଆନନ୍ଦ ମିଳୁ ନଥିଲା। କାରଣ ୫୦୦ ଟଙ୍କା ସାଙ୍ଗେ ମୁଁ ଅଭ୍ୟସ୍ତ ହୋଇସାରିଥିଲି।

କେଉଁ କଥା କୁଆଡ଼େ ଗଲାଣି। ଲେଖା ଆରମ୍ଭ କରିଥିଲି ଢ଼ିଙ୍କିଶାଳରେ ଓ ପଳେଇଲିଣି ଢ଼େଙ୍କାନାଳକୁ। ହଁ କହୁଥିଲି ଯେ, ପୋଲିସ ପୋଷାକକୁ ଜାବୁଡ଼ି ଧରିଲି କିଛି କ୍ଷଣ ପାଇଁ। ଅସ୍ୱାଭାବିକ? ନା ଯେଉଁ ପୋଷାକ ମୋତେ ୩୮ ବର୍ଷ ଜାବୁଡ଼ି ଧରିଥିଲା ତାକୁ ଦୁଇ ତିନି ମିନିଟ୍ ଜାବୁଡ଼ି ଧରିବା କ'ଣ ଅସଙ୍ଗତ? ଭାବପ୍ରବଣ ହୋଇଗଲି କିନ୍ତୁ ଆଖିରୁ ଲୁହ ଗଡ଼ିବା ପର୍ଯ୍ୟନ୍ତ କଥା ଯାଇନି । ଟଏଲେଟ୍‌ରୁ ବାହାରି ଆସି ସ୍ତ୍ରୀ କହିଲେ "କେତେବେଳେ ଆସିଲ ତ ମୁଁ ଜାଣିନି, ଝାଳ ନାଳରେ ଭିଜିଯାଇଛ, ପୋଷାକ ବଦଳାଅ। ପାଞ୍ଚଟା ବେଳେ ଅଫିସବାଲା ବିଦାୟ ସମ୍ବର୍ଦ୍ଧନା ଦେବେ ଓ ସନ୍ଧ୍ୟାବେଳେ ଆଇପିଏସ ଆସୋସିଏସନ। ଆଚ୍ଛା କହିଲ, ଚାକିରିରୁ ଅବସର ନେବା ଯୋଗୁ ଖରାପ ଲାଗୁଛି କି?" ମୋ ଉତ୍ତର ଥିଲା, ଲାଗୁଛି ନିଶ୍ଚୟ। ଏହା ଠିକ୍ ବିବାହ ବିଚ୍ଛେଦ ପରି। ପିଠିରେ ଲାଗିଥିଲା ଏକ ମୋହର ଟେ ବର୍ତ୍ତମାନ ପୋଛି ହୋଇଗଲା। କିନ୍ତୁ ତା' ତଳକୁ ଆଉ ଏକ ମୋହର ବହୁ ଦିନରୁ ଲାଗି ଯାଇଛି। ସାହିତ୍ୟିକର ମୋହର। ସେ ମୋହର କେବେବି ଲିଭିବ ନାହିଁ।

ସନ୍ଧ୍ୟା ପାଞ୍ଚରେ ଅଫିସ କର୍ମଚାରୀ ବିଦାୟ ସମ୍ବର୍ଦ୍ଧନା ଦେଲେ। ଏକ ଉପହାର ଦେଲେ ଯାହା ବଦଳରେ ମୁଁ ଏକ ଉପହାର ଦେଲି। ଡିଜି ଅଫିସରେ ସେ ଉପହାର

ଏପର୍ଯ୍ୟନ୍ତ ଅଛି। ସନ୍ଧ୍ୟା ବେଳେ ଆସୋସିଏସନ ତରଫରୁ ବିଦାୟ ସମ୍ବର୍ଦ୍ଧନା। ଜଣେ ଅତିରିକ୍ତ ଡିଜି କହିଲେ ସାର୍, ଯେତେବେଳେ ଟ୍ରେନିଂ ପାଉଥିଲେ ମୁଁ ସେତେବେଳେ କଲେଜରେ ପଢୁଥିଲି ଓ ଛାତ୍ର ରାଜନୀତିରେ ସମ୍ପୃକ୍ତ ଥିଲି। ଆମ ଗାଁରେ ଏକ ଛୋଟିଆ ଘଟଣାରେ ପୋଲିସ ତିନି ଚାରି ଜଣ ନିରୀହ ଯୁବକଙ୍କୁ ଗିରଫ କରିନେଇ ଯାଉଥିଲା ଓ ମୁଁ ନେତାପଣିଆ ଦେଖାଇବାକୁ ଯାଇ ସେମାନେ ନିରୀହ ତାଙ୍କୁ ଆପଣ ନେଇପାରିବେ ନାହିଁ କହି ବାଧା ଦେଲି। ପୋଲିସକୁ କାର୍ଯ୍ୟ ନିର୍ବାହରେ ବାଧା ଦେବା ଅପରାଧରେ ମୁଁ ଟଣା ହୋଇ ପୋଲିସ ଷ୍ଟେସନ ଗଲି। ଉକ୍ତ ପୋଲିସ ଅଫିସର ଯେତେ ରାଗିଥିଲେ ସେ ନିଶ୍ଚୟ ମୋତେ ଗିରଫ କରି କୋର୍ଟକୁ ପଠେଇ ଦେଇଥାନ୍ତେ । ଏଇ ସମୟରେ ସାର୍ ଥାନାକୁ ପଶି ଆସିଲେ ଓ ସବୁ କଥା ଶୁଣି କହିଲେ, "କଲେଜ ପିଲା, ଚପଳତା ଯାଇନି ତାଙ୍କ ବାପା ମାଆଙ୍କୁ ଡାକି କହିବ ପିଲାଙ୍କୁ ତାଗିଦ୍ କରିବା ପାଇଁ। କେସ୍ କାହିଁକି କରୁଛ ?" ଏଇ କଥାକୁ ଦର୍ଶେଇ ଅତିରିକ୍ତ ଡିଜି କହିଲେ ଯେ, ଏ ଘଟଣା ବର୍ଣ୍ଣନା କରିବାର ଉଦ୍ଦେଶ୍ୟ ହେଉଛି ଯେ, ଚାକିରି ଆରମ୍ଭରୁ ମୁଁ ଦେଖିଛି ଶ୍ରୀ ମିଶ୍ରଙ୍କଠାରେ ମାନବିକତା ଓ ପରିପକ୍ୱତା ଥିଲା। ତାହା ଶେଷ ପର୍ଯ୍ୟନ୍ତ ରହିଲା।

ଉପହାରର ଆଦାନ ପ୍ରଦାନ। ରାତି ଦଶଟା ବେଳେ ସମସ୍ତଙ୍କ ଠାରୁ ବିଦାୟ ନେଇ ସ୍ୱାମୀ ସ୍ତ୍ରୀ ଫେରିଲୁ। ଫୋନ୍ ବାରମ୍ବାର ବାଜୁଥାଏ। ସମସ୍ତଙ୍କର ସେଇ ଗୋଟିଏ କଥା - ଆମେ ଟିଭିରେ ଦେଖିଲୁ ଆପଣ ନୂଆ ଡିଜିଙ୍କ ପିଠି ଥାପୁଡ଼େଇ ଗୁରୁଶିଷ୍ୟଙ୍କୁ ଆଶ୍ରମ ସମର୍ପଣ କରିବା ଭଙ୍ଗୀରେ ବାହାରିଗଲେ। ମୁହଁରେ ତିଳେମାତ୍ର ଦୁଃଖ ନଥିଲା। ବହୁତ ଖରାପ ଲାଗିଲା ଯେ, ଆପଣ ଚାକିରିରୁ ବିଦାୟ ନେଉଛନ୍ତି । ମୋର ଉତ୍ତର ଥିଲା ଜୀବନର ଏକ ଛକରେ ମୁଁ ମୋଡ଼ନେଲି। ଏବେଠୁ ଧରିବି ଏକ ଭିନ୍ନ ରାସ୍ତା, ବିତେଇବି ଏକ ଭିନ୍ନ ଜୀବନ।

## (୩)

ଅବସର ନେବାର ପରଦିନ ଜଣାପଡ଼ିଲା ସରକାରୀ ଜୀବନ ଓ ବ୍ୟକ୍ତିଗତ ଜୀବନ ଭିତରେ କେତେ ପ୍ରଭେଦ। ପୂର୍ବରାତିଟା ଶାନ୍ତିରେ ଶୋଇଛି। ରାତିଅଧିଆ ଟେଲିଫୋନ୍ କଲ ନାହିଁ। ସକାଳୁ କେହି ଫୋନ୍ କରି ନାହାନ୍ତି। ସାଧାରଣତଃ ଟେଲିଫୋନ୍ କଲ ଆସେ, କେତେବେଳେ ନକ୍ସଲାଇଟ୍‌ଙ୍କ ବିଷୟରେ ତ କେତେବେଳେ ଆଇନ୍ ଶୃଙ୍ଖଳା ପରିସ୍ଥିତି ବିଷୟରେ। ଆଉ ଏଣିକି ରାତି ଅଧରେ ଚମକି ଉଠିବାର କୌଣସି କାରଣ ନାହିଁ । ଏଣିକି ଖାଲି ଶୃଙ୍ଖଳା-ଆନନ୍ଦର ଶୂନ୍ୟତା, ସ୍ୱାଧୀନତାର ଶୂନ୍ୟତା। ସାହିତ୍ୟ, ସଙ୍ଗୀତ କିମ୍ବା ଅନ୍ୟ କିଛି ଉପାଦାନରେ ମୋ ନିଜ ଇଚ୍ଛାରେ ସେ ଶୂନ୍ୟତାକୁ ଭରିଦେବି।

ଅବସର ନେବାର ପୂର୍ବଦିନ ମୁଖ୍ୟମନ୍ତ୍ରୀଙ୍କୁ ଦେଖା କରିଥିଲି । ସବୁଦିନ ପରି ସେ ଦିନ ମଧ୍ୟ ତାଙ୍କ ବ୍ୟବହାରରେ ଥିଲା ଉଷ୍ମତା । ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କର ବ୍ୟବହାରରେ କେହି କେବେ ଦୋଷତ୍ରୁଟି ପାଇପାରିବ ନାହିଁ । ମୋତେ ପଚାରିଲେ ଅବସର ପରେ କ'ଣ କରିବେ ବୋଲି ଭାବୁଛନ୍ତି ? ମୁଁ ସାମାନ୍ୟ ହସି କହିଲି ଗାଈକୁ ଗୋପାଳ ଚରାଇଲା ଭଳିଆ ମୋତେ ସରକାର ଏ ପର୍ଯ୍ୟନ୍ତ ଚରଉଥିଲେ । ନିଜେ ଚରିବା ପାଇଁ ଏବେ ଶିଖିବି । ସେ ହସିଲେ, ହାଣ୍ଡସେକ୍ କଲେ ଓ ସାଲ୍ୟୁଟ ମାରି ବିଦାୟ ନେଲି । ଜୀବନରେ କାହାକୁ ସାଲ୍ୟୁଟ ମାରିବା ଏହାଥିଲା ଶେଷ । ଜୁନ୍ ୨୯ ତାରିଖରେ ମୁଁ ଦେଇଥିଲି ଶେଷ ସାଲ୍ୟୁଟ ଓ ୩୦ ତାରିଖରେ ମୋ ସମ୍ମାନାର୍ଥେ ବାଜିଲା ଶେଷ ବିଗୁଲ । ଆଜି ଘରେ ଅର୍ଡ଼ଲୀ ଓ ଗାର୍ଡ଼ମାନେ ଦିନବେଳା ଆମ ଦୁଇଜଣଙ୍କୁ ଖାଇବା ପାଇଁ ଦେବେ, ରାତି ବେଳେ ଆମେ ଖାଇବା ପାଇଁ ଦେବୁ । ସମସ୍ତଙ୍କୁ କ'ଣ ବିଦାୟକାଳୀନ ଉପହାର ଦିଆଯିବ ତାହା ପ୍ରସ୍ତୁତ କରାଯାଇଛି । ଚବିଶ ଘଣ୍ଟା ମୋ ଆଦେଶ ପାଳନ କରୁଥିବା ଅଫିସ ଷ୍ଟାଫ୍ ସମସ୍ତଙ୍କୁ ଗୋଟିଏ ଲେଖା କାନ୍ଥ ଘଣ୍ଟା ଉପହାର ଦେଲୁ । ଘରେ ଗାର୍ଡ଼ ଡ୍ୟୁଟିରେ ଲାଗିଥିବା କନ୍‌ଷ୍ଟେବଲମାନଙ୍କ ମଧ୍ୟରୁ ଦୁଇଜଣ ସବ୍‌ଇନ୍‌ସ୍‌ପେକ୍ଟର ପରୀକ୍ଷା ଦେବେ ବୋଲି ଶୁଣି ସେମାନଙ୍କୁ ଅନ୍ୟକୌଣସି ଡ୍ୟୁଟି ନଦେବା ପାଇଁ ଆଦେଶ ଦେଇଥିଲି ଓ ଦିନବେଳେ ବ୍ୟାରାକ୍‌ରେ ରହି ପାଠ ପଢିଲେ କାଳେ ବ୍ୟାଘାତ ହେବ ସେଥିପାଇଁ ମୋ ବଙ୍ଗଳାର ଗୋଟିଏ ବଖରା ସେମାନଙ୍କ ବ୍ୟବହାର ପାଇଁ ଛାଡ଼ିଦେଲି । ଖୁସି ହେଲି ଓ ଭଗବାନଙ୍କୁ ପ୍ରାର୍ଥନା କଲି ଯେଉଁଦିନ ସେ ଦୁଇଜଣ ଆସି ମୋତେ କହିଲେ ଯେ ସେମାନେ କୃତକାର୍ଯ୍ୟ ହେଲେ ।

ପରମ୍ପରା ଅନୁସାରେ ଡ୍ରେସ୍ ଦେଇଦେଲି କେତେ ଜଣ ଜୁନିଅରଙ୍କୁ । ରଖିଲି କେବଳ ହଲେ । ଫଟୋ ପଠେଇ ଦେଲି ଡିଜି ଅଫିସ୍‌କୁ । ସବୁ ଡିଜିଙ୍କ ସହିତ ମୋ ଫଟୋ ଟଙ୍ଗା ହେବ । ମୋର ଯାହା ମନେପଡ଼େ ଡିଆଇଜି ସିଆଇ ଏସ୍‌ଏଫ୍ ଅଫିସରେ କାହାରି ଫଟୋ ଟଙ୍ଗା ହୋଇ ନଥିଲା, ମୁଁ ସେଠାରେ ଡିଆଇଜି ଥିଲା ବେଳେ ମୋ ପୂର୍ବରୁ ଅବସ୍ଥାପିତ ଥିବା ଡିଆଇଜିମାନଙ୍କର ଫଟୋ ମଗାଇ କାନ୍ଥରେ ମାରିବାର ପରମ୍ପରା ଆରମ୍ଭ କଲି । ମୁଁ ଓ ମୋ ପର ଡିଆଇଜିମାନଙ୍କର ଫଟୋ ଏ ପର୍ଯ୍ୟନ୍ତ ଅଛି । ଓଡ଼ିଶା ଡିଜି ପୋଲିସ ଅଫିସରେ ୧୯୩୬ ମସିହାରୁ ଥିବା ଆଇଜିଙ୍କ ଠାରୁ ଆରମ୍ଭ କରି ସବୁ ପୋଲିସ ମୁଖ୍ୟଙ୍କ ଫଟୋ ଥିଲା କିନ୍ତୁ ଜଣେ ଅତ୍ୟନ୍ତ ସଙ୍କୀର୍ଣ୍ଣ ମନୋବୃତ୍ତିର ଡିଜି ଯେହେତୁ ତାଙ୍କ ପୂର୍ବବର୍ତ୍ତୀ ଡିଜିଙ୍କୁ ପ୍ରବଳ ଈର୍ଷା କରୁଥିଲେ ତେଣୁ ସେ ଆଦେଶ ଦେଲେ

ଯେ ଦାୟିତ୍ୱ ଗ୍ରହଣ କରିବା ପୂର୍ବରୁ ସବୁ ଫଟୋକୁ ହଟେଇ ଦିଆଯାଉ। ଆମ ପୋଲିସରେ ଅଳ୍ପ କେତେଜଣ କର୍ମଚାରୀ ଅଛନ୍ତି ଯେଉଁମାନେ ଆବଶ୍ୟକତା ଠାରୁ ବେଶି ଭକ୍ତି ଦେଖାନ୍ତି। ଡାକି ଆଣ କହିଲେ ଧରିଆଣିବେ, ଧରିଆଣ କହିଲେ କଟା ମୁଣ୍ଡଟି ଆଣି ଥୋଇ ଦେବେ । ଏଇଭଳି ଏକ ହୀନ ମନୋବୃତ୍ତିର ଏଆଇଜି ଜଣେ ଡିଜିଙ୍କୁ ତୁଷ୍ଟ କରିବା ପାଇଁ ଫଟୋଗୁଡ଼ିକ କାଢିଲେ ଓ ଆଇପିଏସ୍ ମେସ୍‌ର ଏକ ବ୍ୟବହୃତ ନହେଉଥିବା ଟଏଲେଟ୍‌ରେ ଫୋପାଡ଼ି ଦେଲେ । ଏଇ ଘଟଣାର କିଛି ବର୍ଷ ପରେ ମୁଁ ଆଇଜି ପ୍ରଶାସନ ଭାବେ ଆସିଲି । ସେତେବେଳେ ଶ୍ରୀ ଅମିୟ ଭୂଷଣ ତ୍ରିପାଠୀ ଡିଜି ଥିଲେ। ଫଟୋ କୁଆଡ଼େ ଗଲା ପଚାରିବାରୁ ତଳିଆ କର୍ମଚାରୀ ମୁହଁ ଚାହାଁଚାହିଁ ହେଲେ। ଶେଷରେ ଜଣେ କନଷ୍ଟେବଲ ବତେଇବାରୁ ଫଟୋ ଅଣାଗଲା। ସେତେବେଳକୁ ଅନେକ ଫଟୋରେ ଉଇ ଲାଗି ସାରିଲାଣି। ଫଟୋକୁ ପୁଣିଥରେ ସଫା କରାଗଲା, ରଙ୍ଗ ଲିଭିଥିବା ଅଂଶରେ ଚିତ୍ରକାର ରଙ୍ଗ ମାରି ଦେଲେ ଓ ସବୁ ଫଟୋ ଏକା ସାଇଜର କରାଯାଇ ପୁଣି କାନ୍ଥରେ ମରାଗଲା। ସେଥିରେ ଫଟୋ ହଟେଇଥିବା ଡିଜିଙ୍କ ଫଟୋ ମଧ୍ୟ ଥିଲା। ତାଙ୍କୁ ମାଗିବା ମାତ୍ରେ ଯେଉଁ ଭଦ୍ରଲୋକ ଏକଦା ମୁଁ ସେ ଫଟୋ ମାରିବାରେ ବିଶ୍ୱାସ କରେ ନାହିଁ କହିଥିଲେ ସେ ତୁରନ୍ତ ନିଜର ଫଟୋ ଟିଏ ପଠେଇ ଦେଲେ। ଯେଉଁ ଏଆଇଜି ଫଟୋ ଫୋପାଡ଼ି ଥିଲେ ସେଇ ଭଦ୍ରଲୋକ ଫଟୋର ସେବା ଶୁଶ୍ରୁଷା କରି ମାରିଲେ। ମୁଁ ଭାରତ ସରକାରଙ୍କ ଅଧୀନରେ ତିନିଥର କାମ କରିଛି ଡିଜି ସି.ଆଇ.ଏସ୍.ଏଫ୍. ଓ ପରେ ସ୍ୱତନ୍ତ୍ର ସଚିବ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟରେ ଥିବା ବେଳେ ଅନେକ ସେନା ବିଭାଗ ଅଫିସରଙ୍କ ସଂସ୍ପର୍ଶରେ ଆସିଛି। କାଶ୍ମୀର ସଂକ୍ରାନ୍ତରେ ମିଟିଂ କଲେ ଆର୍ମିର ଲେଫ୍ଟନାଣ୍ଟ ଜେନେରାଲ ପାହ୍ୟାର ଅଫିସର ଆସନ୍ତି। ତାଙ୍କ ସାଙ୍ଗରେ ଅଧସ୍ତନ ମେଜର ଜେନେରାଲ ବ୍ରିଗେଡ଼ିୟରମାନେ ମଧ୍ୟ ଆସନ୍ତି । ମୋ ଅଭିଜ୍ଞତା କହେ ଯେ ସେନାବାହିନୀର ବ୍ରିଗେଡ଼ିୟର ଓ ତଦୂର୍ଦ୍ଧ୍ୱ ଅଫିସରଙ୍କର ବ୍ୟକ୍ତିତ୍ୱ, ଆତ୍ମବିଶ୍ୱାସ ଓ ବ୍ୟବହାର ଯେକୌଣସି ଲୋକକୁ ଅଭିଭୂତ କରିବ। କାରଣ ସେମାନଙ୍କର ପଦୋନ୍ନତି ପ୍ରକ୍ରିୟା ବଡ଼ କଠିନ। ଅତି ଭଲ ଅଫିସର ନହେଲେ ଜଣେ ବ୍ରିଗେଡ଼ିୟର ହୋଇ ପାରିବ ନାହିଁ। ଆମ ସର୍ବଭାରତୀୟ ସେନାରେ ପଦୋନ୍ନତି ପ୍ରକ୍ରିୟା ବେଶ୍ ସହଜ। ଯାହାହେତୁ ଗଧ ଟଟୁ ଘୋଡ଼ା ଖଚର ଦେଶୀ ଘୋଡ଼ା ଓ ଆରବୀୟ ଘୋଡ଼ା ମଧ୍ୟରୁ ଅନେକ ଚିଫ୍ ସେକ୍ରେଟେରୀ ଓ ଡିଜି ପାହ୍ୟାକୁ ପହଞ୍ଚି ଯାଆନ୍ତି। ବିଶେଷତଃ ଆଇପିଏସ୍‌ରେ ସିନିୟର ଗଧକୁ ଜୁନିୟର ଘୋଡ଼ା ସାଲ୍ୟୁଟ୍ ମାରିବା ପାଇଁ ବାଧ୍ୟ, ଭକ୍ତି ନଥାଇ ମଧ୍ୟ।

## (୪)

ଭିଜିଲାନ୍ସ ଅଫିସରେ କେତେଜଣଙ୍କର ଫଟୋ ନଥିଲା ଓ ସେ ବିଭାଗର ମୁଖ୍ୟ ଥିଲାବେଳେ ଏକା ସାଇଜର ଫଟୋ କରି ଲଗେଇ ଥିଲି । ଏବେବି ସେ ପରମ୍ପରା ଅଛି। ଭଗବାନ କରନ୍ତୁ ଭବିଷ୍ୟତରେ କୌଣସି ପାଗଳ ଆସି ତାକୁ ଫୋପାଡ଼ି ନଦେଉ।

ବାରଣ୍ଡାରେ ବସି ଖବର କାଗଜ ଆଡ଼ଉ ଥିଲାବେଳେ ସେଇଭଳି ଅନେକ କଥା ଆସୁଥିଲା ମନକୁ ଭସାବାଦଲ ପରି। ଚ' ପିଇସାରି ଓ ଖବର କାଗଜ ଥୋଇ ଦେଇ ନିଜକୁ ପଚାରିଲି - ୩୮ ବର୍ଷ ଚାକିରି ମଧ୍ୟରେ ପୋଲିସର ଯେତେ ସମ୍ମାନଜନକ ପଦବୀ ଥାଇପାରେ ସବୁପାଇଲି। ଅଧସ୍ତନ କର୍ମଚାରୀ କେବେ ମୋ ପ୍ରତି ବିମୁଖ ହୋଇ ନାହାନ୍ତି କି ମୋ ବିରୁଦ୍ଧରେ ଦରଖାସ୍ତ ପକେଇ ନାହାନ୍ତି। ୧୯୬୭ରୁ ୨୦୦୨ ପର୍ଯ୍ୟନ୍ତ ଅନେକଙ୍କ ଅଧୀନରେ କାର୍ଯ୍ୟ କରିଛି, କେବଳ ତିନିଜଣଙ୍କୁ ଛାଡ଼ି କାହା ସଙ୍ଗେ ମତାନ୍ତର କିମ୍ବା ମନାନ୍ତର ହୋଇ ନାହିଁ। ଯେଉଁ ତିନିଜଣଙ୍କ ସଙ୍ଗେ ମତାନ୍ତର ହୋଇଥିଲା ସେଥିରୁ ଜଣକ ସାଙ୍ଗେ କଥା ଶତ୍ରୁତା ପର୍ଯ୍ୟନ୍ତ ଗଲା। କିଏ ଠିକ୍ କିଏ ଭୁଲ୍ ତା' ମୁଁ କହିବା ଉଚିତ ହେବ ନାହିଁ। କାରଣ ମୋ ମତ ଏକପାଖିଆ ବୋଲି ଧରାଯିବ। କିନ୍ତୁ ଏତିକି କହିବି ଯେ ସେ ତିନିଜଣ ଅଫିସରଙ୍କର ବଦନାମ ଯେତିକି ବିଭିନ୍ନ କ୍ଷେତ୍ରରୁ ସେମାନେ ସେତିକି ଅପମାନ ମଧ୍ୟ ପାଇଛନ୍ତି। ସେମାନଙ୍କ ମଧ୍ୟରେ ଜଣେ ଏବେ ନାହାନ୍ତି ବାକି ଦୁଇଜଣଙ୍କୁ କେବେ କେମିତି ଦେଖାହେଲେ ମୁଁ ନମସ୍କାର କରେ ଓ ତାଙ୍କ ମୁହଁରେ ଦେଖେ ଜଣେ ଦୋଷୀର ଭାବ। ଭଗବାନ ଏଇ ଆୟୋଜନ କରିଛନ୍ତି ଯେ ମଣିଷ ଦିନେନା ଦିନେ ତା'ର ଦୋଷ ବୁଝିପାରେ। କେହି ସ୍ୱୀକାର କରନ୍ତି-କେହି କରନ୍ତି ନାହିଁ । ନକଲେ କ'ଣ ହେଲା ସେମାନେ କ'ଣ ଦେଖି ପାରନ୍ତି ନାହିଁ ତାଙ୍କୁ ଇଙ୍ଗିତ କରାଯାଇଥିବା ଅସଂଖ୍ୟ ଆଙ୍ଗୁଠି ?

ଚାକିରି ଜୀବନଟା କେବଳ ଶତ୍ରୁତା ଓ ମିତ୍ରତାରେ ଆବଦ୍ଧ ନୁହେଁ। ସମୟର ସ୍ରୋତ ସାଙ୍ଗେ ବହୁ ଘଟଣା ତଡ଼ିହୋଇ ଯାଇ ଉଭେଇ ଯାଆନ୍ତି। ବଞ୍ଚିଥିବା ଘଟଣାଗୁଡ଼ିକୁ ସାଉଁଟି ଲେଖନୀ ମାଧ୍ୟମରେ ପ୍ରକାଶ କରିବାରେ ପ୍ରଧାନ ପ୍ରତିବନ୍ଧକ ହେଲା ତାରିଖ ଭୁଲି ଯିବାର ଦୁର୍ବଳତା। ଠିକ୍ କେଉଁ ତାରିଖରେ କେଉଁ ଘଟଣା ହେଲା କେମିତି ମନେ ରହିବ ? ତା'ଛଡ଼ା ଏଭଳି ଅନେକ ଘଟଣା ଘଟିଛି ଯାହାକୁ ଏକ ଆଖି ଦେଖିଛି କିନ୍ତୁ କହିଲେ କେହି ବିଶ୍ୱାସ କରିବେ ନାହିଁ। ସେଥିପାଇଁ ଏଇ ସଂସ୍କୃତ ଶ୍ଳୋକରେ ଉପଦେଶ ଦିଆଯାଇଛି। "ତୁମେ ପଥର ଭାସିବାର ଓ ମାଙ୍କଡ଼ ଗୀତ ଗାଇବାର ଦେଖିଥିଲେ ମଧ୍ୟ କାହା ଆଗରେ ପ୍ରକାଶ କରିବ ନାହିଁ। କାରଣ ତୁମେ ଲୋକହସା ହେବ" ମୁଁ ଗଞ୍ଜାମ

ଏସ୍.ପି. ଥିଲା ବେଳେ ପ୍ରତାପ ସ୍ୱାଇଁ ବୋଲି ଜଣେ ବ୍ୟକ୍ତି ଓ ତା'ର ସହଯୋଗୀମାନେ ଗୋଷ୍ଠୀ ବିବାଦର ଶିକାର ହୋଇଥିଲେ। ଖବର ପାଇ ମୁଁ ଡ୍ରାଇଭରକୁ ଅପେକ୍ଷା ନକରି ରିଭଲଭର ଧରି ଗାଡ଼ି ଚଳେଇ ଗାଁରେ ପହଞ୍ଚିଲି। ମୁଁ ପହଞ୍ଚିବାର କିଛି ସମୟ ପରେ ଡି.ଏସ୍.ପି. ପହଞ୍ଚିଲେ। କିଛି ସମୟ ପରେ ଲୁଚି ରହିଥିବା ପ୍ରତାପ ସ୍ୱାଇଁର ଅନୁଚର ଗଣେଶ ରେଢ଼ି ବାହାରିଲା। ତା' ତଣ୍ଟିଟା କଟା ହୋଇଥାଏ, ବିରାଟ ଗାତ ଦିଶୁଥାଏ। ଓ ସେଥିରୁ ବାହାରୁ ଥିବା ଭାତ, ଡାଲି ଓ ପାଣି, ଦେଖି ମୁଁ ନିଶ୍ଚିତ ହେଲି ଯେ ସେ ମରିଯିବ। ତେଣୁ ମୃତ୍ୟୁକାଳୀନ ଜମାନବନ୍ଦୀ ଲେଖାଗଲା ଓ ଗଣେଶକୁ ଆମ୍ବୁଲାନ୍ସରେ ହସ୍ପିଟାଲ ପଠାଇ ଦିଆଗଲା। ସେ ଲୋକଟି ଯେ ବଞ୍ଚିଲା ଯାଠୁ ବଳି ଆଶ୍ଚର୍ଯ୍ୟ କ'ଣ ହୋଇପାରେ? କିନ୍ତୁ ଏଇ କଥା ଯିଏ ଶୁଣିଲା ସେ ମୁହଁରେ ନକହିଲେ ମଧ୍ୟ ପଛରେ କହିଲା ଯେ, ମୁଁ କଥାଟାକୁ ଅତିରଞ୍ଜିତ କରୁଛି। ବଡ଼ବିଲରେ ଥିବାବେଳେ ରାତିରେ ଷ୍ଟେରିଂ ଧରି ଫେରୁଥିଲି। ରାସ୍ତାର ଗୋଟିଏ କଡ଼ରେ ବିରାଟ ଘାଇ ହୋଇଛି ଓ ମୁଁ ଦେଖିଲା ବେଳକୁ ଗାଡ଼ି ଘାଇ ପାଖକୁ ଆସି ଗଲାଣି । ବ୍ରେକ୍‌ମାରି ଆଖିବୁଜି ଦେଲି ଓ ଅପେକ୍ଷା କଲି ମୃତ୍ୟୁକୁ। କାରଣ କଡ଼କୁ ପ୍ରାୟ ୩୦ ଫୁଟର ଖାଲ। କିନ୍ତୁ ଅଦୃଶ୍ୟ ଶକ୍ତି ବୋଧେ ନିଷ୍ପତ୍ତି ନେଇଥିଲେ ଯେ ମୁଁ ସଂସାର ମୋହମାୟାରେ ବେଶ କିଛିଦିନ ଘାଣ୍ଟିହୁଏ । ମୋ ଜୀବନକୁ ରକ୍ଷା କରି ସେ ଆଶୀର୍ବାଦ ଦେଲେ କି ଦଣ୍ଡ ଦେଲେ ତାହା ଦର୍ଶନ ଦୃଷ୍ଟିକୋଣରୁ ବିଚାର କରିବାକୁ ପଡ଼ିବ। କିନ୍ତୁ ଅଦ୍ଭୁତ ଘଟଣା ହେଲା ଯେ ବାମପଟ ଚକଟା ଏକ ପଥରରେ ବାଜି ହାଇଜମ୍ପ ମାରିଲା ଓ ଖାଲର ଅନ୍ୟପଟେ ରହିଗଲା। ଯେଉଁ ପଥର ପାଇଁ ଆଗଚକ ଜମ୍ପ ମାରିଲା ସେଇ ପଥର ପଛଚକକୁ ରୋକି ଦେଲା। ଟିକିଏ ଏପଟ ସେପଟ ହୋଇଥିଲେ ଗାଡ଼ିଟା ଖାଲରେ ପଡ଼ିଯାଇଥାନ୍ତା। ବ୍ରେକ୍‌ମାରି ସେଇଭଳି ନିଶ୍ଚଳ ହୋଇ ମୁଁ ବସିଥାଏ। ଡ୍ରାଇଭର ସମସ୍ତଙ୍କୁ ସତର୍କ କରିଦେଲା 'କେହି ଓହ୍ଲାଇବା ପାଇଁ ଚେଷ୍ଟା କରନ୍ତୁ ନାହିଁ। କାରଣ ଗାଡ଼ି ହଲୁଛି ଓ ସମତା ଅଭାବ ହେଲେ ଗାଡ଼ି ଓଲଟି ପଡ଼ିବ' ମୁଁ ଓହ୍ଲାଇ ପାରିଥାନ୍ତି କିନ୍ତୁ ବାକି ଚାରିଜଣ ପୋଲିସ ଅଫିସର ସହିଦ ହୋଇଥାନ୍ତେ। ହଠାତ୍ ଦେଖିଲି ଦୂରରେ ଏକ ମିଞ୍ଜି ମିଞ୍ଜିଆ ଆଲୁଅ, ଅନେକ ହୋଇଥିଲେ ଭାବିଥାନ୍ତି ଜୁଲୁଜୁଲିଆ ପୋକ। କିନ୍ତୁ ଗୋଟିଏ ଥିବାରୁ ଅନୁମାନ କଲି କେହି ଜଣେ ରାତି ଅଧରେ ଉଠି ପିକା ଟାଣୁଛି। ଗାଡ଼ିର ହର୍ଣ୍ଣକୁ ବାରମ୍ବାର ବଜେଇଲି। ଆଲୁଅ ଅଫ୍ ଏବଂ ଅନ୍ କଲି। କିଛି ସମୟ ପରେ ସାଫଲ୍ୟ ମିଳିଲା ଭିନ୍ନ ବାଟରେ। ଗାଁ ବାଲା ଭାବିଲେ ଯେ ଡାକୁ ଆସିଛନ୍ତି। ଠେଙ୍ଗା, ବାଡ଼ି, ତୀର, ଧନୁ ଧରି କୋଡ଼ିଏ ପଚିଶି ଲୋକ ଦୌଡ଼ି ଆସିଲେ। ଯଦି ଦୂରରୁ ତୀର ମାରିବେ ତେବେ ଆମ ଅବସ୍ଥା ଶେଷ। ଗାଡ଼ି ପଛରେ ବସିଥିବା ପୋଲିସ ଅଫିସରମାନେ ପାଟିକଲେ, ଆମେ ପୋଲିସ ଷ୍ଟେରିଂ ଧରିବା

ପାଇଁ ଆସିଛୁ। ଉତ୍ତେଜନା କମିଗଲା, ଗାଁ ଲୋକ ରସି ଆଣି ଜିପ୍‌କୁ ବାନ୍ଧିଲେ ଓ ପ୍ରାୟ କୋଡ଼ିଏ ଜଣ ଜିପ୍‌କୁ ଟାଣି ରଖିବାରୁ ଆମେ ଓହ୍ଲାଇ ପାରିଲୁ। ଏଇ ସମୟରେ ଟାଟା ମାଇନ୍ସର ସିକ୍ୟୁରିଟି ଅଫିସର ସେ ବାଟରେ ଯାଉଥିଲେ। ସେ କ୍ରେନ୍ ମଗେଇ ଗାଡ଼ିକୁ ଉଠେଇଲେ। ପାଞ୍ଚଘଣ୍ଟା ପରେ ଆମେ ଫେରିଲୁ। ଏକଥା କାହାକୁ କହିନି। କାରଣ କଥାଟା ଗ୍ରହଣ କରାଯିବ 'ଭାସିଲା ପଥର ବୁଡ଼ିଲା ସୋଲ' ଭଳିଆ।

## (୪)

ବାରଣ୍ଡାକୁ ପଡୁଥାଏ ମନ୍ଦ ମନ୍ଦ ଖରା। କାରଣ ସୂର୍ଯ୍ୟ ବହୁତ ସମୟ ହେଲା ଉଇଁଲେଣି। ସମୟ ୯ଟା ପାଖାପାଖି ହେଲାଣି। ମନ ମଧ୍ୟରେ ସତର୍କ ଘଣ୍ଟି ବାଜିଲାଣି କିନ୍ତୁ ତାକୁ ଉପେକ୍ଷା କରି ନଥିଲି। ଗଲା ୩୮ ବର୍ଷ ହେଲା ଏଇଭଳି ଘଣ୍ଟିବାଜି କର୍ତ୍ତବ୍ୟ ପାଇଁ ଆହ୍ୱାନ କରୁଥିଲା। ଏଇମିତି କେତେଦିନ ବାଜୁଥିବା ଘଣ୍ଟିକୁ ଉପେକ୍ଷା କଲେ ବାଜିବା ବନ୍ଦ ହୋଇଯିବ। କିନ୍ତୁ ଗାଧୁଆପାଧୁଆ ଜଳଖିଆ କରିବାକୁ ତ ପଡ଼ିବ। ଗଲା ୩୮ ବର୍ଷ ହେଲା ୯-୧-୫-୯ କାର୍ଯ୍ୟକ୍ରମ ଯଥା ସକାଳ ଜଳଖିଆ, ମଧ୍ୟାହ୍ନ ଭୋଜନ, ଅପରାହ୍ନ ଚା' ଓ ରାତ୍ରିଭୋଜନକୁ ମୁଁ ନିଷ୍ଠାର ସହିତ ପାଳନ କରି ଆସୁଛି। ଭବିଷ୍ୟତରେ କରିବି ମଧ୍ୟ।

ପ୍ରାତଃ ଭୋଜନ ପରେ ଆଲମାରି ଖୋଲି ବହି ଆଢ଼େଇଲି। ବହି ଯେତେ ସଫା ସୁତୁରା ହେଲେ ମଧ୍ୟ ସବୁବେଳେ ମନେହୁଏ ଯେ ଧୂଳି ଜମି ଯାଇଛି। କେତୋଟି ବହି କାଢ଼ି ପୋଛିଲା ବେଳେ ଆଖି ପଡ଼ିଲା ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ବିଖ୍ୟାତ ଆତ୍ମଜୀବନୀ 'ବିଂଶ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋର ସ୍ଥାନ', ଡକ୍ଟର ମହତାବଙ୍କର 'ସାଧନା ପଥେ' ଓ କବିଚନ୍ଦ୍ର କାଳୀଚରଣଙ୍କର 'କୁମ୍ଭାର ଚକ' ଉପରେ। ମୋତେ ଦୁଇଜଣ ପ୍ରକାଶକ ବାରମ୍ବାର କହିଛନ୍ତି ଆତ୍ମଜୀବନୀ ଲେଖିବା ପାଇଁ। ଚାକିରିରେ ଥିଲା ବେଳେ ସମୟ ଅଭାବରୁ ଆତ୍ମଜୀବନୀ ପ୍ରତ୍ୟକ୍ଷ ଭାବେ ଲେଖି ପାରିଲି ନାହିଁ ସିନା ପରୋକ୍ଷ ଭାବରେ ବିଖ୍ୟାତ ସମ୍ବାଦପତ୍ର ପ୍ରଗତିବାଦୀରେ ପ୍ରତି ସପ୍ତାହରେ ଲେଖିଲି ଓ ସଂକଳନ କରି ଦୁଇଟି ପୁସ୍ତକ "କଥା ସେ କାଳର" ଓ "କଥା ଏ କାଳର" ପ୍ରକାଶନ କରାଗଲା। ମୁଖ୍ୟ ଚରିତ୍ରର ନାଁ ଥିଲା ରାଜେଶ। ଏ ଦୁଇଟି ପୁସ୍ତକ ପରୀକ୍ଷାତ୍ମକ କାରଣ ପ୍ରତ୍ୟେକ ଅଧ୍ୟାୟ ସ୍ୱାଧୀନ ଭାବେ ଏକ ଗଳ୍ପ ଓ ସବୁ ଗଳ୍ପକୁ ଯୋଡ଼ି ଦେଲେ ଏହା ଏକ ଉପନ୍ୟାସରେ ପରିଣତ ହୋଇଗଲା। ଲେଖି ନପାରିବାର ଆଉ ଏକ କାରଣ, ଯେ ଜଣେ ସାହିତ୍ୟିକ ବନ୍ଧୁ ବାରଣ କଲେ– "କାହିଁକି ଭାଇ ଆତ୍ମଜୀବନୀରେ ପଶୁଛ ?" ଆତ୍ମଜୀବନୀରେ ସତକଥା ଲେଖିଲେ ମଧ୍ୟ ଅନେକ ଏହାକୁ ଆତ୍ମସ୍ତୁତି ବୋଲି କହିବେ।

ସଂସ୍କୃତି ବିହୀନ ଲୋକ ଏ ଲୋକଟା ନିଜର ଢୋଲ ବାଡ଼ଉଛି ବୋଲି ପ୍ରଚାର କରିବେ। ତାଙ୍କ କଥାମାନି ନିବୃତ୍ତ ହେଲି। ତା' ବ୍ୟତୀତ ମୁଁ ନିଜକୁ ସବୁବେଳେ ପ୍ରଶ୍ନ ପଚାରିଲି ମୁଁ କ'ଣ ଏତେ ବିଖ୍ୟାତ ଯେ, ଆତ୍ମଜୀବନୀ ଲେଖିବି ? ସେ କଥା କହିବାରୁ ପ୍ରକାଶକ କହିଲେ, ସାର୍ ଯେଉଁମାନେ ଲେଖୁଛନ୍ତି ସେମାନେ ଏମିତି ବି ବିଖ୍ୟାତ କି ? ଶେଷରେ ନିଜକୁ ସମ୍ଭାଳି ପାରିଲି ନାହିଁ କିନ୍ତୁ ଲେଖା ଆରମ୍ଭ କଲି ଅବସର ନେବାର ଆଠବର୍ଷ ପରେ। ଯେତେଜଣ ଆତ୍ମଜୀବନୀ ଲେଖିଛନ୍ତି ପ୍ରାୟ ସମସ୍ତେ ତାଙ୍କ ଜନ୍ମସ୍ଥାନ ଓ ପରିବାରରୁ କଥା ଆରମ୍ଭ କରିଛନ୍ତି। ସେମାନେ ସୃଷ୍ଟି କରିଥିବା ପରମ୍ପରାରୁ ବିଚ୍ୟୁତ ନହୋଇ ମୁଁ ସେହିଭଳି ଆରମ୍ଭ କରିବାକୁ ଯାଉଛି।

## ପିଲାଦିନ

ମୋ ଜନ୍ମ ୨୯ ଜୁନ୍ ୧୯୪୫ ତାଳଚେର ସହରରେ। ସେତେବେଳେ ତାଳଚେର ଏକ ଗଡ଼ଜାତ ରାଜ୍ୟ ଥିଲା। ରଜା ଥିଲେ ସର୍ବେସର୍ବା। ରଜାଙ୍କ ପ୍ରଥମପୁତ୍ର ଥିଲେ ରାଜ୍ୟର ଜିଲ୍ଲା ଜଜ୍ ଓ ଦ୍ୱିତୀୟ ପୁତ୍ର ଦିଓ୍ୱାନ କାମ କରୁଥିଲେ। ଏମାନେ ଶାସନ କରୁଥିଲେ। ସମଗ୍ର ସହରରେ ରାଜବାଟି ଛାଡ଼ି ଦେଲେ ଚାରି ପାଞ୍ଚଟି କୋଠାଘର। ସହରର ମୁଖ୍ୟରାସ୍ତା ଦୁଇମାଇଲ ଦୂର ଷ୍ଟେସନ୍‌ରୁ ଲମ୍ବି ଥିଲା ରାଜବାଟୀ ପର୍ଯ୍ୟନ୍ତ। ଧୂଳିଆ ରାସ୍ତା କିନ୍ତୁ ଧୂଳି ଉଡ଼ିବା କିମ୍ବା ଧୂଆଁ ଖେଳିବା ସମ୍ଭାବନା ଥିଲା ବହୁତ କମ୍। ରଜାଙ୍କ ଗାଡ଼ି ଛାଡ଼ିଦେଲେ ଜଣେ ବ୍ୟବସାୟୀଙ୍କର ଗୋଟିଏ ଦଦରା ବସ୍ ଯେଉଁଥିରେ ପ୍ୟାସେଞ୍ଜର ଷ୍ଟେସନ୍‌କୁ ଯାଆନ୍ତି। ସହରରେ ରିକ୍ସା ନଥିଲା, ଶଗଡ଼ରେ ବସି ଯିବାଟା କେତେବଡ଼ କଥା ଥିଲା। ପୁଣି ବିଜୁଳିବତି ନଥିଲା। ରାଜାଙ୍କର ଗୋଟିଏ ଇଞ୍ଜିନ ଘର ଥିଲା ଯାହା ସନ୍ଧ୍ୟାବେଳେ ଷ୍ଟାର୍ଟ ହୁଏ ଓ କେବଳ ରାଜବାଟିରେ ଆଲୁଅ ଜଳେ। ରାସ୍ତାର ଅଳ୍ପ କେତେକ ଜାଗାରେ ବିଜୁଳିଖୁଣ୍ଟ ଥିଲା। ସମସ୍ତଙ୍କ ଘରେ ଲଣ୍ଠନ କିମ୍ବା ବତି। ଅଳ୍ପ କେଇଜଣ ବଡ଼ଲୋକ ପେଟ୍ରୋମାକ୍ସ ରଖିଥିଲେ। ଜଣେ ଦୁଇଜଣଙ୍କ ପାଖରେ ଫଟଫଟି ମାନେ ମୋଟର ସାଇକେଲ ଥିଲା। ହାତରେ ଘଣ୍ଟା, ଗୋଡ଼ରେ ଜୋତା, ପକେଟରେ ପାର୍କର କଲମ, ଘରେ ଫଟଫଟି ଓ ପେଟ୍ରୋମାକ୍ସ ଥିଲେ ଜଣେ ବଡ଼ଲୋକର ସଂଜ୍ଞା ପୂରଣ କରି ପାରୁଥିଲା। ମୋ ନନା ଆର୍ଥାତ ବାପା ଥିଲେ ଓକିଲ, ତା' ପରେ ହେଲେ ଇନ୍‌କମ୍ ଟ୍ୟାକ୍ସ ଅଫିସର ଓ ଦେଶୀୟ ରାଜ୍ୟମିଶ୍ରଣ ପରେ ହେଲେ ମାଜିଷ୍ଟ୍ରେଟ୍। ଆମ ଘରେ ବେଶ୍ ଜନଗହଳି। ଜେଜେବାପା ଜେଜେ ମା' ୧୯୨୫ ମସିହାରୁ ମୋ ନନାଙ୍କ ଜନ୍ମସ୍ଥାନ କଣ୍ଡାଳ ଗାଁରୁ ଚାଲିଆସି ନନାଙ୍କ ପାଖରେ ସହରରେ ରହିଲେ। ମୋ ପିଉସୀ ନାନୀ ବିଧବା ହୋଇଯିବାରୁ ବୋଉ (ମା) ଦିନେ ଶଗଡ଼ ନେଇଗଲା ଓ ତା' ସହିତ

ଦୁଇପୁଅ ଓ ଝିଅକୁ ଘରକୁ ନେଇ ଆସିଲା। ଆମ ଘରକୁ ଆସିବାର କିଛିଦିନ ପରେ ପିଉସୀ ନାନୀର ପୁଅଟିଏ ଜନ୍ମ ହେଲା। ଆମଭାଇମାନଙ୍କ ମଧ୍ୟରେ ମୁଁ ହେଲି ଚତୁର୍ଥ ଓ ମୋ ତଳେ ଜଣେ ଭାଇ ଓ ଭଉଣୀ। ଏଇଭଳି ଭାବେ ଆମେ ପାଞ୍ଚ ଭାଇ ତିନି ଭଉଣୀ ଓ ସେମାନେ ତିନିଭାଇ ଓ ଜଣେ ଭଉଣୀ ସବୁମିଶି ଆଠ ଭାଇ ଓ ଚାରି ଭଉଣୀ ହେଲୁ। ପିଉସୀ ନାନୀର ଦୁଇପୁଅ ଆମ ବଡ଼ ଭାଇନାଙ୍କ ଠାରୁ ବୟସରେ ବଡ଼। ଯେହେତୁ ସେମାନଙ୍କୁ ମୋ ନନା ଓ ବୋଉ ନିଜ ପୁଅ ଓ କନ୍ୟା ଭଳି ବ୍ୟବହାର କରୁଥିଲେ, ପିଉସୀ ନାନୀଙ୍କ ବଡ଼ପୁଅ (ଗଣେଶ୍ୱର ଭାଇନା) ଘରେ ବଡ଼ପୁଅର ସମ୍ମାନ ପାଉଥିଲେ। ମୋ ନନା ଓ ବୋଉ ପିଉସୀ ନାନୀ ଗଣେଶ୍ୱର ଭାଇନାଙ୍କ ସହ ମିଶି ସବୁ ନିଷ୍ପତ୍ତି ନେଉଥିଲେ, ଅବଶ୍ୟ ଜେଜେବାପାଙ୍କର ଅନୁମୋଦନ ପରେ। ଏବେ ମଧ୍ୟ ଗଣେଶ୍ୱର ଭାଇନା ପରିବାରର ମୁଖ୍ୟ ସଦସ୍ୟର ସମ୍ମାନ ପାଉଛନ୍ତି। ତାଙ୍କ ତଳଭାଇ ନବଭାଇନା ଯେ କି ଅତ୍ୟନ୍ତ ପରିଶ୍ରମୀ ଓ ସ୍ନେହୀ ଥିଲେ ଓ ଜୀବନରେ କାହାକୁ ପଦେ କଡ଼ା କଥା କହି ନାହାନ୍ତି। ସେ ଦୁଇବର୍ଷ ତଳେ ଚାଲିଗଲେ। ହଁ, ଘରେ କକେଇ ମଧ୍ୟ ଥିଲେ । ତାଙ୍କ ବାହାଘର ହୋଇଥିଲା ଢେଙ୍କାନାଳର ରଡ଼ାଙ୍ଗି ଗାଁରେ। ଆମେ ବରଯାତ୍ରୀରେ ଯାଇଥିଲୁ ଓ ସବାରୀରେ ବସିବାର ସୁଯୋଗ ମୋତେ ମିଳିବାରୁ ମୋ ସାନଭାଇ ଓ ମୋ ଠାରୁ ବଡ଼ ପିଉସୀ ପୁଅ ଭାଇଙ୍କର ଅନେକ ଦିନ ପର୍ଯ୍ୟନ୍ତ ଈର୍ଷାର ପାତ୍ର ହୋଇଥିଲି। ଖୁଡ଼ୀ ଆମ ଘରକୁ ଆସିବା ପରେ ଘରର ସଂଖ୍ୟା ବଢ଼ିଲା ଓ ସାମ୍ନାପଟ ତିନି ବଖରା ଚାଳଘର ଓ ପଛପଟ ତିନି ବଖରା କୋଠାଘର ଏତେ ବଡ଼ ପରିବାର ପାଇଁ ଯଥେଷ୍ଟ ନଥିଲା। ତେଣୁ ଅନେକ ଦିନ ଆମେ ପିଣ୍ଡାରେ ଶୋଉଥିଲୁ।

ଆଜିକାଲି ଛୋଟପିଲାଙ୍କୁ ବଡେଇବା ପାଇଁ ହଜାର ରକମର ଟୀକା ଓ ବିଭିନ୍ନ ପ୍ରକାରର ଖାଦ୍ୟ, ପ୍ରତିମାସରେ ଓଜନ ପରୀକ୍ଷା, ଡାକ୍ତରଙ୍କ ଦ୍ୱାରା ପରୀକ୍ଷା ଇତ୍ୟାଦି ଦେଖିଲେ ମନେହୁଏ ଆମେ ବଞ୍ଚିଲୁ କେମିତି ? ଡାକ୍ତର ବୋଇଲେ ଜଣେ ହୋମିଓପ୍ୟାଥି କିମ୍ବା ବୈଦ୍ୟ। ବେଳେବେଳେ ଝଡ଼ାଫୁଙ୍କା। ଥରେ ତିନି ବଡ଼ଭାଇ ପଡ଼ିଲେ ବେମାର- ଜଣେ ମେଲେରିଆ, ଜଣେ ଟାଇଫଏଡ଼ ଓ ଜଣେ ନିମୋନିଆଁରେ। ସକାଳେ ଜଣେ ଆସି ଝଡ଼ାଫୁଙ୍କା କରିଦେଇ ଯାଆନ୍ତି, ୯ଟା ୧୦ ଟା ବେଳେ ହୋମିଓପ୍ୟାଥି ଡାକ୍ତର (ଡ଼ିଗ୍ରୀ ନଥାଇ) ଶରୀରର ତାପ ମାପି ଔଷଧ ଦିଅନ୍ତି। ସନ୍ଧ୍ୟାବେଳେ ବୈଦ୍ୟ ଆସି ଡବାରୁ ପଚାଶ ଷାଠିଏ ବର୍ଷର ପୁରୁଣା ଘିଅ ବାହାର କରନ୍ତି ଓ ଆଦେଶ ଦିଅନ୍ତି ଗରମ କରିବା ପାଇଁ। ଆମେ ଛାଟିପିଟି ପଳାଉ କାରଣ ପୁରୁଣା ଘିଅର ଗନ୍ଧ ଯିଏ ଥରେ ଶୁଙ୍ଘିଥିବ ସେ ଆଉ ଦିନେ ତା' ପାଖକୁ ଆସିବ ନାହିଁ। ବୈଦ୍ୟ ମହାଶୟ ଉଷୁମ ଘିଅକୁ ଛାତିରେ ମାଲିସ୍ କରିଦେଇ ବରପତ୍ର ଚାପିଦେଇ କନାପଟି ଭିଡ଼ି ଦିଅନ୍ତି ଓ ଦୁଇବେଳା ହରଡ଼ ଡାଲିରେ

ରସୁଣ ପକେଇ ଖାଇବା ପାଇଁ କହନ୍ତି। ତା' ସାଙ୍ଗକୁ ଦିଅନ୍ତି ମକରଧ୍ୱଜ, ଯାହାକୁ ମହୁ ସାଙ୍ଗରେ ଗୋଳେଇ ଘଟିବାକୁ ପଡ଼େ। କେମିତି କେଜାଣି ତିନି ଭାଇଙ୍କ ବେମାରୀ ଭଲ ହୋଇଗଲା। ଆମର ଅବସ୍ଥା ତ ଏଇଆ, ଗରିବ ଲୋକଙ୍କ କଥା ପଚାରୁଛି କିଏ ?

ପାଞ୍ଚବର୍ଷ ନ ହେଉଣୁ ମୋର ଖଡ଼ି ଛୁଆଁ ହେଲା। ସ୍ପଷ୍ଟ ମନେ ପଡୁନାହିଁ। ତେବେ ଯାହା ଜଣାପଡ଼େ ସକାଳୁ ଗାଧୋଇ ହାପ୍‌ପେଣ୍ଟ ଓ ହାପ୍ ସାର୍ଟ ପିନ୍ଧି ଅପେକ୍ଷା କଲୁ ଅବଧାନଙ୍କୁ। ସେ ଆସିଲେ ସିଲଟ ଓ ମୁଣ୍ଡା ଖଡ଼ି ଧରି। ଆସନରେ ବସିଲେ ଓ ତାଙ୍କ ସାମ୍ନାରେ ମୁଁ ବସି ସିଲଟ ଧରିଲି ଓ ମୋ ହାତଧରି ସେ ଲେଖେଇ ଦେଲେ '୦'। ତା' ପରେ ବିଦ୍ୟା ଆରମ୍ଭ ହେଲା। ଏଣିକି ସିଲଟ, ଚକ୍ ଖଡ଼ି ଓ ଚଟେଇ ଧରି ଚଟଶାଳୀ ଯିବାକୁ ପଡ଼ିଲା। ଅବଧାନ ହେଲେ ବଳିଆ ମାଷ୍ଟ୍ରେ। ମଧ୍ୟମ ଉଚ୍ଚତା, ସାବନା ରଙ୍ଗ ଓ ପତଳା ଶରୀରର ଦକ୍ଷ କାରିଗରଟିଏ। ଯିଏ ମୁଣ୍ଡାଏ ମାଟିରେ ସୁନ୍ଦର ପ୍ରତିମାଟିଏ କରି ଦେଇପାରନ୍ତି। ତାଳଚେରରେ ଯେତେ ଶିକ୍ଷିତ ପିଲା (ଅନେକ ବହୁତ ଉଚ୍ଚକୁ ଯାଇଛନ୍ତି) ସମସ୍ତେ ଯାଇଛନ୍ତି ବଳିଆ ମାଷ୍ଟ୍ରେଙ୍କ ଚଟଶାଳୀକୁ ମାଟି ମୁଣ୍ଡାଭଳି ଓ ବାହାରିଛନ୍ତି ପ୍ରତିମା ଭାବରେ। କି ସୌଭାଗ୍ୟ ଏଭଳି ଜଣେ ଶିକ୍ଷକ ଯିଏ କି କୁକୁର ଲାଞ୍ଜକୁ ସିଧା କରିଦେଇ ପାରନ୍ତି ତାଙ୍କ ପାଖରେ ପଢିବାରେ । ବଳିଆ ମାଷ୍ଟ୍ରେଙ୍କ ଚଟଶାଳୀରେ ମୁଁ ଭଲ ଛାତ୍ରଥିଲି। କ୍ଲାସରେ ପ୍ରଥମ ହେଉଥିଲି ଓ ଦିନେ ଘରକୁ ଆସି ଶୁଣିଲି ନନାଙ୍କର ଯେହେତୁ ବଦଳି ହୋଇ ଯାଇଛି ଢେଙ୍କାନାଳକୁ ଆମକୁ ସେଠିକି ଯିବାକୁ ପଡ଼ିବ। ଘରେ ରହିବେ ଜେଜେବାପା, ଜେଜେମା', କକେଇ ଓ ଖୁଡ଼ୀ। ଆମ ଘରକୁ ଲାଗି ଆମ ପିଉସାଙ୍କ ଘର । ଗୋଟିଏ ଜମି କିଣି ଦୁଇସଢୁ ଦୁଇ ଭାଗ କରି ଘର କରିଥିଲେ। ମଉସାଙ୍କ ବିଭିନ୍ନ ପ୍ରକାର ବ୍ୟବସାୟ ଥିଲା। ତାଙ୍କର ବଡ଼ପୁଅ କଣ୍ଟ୍ରାକ୍ଟି କରୁଥିଲେ ଜଣେ ପୁଅ ଓଭରସିଅର ଥିଲେ ଓ ଆଉ ଜଣେ ଡାକ୍ତରୀ ପଢୁଥିଲେ। ସବା ସାନପୁଅ ପ୍ୟାରୀମୋହନ ମହାପାତ୍ର ବର୍ତ୍ତମାନ ଜଣେ ଜଣାଶୁଣା ବ୍ୟକ୍ତି। ମଉସା ମାଉସୀ ବହୁତ ସ୍ନେହୀ। ଜେଜେ ବାପା ଦିନ ୧୦ଟା ବେଳେ ଭାତ ଖାଆନ୍ତି ତାଙ୍କ ବଖରାରେ। ଯାହାକିଛି ଭଲ ରନ୍ଧା ହୋଇଥିବ ସେଥିରୁ କିଛି ଆଣି ମାଉସୀ ବାପାଙ୍କ ଥାଳିରେ ଥୋଇ ଦିଅନ୍ତି ଓ ମୁଣ୍ଡିଆଟିଏ ମାରନ୍ତି। ମାଉସୀ ବୋଉ ଠାରୁ ବୟସରେ ବଡ଼। ସେତେବେଳେ ତାଙ୍କ ଦୁଇପୁଅ ବାହାହୋଇ ସାରିଲେଣି । ତଥାପି ମୋ ବାପାଙ୍କ ଆଗରେ କେବେ ଓଢଣୀ ଖସେଇବାର ଓ ନନାଙ୍କ ସାମ୍ନାକୁ ଆସିବାର ଆମେ ଦେଖି ନାହୁଁ। ମୋର ମନେପଡ଼େ କି ଯେତେବେଳେ ତାଙ୍କର ଆକସ୍ମିକ ମୃତ୍ୟୁ ହେଲା ସେତେବେଳେ ଖବର ପାଇ ମୋର ଜଣେ ଭାଇନା ନନାଙ୍କୁ ଚିଠିରେ ଲେଖିଥିଲେ ଯେ ଆମ ବୃହତ ପରିବାରର ଯାହାକିଛି ସଦ୍‌ଗୁଣ ଥିଲା ସବୁ ତାଙ୍କଠାରେ ଦେଖିବାକୁ ମିଳୁଥିଲା । ସେ ଆଉ କିଛିଦିନ ବଞ୍ଚିଥାନ୍ତେ କି ?

ହଁ ଆମେ ଆସିଲୁ ଢେଙ୍କାନାଳ। ରହିଲୁ କୁଞ୍ଜକାନ୍ତରେ ଏକ ଚାଳଘରେ। ସାମ୍ନାରେ ବଡ଼ମ୍ବାମେସ୍ । ଏଭଳି ନାମକରଣ ହୋଇଥିଲା କାରଣ ବଡ଼ମ୍ବାରୁ ଆସି ଢେଙ୍କାନାଳ ହାଇସ୍କୁଲରେ ପାଠ ପଢୁଥିବା ପିଲାଙ୍କ ପାଇଁ ଏ ମେସ୍ ହୋଇଥିଲା। ଆମ ଦାଣ୍ଡରେ କୂଅ ଥିଲା। ପାଣି ବ୍ୟବହାର କରୁଥିଲେ ସାହିଲୋକେ ଓ ସେମାନଙ୍କୁ ମନା କରାଯାଉ ନଥିଲା । ବାମପଟକୁ ଲାଗି ମାଇଲିଏ ଲମ୍ବ ଆମ୍ବତୋଟା, ତା' ମଧ୍ୟରେ କୁଞ୍ଜକାନ୍ତ ପୋଖରୀ ଓ ରାସ୍ତା ସେକଡ଼େ କୁଞ୍ଜକାନ୍ତ ମନ୍ଦିର। ପାଠ ପଢିଲି ଜର୍ଜ ଉ.ପ୍ରା. ସ୍କୁଲରେ। ସ୍କୁଲ ଥିଲା ଥାନାକୁ ଲାଗି । ଦ୍ୱିତୀୟ ଶ୍ରେଣୀରେ ଆଡ଼ମିଶନ ହେଲି। ଶ୍ରେଣୀ ଶିକ୍ଷକ ଥିଲେ ସଚ୍ଚିମାଷ୍ଟ୍ରେ। ଖୁବ୍ ଭଲ ଶିକ୍ଷକ, ପରେ ସେ କବିତା ମଧ୍ୟ ଲେଖିଲେ। ଢେଙ୍କାନାଳ ରଜା ତାଙ୍କୁ ବେଶ୍ ଆଦର କରୁଥିଲେ। ଦ୍ୱିତୀୟ ଶ୍ରେଣୀ ପାସ୍ କଲାପରେ ତାଳଚେର ଫେରିବାକୁ ପଡ଼ିଲା, କାରଣ କକେଇ ଖୁଡ଼ୀ ଚାଲିଗଲେ ବଲାଙ୍ଗୀର, ଜେଜେମାଆ ମରିଗଲେ ଓ ଜେଜେବାପା ଏକୁଟିଆ ହୋଇଗଲେ।

ଆରେ ରଣା ବୁଲି ବୁଲି କରି ସେଇ ଅଗଣା ଦଶା। ପୁଣି ବସ୍ତାନୀ ଧରି ଚାଲ ବଳିଆ ମାଷ୍ଟ୍ରେଙ୍କ ଚାଟଶାଳୀକୁ। ସାର୍ ଗୋଟିଏ ଦୁଇଟା ପ୍ରଶ୍ନ ପଚାରି ଉତ୍ତରରେ ଅସନ୍ତୁଷ୍ଟ ହେଲେ ଓ ମନ୍ତବ୍ୟ ଦେଲେ-ପାଠଟା ଟିକିଏ ବିଗିଡ଼ି ଯାଇଛି। ମାସେ ଭିତରେ ଠିକ୍ ହୋଇଯିବ। ଆଜି ବହି କିଣିପକା। ବହି କିଣା ହେଲା, ବସ୍ତାନୀ ଓ ଚଟେଇ ଧରି ଚାଟଶାଳୀ ନିୟମିତ ଗଲି। ମାସକ ମଧ୍ୟରେ ପାଠ ଠିକ୍ ହୋଇଗଲା। ସାର୍ କହିଲେ ଛ' ମାସ ପଢ଼ିଲେ ତୁ ଚତୁର୍ଥ ଶ୍ରେଣୀ ପାଇଁ ଯୋଗ୍ୟ ହୋଇଯିବୁ।

ନନା ତାଳଚେର ଆସିଥିଲେ ଓ ବଳିଆ ମାଷ୍ଟ୍ରେ କହିଲେ-ମାଜିଷ୍ଟର ବାବୁ, ତାକୁ ଢେଙ୍କାନାଳ ନେଇଯାଅ। ଚତୁର୍ଥ ଶ୍ରେଣୀରେ ନାମ ଲେଖାଇ ଦିଅ। ଏଇଠେ ପଢିଲେ ହେବ ଯେ, କିନ୍ତୁ ସ୍କୁଲ ଦି କୋଶ, ଛୋଟ ଛୁଆଟା ଯିବ କେମିତି ? ଦୁର୍ବଳିଆ ଛୁଆଟା, ଆହୁରି ଶୁଖିଯିବ। ଅନ୍ୟମାନେ ରହିଲେ ତାଳଚେରରେ, ମୁଁ ଢେଙ୍କାନାଳ ଗଲି ପାଠ ପଢିବା ପାଇଁ। ଢେଙ୍କାନାଳ ବ୍ରଜନାଥ ବଡ଼ଜେନା ହାଇସ୍କୁଲର ହେଡ୍‌ମାଷ୍ଟର ମଦନ ପ୍ରଧାନ ମହାଶୟ ନନାଙ୍କୁ ସିଧାସଳଖ କହିଦେଲେ-ମୁଁ ଏ ପିଲାକୁ ଟେଷ୍ଟ କରିବି, ଯଦି ପାସ୍ କରିବ ତେବେ ଆଡ଼ମିଶନ ମିଳିବ। ତା' ପରେ ଜଣେ ସାର୍‌ଙ୍କୁ ଡାକି କହିଲେ ଦୁଇ ତିନିଟା ଅଙ୍କ କଷିବା ପାଇଁ ଦିଅ ଓ ରେଳଯାତ୍ରା ବିଷୟରେ ରଚନା ଲେଖିବାକୁ କୁହ। ସାର୍ ଆଦେଶ ମାନିଲେ ଓ ପେନ୍‌ସିଲରେ ମୁଁ ଲେଖିଥିବା ଉତ୍ତର ଧରି ହେଡ୍‌ମାଷ୍ଟରଙ୍କ ପାଖକୁ ଗଲେ ଓ କହିଲେ- ସାର ପିଲା ଠିକ୍ ଅଛି। କିନ୍ତୁ ହେଡ୍‌ମାଷ୍ଟର ସହଜରେ ସନ୍ତୁଷ୍ଟ ହେବା ଲୋକ ନୁହଁନ୍ତି। ମୋ ବଡ଼ଭାଇନା ସେଇ ସ୍କୁଲରେ ନବମ ଶ୍ରେଣୀରେ ପଢୁଥିଲେ ଓ ତାଙ୍କୁ ଉଲ୍ଲେଖ କରି କହିଲେ ବିନୋଦର ସାନଭାଇ, ଭଲପିଲା ହୋଇଥିବ ତଥାପି ମୁଁ

ଗୋଟେ ଦୁଇଟା ମାନସାଙ୍କ ପଚାରିବି। ସେ ପଚାରିଥିବା ପ୍ରଶ୍ନର ଉତ୍ତର ଠିକ୍ ଭାବେ ମୁଁ ଦେବାରୁ ହେଡ୍‌ମାଷ୍ଟର ଖୁସିହୋଇ କହିଲେ, କାଲି ଆଡ଼ମିଶନ କରେଇ ଦିଅନ୍ତୁ। ପାଠ ବହୁତ ଆଗେଇ ଗଲାଣି। ତା ଭାଗ୍ୟକୁ ଗୋଟେ ସିଟ୍ ଖାଲି ଅଛି। ଯଦି କେହି ଟିସିନେଇ ପଳେଇ ଆସେ ମୁଁ ଏ ପିଲାକୁ ଆଡ଼ମିଶନ ଦେଇ ପାରିବି ନାହିଁ।

ଯାହାହେଉ ତା' ଆରଦିନ ସୁରୁଖୁରୁରେ ଆଡ୍‌ମିଶନ ହୋଇଗଲା। ପାଠକବନ୍ଧୁମାନେ ଜାଣି ଆଶ୍ଚର୍ଯ୍ୟ ହେବେ ଯେ ମୋ ପାଇଁ ନିୟମଟା କଡ଼ାକଡ଼ି ପାଳନ କରିଥିବା ଶ୍ରୀଯୁକ୍ତ ମଦନ ପ୍ରଧାନ ଥିଲେ ମୋ ନନାଙ୍କର ଅନ୍ତରଙ୍ଗ ବନ୍ଧୁ ଓ ପ୍ରାୟ ସବୁଦିନ ସନ୍ଧ୍ୟାରେ ଆମ ଘରକୁ ବୁଲି ଆସୁଥିଲେ। ସେ ଜମାନା ଓ ଆଜିର ଧରାଧରି ଜମାନା ଦେଖିଲେ ଲାଜ ଲାଗିବ।

ଆମେ ରହୁଥିଲୁ ଗୁଡ଼ିଆନାଳୀରେ। ଯାହାକୁ କିଏ କିଏ କୁଞ୍ଜକାନ୍ତ କହନ୍ତି। ସେ ଅଞ୍ଚଳରେ ଜଣେ ଓକିଲ ଶ୍ରୀ ଦୈତାରୀ ତ୍ରିପାଠୀ, ଜଣେ ବିଶିଷ୍ଟ ବ୍ୟକ୍ତି ସୋନା ମିଆଁ ଓ ଢେଙ୍କାନାଳ ରଜାଙ୍କର ପୂର୍ବତନ ପେସ୍କାର (ନନ୍ଦପେସ୍କାର)ଙ୍କର କୋଠା ଘର ଥିଲା। ବାକି ସବୁ ଚାଳଘର। ରାସ୍ତା କଡ଼କୁ ଲାଗି ଚାରୋଟି ସରକାରୀ ବାସଭବନ, ଯେଉଁଥିରେ ମାଜିଷ୍ଟ୍ରେଟ୍ ଓ ଡି.ପି.ଆର.ଓ ରହୁଥିଲେ। ସେଗୁଡ଼ିକ ମଧ୍ୟ ଚାଳଘର। ସନ୍ଧ୍ୟା ହେଲେ ଆମ ଘର ବାରଣ୍ଡାରେ ସତରଞ୍ଜି ଉପରେ ତାସ୍ ଖେଳ ହୁଏ। ନନା, ଓକିଲ କୁଞ୍ଜପଣ୍ଡା (ପରେ ହାଇକୋର୍ଟ ଜଜ ହେଲେ), ପୋଲିସ ଇନ୍‌ସପେକ୍ଟର ରସିକ୍ ପଟ୍ଟନାୟକ, ହେଡ୍‌ମାଷ୍ଟର ମଦନ ପ୍ରଧାନ ସମସ୍ତେ ଆସି ତାସ ଖେଳନ୍ତି। ମଝିରେ ମଝିରେ ଚା' ବରାଦ ହୁଏ। ପ୍ରତ୍ୟେକ ବାଜି ପରେ ଚାଲେ ଘମାଘୋଟ ଆଲୋଚନା ଓ ଅଭିଯୋଗ। ଯଥା ୩ ସ୍ପେଡ଼ପରେ ୪ ଡାଇମଣ୍ଡ ଡାକିବା କ'ଣ ଦରକାର ଥିଲା ଇତ୍ୟାଦି।

ଆମେ ପାଠପଢୁ ଓ ତାସ୍ ବିଷୟରେ ମଧ୍ୟ ଜ୍ଞାନ ଲାଭ କରୁ। ଯେଉଁ ହେଡ୍‌ମାଷ୍ଟ୍ର ମହାଶୟ ତାସ ସମୟରେ ପିଲାଙ୍କ ଭଳିଆ ଯୁକ୍ତିତର୍କ କରନ୍ତି ଓ ଆମକୁ ମଝିରେ ମଝିରେ ବରାଦ କରନ୍ତି, ଆରେ ଭଲ ପାନଟେ ଆଣ, ସେଇ ମହାଶୟଙ୍କୁ ପରଦିନ ସକାଳେ ଭିନ୍ନ ରୂପରେ ଆମେ ସ୍କୁଲରେ ଦେଖୁ। ଗୋରା ପତଳା ଡ଼େଙ୍ଗା ମଣିଷ, କୁଞ୍ଚୁକୁଞ୍ଚିଆ ବାଳ ଓ ସ୍କୁଲରେ ଚକ୍କର ମାରନ୍ତି। ଚାଲନ୍ତି ନାହିଁ ବରଂ କହିବା ଧାଆଁନ୍ତି। ପଛରେ ପିଅନ ଜଣେ ବେତ ଟେ ଧରି ଧାଏଁ। ସାରା ସ୍କୁଲରେ ଶ୍ମଶାନର ନିରବତା। କେବେ କେମିତି କ୍ଲାସରେ ପଶିଯାଇ ସାର୍‌ମାନଙ୍କୁ ପାଠ କେତେଦୂର ଗଲାଣି ବୋଲି ପଚାରନ୍ତି। ଥରେ ଆମ କ୍ଲାସକୁ ପଶିଯାଇ ମୋତେ ଆଙ୍ଗୁଠି ଦେଖେଇ ଶ୍ରେଣୀ ଶିକ୍ଷକଙ୍କୁ ପଚାରିଲେ ଏ ନୂଆ ପିଲା ନାଁ କ'ଣ? ମୁଁ ପାଞ୍ଚ ଛ'ଦିନ ତଳେ ନାଁ ଲେଖେଇ ଥିଲି ଓ ସାର ମୋତେ ତୃତୀୟ ଧାଡ଼ିରେ ବସେଇ ଦେଇଥିଲେ। ଥରେ ନାଁ ପଚାରିଲେ ପରେ ବୋଧେ ଭୁଲିଗଲେ।

ହେଡ୍‌ମାଷ୍ଟ୍ରଙ୍କୁ ଉତ୍ତର ନଦେଇ ପାରି ଥତମତ ହେବାରୁ ସେ ଭାରି ଗଳାରେ କହିଲେ "ପିଲାଙ୍କ ନାଁ ନ ଜାଣିଲେ କେମିତି ହେବ? ତା' ପ୍ରତି ସ୍ୱତନ୍ତ୍ର ଦୃଷ୍ଟି ଦେବ। ସେ ଡ୍ରେରିରେ ନାଁ ଲେଖେଇଚି ପରା।"

ସାର୍‌ଙ୍କ ମୁହଁ ଲାଲ ପଡ଼ିଗଲା ଓ ରାଗଟା ସୁଝେଇଲେ ମୋ ଉପରେ। ତୋ ନାଁ କାହିଁ ମୋତେ କହିନୁ ବୋଲି କହି ବେଞ୍ଚ ଉପରେ ଠିଆ କରେଇ ଦେଲେ। ତା' ଛଡ଼ା ତାଳଚେରରୁ ଆସିଛୁ ତୋ ମୁଣ୍ଡରେ ଗୋବର ଥିବ ବୋଲି ଘୋଷଣା କଲେ। ଷାଣ୍ମାସିକ ପରୀକ୍ଷା ଆଉ ମାସେ ଥାଏ ଓ ସାର୍ ଭବିଷ୍ୟବାଣୀ ଶୁଣେଇଲେ ଯେ ମୁଁ ନିଶ୍ଚୟ ଫେଲ୍ ହେବି ତା' ପରେ ପାଠ ଛାଡ଼ିବି ଓ ଶେଷରେ ଚୋରି କରିବି। ମୋ ପାଇଁ ସାର୍ ହେଡ୍‌ମାଷ୍ଟ୍ରଙ୍କ ଠାରୁ ଗାଳି ଖାଇବାର ଏଭଳି ସୁଦୂରପ୍ରସାରୀ ପ୍ରତିକୂଳ ପ୍ରଭାବ ପଡ଼ିବ ତା' ଶୁଣି ମୁଁ ଲାଜରେ ମୁହଁ ପୋତିଲି ଓ ଅନ୍ୟ ଛାତ୍ରମାନେ ମୋତେ ଗୋବର ଗଣେଶ ବୋଲି ଚିଡ଼େଇଲେ । ଚିଡ଼େଇବା ଚାଲୁ ରହିଲା ଷାଣ୍ମାସିକ ପରୀକ୍ଷା ଫଳ ବାହାରିବା ପର୍ଯ୍ୟନ୍ତ। ମୁଁ ଫାଷ୍ଟ ହୋଇଥିଲି ଓ ଶ୍ରେଣୀ ଶିକ୍ଷକ ଶ୍ରୀଯୁକ୍ତ ଗଦାଧର ମହାପାତ୍ର ମୋତେ ସାହିତ୍ୟରେ ଶହେରୁ ୭୨ ନମ୍ବର ଦେଇଥିଲେ। ଏଥର ଘୋଷଣା କଲେ "ଟୋକାର ମୁଣ୍ଡରେ ମସଲା ଅଛି।" ତା ସାଙ୍ଗେ ପଚାରିଲେ ଏକ ନଦୀର ଦୃଶ୍ୟ ରଚନା ଲେଖିବା ବେଳେ ତୁ ଲେଖିଛୁ ସୁନ୍ଦରେ ତୃପ୍ତିର ଅବସାଦ ନାହିଁ। କେଉଁଠୁ ଜାଣିଲୁ ଏ କଥା? ମୋ ଭାଇନାଙ୍କ ଠୁ ଶୁଣିଥିଲି କହିବାରୁ ସାର୍ ଖୁସିହୋଇ ଅନେକ ପିଲାଙ୍କୁ କହିଲେ ଦେଖିଲ ଏ ପିଲାଟାର ପାଠରେ ନିଷ୍ଠା ଅଛି। ପାଠରେ ସନ୍ଦେହ ହେଲେ ବଡ଼ଭାଇଙ୍କୁ ପଚାରୁଛି। ତମେ ସବୁ କ'ଣ କରୁଛ? ମୁଣ୍ଡ ଭିତରେ ମହଣେ ଲେଖା ଗୋବର ରଖିଛ। ତମ ଦ୍ୱାରା କିଛି ହେବ ନାହିଁ। ସବୁଗୁଡ଼ା ଚୋର, ଚଣ୍ଡାଳ ହୋଇ ବୁଲିବ।" ସେଇ ସବୁ ପିଲାଙ୍କର ନାଁ ମୋର ମନେ ନାହିଁ। ତିନୋଟି ଝିଅ ପାଠ ପଢୁଥିଲେ ତାଙ୍କ ନାଁ ମଧ୍ୟ ମନେ ନାହିଁ। ଭଗବାନ କରନ୍ତୁ ସମସ୍ତେ ଭଲରେ ଥାନ୍ତୁ।

କିଛି ମାସ ପରେ କକେଇ ଖୁଡ଼ୀ ତାଳଚେର ଫେରି ଆସିବାରୁ ସେମାନେ ବାପାଙ୍କ କଥା ବୁଝିଲେ ଓ ମୋ ମାଆ (ବୋଉ) ଦୁଇନାନୀ ସାନଭାଇ ସାନ ଭଉଣୀ ଢେଙ୍କାନାଳ ଆସିଲେ। ଘରେ ଲାଗିରହିଲା ଗହଳି। ଦୁଇନାନୀ ସପ୍ତମ ଶ୍ରେଣୀ ପରେ ପାଠ ଛାଡ଼ି ଘରକାମ କଲେ, ଗୀତ ଓ ସିଲେଇ ଶିଖିଲେ। ବଡ଼ନାନୀ (ବିଦୁନାନୀ)ର କଣ୍ଠ ଖୁବ୍ ଭଲ । ନନା ହାରମୋନିୟମଟିଏ ମଗେଇଲେ କଲିକତାରୁ ଓ ସିଏ ଆପେ ହାରମୋନିୟମ ବଜେଇ ଶିଖିଲା ଓ ଅନେକ ଛାନ୍ଦ ଚମ୍ପୂ ଗାଇଲା। ସେତେବେଳର ଆଧୁନିକ ଗୀତ 'ଜୀବନେ ଯାହାକୁ ତୁମେ ପାଇନ ଭଲ, ତାମରଣେ କିମ୍ବା ତୁମ ପ୍ରାଣ ଆକୁଳ,' ବୋଲ ବୋଲ ସଜନୀରେ ସତେକି ଆସିବେ ଫେରି, ଅସ୍ତରାଗ ଛବିଦେଖି

ମଉନେ ଦିବା ଭାଳେ ଇତ୍ୟାଦି ଗୀତ ଶୁଣୁଥିଲୁ। ଆମ ଘରେ ରେଡ଼ିଓ ନଥିଲା, ନାନୀମାନେ ଜଣେ ମାଜିଷ୍ଟ୍ରେଟ୍‌ଙ୍କ ଘରକୁ ଯାଇ କଟକ ଷ୍ଟେସନ୍‌ରେ ବାଜୁଥିବା ଗୀତକୁ ଶୁଣି ଖାତାରେ ଲେଖି ପକାଉଥିଲେ। ଏଇଭଳି ଅନେକ ଗୀତ ଖାତାରେ ଲେଖାହୋଇଛି । ଖାତାଟି ଏ ପର୍ଯ୍ୟନ୍ତ ଅଛି। ଇଚ୍ଛା ହୁଏ ତାକୁ ବହୁତ ସମୟ ଜାବୁଡ଼ି ଧରିବା ପାଇଁ। ସ୍ମୃତି ଏଇଭଳି ଖୁବ୍ ମଧୁର, ଖୁବ୍ ନିବିଡ଼।

ଘରେ ବିଜୁଳିବତି ନଥାଏ, ରାସ୍ତାରେ ବିଜୁଳିବତି ମିଞ୍ଜିମିଞ୍ଜି ହୋଇ ଜଳେ। ଆଲୁଅ ଏତେ କ୍ଷୀଣ ଯେ ଦଶଫୁଟ ପରେ ଦେଖିବା କଷ୍ଟ। ପାଣି ପାଇଁ କୂଅ ଓ କୁଞ୍ଜକାନ୍ତ ପୋଖରୀ ଉପରେ ନିର୍ଭର କରୁଥିଲୁ। ପାଖ ଆଖରେ ଡାକ୍ତର ନଥିଲେ, ଜଣେ କବିରାଜ ଥିଲେ (ସଚ୍ଚି କବିରାଜ) ଓ ତାଙ୍କ ଉପରେ ସମସ୍ତେ ନିର୍ଭରଶୀଳ। ସଚ୍ଚି କବିରାଜଙ୍କ ଝିଅ ଜ୍ୟୋତିନାନୀ ମୋର ଦୁଇନାନୀ, ବର୍ତ୍ତମାନର ଜଣାଶୁଣା ଲେଖିକା ସୁକାମିନୀ ନନ୍ଦ, ଶାଶ୍ୱତୀ ନାନୀ (ସ୍ୱର୍ଗତ ପ୍ରଦ୍ୟୁମ୍ନ ବଳଙ୍କର ଧର୍ମପତ୍ନୀ) ଏମାନେ ସମସ୍ତେ ଆମ ଦାଣ୍ଡରେ ଖେଳନ୍ତି। ଜ୍ୟୋତିନାନୀ ବିଖ୍ୟାତ ସାମ୍ବାଦିକ ଓ ସମାଜର ଭୂତପୂର୍ବ ସମ୍ପାଦକ ଶରତ ମିଶ୍ରଙ୍କର ଧର୍ମପତ୍ନୀ। ସୁକାମିନୀ ବାହା ହେଲେ ଜଣେ ମାଜିଷ୍ଟ୍ରେଟଙ୍କୁ। ମୋ ଦୁଇ ଭଉଣୀଙ୍କର ସଙ୍ଗୀତ ପ୍ରେମ ଓ ଘରେ ନନା ବୋଉଙ୍କର ସାହିତ୍ୟ ଆଲୋଚନା ଆମମାନଙ୍କୁ ସାହିତ୍ୟ ପ୍ରତି ଆକର୍ଷିତ କଲା। ଘରେ ରାଧାନାଥ ଗ୍ରନ୍ଥାବଳୀ, ଗଙ୍ଗାଧର ଗ୍ରନ୍ଥାବଳୀ ସଙ୍ଗେ ବହୁ ଉପାଦେୟ ପୁସ୍ତକ ଥିଲା। ସେ ସମୟରେ ବିନୋଦନ ପାଇଁ ଆଉ କିଛି ମାର୍ଗ ନଥିଲା, ଘରେ ନା ରେଡ଼ିଓ ନା ଗ୍ରାମଫୋନ୍। ସିନେମା ଦେଖିବାଟା ହତ୍ୟାକାଣ୍ଡ ପରି ଅପରାଧ ଭାବେ ଧରା ଯାଉଥିଲା। ତେଣୁ ସାହିତ୍ୟ ବହି ପଢୁଥିଲୁ ଓ ବେଳେ ବେଳେ ଲୁଚେଇ ଲୁଚେଇ ଡିଟେକ୍ଟିଭ ନଭେଲ ପଢା ହେଉଥିଲା। ମନ ବିନୋଦନ ପାଇଁ ବାରଣ୍ଡାରେ ଖଡ଼ିରେ ଗାରକାଟି ବାଘ ଛେଳି ଖେଳ, ପଦ୍ୟାନ୍ତର ଓ ଶବ୍ଦାର୍ଥ ପଋରା ଉଋରା କରୁଥିଲୁ। ସନ୍ଦେହ କିମ୍ବା ବାଦବିବାଦ ହେଲେ ପ୍ରମୋଦ ଅଭିଧାନ ଖୋଲି ଦେଖୁଥିଲୁ।

ସେତେବେଳେ ଘରେ ଫ୍ୟାନ୍ ନଥିଲେ ମଧ୍ୟ ଗରମ ଲାଗୁ ନଥିଲା, ଖରା କାଟୁ ନଥିଲା। ଅପରାହ୍ଣ ୪ଟା ନହେଉଣୁ ଘୋ ଘୋ ପବନ। ଖରାଦିନେ ଆମେ ବ୍ୟାଗ୍ ଧରି ଧାଉଁ ଆମ୍ବତୋଟାକୁ। ଆମ୍ବ ପାରିବା ମନା କିନ୍ତୁ ତଳେ ପଡ଼ିଥିବା ଆମ୍ବ ଗୋଟେଇବାକୁ କେହି ମନା କରନ୍ତି ନାହିଁ। ଯଦି ଆମ୍ବ ଆପେ ପବନରେ ପଡୁଛି ତେବେ ଗଛକୁ ଟେକା ମାରିବା ଦରକାର କ'ଣ? ଦୁଇନାନୀ (ବିଦୁ ନାନୀ, ଶୈଳ ନାନୀ) ଆମ୍ବ ଗୋଟାନ୍ତି। ସେମାନେ ପରଦିନ ସକାଳେ ଆମକୁ ନେଇ କୁଞ୍ଜକାନ୍ତ ପୋଖରୀ ଯାଆନ୍ତି ଓ ଭଲ ପହଁରା ହୁଏ। ଆମେ ସବୁ ଭାଇ ଭଉଣୀ ପହଁରା ଜାଣିଥିଲୁ। ବଡ଼ମାନଙ୍କ କଥା ମୁଁ କହି ପାରିବିନି କିନ୍ତୁ ମୋତେ ପହଁରା ଶିଖେଇଥିଲେ ବାପା। ତାଳଚେରରେ ନନା କୂଅ

ପାଣିରେ ଗାଧୋଇ ୯ଟା ବେଳେ ଭାତ ଡାଲି ଖାଇ ସାଇକେଲରେ ଅଫିସ୍ ଚାଲି ଯାଆନ୍ତି। ବାପା ସକାଳୁ ନିଅନ୍ତି ନଈକୁ, ଆମକୁ ଅଣ୍ଟ ପାଣିରେ ଠିଆ କରିଦେଇ ତାଙ୍କ ବୟସ ୮୦ ଉପରେ ହୋଇଥିଲେ ସୁଦ୍ଧା କିଛି ସମୟ ପହଁରନ୍ତି। ତା' ପରେ ଆମକୁ ପହଁରା ଶିଖାନ୍ତି। ସେ ଦୁଇହାତ ମେଲେଇ ଦିଅନ୍ତି, ମୁଁ ତାଙ୍କ ପାପୁଲିରେ ଠିଆ ହୁଏ ଓ ମୋତେ ସେ ପାଣିକୁ ଫୋପାଡ଼ି ଦିଅନ୍ତି। ମୁଁ ବୁଡ଼ିଲା ପୂର୍ବରୁ ଟେକି ଆଣି ପାଣିରେ ଥାପି ଦିଅନ୍ତି। ପହଁରା ଶିଖିଗଲି, ତେଣୁ କୁଞ୍ଜକାନ୍ତ ପୋଖରୀକୁ ଡରିବି କାହିଁକି ? ପୋଖରୀ ବେଶ୍ ଲମ୍ବା, ଦୁଇନାନୀ ଅଧା ପର୍ଯ୍ୟନ୍ତ ଯାଇ ଫେରି ଆସନ୍ତି ଓ ଆମେ ବୁଡ଼ା ପହଁରା ଦେଇ ତାଙ୍କୁ ଧରିବା ପାଇଁ ଚେଷ୍ଟା କରୁ। ଆଜିକାଲି ପହଁରା କେତେ ଜଣ ଶିଖୁଛନ୍ତି ? ଯଦି ଶିଖିଥାନ୍ତେ ପ୍ରତିବର୍ଷ ଗଣେଶପୂଜା ମେଢ଼ ବିସର୍ଜନ ସମୟରେ ଅନେକ ଛାତ୍ରଛାତ୍ରୀ ନଦୀ କିମ୍ବା ପୋଖରୀରେ ବୁଡ଼ି ମରନ୍ତେ ବା କାହିଁକି ?

ସନ୍ଧ୍ୟାପରେ ବାହାର ବାରଣ୍ଡା ତଳକୁ ଓହ୍ଲାଇବା ମନା, କାଳେ ସାପ ଥିବ। ଆମ ନନାଙ୍କର ସନ୍‌ସେଟ୍‌ରୁଲ୍, ସୂର୍ଯ୍ୟାସ୍ତ ପୂର୍ବରୁ ସବୁପିଲାମାନେ ଘରକୁ ଫେରି ଆସିବେ ପ୍ରଳୟ ହେଉପଛେ। ତାସ ଖେଳ ଭାଙ୍ଗେ ପ୍ରାୟ ସାଢେ ଛ'ଟା ବେଳକୁ। ଆମ ପାଠ ଚାଲୁରହେ ରାତି ଆଠଟା ପର୍ଯ୍ୟନ୍ତ। ତା' ପରେ ସମସ୍ତେ ତଳେ ବସିପଡୁ ଏବଂ ଖାଉ। ଏତେ ଟେବୁଲ ଚୌକି ଆସିବ କୁଆଡୁ ? ବେଳେବେଳେ ଗୋଟିଏ ଥାଳିରେ ଦୁଇଜଣ ତିନିଜଣ ଖାଉ ମୋ ବଡ଼ଭାଇ ଓ ସାନଭାଇମାନଙ୍କର ଅଭିଯୋଗ ମୁଁ କୁଆଡ଼େ ଟିକେ ପାଟି ସୁଆଦିଆ। ଭାତ ଅପେକ୍ଷା ତରକାରୀ ବେଶି ଖାଇଦିଏ। ଦିନେ ଏଇମିତି ଢୁଳଉ ଢୁଳଉ ଖାଉଥିଲି। ବିନୋଦ ଭାଇନା ଧରିଲେ ମୋ ହାତକୁ ଓ ଝିଙ୍ଗାସିଲେ, ତୋ ପେଟରେ କ'ଣ ଖାଲି ତରକାରି ହଜମ ହୁଏ କିରେ ? ମୁଁ ବଡ଼ ନିରୀହ ଭାବେ ଉତ୍ତର ଦେଲି ଯେ ନିଦ ଅବସ୍ଥାରେ ଖାଇ ଦେଉଛି। ବେଶି ଅସନ୍ତୁଷ୍ଟ ହୋଇ ସେ ଜେରା କଲେ- ଏଇଟା ଗୋଟେ ଆଳ। ନିଦରେ ଖାଲି ତରକାରିଗୁଡ଼ା ଖାଇଦେଲୁ, କାହିଁ ଲୁଣ ଖାଇଲୁନି ? କଥା ମନେ ପଡ଼ିଲେ ମୁଁ ଲଜ୍ଜିତ ହୁଏ ନାହିଁ ବରଂ ଆମୋଦିତ ହୁଏ।

ଅତିଥିମାନଙ୍କର ଗୋଟିଏ ସଂଜ୍ଞା ହେଉଛି ଯେଉଁମାନେ ବିନା ତିଥିରେ ଆସନ୍ତି। ବାହାଘର ବ୍ରତଘରକୁ ଆସିବା କଥା ତ ଆସିବେ। କିନ୍ତୁ ସେତେବେଳେ ସମୟ ଥିଲା ନିଆରା। ହଠାତ୍ କେହି ଜଣେ ଆସି ପହଞ୍ଚି ଯାଆନ୍ତି ବ୍ୟାଗ୍ ଓ ବେଡ଼ିଂ ଧରି। ଦାଣ୍ଡରେ ହେଉ ବାରଣ୍ଡାରେ ହେଉ ଶୋଇ ପଡ଼ିବେ। କେତେଦିନ ରହିବେ କହିବେ ନାହିଁ କିମ୍ବା ତାଙ୍କୁ ସେ କଥା ପଚରାଯାଏ ନାହିଁ। ଆସିଲା ବେଳେ କିଛି ଜିନିଷ ନେଇ ଆସିଥାନ୍ତି। ଥିବା ସମୟରେ ବଜାରରୁ କିଛି ଜଳଖିଆ ନେଇ ଆସନ୍ତି ଓ ଯିବା ବେଳକୁ ଆମମାନଙ୍କୁ ଅଣେ ଦୁଇଅଣା ଦିଅନ୍ତି। ଘରେ ଥିବା ସମୟରେ ଅତିଥି ତାଙ୍କଠାରୁ ସାନମାନଙ୍କୁ ଆଦେଶ

ଦିଅନ୍ତି ଯଥା-ଗଲୁରେ ଝିଅ, ମୋ ଗାମୁଛାଟା ନେଇ ଆସିବୁ। ଖାଇବା ଜିନିଷ ଭଲ ହୋଇଥିଲେ ପ୍ରଶଂସା କରନ୍ତି କିନ୍ତୁ କିଛି ଅବାଗିଆ ହେଲେ ମୁହଁରେ କହି ଦିଅନ୍ତି।

ଏମିତି ଅତିଥିମାନଙ୍କ ସାଙ୍ଗରେ ଆମେ ଅଭ୍ୟସ୍ତ ଥିଲୁ। ସେମାନେ ଥିଲେ ମଉସା, ପିଉସା, ମାମୁ, ଦଦେଇ, କକେଇ, ମାମୁଅଜା, ଗାଁ ଲୋକ ଇତ୍ୟାଦି। ବେଳେ ବେଳେ ମିଟିଂ ପାଇଁ ଆସନ୍ତି କାମାକ୍ଷାନଗର ଏସ୍.ଡ଼ି.ଓ. ଶ୍ରୀଯୁକ୍ତ କୈଳାସ ମିଶ୍ର। ଜିପ୍‌ରୁ ଓହ୍ଲାଇବା ମାତ୍ରେ ଡ୍ରାଇଭରକୁ ଆଦେଶ ଦିଅନ୍ତି ଯାଅ ପିଲାମାନଙ୍କୁ ଟିକିଏ ବୁଲେଇ ଆଣ। ଶୁଣିବା ମାତ୍ରେ ଆମେ ଦୌଡ଼ୁ ଜିପ୍ ପାଖକୁ ଓ ଦୌଡ଼ ପ୍ରତିଯୋଗିତାରେ ବେଳେବେଳେ ମୁଁ ପ୍ରଥମ ହୋଇ ଡ୍ରାଇଭରଙ୍କ ପାଖରେ ବସିପଡ଼େ। ଜିପ୍‌ରେ ଆଗରେ ବସିବା ସମ୍ମାନଜନକ ବୋଲି ଆମେ ପିଲାଦିନୁ ଜାଣିଥିଲୁ।

ଏଇମିତି କେତେ ଅତିଥି ଆସିଛନ୍ତି। ଦିନେ ଅଫିସ୍ ପିଅନ ଦିନ ୩ଟା ସରିକୁ ଅଫିସ୍‌ରୁ ଧପାଳି ଆସିଲା ଓ ବୋଉକୁ କହିଲା-ସାହେବ (ଅର୍ଥାତ୍ ଆମ ନନା) ଖବର ପଠେଇଛନ୍ତି ଆଜି ରାତିରେ ଆମଘରେ ଚିଫ୍ ଜଷ୍ଟିସ୍ ଖାଇବେ। ତାଙ୍କ ସଙ୍ଗେ ଜିଲ୍ଲା ଜଜ୍ ମଧ ଆସିବେ। ସବୁ ସାଧା ବିନା ପିଆଜ ରସୁଣରେ। ପିଅନ ଜନ୍ମେଶ୍ୱରକୁ ପଠାଗଲା ପନିପରିବା କିଣି ଆଣିବା ପାଇଁ। ଚାରିଟା ବେଳେ ନନା କଚେରୀରୁ ଫେରି ଆମକୁ ତାଗିଦ୍ କଲେ ସଫା ସୁତରା ହୋଇ ରହିବା ପାଇଁ। ଚିଫ୍ ଜଷ୍ଟିସ୍ ଯିବା ପର୍ଯ୍ୟନ୍ତ ଆମେ ଶୋଇବା ଘରେ ଖୁନ୍ଦାଖୁନ୍ଦି ହୋଇ ରହିଲୁ। ଯଦି ସେ ଆମ୍ଭମାନଙ୍କୁ ଦେଖିବା ପାଇଁ ଚାହିଁବେ ଆମ୍ଭେମାନେ ବାହାରିବୁ। ବୋଉ ଓ ଦୁଇନାନୀ ଲାଗିପଡ଼ିଲେ ରୋଷେଇରେ। ସନ୍ଧ୍ୟାହୋଇ ଅନ୍ଧାର ଘୋଟି ଆସିଲା ବେଳକୁ ଗାଡ଼ି ହର୍ଣ୍ଣ ଶୁଭିଲା। ଆମେ ଶୋଇବା ଘର ଝରକାରେ ଦେଖିଲୁ ଦୁଇଜଣ ଘରକୁ ଆଗେଇ ଆସୁଛନ୍ତି। ଆମ ଘରେ ସମୁଦାୟ ଦୁଇଟି ଚୌକି, ପୋଲିସ ଇନ୍‌ସିପେକ୍ଟରଙ୍କ ଘରୁ ଗୋଟିଏ ଚୌକି ଦିନକ ପାଇଁ ଧାର ସୂତ୍ରରେ ଅଣା ଯାଇଥିଲା। ଚିଫ୍ ଜଷ୍ଟିସ୍ ବାବୁ ଜଗନ୍ନାଥ ଦାଶ ଅଳ୍ପ ସମୟ ଗପସପ କଲେ ଓ ନନା ତାଙ୍କ ସଙ୍ଗେ ଖାଇ ବସିଲେ। ରାଜ୍ୟର ପ୍ରଧାନ ବିଚାରପତି ଅଥଚ ଆସନରେ ଟଙ୍କାପାରି ବସି ଭାତ, ଡାଲି, ତରକାରି, ନଡ଼ିଆ ପାଚେଡ଼ି, ଆମ୍ବିଳ ବିନା ସଙ୍କୋଚରେ ଖାଇଲେ। ପିଣ୍ଡା ଉପରେ ଠିଆ ହୋଇ ଆଞ୍ଚେଇଲେ ବଡ଼ନାନୀ ସଫା ଗାମୁଛା ବଢ଼େଇ ଦେବାରୁ ହାତ ମୁହଁ ପୋଛିଲେ, ତା' ପରେ ଆମ ସମସ୍ତଙ୍କୁ ଡାକରା ହେଲା ଦାଣ୍ଡକୁ ଓ ଜଣପରେ ଜଣେ ନମସ୍କାର କଲୁ ଓ ସେ ଆଶୀର୍ବାଦ କଲେ।

ନନା ଯେତେବେଳେ ତାଳଚେର ରାଜାଙ୍କର ଓକିଲ ଥିଲେ ସେତେବେଳେ ତାଳଚେରର ଜଣେ ରାଜକୁମାରକୁ ଜରଡ଼ା ରଜା ପୋଷ୍ୟପୁତ୍ର କରିଥିଲେ ଓ ପରେ ସେ ହଠାତ୍ ମରିଗଲେ। ଜରଡ଼ା ରଜାଙ୍କ ଭାଇଆଳି ପୋଷ୍ୟପୁତ୍ର ଗ୍ରହଣ କଥାକୁ ଅସ୍ୱୀକାର

କରି କେସ୍ କଲେ। ତାଳଚେର ରଜା ବିଶାଖାପାଟଣା କୋର୍ଟରେ କେସ୍ ଜିତିଲେ। ତେଣୁ ଅପର ପକ୍ଷ ମାନ୍ଦ୍ରାସ ହାଇକୋର୍ଟରେ ଅପିଲ କଲେ। ତାଳଚେର ରଜାଙ୍କ ଓକିଲ ଥିଲେ ବିଖ୍ୟାତ ଆଇନଜ୍ଞ ଆଲାଡ଼ି କୃଷ୍ଣସ୍ୱାମୀ ଆୟାର, ଯିଏ କି ପରବର୍ତ୍ତୀ ସମୟରେ ଦେଶର ସମ୍ବିଧାନ ତିଆରି କରିବାରେ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ। ନନା ତାଙ୍କୁ ଦେଖା କରିବାରୁ ସେ କହିଲେ ଯେ ଅନେକଗୁଡ଼ିଏ କଥା ତେଲଗୁରେ ଲେଖା ହୋଇଛି। ତେଣୁ ତେଲୁଗୁ ଓ ଓଡ଼ିଆ ଜାଣିଥିବା ଜଣେ ଓକିଲକୁ ଆଣ। ନନା ବରହମ୍ପୁର ଫେରିଆସି ନୂଆ ନୂଆ ଓକିଲାତି କରୁଥିବା ବାଚୁ ଜଗନ୍ନାଥ ଦାଶଙ୍କୁ ଡାକି ନେଇଗଲେ ମାନ୍ଦ୍ରାସକୁ। ଆଲାଡ଼ି କ୍ରିଷ୍ଣସ୍ୱାମୀଙ୍କ ସଂସ୍ପର୍ଶରେ ଆସି ବାଚୁ ଜଗନ୍ନାଥ ଦାଶ ବିଖ୍ୟାତ ହୋଇଗଲେ। ପରେ ସେ ବିଚାରପତି ଓ ମୁଖ୍ୟ ବିଚାରପତି ହେଲେ ଓ ଢେଙ୍କାନାଳ ଆସି ନନାଙ୍କ କୋର୍ଟ ପରିଦର୍ଶନ କଲେ। ନିଜ ଆଡୁ କହିଲେ ଆଜି ମୁଁ ଆପଣଙ୍କ ଘରେ ରାତିରେ ଖାଇବି, ଜିଲ୍ଲା ଜଜ୍ ବି ଖାଇବେ।

କାହିଁ ରାଜ୍ୟର ପ୍ରଧାନ ବିଚାରପତି, କାହିଁ ଜଣେ ମାଜିଷ୍ଟ୍ରେଟ୍। ଜଣଙ୍କର ମହାନତା ଓ ମହାନୁଭବତା ଆଉ ଜଣଙ୍କର ଆତ୍ମପ୍ରତ୍ୟୟ ଓ ଆତ୍ମବିଶ୍ୱାସ, ତେଣୁ ଏଥିରେ ଆଶ୍ଚର୍ଯ୍ୟ ହେବାର କାରଣ ନାହିଁ।

ଆମେ ଢେଙ୍କାନାଳରେ ଥିଲାବେଳେ ପରିବାରର ସବୁଠାରୁ ବଡ଼ ଭାଇ (ପିଉସୀ ନାନୀର ପୁଅ) ଗଣେଶ୍ୱର ଭାଇନାଙ୍କର ବିବାହ ହେଲା। ତା’ ପୂର୍ବରୁ ସବା ବଡ଼ ଭଉଣୀ ଚାରୁନାନୀ (ପିଉସୀ ନାନୀର ଝିଅ)ର ବାହାଘର ହେଲା। ସେତେବେଳେ ଆମ ତିନି ବଡ଼ଭାଇ କଲେଜରେ ପଢୁଥିଲେ। ଦୁଇ ଭାଇଙ୍କୁ ନନା ଟଙ୍କା ପଠାଉ ଥିଲେ, ଆଉ ଜଣଙ୍କୁ ଗଣେଶ୍ୱର ଭାଇନା। ସେ ନୂଆ ନୂଆ ମାଜିଷ୍ଟ୍ରେଟ ହୋଇଥାନ୍ତି। ମାମୁ ଓ ଭଣଜା ପେଟରୁ କାଟି ଏଇ ତିନିଜଣଙ୍କୁ ପାଠ ପଢ଼ଉଥା’ନ୍ତି। ଓକିଲାତି ସମୟରେ ନନା ଯାହା ଅର୍ଜିଥିଲେ ତାହା ସରିଆସିଲା। ଦରମା ଟଙ୍କା ଯଥେଷ୍ଟ ନୁହେଁ। ଅନେକ ସମୟରେ ଧାର ଉଧାର କରିବାକୁ ପଡୁଥିଲା। ଏଇ ସମୟକୁ ପିଉସୀ ନାନୀର ଝିଅ ପାଇଁ ଭଲ ପ୍ରସ୍ତାବଟିଏ ଆସିଲା। ଯାହାଙ୍କର ପୁଅ ସେ ଅନୁଗୁଳର ଜଣେ ବିଖ୍ୟାତ ଚଟଶାଳୀ ଶିକ୍ଷକ। ସେଇ ଗତିଆ ମାଷ୍ଟ୍ରେ (ଗତିକୃଷ୍ଣ ମିଶ୍ର)ଙ୍କ ଖ୍ୟାତିଥିଲା ତାଳଚେର ବଳିଆମାଷ୍ଟ୍ରଙ୍କ ପରି। ତାଙ୍କ ପୁଅ ହରିହର ମିଶ୍ର, ସେଟ୍‌ଲମେଣ୍ଟରେ ଥିଲେ କାନୁନ୍‌ଗୋ। ଗତିଆ ମାଷ୍ଟ୍ରେ ଦିନେ ଆସି ପହଞ୍ଚିଲେ, ନନା ଘରେ ନଥିଲେ। ତେଣୁ ମୋ ବୋଉକୁ ବୁଝେଇଲେ-ବୁଝିଲୁ ଝିଅ ମୋ ପୁଅ କାନଗୋଇ ତା ତଳେ ସବୁ ଅମିନ। ସେମାନେ ହଁ କଲେ ଜମି ମିଳିବ ନହେଲେ ଗଲା। ତୁ ବିଶ୍ୱମୋହନ (ମୋ ନନା)କୁ କହ ସେ ଯଦି ରାଜି ତେବେ ଜାତକ ଧରି ଭଲ ବେଳ ଦେଖି ସାତଦିନ ମଧ୍ୟରେ ମୋ ଘରେ ପହଞ୍ଚିବ। ନହେଲେ ମୁଁ ଆଉ କୁଆଡ଼େ

ଦେଖିବି। କଥା ଶୁଣି ଇନ୍ଦୁନାନୀ (ପିଉସୀ ନାନୀ) ହେଣ୍ଡି ମାରିଲା-ଭାଉଜ ଭାବୁଛ କ'ଣ ଭାଇନାଙ୍କୁ କୁହ ଜଲ୍‌ଦି କୋଷ୍ଠୀ ନେଇ ଯିବେ। ଆଁ, ହାତରେ ପଡ଼ିଛି ଜହ୍ନ ଆଉ ଆମେ ଖୋଜୁଛେ ଇଆଡ଼େ ସିଆଡ଼େ? ଗସ୍ତରୁ ଫେରି ନନା ସବୁ ଶୁଣିଲେ ଏବଂ କୋଷ୍ଠୀ ଧରି ଗଲେ ଅନୁଗୋଳର ସୁସୁଡ଼ା ଗାଁକୁ। ବାହାଘର ଠିକଣା ହୋଇଗଲା, ବରଯାତ୍ରୀ ଆସି ରହିବେ ମଧୁବନ ତୋଟାରେ ଥିବା ଗୋଟେ ଘରେ। ତା' ପରେ ଆଲୋଚନା ହେଲା ବରଯାତ୍ରୀ ରହିବା ସ୍ଥାନରୁ ବେଦୀକୁ ଆସିବା ପର୍ଯ୍ୟନ୍ତ ଜୋଇଁ କେଉଁଥିରେ ଆସିବେ। ସବାରୀରେ ନାଁ ଘୋଡ଼ାରେ? କିଏ ଜଣେ ବୟସ୍କ ଲୋକ ଘୋଡ଼ା ନାଆଁ ଶୁଣି ଫିଡ଼ିକିଲେ, ବ୍ରାହ୍ମଣ ପିଲା ହୋଇ ଘୋଡ଼ା ଉପରେ ବସିବ? ଛି! ଜଣେ ଅଧେ ପ୍ରସ୍ତାବ ଦେଲେ ରଜାଙ୍କୁ କହି କାର୍‌ଟେ ଆଣ, ଜ୍ୱାଇଁ ଖୋଲା କାର୍‌ରେ ବସି ଆସିବେ। ନନା ଗଲେ ଢେଙ୍କାନାଳ ରଜାଙ୍କ ପାଖକୁ। ସେ ଖୁବ୍ ଆଦରରେ ବସାଇଲେ ଓ ପ୍ରସ୍ତାବ ଦେଲେ କାର୍‌ରେ ବି ଜଣେ ଅଧେ ବାହାହେବା ପାଇଁ ଯାଉଛନ୍ତି କିନ୍ତୁ ପାଟହାତୀରେ ବସି କେତେଜଣ ଯାଉଛନ୍ତି? ଆପଣ ବରପିତାଙ୍କୁ ପଚାରନ୍ତୁ ସେ କ'ଣ ପସନ୍ଦ କରନ୍ତି। ସେ ଯେଉଁଟା ଚାହିଁବେ ଆମେ ଦେଇଦେବା। ମୋ ବଡ଼ ଭାଇଗଲେ ବରଯାତ୍ରୀଙ୍କୁ ପଚାରିବା ପାଇଁ। କାର୍ କଥାଶୁଣି ବରପିତା ଖୁସି ହୋଇ ଯାଉଥିଲେ। କିନ୍ତୁ କେତେଜଣ ଗାଁ ଲୋକେ କହିଲେ-ମଲା, ଅମେ ତ ବଡ଼ ମୁଟରରେ ବସିଛୁ (ସେମାନେ ବସ୍ କଥା କହୁଥିଲେ)। ସାନ ମୁଟରରେ ବସିଲେ କିରା ନିହାଲ ହୋଇଯିବ? ପାଟହାତୀ ଆଣ, ରଜା ବଉଥିଲେ ଆମେ ବଇବୁ। ରଜା ବିନା ଖର୍ଚ୍ଚରେ ପାଟହାତୀ ଦେଇ ଦେଲେ। ବର, ବରପିତା, ପୁରୋହିତ, ଭଣ୍ଡାରୀ ଓ ବରଧରା ଭାବେ ମୁଁ ହାତୀରେ ବସିଲୁ। ସେ ପୁଣି ପାଟହାତୀ। ଶଙ୍ଖ ଫୁଙ୍କାଗଲା, ସାଇଲୋକ ସବୁ ଦୌଡ଼ି ଆସିଲେ, ହାତୀ ବହୁତଥର ଦେଖିଛନ୍ତି କିନ୍ତୁ ପାଟହାତୀରେ ବରଯାତ୍ରୀ ଆସିବା ସମସ୍ତଙ୍କୁ ଚକିତ କରିଦେଲା।

ସେତେବେଳେ ବ୍ୟାଣ୍ଡପାର୍ଟି ନଥିଲା। ମହୁରୀ ଓ ତେଲିଙ୍ଗି ବାଇଦରେ କାମ ଚଳୁଥିଲା। ମହୁରୀବାଲା ବାହାଘର ପାଇଁ ଧ୍ୱନି ତ ବଜାଉଥିଲେ, ତା' ସଙ୍ଗେ ସଙ୍ଗେ ମଙ୍ଗଳେ ଅଇଲା ଉଷା, ବିଭୂଷଣ ପୁଷ୍ପେ ଯା କାନ୍ତି ଜାଣ, ଆରେ ବାବୁ ଶ୍ୟାମଘନ ସମୟେ ସମୟେ ବଜଉଥିଲେ। ବାହାଘର ସୁରୁଖୁରୁରେ ହେଲା ଓ ଚାରୁନାନୀ ଗଲା ଶାଶୂଘରକୁ। ତା' ପରେ ହେଲା ଗଣେଶ୍ୱର ଭାଇନାଙ୍କ ବାହାଘର। ପ୍ରସ୍ତାବ ଆସିଲା ଓଡ଼ିଶାର ଜଣେ ବିଖ୍ୟାତ ଲୋକ ଜଗତ ବନ୍ଧୁ ମହାପାତ୍ରଙ୍କ ତୃତୀୟ କନ୍ୟାଙ୍କ ପାଇଁ। ଜଗତ ବନ୍ଧୁ ମହାପାତ୍ର ବ୍ରିଟିଶ ଅମଳର ଡ଼େପୁଟି କଲେକ୍ଟର, ପରେ ଆଇଏଏସ୍ ହୋଇ ପ୍ରସ୍ତାବ ଦେଲା ବେଳକୁ ସେ ଓଡ଼ିଶା ସରକାରଙ୍କ ସେକ୍ରେଟେରୀ ଥିଲେ। ତାଙ୍କର ରଚିତ ତୁଳସୀ ରାମାୟଣର କାବ୍ୟାନୁବାଦ ଅତୁଳନୀୟ। ଭାରତର ଅର୍ଥନୀତି ଉପରେ ସେ ଏକ

ପୁସ୍ତକ ଲେଖିଥିଲେ ଯାହା ସେ ସମୟରେ ଏକ ବିଖ୍ୟାତ ପୁସ୍ତକ ହିସାବରେ ଗଣା ହେଉଥିଲା। ଆମେ ଟ୍ରେନ୍‌ରେ ବସି ଗଲୁ ଭୁବନେଶ୍ୱର। ବରଯାତ୍ରୀ ଏକ ବଡ଼ କ୍ୱାଟରରେ ରହିଲେ। ସୁଇଚ୍ ଟିପିଲେ ଆଲୁଅ ଓ ଫ୍ୟାନ୍। କଳମୋଡ଼ିଲେ ପାଣି। ପାଇଖାନା ଆଧୁନିକ। ଆମ ଗାଁରୁ ଆସିଥିବା ଲୋକେ ଆଶ୍ଚର୍ଯ୍ୟ ହେଲେ ଯେ ପାଇଖାନାରେ ଜଞ୍ଜିର ଟାଣିଦେଲେ ବର୍ଜ୍ୟବସ୍ତୁ କୁଆଡ଼େ ପଳଉଛି। ଆହୁରି ଆଶ୍ଚର୍ଯ୍ୟ ହେଲେ ଯେତେବେଳେ ଶ୍ରୀଯୁକ୍ତ ମହାପାତ୍ର ଗାଡ଼ି ବନ୍ଦୋବସ୍ତ କରିଦେଲେ ସହର ବୁଲିବା ପାଇଁ। ଖଣ୍ଡଗିରି ଓ ମନ୍ଦିର, ସେକ୍ରେଟେରୀଏଟ୍ ଦେଖେଇ ଗାଡ଼ି ଏୟାରପୋର୍ଟ ନେଇଗଲା। ସେତେବେଳକୁ ପ୍ଲେନ୍‌ଟିଏ ଥୁଆ ହୋଇଥାଏ। ବ୍ୟୋମଯାନ ଏତେ ପାଖରେ ଦେଖି ଏପରି କି ହାତ ମାରିବାର ସୁଯୋଗ ପାଇଁ ସମସ୍ତେ ଖୁବ୍ ଖୁସି ହେଲେ। ସେ ସମୟ ଏମିତି ଥିଲା ଯେ ଆକାଶରୁ ଶବ୍ଦ ଶୁଭିଲେ ଆମେ କିଳିକିଳା ରଡ଼ିଛାଡ଼ି ପଦାକୁ ଆସୁଥିଲୁ ଓ କିଏ ଜଣେ ଆଙ୍ଗୁଠିରେ ଦେଖାଇ ଦିଏ ହେଇଟା, ଦିଗନ୍ତରେ ଅଦୃଶ ହେବା ପର୍ଯ୍ୟନ୍ତ ଆମେ ବ୍ୟୋମଯାନକୁ ଅନେଇ ରହୁଥିଲୁ।

ଖାଇବା ପିଇବା ଚମତ୍କାର ଥିଲା, ଫୁଲ୍‌ସଭାରେ ପୁରୀର ଜଣେ ପଣ୍ଡିତ ଖୁବ୍ ସୁନ୍ଦର ଆଲୋଚନା କଲେ। ଫେରିଲା ବେଳକୁ ସବୁ ଅନୁଭୂତି (ବ୍ୟୋମଯାନକୁ ହାତ ମାରିବା ସମେତ)କୁ ଠୁଳେଇ ଜଣେ ବୟସ୍କ ଲୋକ ମତ ଦେଲେ -ଗଣିଆଟା (ଗଣେଶ୍ୱର ଭାଇନା) କପାଳିଆ। କେଡ଼େବଡ଼ ଘରେ ବାହାହେଲା, ଦେଖିଲ। ଆଉ ଜଣେ କଥା ଯୋଡ଼ିଲା-କିଓ ତା ମାମୁ ତାକୁ ବଢ଼େଇ ଏ ପର୍ଯ୍ୟନ୍ତ ଆଣିଲା ବୋଲି ସିନା।।

ଘରକୁ ଭାଉଜ ଆସିଲେ। ଦେଖିବାକୁ ଯେମିତି ଗୁଣ ବି ସେମିତି। ଗୀତ ଗା'ନ୍ତି ଚମତ୍କାର। ବିରଚୀ ଟାଇପ୍ ଏଇଟ୍ କ୍ୱାଟରରେ ବଢିଥିଲେ । ଆସିଲେ ଢେଙ୍କାନାଳ ତାଳଚେରକୁ। କୂଅମୂଳେ ଗାଧୋଇବା, ଡାଳଧରି ଉଠା ପାଇଖାନାକୁ ଯିବା ଏସବୁ ସତ୍ତ୍ୱେ, ଦିନେବି କେବେ ଅଭିଯୋଗ କରି ନାହାନ୍ତି। ଜଣେ ଉଚ୍ଚପଦସ୍ଥ ଆଇ.ଏ.ଏସ୍. ଅଫିସରଙ୍କ ଝିଅ ହୋଇ ସବୁଦିନେ ସାଧାରଣ ଘରର ବୋହୂ ଭାବରେ ବ୍ୟବହାର କରିଛନ୍ତି। ବିବାହ ଉତ୍ସବ ପରେ ଘରେ ନନା ବୋଉ ବସି ହିସାବ କଲେ କାହାଠୁ କେତେ ଧାର ଅଣା ହୋଇଛି ଓ କେମିତି ଶୁଝାଯିବ। ନନାଙ୍କର ହିସାବ ଯେ ତିନି ବର୍ଷ ଭିତରେ ତିନିଜଣ ଭାଇ ଚାକିରି ପାଇଯିବେ ଓ ଘରର ଆର୍ଥିକ ସଙ୍କଟ ଦୂର ହୋଇଯିବ। କିନ୍ତୁ ଘଟଣାଗୁଡ଼ିକ ସବୁବେଳେ ଆମ ହିସାବ କିତାବ ଅନୁସାରେ ଚାଲେ ନାହିଁ। ପିଉସୀ ପୁଅ ଭାଇ ନବଭାଇନା ଓ ଆମ ସବା ବଡ଼ଭାଇନା (ରବି ଭାଇନା) ଆଇ.ଏସ୍.ଏ.ସି.ରେ ବାରମ୍ବାର ଫେଲ୍ ହେଲେ। ନବଭାଇନା ଓଭରସିଅରି ପଢିଲେ ଓ

ରବିଭାଇନା କୌଣସି ମତେ ପାସ୍ କରି ବି.ଏ. ପଢ଼ିଲେ । ତିନିବର୍ଷରେ ନବଭାଇନା ଓଭରସିଅର ହେଲେ ଓ ଚାରିବର୍ଷ ପରେ ଏମ୍.ଏ. ପାସ୍ କରି ରବିଭାଇନା ଓରିଏଣ୍ଟ ପେପର ମିଲ୍‌ରେ ଚାକିରି ପାଇଲେ। ଆର୍ଥିକ ପରିସ୍ଥିତି ଟିକିଏ ସୁଧୁରିଲା।

ଢେଙ୍କାନାଳର ବି.ବି. ହାଇସ୍କୁଲରେ ମୁଁ ତିନିବର୍ଷ ପାଠ ପଢିଲି। ଚତୁର୍ଥ ପଞ୍ଚମରେ ଗୋଟିଏ ସେକ୍‌ସନ୍ ଥିଲା ଓ ଷଷ୍ଠରେ ଦୁଇଟି। ମୁଁ ତିନି ବର୍ଷ ଲଗାତାର ଫାଷ୍ଟ ହେଲି। ଷଷ୍ଠ ଶ୍ରେଣୀରେ ଦୁଇ ସେକ୍‌ସନ୍‌ରେ ମଧ୍ୟ ଫାଷ୍ଟ ହେଲି। ସବୁଥିରେ ଭଲ କରେ କେବଳ ଡ୍ରଇଁକୁ ଛାଡ଼ି। ଡ୍ରଇଁରେ ତିରିଶରୁ ପାଞ୍ଚରୁ ଅଧିକା କେବେ ରଖି ପାରି ନାହିଁ। ବାକିସବୁ ଭଲ ହେଉଥିବାରୁ ଶ୍ରେଣୀ ଶିକ୍ଷକ ଦୋଷ ମାର୍ଜନା କଲେ।

ସ୍କୁଲ୍‌ରେ ବିଭିନ୍ନ ରକମ ଚିରବିନୋଦନ ହୁଏ। ଗଣେଶ ଓ ସରସ୍ୱତୀ ପୂଜାରେ ଭୋଜି ଓ କେତେବେଳେ କେମିତି ମେଜିକ୍। ଥରେ ବୈଦ୍ୟନାଥ ଗାୟକ ଶର୍ମା ଆସି ଦାସକାଠିଆ କରିଥିଲେ। ନୟାଗଡ଼ର ଜଣେ କଳାକାର (ନାଁ ମନେ ପଡୁନାହିଁ) ଏକାକୀ ବିଭିନ୍ନ ଚରିତ୍ରରେ ଅଭିନୟ କରି ସମସ୍ତଙ୍କୁ ଚମତ୍କୃତ କରି ଦେଇଥିଲେ। ଥରେ ମଧ୍ୟମ ଉଚ୍ଚତାର ଜଣେ ବଳବାନ ଲୋକ ଆସିଲେ। ତାଙ୍କୁ ସମସ୍ତେ ଉତ୍କଳଭୀମ କହୁଥିଲେ। ଗୋଟିଏ ଶଗଡ଼ରେ ପ୍ରାୟ ପନ୍ଦର ଜଣ ପିଲାଙ୍କୁ ବସେଇ ଲଗା ହୋଇଥିବା ରସିକୁ କାମୁଡ଼ି ଟାଣିନେଇ ଗଲେ। ସବୁଦିନେ ସନ୍ଧ୍ୟାବେଳେ ଆମେ ଫୁଟ୍‌ବଲ ଖେଳୁ। ମୁଁ ଭଲ ଫୁଟ୍‌ବଲ ଖେଳୁଥିବାରୁ କ୍ଲାସ୍ ଟିମ୍‌ରେ ଥିଲି। ଆମ ସାଙ୍ଗେ ଫୁଟ୍‌ବଲ ଖେଳୁଥିବା ଦେବ ସିଂ ପରେ ଓଡ଼ିଶାର ବିଖ୍ୟାତ ଫୁଟ୍‌ବଲ ଖେଳାଳୀ ହୋଇଥିଲେ।

ବର୍ଷା ହେଲେ ଆମର ଖୁସି କହିଲେ ନସରେ। ଦାଣ୍ଡରେ ଆଣ୍ଠୁଏ ଉଚ୍ଚା ପାଣିର ସୁଅ ଛୁଟେ। ମେଘକୁ ଦେଖି କାଗଜ ଡଙ୍ଗା ତିଆରି କରି ରଖାଯାଇଥାଏ। ଏକାସାଙ୍ଗେ ଭାଇଭଉଣୀ କାଗଜଡ଼ଙ୍ଗା ଭସାଉ ଓ ଯାହାର ସବୁଠୁ ପଛରେ ବୁଡ଼େ ସେ ବେଶି ତାଳିପାଏ।

ସ୍କୁଲ୍‌ରୁ ଆଣୁ ଗୁଣ୍ଡଦୁଗ୍ଧ ଓ ଆମେରିକାନ୍ ଘିଅ। ସ୍କୁଲରେ ମଧ୍ୟ ସମସ୍ତଙ୍କୁ ଗୋଟିଏ ଲେଖା ଗ୍ଲାସ୍ ଦୁଗ୍ଧ ବି ଦିଆଯାଏ। ଆମେରିକାନ୍ ଗୁଣ୍ଡ ଦୁଗ୍ଧ ଆମ ଗାଈ ଦୁଗ୍ଧ ଭଳି ନୁହେଁ। ବହୁ ପରିମାଣରେ ଦୁଗ୍ଧ ହୋଟେଲବାଲା ପାଖକୁ ଚାଲିଯାଏ। ତେଣୁ ଚା' ମାଗିଲା ବେଳେ ଗ୍ରାହକ ପଚାରନ୍ତି ଅସଲି କ୍ଷୀର ନା ଗୁଣ୍ଡ ଦୁଗ୍ଧ। ଯାହାବି ହେଉଥାଉ ଦୋକାନୀ ଦର୍ପର ସହିତ କହନ୍ତି-ଆମେ ଗୁଣ୍ଡ ଦୁଗ୍ଧ ମଧ୍ୟ ଦେଉ। ଗ୍ରାହକ ଯାହା ପସନ୍ଦ କରିବ ତାହା ଦେବୁ। ଗୁଣ୍ଡଦୁଗ୍ଧକୁ ସମ୍ଭାଳି ହେବ କିନ୍ତୁ ଆମେରିକାରୁ ଆସିଥିବା ଘିଅ ? ହରିବୋଲ। ଡବା ଖୋଲିଦେବା ମାତ୍ରେ ଘର ସାରା ଗନ୍ଧେଇଗଲା। କିଏ କହିଲା ଗାଈ ଚର୍ବିରେ, ପଇତା ମାରା ହେବ ଓ ଜାତି ଯିବ। ଆଉ କିଏ କହିଲା ଏଗୁଡ଼ିକ ଘୁଷୁରୀ କ୍ଷୀରରେ ହୋଇଛି। ଘୁଷୁରୀକୁ ଦୁହାଁ ହୁଏ କି ? ମୁଁ ତ ଜାଣିନି, କାଳେ କିଏ ଦେଖିଥିବ।

ଘରେ ସମସ୍ତଙ୍କ ଉପରେ କଡ଼ା ନଜର ରଖନ୍ତି ବିନୋଦ ଭାଇନା। ବିଶେଷତଃ ପାଠପଢ଼ିବା ସମୟରେ କଥାବାର୍ତ୍ତା ହେଲେ। ମୁଁ ଷଷ୍ଠ ପଢ଼ିଲା ବେଳକୁ ସେ ଗଲେଣି କଲେଜ, ତା' ପରେ ଆମେମାନେ ସ୍ୱାଧୀନ ହୋଇଗଲୁ। ବିଶେଷ କରି ଶନିବାର ଦିନ। ସେଦିନ ସକାଳୁଆ ସ୍କୁଲ ହୁଏ, ଆମେ ସ୍କୁଲରୁ ଫେରିଲା ବେଳକୁ ନନା ଅଫିସ ଗଲେଣି, ଘରେ ବୋଉ ଓ ଦୁଇନାନୀ କାମରେ ବ୍ୟସ୍ତ ଓ ଆମେ ହେଉ ଲଗାମଛଡ଼ା। ଆମ୍ବଗଛରେ ଚଢ଼ି ଡାଳରୁ ତଳକୁ ଡ଼େଇଁବା, ବାଲିଘର ତିଆରି କରିବା, ବାଟି ବା ନଟୁ ଖେଳିବା, ଡୁଡୁ ଖେଳିବା, ବେଳେବେଳେ ପଥର ମାରିବା ପ୍ରତିଯୋଗିତା ହୁଏ ଅର୍ଥାତ୍ କିଏ କେତେଦୂରକୁ ପଥର ମାରି ପାରୁଛି। ବ୍ୟବହୃତ ନ ହେଉଥିବା ଡବାରେ ସୂତାବାନ୍ଧି ଟେଲିଫୋନ୍ ତିଆରି କରାଯାଏ। ଡବା ନମିଳିଲେ ଦିଆସିଲି ଖୋଳରେ କାମ ଚଳିଯାଏ।

ଢେଙ୍କାନାଳରେ ତିନିବର୍ଷ ଓ ତାଳଚେରରେ ଛ' ବର୍ଷ ରହିବା ମଧ୍ୟରେ ମୋତେ କେବେ ଡାକ୍ତରଙ୍କୁ ଦେଖାହୋଇ ନାହିଁ। ଝାଡ଼ା ହେଲେ ଘରେ ରଖା ଯାଇଥିବା କୁଳଚି, ବିସମ୍ଭ ନହେଲେ ବେଲଶୁଣ୍ଠା, କାସ ସର୍ଦ୍ଦି ହେଲେ ଚ୍ୟବନ୍‌ପ୍ରାସ ଖାଅ, ଅଦା ଗେଞ୍ଚାଅ ଓ ଜର ହେଲେ ମକରଧ୍ୱଜ। ଖାଲି ଗୋଡ଼ରେ ଦୁନିଆସାରା ବୁଲୁଥିଲୁ କିନ୍ତୁ ଘରକୁ ଫେରିବା ମାତ୍ରେ ହାତଗୋଡ଼ ଭଲଭାବେ ଧୋଇ ଦେଉଥିଲୁ। ବାଳ କାଟିବା ପାଇଁ କେତେବେଳେ କେମିତି ଭଣ୍ଡାରୀ ଆସେ। ଇଟାଟେ ଥୋଇ ଦେଇ ତା' ଉପରେ ଖବର କାଗଜ ଥାପିଦିଏ ଓ ବସେଇ ଦେଇ ବାଳ କାଟେ। ପାଖ ଆଖରେ ନନା ନଥିଲେ ବାଳ କାଟୁଥିବା ସମୟରେ ଭୂତ, ପ୍ରେତ କଥା କହେ। କେବଳ ସେ କହେ ନାହିଁ ଘରେ ରହୁଥିବା ଜଣେ ପଙ୍ଖା ଟଣାଳୀ (ଧୋବେଇ)ର ସମସ୍ତ କହିବା ଯଦି ସତ ହୋଇଥାଏ ତେବେ ସେ ଜୀବନରେ ବହୁତ ବାର ଭୂତପ୍ରେତ ପିଶାଚ ଦେଖିଛି। ତା' ଛଡ଼ା ବହୁ ଡାକୁ ଡକାୟତଙ୍କର ମୁକାବିଲା କରିଛି। ଲୁହା କଣ୍ଟାଟେ ଦେଖାଇ ଭୂତଙ୍କୁ ଘଉଡ଼େଇ ଦେଇଛି। ବୁଧିଆ ବାରିକ କଥା ଶୁଣିଲେ ଡର ଲାଗେ । ଧୋବେଇ ଆମର ସାହସ ଫେରାଇ ଆଣେ। ସେ ପୁଣି ଆମକୁ ମନ୍ତ୍ର ଦେଇଥିଲା-ହେଇ ଛୁଆ ବାବୁ, ଭଲପାଠ ପଢ଼ି ମାଜିଷ୍ଟର ହେବ ନହେଲ ଥାନାବାବୁ ହେବ। ଭୂତପ୍ରେତଙ୍କୁ ଡରିବନି, ଯଦି ଭେଟ ହୋଇଯାଏ ଜୟପ୍ରଭୁ ହନୁମାନ କହି ତା' ଆଡ଼କୁ ଝପଟି ଯିବ। ବୋପାଲୋ ମାଆଲୋ ମରିଗଲି କହି ସେ ପଳେଇବ।

ଖରାଦିନଟା ଆମ ପାଇଁ ମହା ଦଣ୍ଡ। କାରଣ ଭାଇନାମାନେ କଟକରୁ ଆସନ୍ତି ଗ୍ରୀଷ୍ମଛୁଟି କଟେଇବା ପାଇଁ। ନନାଙ୍କର ସକାଳୁଆ ଅଫିସ୍ ଓ ଗୋଟେ ସରିକି ଫେରି ଆସନ୍ତି । ନନା ଅଫିସ୍ ଯିବା ପର୍ଯ୍ୟନ୍ତ ଭାଇମାନେ ସୁଧାର ପିଲା ଭଳିଆ ବହିଖଣ୍ଡେ ଧରି

ବସିଥାନ୍ତି । ତାଙ୍କ ସାଇକେଲ ଗଳିମୁଣ୍ଡ ପାରହେବା ମାତ୍ରେ ଦାଣ୍ଡରେ ସପ ପକେଇ ତାସ୍ ଖେଳ ଆରମ୍ଭ ହୁଏ। ଆମେ ଯଦି ଖେଳ ଦେଖିବା ପାଇଁ ରହିଁଲୁ - ଖେଳରୁ କ'ଣ ବୁଝିବ କିରେ, ଯାଅ ପାଠ ପଢିବ' କହି ତାଗିଦ୍ କରନ୍ତି। କ'ଣ ପଢ଼ିବୁ ? ପଞ୍ଚମ ଶ୍ରେଣୀ ତ ପାସ୍ କଲି, ଜୁନ୍ ମାସ ଶେଷ ଆଡ଼କୁ ସ୍କୁଲ ଖୋଲିବ ଓ ନୂଆ ବହି କିଣା ହେବ। ଏବେ କ'ଣଟା ପଢ଼ିବୁ? ତେଣୁ ବାଡ଼ିପଟ ଦେଇ ଡିଆଁମାରୁ ଆମ୍ବତୋଟାକୁ ଓ ଆମ୍ବ ଗୋଟେଇ ଏମାନଙ୍କ ଖେଳ ଭାଙ୍ଗିବା ପୂର୍ବରୁ ଫେରି ଆସୁ।

ପ୍ରତି ରବିବାର ଦିନ ହାଟ। ସେ ପୁଣି ବହୁତ ଦୂରରେ। ଜଣେ କେହି ଭାଇନା ଯାଆନ୍ତି ହାଟ କରିବା ପାଇଁ। ପେଣ୍ଠିଆ କାମ କରିବା ପାଇଁ ସାଙ୍ଗରେ ମୁଁ କିମ୍ବା ମୋ ସାନଭାଇ। ଆଗରେ ସାଇକେଲ ରଡ଼ରେ ବସିଲେ ମଧ୍ୟ ସାଇକେଲ ଚଢିବାର ମଜ୍ଜା ଓ ଗୌରବ ଦୃଷ୍ଟିରୁ ରଡ଼ରେ ବସିବା ଅସୁବିଧାଟା ଭୁଲି ହୋଇଯାଏ। ପଛରେ ଲଗେଜ୍ କ୍ୟାରିଅରରେ ବସିବା, ଏକଦମ୍ ମଜା। ଭାଇନାମାନଙ୍କ ବଦ୍ଧମୂଳ ଧାରଣା ଯେ ଆମ୍ଭମାନଙ୍କ ମାଙ୍କଡ଼ାମି ସ୍ୱଭାବ ଯୋଗୁ ଲଗେଜ୍ କ୍ୟାରିଅରରୁ ଖସିପଡ଼ିବୁ। ଫୁଲ୍‌ପେଣ୍ଟ୍‌କୁ ଗୋଡ଼ପାଖେ ମୋଡ଼ି ଦେଇ କ୍ଲିପ୍ ମରାଯିବ ନହେଲେ ପ୍ୟାଣ୍ଟ ଚେନ୍‌ଭିତରେ ଗଳି ଚାଳକକୁ ପକେଇ ଦେବ। ଲଗେଜ କ୍ୟାରିଅରରେ ବ୍ୟାଗ୍ ରଖାହୁଏ। ହାଟରେ ପହଞ୍ଚି ପନିପରିବା, ମସଲା ଚିନି ଇତ୍ୟାଦି କିଣାହୁଏ। ପନିପରିବା ବାଡ଼ିରୁ କିଛି ମିଳେ ନହେଲେ ହାଟ। ଘରକୁ କେହି ପନିପରିବା ବିକିବା ପାଇଁ ଆସନ୍ତି ନାହିଁ। ଆଳୁ ମିଳେ ବାଟି ଆକୃତିର (କୁହାଯାଏ ଗିଲରି ଆଳୁ)। ବଡ଼ ବଡ଼ ଆଳୁକୁ କୁହାଯାଏ ବିଲାତି ଆଳୁ, କିମ୍ବା ନୈନତାଲ ଆଳୁ। ସେ ଆଳୁ ଦୁର୍ଲ୍ଲଭ। ହଁ; ଖମ୍ବଆଳୁ, ସାରୁ, କଖାରୁ, କଇଁରା ମିଳେ ଓ ବହୁତ ଦିନ ରଖାଯାଇପାରେ। ପୋଟଳ, ଟମାଟୋ ବଜାରରେ ମିଳେ ନାହିଁ। ବାଡ଼ିରେ ଗୋଟିଏ ଗଛ ଲଗେଇଥିଲୁ। ସେଥିରୁ ଆଳୁ ଆକୃତିର ବିଲାତି ବାଇଗଣ ମିଳୁଥିଲା। ତେଣୁ ଆମ ଖାଦ୍ୟ ବିଶେଷ ଆକର୍ଷକ ନଥିଲା। ଭାତ ଡାଲି ତରକାରି ଚଟଣୀ କିମ୍ବା ଖମ୍ବଆଳୁ ଭଜାକୁ ନେଇ ଦି'ବେଳା ଖାଦ୍ୟ ହୁଏ। ଖାଦ୍ୟର ସ୍ୱାଦ ବଢ଼େଇ ଦିଏ ଘିଅ। ସାତଦିନରେ ଥରେ ଲତା ଗଉଡୁଣୀ ଆସେ। ଘିଅ ବିକେ, ଘରେ ଖାଏ ଓ ବୋଉର ଗୋଡ଼ ମୋଡ଼ିଦିଏ। ବେଳେ ବେଳେ ବହଳିଆ ଦହି ମଧ୍ୟ ଦିଏ। ଯାହା ଲାଭ କରେ ତା'ର ଅଧା ବୋଉ ପାଖରେ ରଖି ଦେଇଥାଏ। କାରଣ ଘରକୁ ଫେରିଲା ମାତ୍ରେ ମଦୁଆ ସ୍ୱାମୀ, ପଇସା ଛଡ଼େଇ ନେଇ ସିଧା ଧାଇଁବ ମଦଭାଟିକୁ। ଲୁଚେଇଥିବା ପଇସାରେ ଲତା ଘର ଚଳାଏ। ବୋଉ ଆଗରେ ସ୍ୱାମୀକୁ ନାନାଦି ପ୍ରକାର ଅଭିଶାପ ଦିଏ। କିନ୍ତୁ ଥରେ ପୋଲିସ ତାକୁ ଧରିନେଲା ଓ ଲତା କାନ୍ଦି କାନ୍ଦି ନନାଙ୍କୁ କହି ତାକୁ ଥାନାରୁ ଫେରାଇ ଆଣିଲା। ଦୁଇତିନି ଦିନ ପରେ ବୋଉ ପଚାରିଲା ହଇଲୋ ଲତା ତୋ ସ୍ୱାମୀ

ସୁଧୁରିଲାଣି ? ମୁହଁ ଶୁଖେଇ ଲତା କହିଲା କ'ଣ କହିବି ମା' 'ମୋତେ ଯେତେ ମାଠିବୁ ମାଠ ମୁଁ ସେଇ ଦରପୋଡ଼ା କାଠ'। ମୁଁ କିଆଁ ତାକୁ ଏତେ ଶୀଘ୍ର ଥାନାରୁ ଆଣୁଥିଲି, ଥାନାବାବୁଙ୍କ ଠାରୁ ଦିଓରି ଗୋଇଠା ଖାଇଥିଲେ ଭଲ ହୋଇଥାନ୍ତା।

ନନା ବୋଉ ଭାଇ ଭଉଣୀଙ୍କର ଜଗତକୁ ବେଢି ରହିଥିବା ବୁଧିଆ ଧୋବେଇ, ଲତା, ପିଅନ ଜମେଶ୍ୱର ଓ ଖୁଚୁରା ଦୋକାନୀ ଟନିଆର ବଳୟର ଅନ୍ତହେଲା ନନାଙ୍କ ସମ୍ବଲପୁର ବଦଳିରେ। ସେତେବେଳେ ଏକା ସଙ୍ଗେ ତିନିଭାଇ କଟକରେ ପଢୁଥିଲେ ନନା ଯଦି ସରକାରଙ୍କୁ ଦରଖାସ୍ତ କରି କଟକ ବଦଳି ହୋଇ ଯାଇଥା'ନ୍ତେ, ତେବେ ଖର୍ଚ୍ଚ ବହୁତ କମି ଯାଇଥାନ୍ତା ଓ ଆମେ ଅପେକ୍ଷାକୃତ ଭଲ ଶିକ୍ଷା ପାଇଥାନ୍ତୁ। ଆମର ଜଣେ ମଉସା ନିଜଆଡୁ ପ୍ରସ୍ତାବ ଦେଲେ ଯେ ସେ ଡକ୍ଟର ମହତାବଙ୍କୁ କହି କରେଇ ଦେବେ। କିନ୍ତୁ ନନା ମନାକଲେ "କାହିଁକି କାହା ଆଗରେ ଗୋଡ଼ଭାଙ୍ଗି ଆମେ ଠିଆ ହେବା, ଯାହା ହେଉଛି ହେଉ।" ଏଇଭଳି ମନୋବୃତ୍ତି ଥିବାରୁ ସମ୍ବଲପୁର ବଦଳି ବିରୁଦ୍ଧରେ ଦରଖାସ୍ତ ଦେଲେ ନାହିଁ ଓ ଜିନିଷପତ୍ର ବନ୍ଧାବନ୍ଧି ହେଲା, ତାଳଚେର ଯାଇ ସମ୍ବଲପୁର ଯିବାକୁ। ଘରେ ଥିବା କାଳିଗାଈ ବିକ୍ରି କରିବା ପାଇଁ ବାଧ ହେଲେ। ଘରେ ଜିନିଷ ପତ୍ର ଏତେ ଅଳ୍ପଥିଲା ଯେ ଟ୍ରେନ୍‌ରେ ନେଇ ଚାଲିଗଲୁ।

## ଶିକ୍ଷା ପାଇଁ ସମ୍ବଲପୁରରୁ ଆହ୍ଲାବାଦ

ସମ୍ବଲପୁର ଯିବା ପୂର୍ବରୁ ତାଳଚେରରେ ଅଳ୍ପ କେତେଦିନ ରହଣି। ଜେଜେବାପା ତାଳଚେରରେ ରହିବା ପାଇଁ ନିଷତ୍ତି ନେଲେ। (ଏଇଠେ ଜନ୍ମ ନେଇଛି ଏଇଠେ ମରିବି) ଓ କକେଇ ଖୁଡ଼ୀଙ୍କ ତତ୍ତ୍ୱାବଧାନରେ ରହିଲେ। ଅଳ୍ପ କିଛିଦିନ ପରେ ସମ୍ବଲପୁର ଗଲୁ। ପୂର୍ବରୁ ନନା ଯାଇ ଚାର୍ଜ ନେଇଥିଲେ ଓ ସାଙ୍ଗେ ସାଙ୍ଗେ ସରକାରୀ ଘର ପାଇଗଲେ। ଛୁଟି ନେଇ ଆସିଲେ ଆମକୁ ନେବା ପାଇଁ।

ସମ୍ବଲପୁର ଯିବାକୁ ହେଲେ ତାଳଚେରରୁ ଟ୍ରେନ୍‌ରେ ମେରାମୁଣ୍ଡଳୀ ଓ ମେରାମୁଣ୍ଡଳୀରୁ ରାତିରେ ବସ୍। ଷ୍ଟେସନରୁ ସରକାରଙ୍କ ଦୁଇଟି ବସ୍ ରାତି ୮ଟା ସରିକି ବାହାରେ ଓ ସକାଳେ ସମ୍ବଲପୁରରେ ପହଞ୍ଚାଏ। ସମ୍ବଲପୁର ଯିବା ପାଇଁ ଯେହେତୁ ସରକାରୀ ବସ୍ ଥିଲା ଏକମାତ୍ର ଉପାୟ ତେଣୁ କଣ୍ଡକ୍ଟରଙ୍କ ଭାଉ କାହିଁ କେତେ। ମେରାମୁଣ୍ଡଳୀ ପହଞ୍ଚୁ ପହଞ୍ଚୁ ଟିକେଟ୍ କରିଦେଲୁ ଓ ଜିନିଷ ପାଇଁ ଅଧିକା ପଇସା ଦେଲୁ। ରସିଦ୍ ମାଗିଲୁ ଓ କଣ୍ଡକ୍ଟର ବଡ଼ ଅନିଚ୍ଛା ସତ୍ତ୍ୱେ ଦେଲେ। ବସ୍ ଅନୁଗୁଳ ପାର ହେବା ମାତ୍ରେ ସବୁ ଆବଡ଼ା ଖାବଡ଼ା ରୋଡ଼ରେ ଯିବାକୁ ହେଲା। ଦୁଇ କଡ଼େ ଘଞ୍ଚ ଜଙ୍ଗଲ କାଁ ଭାଁ ଗାଁଟିଏ ପଡ଼ିଲେ ଗୋଟିଏ ଦୁଇଟି ଘରେ ମିଞ୍ଜି ମିଞ୍ଜି ଆଲୁଅ ଜଳୁଥିବାର ଦିଶେ। ଡଙ୍ଗା

ଭଳି ଚହଲି ଚହଲି ବସ୍ ଯିବା ସତ୍ତ୍ୱେ ଅଧିକାଂଶ ଯାତ୍ରୀ ଶୋଇପଡ଼ିଲେ, ମଝିରେ ମଝିରେ ପଛ ସିଟ୍ ଆଡୁ ପ୍ରତିବାଦ ଶୁଭେ 'ନିଜକୁ ସମ୍ଭାଳୁନୁ କିଆଁ, ମୋ' କାନ୍ଧଟା କ'ଣ ତୁମ ତକିଆ ?' ତା' ସାଙ୍ଗକୁ କେହି କେହି ଭକ୍ ଭକ୍ ବାନ୍ତି କଲେ କିଛି ଅଂଶ ବାହାରେ କିଛି ଅଂଶ ବସ୍‌ର ଦେହରେ ଓ ଯେଉଁ ଅଳ୍ପ ଅଂଶ ବସ୍ ଭିତରେ ରହିଯାଏ ତା'ର ଆମିଳିଆ ଗନ୍ଧରେ ନାକ ଫାଟିଯାଏ। ତଥାପି ଶୋଇଥିବା ଲୋକଙ୍କ ଉପରେ କିଛି ପ୍ରଭାବ ପଡ଼େନାହିଁ। ଘରମାଳ ପାଖରେ ବସ୍ ପହଞ୍ଚିଲା ବେଳକୁ ସକାଳ ଓ କଣ୍ଡକ୍ଟର ପ୍ରସ୍ତାବ ଦିଅନ୍ତି 'ଯାଅ, କାଠି କୁଠା କରିବା, ପାଇଖାନା ଯଦି ଯିବ ଝରଣା ଅଛେ। ଲେକିନ୍ ଯହ ଦୂର ନାଇଁ ଯିବ ବାଘ ଥାଏସି ।' କେହି ଜଣେ ମତ ଦେଲା 'ଏଇଠେ କ'ଣ ବାଘ ଥିବ, ହଁ ପେଣ୍ଡରା ବାଘ ଥାଇପାରେ।' ତା'ର ଜ୍ଞାନକୁ ଜଣେ କେହି ଖଣ୍ଡନ କରୁଥିବା ଦେଖି କଣ୍ଡକ୍ଟର ବାବୁ କହିଲେ 'ହଉ ଠିକ୍ ଅଛେ, ଯଦି ପେଣ୍ଡରା ବାଘ ଚଵ୍‌ବା ଭଲ ଲାଗ୍‌ସି ତେବେ ଯାଉନ୍।' ଦାନ୍ତ କାଠି ବିକ୍ରି ହେଉଥିଲା, ଗୁଡ଼ିଆ ଦୋକାନରୁ ଜଳଖିଆ ଖାଇବାର ଉପକ୍ରମ ହେଉଛି ଦେଖି ସେ ଡ଼ାଳେ ପାଣି ଦେଲା ଦାନ୍ତ ଘସିବା ପାଇଁ। ଆମେ ଘରୁ ଆଣିଥିବା ମଗ ଧରି ଗଲୁ ଝରଣାକୁ ନିତ୍ୟକର୍ମ ସାରିବା ପାଇଁ। ଫେରିଆସି ଗୁଡ଼ିଆ ଦୋକାନରେ କପେ କପେ ଚା ଓ ପକୁଡ଼ି କିଛି ନଖାଉଣୁ ବାଜିଲା ବସ୍‌ର ହର୍ଣ୍ଣ ଓ କ୍ଲିନର ପାଟି କଲା 'ଆଜ୍ଞା ସାରା ଦିନ କ'ଣ ଏଠି ବସିଥିବ କି ଜଲ୍‌ଦି ଚଢ଼ନ୍ତୁ ନହେଲେ ବସ୍ ଛାଡ଼ିଦେବା।' କିଲିବିଲି ହୋଇ ଧାଇଁଲୁ ବସ୍ ଭିତରେ ବସିବା ପାଇଁ। ଦେଖିଲା ବେଳକୁ ଆମ ସିଟ୍‌ରେ ଆଉ ତିନି ଜଣ ଲୋକ ବସି ଯାଇଛନ୍ତି। ଉଠିଯିବାକୁ କହିଲାରୁ କଡ଼ା ଭାଷାରେ ଉତ୍ତର ମିଳିଲା 'କାହିଁକି ବା ? ସିଟ୍‌ରେ ନାଁ ଲେଖା ହୋଇଛି କି ? ସେ ତିନିଜଣ ଗୋଟିଏ ପରିବାରର ଓ ଆମେ କଣ୍ଡକ୍ଟର ଆଗରେ ଫେରାଦ ହେବାରୁ କଣ୍ଡକ୍ଟର ଚିହ୍ନିକି ଉଠିଲେ କାରଣ ସେମାନଙ୍କ ମଧ୍ୟରୁ ଜଣେ କଣ୍ଡକ୍ଟରଙ୍କର ମହାବଳ ବାଘ ଜ୍ଞାନକୁ ପେଣ୍ଡରା ବାଘ ପର୍ଯ୍ୟନ୍ତ ଖସାଇ ଦେଇ ତାଙ୍କୁ ବେଶ୍ କ୍ଷୁବ୍ଧ କରିଥିଲେ। କଣ୍ଡକ୍ଟର ସେମାନଙ୍କୁ ଟିକେଟ୍ ମାଗିଲେ ଓ ସେମାନେ ଟିକେଟ୍ ବଢ଼େଇ ଦେବାରୁ ଗ୍ରହଣ କରି ପଚାରିଲେ ଏ ଟିକେଟ୍ କାହାର ଓ ଉତ୍ତର ମିଳିଲା ଆମର ଆଉ କାହାର ? ପରବର୍ତ୍ତୀ ପ୍ରଶ୍ନ ପଚରା ଗଲା ଆହୁରି ଚଢ଼ା ଗଳାରେ 'ଆପଣଙ୍କ ନାଁ ଲେଖା ହେଇଛି କାଏଁ ? ଯଦି ସିଟ୍‌ରେ ତାଙ୍କ ନାଁ ଲେଖାନାହିଁ ତାହାହେଲେ ସିଟ୍‌ରେ ଆପଣଙ୍କ ନାଁ ଲେଖାନାହିଁ। ଇହାଦେ ଉତ୍ରେଇ ଦେବି।' କଣ୍ଡକ୍ଟରର ରୁଦ୍ରମୂର୍ତ୍ତି ଦେଖି ତିନି ଗାଲୁଆ ନିଜ ସିଟ୍‌କୁ ଫେରିଗଲେ ଓ କଣ୍ଡକ୍ଟର ମହାଶୟ ଆମକୁ ଅଭୟ ବର ଦେଲେ 'ଯ ପିଲାମାନେ ବସ'। ଦୁଇଜଣ ଉତରିଲେ ଜଣେ ରହବା। ହେନ୍ତା ହେଲେ ତମ ସିଟ୍‌ରେ କେହି ନାଇଁ ବସେ। ସକାଳ ୯ଟା ବେଳକୁ ସମ୍ବଲପୁର ବସ୍‌ଷ୍ଟାଣ୍ଡରେ ପହଞ୍ଚିଲୁ ଓ ରିକ୍‌ସାରେ ବସି ଘରେ ପହଞ୍ଚିଲୁ।

ଗୋଲ ବଜାର ପାଖରେ ଦୁଇ ମହଲା କୋଠା। ଦାଣ୍ଡକୁ ଓ ଭିତରକୁ ପ୍ରଶସ୍ତ ବାରଣ୍ଡା। ଛଅଟି ବଡ଼ ବଡ଼ ରୁମ୍ ତା' ସାଙ୍ଗକୁ ରୋଷେଇଘର ପୂଜା ଘର ଭିତରେ ବଡ଼ ଅଗଣା। ଢେଙ୍କାନାଳ ଗଡ଼ଜାତ ଘର ଯା ତୁଳନାରେ କିଛି ନୁହେଁ। କିନ୍ତୁ ସେଠାରେ ଥିଲା କୂଅ, ଦୁଇଟା ଉଠା ପାଇଖାନା ପାଖକୁ ଲାଗି ବିରାଟ ଆମ୍ବତୋଟା ଓ ବାଡ଼ିରେ ବହୁତ ପନିପରିବା। ଏଠାରେ ଗୋଟେ ପାଇଖାନା, କୂଅ ନାହିଁ କି ପାଣି କଳ ନାହିଁ। କିଛି ଦୂରରେ ରାମସାଗର ବୋଲି ଏକ ପୋଖରୀ । ସେଇଠୁ ବଚନ୍ ବୋଲି ଜଣେ ଭାରୁଆ ପାଣି ଆଣି ଡ୍ରମ୍‌ରେ ଭର୍ତ୍ତି କରିଦିଏ ଓ କିଛି ପାଣିଘୂମରେ ରଖେ। ଘୂମ ପାଣି ପିଇବାରେ ଓ ରୋଷେଇ କାମରେ ଲାଗେ, ବାକି ସବୁ ପାଇଁ ଡ୍ରମ ପାଣି। ପାଣି କମ୍ ଥିବାରୁ ଚାରି ଢ଼ାଳରୁ ପାଞ୍ଚ ଢ଼ାଳ ଗାଧୋଇଲେ ତାଗିଦା ମିଳେ। ସମ୍ବଲପୁରରେ ଟାଇଁ ଟାଇଁ ଖରା ତେଣୁ ଘରେ ନ ଗାଧୋଇ ଆମେ ଯାଉ ନଈକୁ। ନନା ବୋଉ ଓ ଦୁଇ ନାନୀ ଘରେ ଗାଧାନ୍ତି। ନଈ ଗାଧୁଆରେ ବେଶ୍ ମଜା କିନ୍ତୁ ଫେରିଲା ବେଳକୁ ଖାଲି ପାଦରେ ଗରମ ବାଲିରେ ଚାଲିବାକୁ ପଡୁଥିବାରୁ ଗାଧୋଇବାର ମଜା ବାହାରିପଡ଼େ। ଘରେ ପହଞ୍ଚିଲା ବେଳକୁ ଦେହ ଗରମ ଓ ମୁଣ୍ଡ ଫାଟିବା ଉପରେ। ଦେହସାରା ହୋଇଯାଏ ଘିମିରି ଓ ଅଛ କେତେଟା ବଥ। ଆମେ ଶୋଇବା ବେଳେ ବଥ ଆମର ନିଦ ଭାଙ୍ଗେ ଓ ଧପ୍ ଧପ୍ ହୋଇ ନିଜର ଉପସ୍ଥିତି ଘୋଷଣା କରେ। କାହାର ହାତ କିମ୍ବା କହୁଣୀ ବାଜିଗଲେ ମଲା ମଣିଷ। ବଥ ଘିମିରି ପାଇଁ ଔଷଧ ନାହିଁ। କେତେବେଳେ କେମିତି ଚନ୍ଦନ ଟିକିଏ ଲେପି ଦେଉ। ବଥ ହେବାର କାରଣ ଚାକରାଣୀକୁ ପଚାରିଲେ ଉତ୍ତର ମିଳେ 'ହେନ୍ତା ହେଏସି।'

ପ୍ରଥମେ ପ୍ରଥମେ ସମ୍ବଲପୁରୀ ଭାଷା ବୁଝିବା କଷ୍ଟ ହେଲା କହିବା ତ ଦୂରର କଥା। ଘର ପାଖ ଟାଉନ୍ ହାଇସ୍କୁଲରେ ସପ୍ତମ ଶ୍ରେଣୀରେ ଆଡ଼ମିଶନ ନେଇ ଉଚ୍ଚତା କମ୍ ଥିବାରୁ ପ୍ରଥମ ବେଞ୍ଚରେ ବସିଗଲି ଓ ପାଖରେ ବସିଥିବା ପିଲାଟିଏ ପଚାରିଲା 'ତୁଇ କିଏ ବୋ, ତୋର ନାଁ କାଣା?' ବୋ କୁ ମୁଁ ବୁଝିଲି ବେ ଓ ସାମାନ୍ୟ ବିଗିଡ଼ି କହିଲି ବେ କାହିଁକି କହୁଛୁ? ମୋ'ଠୁ ଦୁଇଗୁଣ ବିଗିଡ଼ି ସେ କହିଲା 'କେତେବେଳେ ବେ କହିଲି ବୋ?' ଝଗଡ଼ା ନିଶ୍ଚୟ ହୋଇଥାନ୍ତା କିନ୍ତୁ ମନିଟର ଆସି ସେ ପିଲାଟିକୁ ବୁଝେଇ ଦେଲେ 'କଟକିଆ ଆଏ, ସେ କାଣା ବୁଝିବା?' ଶ୍ରେଣୀ ଶିକ୍ଷକ ଆସି ମୋତେ ଦେ ଚାରି ପାଞ୍ଚଟା ପ୍ରଶ୍ନ ସମ୍ବଲପୁରୀରେ ପଚାରିଦେଲେ ଓ ମୁଁ ବଲ ବଲ ହୋଇ ଅନେଇବା ଦେଖି ମନ୍ତବ୍ୟ ଦେଲେ 'ଭକୁଆଟେ କାଏଁ ବୋ।' ଏଥର ମଧ ମନିଟର ମୋତେ ସହାୟ ଦେଇ ଶ୍ରେଣୀ ଶିକ୍ଷକଙ୍କୁ ବୁଝେଇ ଦେଲେ 'ସାର୍ କଟକିଆ ଆଏ, ନାଇଁ ବୁଝିପାରେ।' ନରମି ଯାଇ ଶିକ୍ଷକ ମାର୍କସିଟ୍ ମାଗିଲେ ଓ ଖୁସି ହୋଇ ପିଲାମାନଙ୍କୁ କହିଲେ ଯାହାହେଉ ଭଲ ପିଲାଟେ ଆସିଛି ଓ ଭଲ ଘରର। (ଯେହେତୁ ବାପା ମାଜିଷ୍ଟ୍ରେଟ୍ ଥିଲେ)।

ପ୍ରାୟ ତିନି ମାସ ପର୍ଯ୍ୟନ୍ତ ମୋତେ ନାଁ ନଧରି କଟକିଆ ବୋଲି ଡକା ଗଲା। ପ୍ରତି ଜିଲ୍ଲା ଜିଲ୍ଲା ମଧ୍ୟରେ ଦ୍ୱନ୍ଦ୍ୱ ଥାଏ। ଆମ ଢେଙ୍କାନାଳର ପିଲାଙ୍କୁ କଟକିଆ ପିଲେ ଢ଼େଙ୍କାନାଳିଆ, ଢେଙ୍କୁ ଇତ୍ୟାଦି କହି ଚିଡ଼ାନ୍ତି। ପୁଣି ତାଳଚେରିଆ ଢେଙ୍କାନାଳିଆଙ୍କ ମଧ୍ୟରେ ବିବାଦ। ଏସବୁ ହେଲା ପଡ଼ୋଶୀ ପଡ଼ୋଶୀ ମଧ୍ୟରେ କଥା କିନ୍ତୁ କଟକ ଜିଲ୍ଲା ସମ୍ବଲପୁରର ପଡ଼ୋଶୀ ନହୋଇ କଟକିଆଙ୍କ ପ୍ରତି ବିଦ୍ୱେଷ ଭାବର କାରଣ ଥିଲା ଉପକୂଳବର୍ତ୍ତୀ ଜିଲ୍ଲାର ସମ୍ବଲପୁରରେ ଅବସ୍ଥାପିତ ହୋଇଥିବା ସରକାରୀ କର୍ମଚାରୀଙ୍କର ହାମ୍ ବଡ଼ିଆ ନୀତି ସହିତ କେତେକଙ୍କର ଲାଞ୍ଚ ନେବା ଅଭ୍ୟାସ। ସମ୍ବଲପୁର ଲୋକମାନଙ୍କର ଗୁଣ ଥିଲା ଯେ, ଅଧିକାଂଶ ଦିଗରେ ସେମାନେ ଚରମ ପନ୍ଥୀ। ଯିଏ ସଚ୍ଚୋଟ ସେ ଖଣ୍ଡା ଧାରରେ ଚାଲେ ଓ ଯିଏ ଅସାଧୁ ସେ ଅଗସ୍ତି ମୁନି ପରି ସାତ ସମୁଦ୍ର ଚଳୁ କରି ଆହୁରି ପାଣି ଖୋଜେ। ସେଇଭଳି ବାହାଘର - ଯୌତୁକ ଦେବେନି କି ଯୌତୁକ ନେବେନି। ପୁଣି ସହଜରେ ବନ୍ଧୁତା କରିବେନି କିନ୍ତୁ ଥରେ ବନ୍ଧୁ ହେଲେ ଖୁବ୍ ନିବିଡ଼ ହୋଇଯାଆନ୍ତି। ପେଟରେ ଗୋଟେ କଥା ପାଟିରେ ଆଉ ଗୋଟେ କଥା ଏଭଳି ସମ୍ବଲପୁରିଆ ମୁଁ କମ୍ ଦେଖିଛି। ହୀରାକୁଦ ଡ୍ୟାମ ତିଆରି ହେବା ସମୟରେ ହଜାର ହଜାର ଲୋକ ବିସ୍ଥାପିତ ହେଲେ। ରାଜସ୍ୱ ବିଭାଗ କର୍ମଚାରୀ ଓ ମାଜିଷ୍ଟ୍ରେଟ୍ ପୋଲିସ୍‌କୁ ନେଇ ଲୋକମାନଙ୍କୁ ଘୋଷାଡ଼ି ଘୋଷାଡ଼ି ଗାଡ଼ିରେ ଭର୍ତ୍ତି କଲେ ଓ ଦୂର ସ୍ଥାନରେ ଛାଡ଼ି ଦେଲେ। ଯାହାକିଛି ଟଙ୍କା କ୍ଷତିପୂରଣ ବାବଦରେ ମିଳିଲା ସେସବୁ ରଖିବା ପାଇଁ ପାଖ ଆଖରେ ବ୍ୟାଙ୍କ କିମ୍ବା ପୋଷ୍ଟ ଅଫିସ ନଥିବାରୁ ଟଙ୍କା ମଦ ବେପାରୀ ଓ ସାହୁକାରଙ୍କ ପାଖକୁ ଗଲା। ସାହୁକାର ଥିଲେ ମାରୁଆଡ଼ି। ମଦବେପାରୀ ଥିଲେ ବିହାରୀ ଓ ସରକାରୀ କର୍ମଚାରୀ ଥିଲେ କଟକିଆ। ନେତାମାନେ (ସେମାନଙ୍କ ଚାରିତ୍ରିକ ଗୁଣ ସବୁଠାରେ ସମାନ) ଲୋକଙ୍କୁ ବୁଝେଇ ଦେଲେ ଯେ, ଡ୍ୟାମରେ ପାଣିରୁ ବିଦ୍ୟୁତ୍ ଶକ୍ତି ବାହାର କରାଯିବ। ତା'ମାନେ ପାଣିର ସାର ଚିପୁଡ଼ି କଟକିଆମାନେ ନେଇଯିବେ ଓ ବାକି ପାଣିରେ କେନାଲ ହେବ। ସେ ପାଣି ମଡ଼େଇଲେ ଧାନ ଫମ୍ପା ହୋଇଯିବ। ବହୁତ କମ୍ ସମ୍ବଲପୁର ଚାଷୀ ଜମି କିଣିଲେ, ସମ୍ବଲପୁରରୁ ବରଗଡ଼ ପର୍ଯ୍ୟନ୍ତ କେନାଲ ଦୁଇ ପାଖ ଜମି ମାଡ୍ରାସରୁ (ତେଲଗୁ) ଚାଷୀମାନେ ଆସି ଜମି କିଣି ବଡ଼ ଲୋକ ହୋଇଗଲେ। ଏ ସମସ୍ତ ପୁଞ୍ଜିଭୂତ କ୍ରୋଧର ଶିକାର ହେଲୁ ଆମେ। ଆମ ଭଳିଆ କେତେଜଣ ସମ୍ବଲପୁର ଜିଲ୍ଲା ସ୍କୁଲରେ ପଢ଼ୁଥିବା କଟକିଆ ଛାତ୍ରମାନଙ୍କ ପ୍ରତି ଶତ୍ରୁତା ଆଚରଣ କରାଗଲା। କିନ୍ତୁ ସମ୍ବଲପୁର ଭାଷା କହିବା ମାତ୍ରେ ସେସବୁ ଉଭେଇ ଗଲା।

ଘର ପାଖରେ ବଜାର, ବିଭିନ୍ନ ରକମର ପନିପରିବା ମିଳେ। ଫଳ ଅପର୍ଯ୍ୟାପ୍ତ ଏସବୁ ତାଳଚେର, ଢ଼େଙ୍କାନାଳରେ ସ୍ୱପ୍ନ ଥିଲା। ଢ଼େଙ୍କାନାଳରେ ଗୋଟିଏ ସିନେମା

ହଲ ସେ ପୁଣି ଋଳ ଘର। ଏଇଠେ ଦୁଇଟି ସିନେମା ହଲ ଓ ସନ୍ଧ୍ୟା ହେଲେ ସିନେମା ଘରେ ମାଇକ୍‌ରେ ଗୀତ ବାଜେ।

ପାଠ ଆଗେଇଲା କିନ୍ତୁ ମୋର ସ୍ୱାସ୍ଥ୍ୟ ଭଲ ରହିଲା ନାହିଁ। ପୋଖରୀରୁ ଅଣାହେଉଥିବା ପାଣି ପିଇବାରୁ ମୋତେ ହଇଜା ହୋଇଗଲା। ସେ ଅନୁଭୂତି ମନେ ପଡ଼ିଲେ ଦେହ ଶିହରୀ ଉଠେ। ଦିନେ ସନ୍ଧ୍ୟା ବେଳେ ମୋତେ ଭୋକ ନଲାଗି ଖାଲି ଶୋଷ ଲାଗିଲା। କାରଣ ବୁଝିନପାରି ନନା ଜୋର କଲେ କିଛି ଖାଇବା ପାଇଁ। ଦୁଇଘଣ୍ଟା ପରେ ଲାଗିଲା ଭୀଷଣ ଝାଡ଼ା। ପାଇଖାନା ଯାଉ ଯାଉ ପ୍ୟାଣ୍ଟରେ ଝାଡ଼ା ହୋଇଗଲା। ପିଚକାରୀ ମାରିଲା ଭଳି ଝାଡ଼ା ଓ ଆଇଁସିଆ ଗନ୍ଧ ଓ ତା' ସାଙ୍ଗକୁ ବାନ୍ତି। ଉପର ମହଲାରୁ ତଳକୁ ଓହ୍ଲାଇ ଆସିଥିଲି ଏବେ ଉପର ମହଲାକୁ ଚଢ଼ିବା ତ ଦୂରର କଥା ଠିଆ ହୋଇପାରିଲିନି। ଦୁଇ ନାନୀ ଟେକି ଟେକି ନେଇଗଲେ ଓ ସପଉପରେ ଶୋଇଦେଲେ। ତା'ପରେ ପୁଣି ଥରେ ଝାଡ଼ା, ଏଥର ଦାରଣ୍ଡାରେ। ହାତ ଗୋଡ଼ ନିଶ୍ଚଳ ହୋଇଗଲା, ଭୀଷଣ ଶୋଷ ଲାଗିଲା। କିନ୍ତୁ ସେ କାଳର ଅନ୍ଧବିଶ୍ୱାସ (ହଇଜା ରୋଗୀଙ୍କୁ ପାଣି ଦେବନାହିଁ) ଯୋଗୁ ପାଣି ଟୋପେ ପାଇଲି ନାହିଁ। ଏଣିକି ପାଟି ଖନି ମାରିଦେଲା କେଉଁଠୁ ଯୋଗାଡ଼ କରି ବୋଉ ଅଳ୍ପ ପାଣିରେ କର୍ପୁରାରିଷ୍ଟ ଦେଇ ପିଆଇ ଦେଲା। ତା'ପରେ ପଋରିଲା ପୁଅ କେମିତି ଲାଗୁଛି ମୁଁ ଖନେଇ ଖନେଇ କହିଲି ମୋ' ସାଙ୍ଗେ କେହି କଥା ହୁଅନାହିଁ। ଏତିକିରେ ନନା ଭାଙ୍ଗି ପଡ଼ିଲେ ଓ ପାଗଳଙ୍କ ଭଳି ପ୍ରଳାପ କଲେ 'ମୋର ରଥ ଭଳିଆ ପୁଅ, ଜ୍ୟୋତିଷ କହିଥିଲେ ମନ୍ତ୍ରୀ ଯୋଗ ଅଛି କିନ୍ତୁ ଆମ ଆଖି ଆଗରେ ସେ ଋଲି ଯାଉଛି।' ବୋଉ ରୋଷେଇ ଘରେ ଠାକୁରାଣୀ ଆଗରେ କଋଡ଼ି ହୋଇ ପଡ଼ିଲା ଓ କିଛିକ୍ଷଣ ପରେ ଉଠିଆସି ନନାଙ୍କୁ କହିଲା ଦେଖୁଛ କ'ଣ ଯାଅ ଡାକ୍ତରକୁ ଡାକି ଆଣିବ । ନୂଆ ନୂଆ ଯାଇଥିଲୁ, କୌଣସି ଡାକ୍ତରଙ୍କୁ ଜାଣିନଥିଲୁ। ନନା ସାଇକେଲ ମାରି ଇଆଡ଼େ ସିଆଡ଼େ ଖୋଜି ଅଧ ଘଣ୍ଟା ପରେ ଫେରି କହିଲେ କେହି ନାହାଁନ୍ତି।

ମହିଳା ଜାତିର ଗୁଣ ହେଉଛି ଛୋଟ ଛୋଟ କଥାରେ ବିଚଳିତ ହୋଇଯାଆନ୍ତି କିନ୍ତୁ ବଡ଼ ବିପଦ ପଡ଼ିଲେ ଅଣ୍ଟା ଭିଡ଼ି ମୁକାବିଲା କରନ୍ତି। ଏଥର ବୋଉ ନନାଙ୍କୁ ବତେଇଲା 'ଆମେ ସିନା ନୂଆ ଆସିଛେ ସାମନା ଘର ଇଞ୍ଜିନିୟର ବର୍ଷେ ହେଲା ଆସିଲେଣି ସେ ନିଶ୍ଚୟ କୌଣସି ଡାକ୍ତରଙ୍କୁ ଜାଣିଥିବେ। ତାଙ୍କୁ କୁହ।' ସେ ପର୍ଯ୍ୟନ୍ତ ପରିଚୟ ହୋଇନଥିଲେ ମଧ୍ୟ ନନା ଡାକିବାରୁ ଆସିଷ୍ଟାଣ୍ଟ ଇଞ୍ଜିନିୟର ଶ୍ରୀ ଦାମୋଦର ଆଋର୍ଯ୍ୟ ନନାଙ୍କୁ 'ଆପଣ ପୁଅ ପାଖେ ରହନ୍ତୁ ମୁଁ ଡାକ୍ତର ଆଣୁଛି' କହି ବାହାରି ଗଲେ। ତା' ସାଙ୍ଗେ କହିଲେ ତୋରାଣୀରେ ଲେମ୍ବୁ ଆଉ ଲୁଣ ପକେଇ ଦୁଇ ଋରି ଗ୍ଲାସ ପିଏଇ

ଦିଅନ୍ତୁ। ନନା ଗୁଁ ପୁଁ ହେଉଥିଲେ କିନ୍ତୁ ଇଞ୍ଜିନିୟର ଦୃଢ଼ ସ୍ୱରରେ କହିଲେ ମୁଁ ଯାହା କହୁଛି କରନ୍ତୁ। ଲୁଣମିଶା ଲେମ୍ବୁରସ ପକା ହେଇଥିବା ଦୁଇଗ୍ଲାସ ତୋରାଣି ପିଇଦେବା ମାତ୍ରେ ମୁଁ ଅଳ୍ପ କଥାବାର୍ତ୍ତା କରିପାରିଲି। ଏହି ସମୟରେ ଡାକ୍ତର ପହଞ୍ଚି ଗଲେ। ବେଶ୍ ବୁଢ଼ା ଡାକ୍ତର। ଚକ୍ଷୁ କୋଟର ଗତ, ମୋଟା ଓଠ ଓ ବାହାରି ଆସିଥିବା ହନୁହାଡ଼ ଯଦିବା ସୂଚନା ଦେଉଥିଲା ତାଙ୍କ ନିଜର ଚିକିତ୍ସା ତୁରନ୍ତ ଦରକାର ସେ ମୋ' ନାଡ଼ିଟାକୁ ଚିପି ଟିକିଏ ଚିନ୍ତିତ ହୋଇ କହିଲେ ପଲସ୍ ଛାଡ଼ି ଯାଉଛି ମୁଁ ଔଷଧ ନେଇକି ଆସିବି, ଆପଣ ଆଉଟିକିଏ ତୋରାଣି ପିଏଇ ଦିଅନ୍ତୁ। ଆଚାର୍ଯ୍ୟ ବାବୁ ତାଙ୍କୁ ସାଇକେଲରେ ବସେଇ ନେଲେ ଓ ପାଞ୍ଚ ମିନିଟ୍ ମଧ୍ୟରେ ସେ ଔଷଧ ଧରି ଫେରିଆସିଲେ। ଦୁଇଟା ଇଞ୍ଜେକ୍ସନ୍ ଫୋଡ଼ିଦେଲେ। ପ୍ରସ୍ତୁତ କରି ଆଣିଥିବା ଔଷଧରୁ ଦୁଇ ଚାମଚ ପିଏଇ ଦେଲେ ଓ ତୋରାଣୀ କିମ୍ବା ପାଣିରେ ଲୁଣ, ଚିନି ଓ ଲେମ୍ବୁ ଦେଇ ପିଏଇ ଦେବା ପାଇଁ କହିଲେ। ମଝିରେ ମଝିରେ କର୍ପୁରାରିଷ୍ଟ ଦେବା ପାଇଁ ମଧ୍ୟ କହିଲେ । ମୁଁ ଆରାମରେ ଶୋଇପଡ଼ିଲି। ତା'ପରଦିନ ବିଶ୍ରାମ ନେଇ ପୁଣି ସ୍କୁଲ ଗଲି। ସାଙ୍ଗମାନେ ପଚାରିବାରୁ କହିଲି ପେଟ ଗୋଳମାଳ ହୋଇଥିଲା। ଦାମୋଦର ଆଚାର୍ଯ୍ୟ (ମୋ' ପାଇଁ ନମସ୍ୟ)ଙ୍କ ସ୍ତ୍ରୀ ସୁଲୋଚନା ଦେବୀ ସେଇଦିନ ଠାରୁ ଆମର ନାନୀ ହୋଇଗଲେ।

ଢେଙ୍କାନାଳ ପରି ସମ୍ବଲପୁରରେ ଫୁଟବଲର ଆଦର ବହୁତ ବେଶି। ଏବଂ ଓଡ଼ିଶାର ବଛା ବଛା ଖେଳାଳି ସମ୍ବଲପୁରରେ ଥିଲେ। କଟକରେ କଟକ ପୋଲିସ ଗଭର୍ଣ୍ଣମେଣ୍ଟ ପ୍ରେସ୍ ପରି ସମ୍ବଲପୁରରେ ଶକ୍ତିଶାଳୀ ଟାଉନ୍ କ୍ଲବ ଥିଲା। ସେତେବେଳକୁ କ୍ରିକେଟ୍ ଜନପ୍ରିୟ ହୋଇନଥିଲା। ସ୍କୁଲ କମ୍ପାଉଣ୍ଡ ଭିତରେ ବ୍ୟାଡ଼ମିଣ୍ଟନ ଖେଳ ହେଉଥିଲା । ଆମକୁ କେତେବେଳେ କେମିତି ବ୍ୟାଡ଼ମିଣ୍ଟନ ଖେଳିବା ପାଇଁ ସୁଯୋଗ ମିଳୁଥିଲା। ବ୍ୟାଡ଼ମିଣ୍ଟନ ଖେଳ ଦେଖିଲେ ମୋର ମନେପଡ଼େ ଜେଜେବାପାଙ୍କର କବାଡ଼ି ଖେଳିବା ଓ ଢେଙ୍କାନାଳ ହାଇସ୍କୁଲର ଶିକ୍ଷକ ବୈଦ୍ୟନାଥ ମହାପାତ୍ରଙ୍କର ବ୍ୟାଡ଼ମିଣ୍ଟନ ଖେଳର କରାମତି। ପ୍ରଥମେ ଜେଜେବାପା (ପଣ୍ଡିତ ନାରାୟଣ ମିଶ୍ର)ଙ୍କ କବାଡ଼ି ଖେଳ ଶୁଣନ୍ତୁ। ଥରେ ରଜାଙ୍କ ସଙ୍ଗେ ସେ କବାଡ଼ି ଖେଳୁଥିଲେ। କବାଡ଼ି (ଆମ ଅଞ୍ଚଳରେ କିତି ବୋଲି କୁହାଯାଏ) ଖେଳିବା ସମୟରେ ରଜା ସାହେବ କିତି କିତି କହି ଅନ୍ୟ କଡ଼କୁ ଚାଲି ଯାଆନ୍ତି ଓ ଯାହାକୁ ଇଚ୍ଛା ତାହାକୁ 'ମାରି ଦେଇ' ପଳେଇ ଆସନ୍ତି। ତାଙ୍କୁ ନ ଧରିବା ପାଇଁ ଅଲିଖିତ ନିର୍ଦ୍ଦେଶ ଥାଏ। ଏଇ ନିର୍ଦ୍ଦେଶ ନ ଜାଣିଥିବା ମୋ' ଜେଜେବାପା ରଜାଙ୍କୁ ଧରି ମାଡ଼ି ବସିଲେ, ଏମିତି ଜୋରରେ ଯେ, ତାଙ୍କ ପିଠି ରକ୍ତା ହୋଇଗଲା। ଦେଖଣାହାରିଏ ହାଁ ହାଁ କଲେ, କେହି ଜଣେ କହିଲା 'କେଡ଼େ ନିର୍ବୁଦ୍ଧିଆ ବ୍ରାହ୍ମଣଟାଏ ମ।' ପିଠିରେ ଆଘାତ ଓ ପରାଜୟର ଗ୍ଲାନି ଧରି ରଜା ଫେରିଗଲେ। ତୁରନ୍ତ

ଜେଜେବାପାଙ୍କର ଚାକିରିରୁ ବରଖାସ୍ତ ଆଦେଶ ତା' ସହିତ ଥାନାକୁ ଡକରା। କିଛି ସମୟ ପରେ ଉଦାସ ରଜାଙ୍କ କ୍ରୋଧ ଶାନ୍ତ ହେବାରୁ ନିଜ ଭୁଲ୍ ବୁଝିପାରିଲେ ଓ ଚାକିରି ଫେରସ୍ତ ଦେଇ ଜେଜେବାପାଙ୍କ ପାଖରେ ଦୁଃଖ ପ୍ରକାଶ କଲେ। ଢେଙ୍କାନାଳରେ ଜଣେ ଏଡ଼ିଏମ ଥିଲେ ଓ ତାଙ୍କର ବ୍ୟାଡ଼ମିଣ୍ଟନ ସଉକ ଥିବାରୁ ତଳିଆ ମାଜିଷ୍ଟ୍ରେଟ୍ ତାଙ୍କ ସଙ୍ଗେ ଖେଳୁଥିଲେ। ତାଙ୍କ ସାଙ୍ଗେ ଖେଳୁଥିବା ଟୋକା ମାଜିଷ୍ଟ୍ରେଟ୍ କର୍କକୁ ଆସ୍ତେ କରି ନେଟ୍ ଉପରକୁ ଟେକି ଦିଅନ୍ତି ଓ ଏଡ଼ିଏମ ନେଟ୍ ପାଖକୁ ଯାଇ ଜୋର୍‌ସେ କର୍କକୁ ବାଡ଼େଇ ଦିଅନ୍ତି। ଖେଳ ନଜାଣିଥିବା ଦୁଇ ତିନି ଜଣ ବୁଢ଼ା ମାଜିଷ୍ଟ୍ରେଟ୍ ୱେଲଡ଼ନ୍ ସାର୍ କହି ଏଡ଼ିଏମଙ୍କର ମନୋବଳ ବୃଦ୍ଧି କରନ୍ତି। ଏଇଭଳି ସଲା କୁସ୍ତି ଚାଲିଥାଏ। ଦିନେ ଖେଳିବା ପାଇଁ କେହି ମାଜିଷ୍ଟ୍ରେଟ୍ ମିଳିଲେ ନାହିଁ। ଆମ ବୈଦ୍ୟନାଥ ସାର୍ ସେ ବାଟେ ଯାଉଥିଲେ, ଡକରା ପାଇ ବ୍ୟାଡ଼ମିଣ୍ଟନ ଖେଳିଲେ। ଗତାନୁଗତିକ ଭାବରେ ଏଡ଼ିଏମ୍ ସର୍ଭ କରି ଯେମିତି ନେଟ୍ ପାଖକୁ ଦୌଡ଼ି ଗଲେ ତାଙ୍କୁ ଆଉ କର୍କ ଦିଶିଲା ନାହିଁ। ପାଞ୍ଚ ଦଶ ସେକେଣ୍ଡ ପରେ ଗାଲ ପୋଡ଼ିଲା। ବୈଦ୍ୟନାଥ ସାର୍ ବିଦ୍ୟୁତ୍ ବେଗରେ ନିକ୍ଷେପ କରିଥିବା କର୍କ ବାଜିଲା ଏଡ଼ିଏମ୍‌ଙ୍କ ଗାଲରେ। ଅତିଶିଘ୍ର ଗାଲରେ ମନ୍ଦାର ଫୁଲଟିଏ ଫୁଟିଗଲା। ବ୍ୟସ୍ତ ହୋଇ ସେ ଘର ଭିତରକୁ ଚାଲିଗଲେ। ଜଣେ ପୁରୁଣା ମାଜିଷ୍ଟ୍ରେଟ୍ ସାର୍‌ଙ୍କୁ ବିରକ୍ତ ହୋଇ କହିଲେ - ଆପଣଙ୍କ ଏତିକି ସାଧାରଣ ଜ୍ଞାନ ନାହିଁ? ଏଡ଼ିଏମ୍ ମାରୁଥିବା କର୍କକୁ ସ୍ମାସ୍ କରିଦେଲେ? ବିଚରା ସାର୍ ଯାଇଥିଲେ ପ୍ରଶଂସା ପାଇବା ପାଇଁ, କାନମୁଣ୍ଡା ଆଉଁସି ଫେରିଲେ। କିଛିଦିନ ତଳେ କ୍ରିକେଟ୍ ଖେଳି କଲେଜ୍‌ର ବୋଲିଂ କରୁଥିବା ସମୟରେ ତିନି ଚାରିଟା ବାଉଣ୍ଡରି ମାରିବା ଦ୍ୱାରା କ୍ରିକେଟ୍ ଖେଳିବାର ସୁଯୋଗରୁ ବଞ୍ଚିତ ହେଇଥିଲେ। ଏବେ ବ୍ୟାଡ଼ମିଣ୍ଟନ ବି ହାତରୁ ଗଲା ଓ ଜଣେ ମାଜିଷ୍ଟ୍ରେଟ୍‌ଙ୍କ ଦ୍ୱାରା ପିଣ୍ଡାଓଲୁ ଆଖ୍ୟା ପାଇଲେ। କେଉଁ କୂଳକୁ ନହୋଇ ଶେଷରେ ଫୁଟ୍‌ବଲ୍ ଖେଳି ଆମକୁ ଶିକ୍ଷା ଦେଲେ। ତାଙ୍କ ଠାରୁ ଶିକ୍ଷା ପ୍ରାପ୍ତ ହୋଇ ମୁଁ ଭଲ ଫୁଟ୍‌ବଲ୍ ଖେଳିଲି ଓ କ୍ଲାସ୍ ଟିମ୍ ପାଇଁ ଖେଳିଲି। ଚାହିଁଥିଲେ ଟୁର୍ନାମେଣ୍ଟରେ ଭାଗ ନେଇପାରିଥାନ୍ତି। କିନ୍ତୁ ନନା କହିଲେ ଭଲପାଠ ପଢ଼ିଲେ ଭବିଷ୍ୟତରେ ରୋଜଗାର କରିବୁ ଫୁଟ୍‌ବଲ୍ ଖେଳିଲେ କ'ଣ ବା ପାଇବୁ? ବୟସ ଗଡ଼ିଗଲେ କେହି ପଚାରିବେନି। ଏବେ ପଛକୁ ଅନେଇଲେ ମୁଁ ଭାବେ ଉଚିତ୍ କଥାଟିଏ କହିଥିଲେ।

ସ୍କୁଲରେ ପଢ଼ିଲା ବେଳେ ଲୁଚି ଛପି ପ୍ରତି ରବିବାର ସିନେମା ଦେଖୁ। ଏସବୁ ପାଇଁ ସମ୍ପୂର୍ଣ୍ଣ ଦାୟୀ ଥିଲେ ଗଣିତ ଶିକ୍ଷକ। ଯିଏ ଶନିବାର ଦିନ ଅଙ୍କ ଦିଅନ୍ତି ସୋମବାର ଦିନ ଉତ୍ତର ଦେଖାଇବା ପାଇଁ। ଉତ୍ତର କଷା ଭୁଲ୍ ହୋଇଥିଲେ ମାଡ଼ ଭରଣ ପଇସେ। ମୋର ଜଣେ ଦୁଇ ଜଣ ସାଙ୍ଗ ଯେଉଁମାନଙ୍କର ପକେଟ୍ ଫୁଲ୍ ଓ ମୁଣ୍ଡ ଖାଲି ସେମାନଙ୍କ

ଅଙ୍କ ମୁଁ ଘରକୁ ଆଣି ଶନିବାର ରାତିରେ କଷିଦିଏ। ବିନିମୟରେ ପାଏ ରବିବାର ଦିନ ମ୍ୟାଟିନ୍ ସୋ ପାଇଁ ଟିକେଟ୍ (ଦଶ ଅଣିଆ) ଓ ଅଣାକର ଚିନାବାଦାମ୍ ସହିତ ଚୂରଣ। ରବିବାର ଦିନ ଦୁଇଟା ସରିକି ଖାତା, ଖଣ୍ଡେ ବହିଟେ ଧରି ବଡ଼ ଗମ୍ଭୀର ହୋଇ ବାହାରି ପଡ଼େ ଓ କେହି ପଚାରିଲେ କହେ ଏକ୍ସଟ୍ରା କ୍ଲାସ। ଥରେ ଅଧେ ଶୁଣିଲା ପରେ ଆଉ କେହି କୈଫିୟତ ମାଗିଲେ ନାହିଁ। ବରଂ ନନା ଥରେ କହିଲେ 'ଦେଖିଲ ସେ ଗୋଟିଏ ପିଲା ପାଠ ପଢ଼ି ମଣିଷ ହବ, ବାକି ଗୁଡ଼ା ସବୁ ଅମଣିଷ ଅପଦାର୍ଥ ହେବେ।' ସିନେମା ଦେଖିବାରେ ଅସୁବିଧା କିଛି ନଥିଲା କିନ୍ତୁ ସେତେବେଳେ ହଲ୍‌ରେ ମୁକ୍ତ ଭାବରେ ଧୂମପାନ କରାଯାଉଥିବାରୁ ଲୁଗା ପଟାରେ ସିଗାରେଟ୍‌ର ଗନ୍ଧ ରହିଯାଏ। ତା'ସାଙ୍ଗକୁ ପ୍ରବଳ ଗରମ ହେତୁ ସାର୍ଟ ପଛଟା ଝାଳରେ ବୁଡ଼ିଯାଏ। ଏସବୁ ଦେଖି ସାନ ଭାଇର ସନ୍ଦେହ ହେଲା ଓ ଦିନେ ସେ ମୋ' ପିଛା କଲା। ତେଣୁ ଥରେ ଅଧେ ତାକୁ ବି ଆମେ ନେଲୁ। ସାନ ଭାଇଟାର ମନ ପାଠରେ ଲାଗିଲାଣି ଭାବି ନନା ବୋଉ ଆହୁରି ଖୁସି ହେଲେ। ଏହି ସମୟରେ ଗୁଡ଼ାଏ ଘଟଣା ଘଟିଗଲା। ବଡ଼ ନାନୀ (ବିଦୁ ନାନୀ)ର ବିବାହ, ଜେଜେବାପାଙ୍କ ପରଲୋକ, ସାନ ନାନୀ (ବାଳି ନାନୀ)ର ବିବାହ ସହିତ ଦୁଇଜଣ ଭାଇ ଚାକିରି ପାଇବା। ଘରର ଆର୍ଥିକ ପରିସ୍ଥିତି ବଦଳି ଗଲା। ଏଣିକି କୁମାର ପୂର୍ଣ୍ଣିମା ବେଳକୁ ଆମମାନଙ୍କୁ ନୂଆ ଲୁଗା ଦେବା ପାଇଁ ନନାଙ୍କୁ ଧାର ମାଗିବାକୁ ପଡ଼ିଲା ନାହିଁ। ଅନାଟନ ସତ୍ତ୍ୱେ ସେ ତାଙ୍କର ପଦବୀର ଅମର୍ଯ୍ୟାଦା କିମ୍ବା ଅପବ୍ୟବହାର କରିନାହାଁନ୍ତି। ଜିପ୍ ଥାଏ ଅଥଚ ସରକାରୀ ନିୟମ ମାନି ଚାଲି ଚାଲି ଅଫିସ ଯାଆନ୍ତି ଓ ଫେରନ୍ତି। ଖରାଦିନ ସକାଳୁଆ ଅଫିସ୍ ଓ ଦିନ ଦେଢ଼ଟା ବେଳେ ଫେରିବା ବେଳକୁ ସେ ଖରାରେ ଝାଉଁଳି ପଡ଼ିଥାନ୍ତି। ତଥାପି ନିଜର ଧୈର୍ଯ୍ୟ ଓ ମୂଲ୍ୟବୋଧ ହରାଇ ନାହାଁନ୍ତି ।

ଦିନେ ସନ୍ଧ୍ୟାରେ ସାତ ଆଠ ଜଣ ମାଜିଷ୍ଟ୍ରେଟ୍ ଆସି ବାରଣ୍ଡାରେ ନନାଙ୍କ ସଙ୍ଗେ କଥା ହେଲେ। କଥାବାର୍ତ୍ତା ସବୁ ଆମ କାନରେ ବାଜୁଥାଏ। ଜଣେ ଏଥିରେ ଉତ୍ତେଜିତ ସ୍ୱରରେ କଥା ହେଉଥାନ୍ତି ଓ କାରଣ ଜାଣିଲେ ପାଠକମାନେ ଆଶ୍ଚର୍ଯ୍ୟ ହେବେ। ଜଣେ ମାଜିଷ୍ଟ୍ରେଟ୍‌ଙ୍କର ଝିଅ ବାହାଘର ଓ ସେ ଛୋଟ କାଟିଆ ଲାଞ୍ଚ ନେବାର ଅଭିଯୋଗ ଶୁଣା ହେଲା। ମାଜିଷ୍ଟ୍ରେଟ୍‌ମାନେ ଏକତ୍ରୀତ ହୋଇ ବିଚାର କଲେ ଓ ତାଙ୍କ ମଧ୍ୟରୁ ଜଣେ (କିଶୋରୀ ମିଶ୍ର) ଦୃଢ଼ ସ୍ୱରରେ ମୋ' ନନାଙ୍କୁ କହିଲେ - ଭାଇନା ଆମେ କେହି ଯିବାନି। ଚାଲ କଲେକ୍ଟର ଓ ଏଡ଼ିଏମ୍‌ଙ୍କୁ କହିବା ସେମାନେ ଯିବେନି। ବାସ୍ତବରେ କେହି ଗଲେନି। ଆଜିକାଲି ଦୁନିଆରେ ସବୁଦିନେ ଦୁର୍ନୀତିର ନଗ୍ନ ରୂପ ଦେଖୁଥିବା ପାଠକ ବନ୍ଧୁମାନଙ୍କୁ ଏସବୁ ସ୍ୱପ୍ନ ଭଳି ଲାଗୁଥିବ। କିନ୍ତୁ ସ୍ୱପ୍ନ ହେଲେ ବି କଥାଟା ସତ।

ଆଉ କେତେଗୁଡ଼ିଏ ଘଟଣା। ନିମେଇଁ ଚରଣ ହରିଚନ୍ଦନଙ୍କ ଗୀତ ରେକର୍ଡ଼ରେ ଶୁଣୁଥିଲୁ କିନ୍ତୁ ତାଙ୍କୁ ସ୍ୱଚକ୍ଷୁରେ ଦେଖିଲୁ ଓ ଗୀତ ଶୁଣିଲୁ ଓକିଲ ଶରତ ଚନ୍ଦ୍ର ମହାପାତ୍ର (ପରେ ହାଇକୋର୍ଟ ଜଜ୍ ହେଲେ)ଙ୍କ ବାହାଘରରେ। ସେ ଆମର ଦୂର ସମ୍ପର୍କୀୟ ଓ ତାଙ୍କ ବାପା ଗୋବିନ୍ଦ ମହାପାତ୍ର ନନାଙ୍କୁ କକେଇ ଡାକନ୍ତି। ବାହାଘର ଭୋଜି ପରେ ବାଣୀକଣ୍ଠ ନିମେଇଁ ଚରଣ ହରିଚନ୍ଦନ କେବଳ ହାରମୋନିୟମର ସାହାଯ୍ୟ ନେଇ ଗୀତ ଗାଇଲେ। ଗୋବିନ୍ଦ ମହାପାତ୍ରଙ୍କ କ୍ୱାଟର ସାମ୍ନାରେ ବିରାଟ ପଡ଼ିଆ ଓ ସାରା ପଡ଼ିଆ ଲୋକାରଣ୍ୟ। ପୁରାତନ, ଆଧୁନିକ ଓ ପଲ୍ଲୀ ଗୀତ ଗୋଟିଏ ପରେ ଗୋଟିଏ ସେ ଗାଇଯାଉଥାନ୍ତି ଓ ଲୋକେ ତନ୍ମୟ ହୋଇ ଶୁଣୁଥାନ୍ତି। ବିଶି ରାମାୟଣରୁ ଆହା ଧନୁର୍ଦ୍ଧର ବୀରବର, ଆଧୁନିକ ଗୀତ ବୋଲ ବୋଲ ସଜନୀରେ ସତେକି ଆସିବେ ଫେରି ଓ ପଲ୍ଲୀ ଗୀତ କି ହେବ ଶୁଆ ପୋଷିଲେ ଇତ୍ୟାଦି ସମସ୍ତେ ମନ୍ତ୍ରମୁଗ୍ଧ ହୋଇ ଶୁଣୁଥାନ୍ତି। ଯେତେବେଳେ ସେ ସ୍ୱରକୁ ବହୁତ ଉପରକୁ ଉଠେଇ ଦିଅନ୍ତି (ପତିତ ଜନଙ୍କୁ ଉଦ୍ଧାରିବା ପାଇଁ, ନୀଳ ସିନ୍ଧୁତୀରେ ନୀଳ ଅଞ୍ଚଳ) ଘନ ଘନ ତାଳି ଅଜାଡ଼ି ପଡ଼େ। ରାତି ପ୍ରାୟ ଏଗାରଟା ବେଳକୁ ସଭା ଭାଙ୍ଗିଲା ଓ ଚାଲି ଚାଲି ସୁଦୂର ଘରକୁ ଫେରିଲା ବେଳେ କ୍ଳାନ୍ତି ଲାଗିଲା ନାହିଁ ବାଣୀକଣ୍ଠଙ୍କର ସଙ୍ଗୀତ ମନେ ପକେଇ।

ଆମ ଘରେ ସାହିତ୍ୟ ସଙ୍ଗୀତର ବହୁତ ଆଦର। ଦୁଇ ଭଉଣୀ ଭଲ ଗାଆନ୍ତି। ବିଦୁ ନାନୀ ଜେଜେମାଆର ସ୍ୱର ପାଇଥିଲା। ନନା ବୋଉ ଗୀତ ଗାଆନ୍ତି ଓ ବିନୋଦ ଭାଇନାର ସ୍ୱର ବେଶ୍ ଭଲ। ବଡ଼ ଭାଇନା (ରବି ଭାଇନା) ଗୀତ ଗାଆନ୍ତି ସତ କିନ୍ତୁ ବଙ୍ଗାଳୀ ଗୀତ କେବଳ। ମୋ' ସାନଭାଇ ଗୋଲଖ ଓ ସାନ ଭଉଣୀ ଶର୍ବରୀ ଏ ପର୍ଯ୍ୟନ୍ତ ଗାଉଛନ୍ତି। ସାନ ଭାଇ ଓ ଅନ୍ୟ ତିନି ଜଣ ମିଶି ଭୁବନେଶ୍ୱରରେ ଏକ ସଙ୍ଗୀତ ଅନୁଷ୍ଠାନ କରିଛନ୍ତି, ପୁରୁଣା ହିନ୍ଦୀ ଓ ଓଡ଼ିଆ ସଙ୍ଗୀତକୁ ଶ୍ରୋତାମାନଙ୍କୁ ମନେ ପକେଇବା ପାଇଁ। ବିନା ଗୁରୁ ଓ ଶିକ୍ଷାରେ ଏମାନେ ଏତେ ଭଲ କେମିତି ଗାଇ ପାରନ୍ତି ବଡ଼ ଆଶ୍ଚର୍ଯ୍ୟର କଥା। ବାକି ରହିଯିବା ଦୁଇ ଭାଇ (ଶରତ ଭାଇନା ଓ ମୁଁ) ସଙ୍ଗୀତ ଉପଭୋଗ କରୁ କିନ୍ତୁ ଗାଇବାର ଦୁଃସାହସ କରିନାହୁଁ। ଅନ୍ୟ ଭାଇ ଭଉଣୀମାନେ ଗୀତ ଗାଆନ୍ତି ଓ ଆମେ ସେଥିପାଇଁ ଅକ୍ଷମ ହେଇ ସୁଦ୍ଧା ଲେଶମାତ୍ର କ୍ଷୋଭ ନାହିଁ। କାଉ ଥିବାରୁ କୋଇଲି ମାନଙ୍କର ମର୍ଯ୍ୟାଦା ବେଶି।

ସ୍କୁଲ୍‌ରେ ଅନେକ ପିଲା ଲୁଚେଇ ଲୁଚେଇ ସିଗାରେଟ୍ ପିଅନ୍ତି। କିନ୍ତୁ ଆମ ପରିବାରରେ ସଂସ୍କାରର ଜୋର ଥିବାରୁ ଯେତେ ଚେଷ୍ଟା କଲେ ମଧ୍ୟ ସେମାନେ ମୋତେ ଓ ମୋ' ସାନ ଭାଇକୁ ସିଗାରେଟ୍ ପିଆଇପାରିଲେ ନାହିଁ। ପିଲାଦିନେ ଦେଖିଛୁ ନନା ସିଗାରେଟ୍ ପିଇଲେ ତା' ପୁଣି ଦିନକୁ ଗୋଟିଏ ଓ ସନ୍ଧ୍ୟା ବେଳେ ଝାଡ଼ା ଯିବା ପୂର୍ବରୁ।

ହଠାତ୍ ଦିନେ ସିଗାରେଟ୍ ପିଇବା ବନ୍ଦ ହୋଇଗଲା। ଆମେ କାରଣ ଜାଣି ପାରିଲୁ ନାହିଁ । କିନ୍ତୁ ବହୁଦିନ ପରେ ବୋଉ କହିଲା ଯେ, ଦିନେ ନନା କହିଲେ 'ପିଲାମାନେ ଏବେ ନବମ, ଦଶମରେ ପଢ଼ିଲେଣି। ମୋଠୁ ଖରାପ ଅଭ୍ୟାସ ଶିଖିବେ, ସିଗାରେଟ୍ ପିଇବା ଥାଉ।' ଘରେ ଅଣ୍ଡା କି କୁକୁଡ଼ା ମାଂସ ପଶିବାର ପ୍ରଶ୍ନ ଉଠୁନାହିଁ, ମଦ ତ ଦୂରର କଥା। ରକ୍ଷଣଶୀଳ ପରିବେଶରେ ବଢ଼ିଥିବାରୁ ପରବର୍ତ୍ତୀ ସମୟରେ ସିଗାରେଟ୍ କିମ୍ବା ମଦ ପିଇବା ଓ କଲେଜ ଜୀବନରେ ଛାତ୍ରୀଙ୍କ ସହିତ ଆନ୍ତରିକତା ଜମେଇବାର ପ୍ରୟାସ ମୁଁ କରିନାହିଁ। ଆମ ଘରେ ସମ୍ପୂର୍ଣ୍ଣ ରକ୍ଷଣଶୀଳ ବିନୋଦ ଭାଇନା, ସେ ନନାଙ୍କ ଜେରକ୍ସ କପି। ବଂଶର ପରମ୍ପରା ଏ ପର୍ଯ୍ୟନ୍ତ ରକ୍ଷା କରିଛନ୍ତି। ତାଙ୍କ ଭାଗ୍ୟକୁ ଭାଉଜ ମିଳିଛନ୍ତି ଯେ କି ଏକ ଉଚ୍ଚ ପରମ୍ପରା ଓ ମୂଲ୍ୟବୋଧକୁ ସମ୍ମାନ ଦେଇ ଆସୁଥିବା ଏକ ପରିବାରର।

ମୁଁ ଗୀତ ସିନା ଗାଇ ପାରିଲି ନାହିଁ କିନ୍ତୁ ଅଭିନୟ କରିପାରିଲି। ସ୍କୁଲର ବାର୍ଷିକ ଉତ୍ସବରେ ମୋତେ ଭଲ ରୋଲ ମିଳେ। ଥରେ ଦୁର୍ଯ୍ୟୋଧନ ଆଉ ଥରେ ବିକ୍ରମାଦିତ୍ୟ ପୁଣିଥରେ ଜମିଦାର ରୋଲ୍ କରିଥିଲି। ଦୁର୍ଯ୍ୟୋଧନ ରୋଲ୍ କଲା ସମୟରେ ମେକ୍ଅପ୍ ମ୍ୟାନ୍ ମୋତେ ହାପ୍ ପ୍ୟାଣ୍ଟ ପିନ୍ଧେଇ ତା' ଉପରେ ଧୋତି ଓ ଜରି ଲଗା କୋଟ୍‌ଟିଏ ପିନ୍ଧେଇଲେ ଓ ମୁହଁରେ ଧଳା ରଙ୍ଗ ବୋଳି ମୁଣ୍ଡରେ ମୁକୁଟ ପିନ୍ଧେଇ ଦେଲେ। ସେ ପର୍ଯ୍ୟନ୍ତ ବାଧ ଛାତ୍ରଟିଏ ଭଳି ମୁଁ ସହଯୋଗ କରୁଥାଏ। ଯେତେବେଳେ ଗାଢ଼ ଲାଲ ରଙ୍ଗର ଲିପ୍‌ଷ୍ଟିକ୍ ଆଣି ମୋ' ଓଠରେ ବୋଳିବା ପାଇଁ ଚେଷ୍ଟା କଲେ ଏଗୁଡ଼ା ଝିଅ ମାନଙ୍କ ପାଇଁ କହି ମନା କରିବାରୁ ସେ 'ଲିପ୍‌ଷ୍ଟିକ୍ ଲଗାଇଲେ ଟୁକେଲ୍ ହେଇଯିବ କାଏଁ' ବୋଲି ବୁଝେଇଲେ ଓ ପୁଣି ଆଶ୍ୱାସନା ଦେଲେ ଯେ, ଆକ୍ଟିଂ ପରେ ସିଗାରେଟ୍ ଗୋଟେ ଢ଼ୋକା ଦେଇଦେବ ତମକୁ କେହି ଝିଅ ବୋଲି ଚିଢ଼େଇବେନି। ପ୍ରଥମ ଉପଦେଶଟା କୌଣସି ମତେ ମାନିଗଲି, ଦ୍ୱିତୀୟ ଉପଦେଶ ମାନିବା ପାଇଁ ରକ୍ଷଣଶୀଳତା ବାଧା ଦେଲା। ଯାହାହେଉ ଅଭିନୟ ପାଇଁ ସାର୍ଟିଫିକେଟ୍‌ଟିଏ ମିଳିଲା।

ବିନା ଟ୍ୟୁସନରେ ପାଠ ଭଲ ଚାଲିଥିଲା। ସେତେବେଳେ ଭଲପିଲା କେହି ଟ୍ୟୁସନ ପଢ଼ୁନଥିଲେ। ଆମ ଘରେ ବିନୋଦ ଭାଇନା ଆମମାନଙ୍କୁ ବହୁତ ସାହାଯ୍ୟ କରୁଥିଲେ। ବିକମ୍ ପାଶ୍ କରି 'ଲ' ପଢ଼ିବା ପାଇଁ ସେ କଟକ ଚାଲିଯିବାରୁ ମୁଁ ସାନ ଭାଇକୁ ସାହାଯ୍ୟ କଲି ଓ ସେ ସାନ ଭଉଣୀକୁ ସାହାଯ୍ୟ କଲା। ଆମେ ସମସ୍ତେ କ୍ଲାସରେ ପୋଜିସନ୍ ରଖୁଥିଲୁ।

ସହରକୁ ଆସିଥିଲା କମଳା ସର୍କସ। ସନ୍ଧ୍ୟା ହେଲେ ସର୍କସ ପାର୍ଟିର ଅତ୍ୟନ୍ତ ଶକ୍ତିଶାଳୀ ଆଲୁଅ ବହୁତ ଦୂର ପର୍ଯ୍ୟନ୍ତ ଦିଶେ। ସର୍କସ ଦେଖିବା ପାଇଁ ଗାଁ ଗହଳିର ଲୋକ ଉଠି ଆସିଲେ। ଆମମାନଙ୍କ ଅତ୍ୟଧିକ ଆଗ୍ରହ ଦେଖି ନନା ଆମମାନଙ୍କୁ ଥରେ

ନେଇଗଲେ । ସେଇଭଳି ଅନ୍ନପୂର୍ଣ୍ଣା ଥିଏଟର। ଘରର ଚାକର ଟୋକା ତିନିଦିନ ଟିକେଟ୍ କିଣିବା ପାଇଁ ଯାଇ ଖାଲି ହାତରେ ଫେରି ଆସିଲା। ଲମ୍ବା ଧାଡ଼ି ଓ ସେ କାଉଣ୍ଟରରେ ପହଞ୍ଚିଲା ବେଳକୁ ଟିକେଟ୍ ନାହିଁ। ପାଖ ଘର ଡିଏସ୍‌ପି ମଉସାଙ୍କୁ କହିବାରୁ ସେ ଟିକେଟ୍ ମଗେଇ ଦେଲେ। 'ଘର ସଂସାର' ନାଟକ ଉପଭୋଗ କରି ଆମେ ଫେରିଲୁ। ଆଠ ଦଶବର୍ଷ ପରେ ମୁଁ କଟକରେ ଅନ୍ନପୂର୍ଣ୍ଣା ଥିଏଟର ଦେଖିବା ପାଇଁ ଯାଇଥିଲି। ସେତେବେଳେ ହଲ୍‌ରେ ବସିଥିଲେ ୧୫ ରୁ ୨୦ ଜଣ ଲୋକ। ସେଇଠେ ପ୍ରଥମେ ବାବି (ସାମୁଏଲ ସାହୁ)ଙ୍କୁ ଅଭିନୟ କରିବା ଦେଖିଥିଲି। ନାଟକ କଂସା କବାଟକୁ ଉପଭୋଗ କଲି ସିନା ମନଟା ଭାରାକ୍ରାନ୍ତ କରି ଫେରିଲି। ମନକୁ ଗୋଟିଏ ପ୍ରଶ୍ନ ସବୁବେଳେ ଆଘାତ ଦେଲା - ସତେ କ'ଣ ଥିଏଟର ମରି ହଜିଯିବ ? ମନ କହୁଥିଲା ଏ ଓଡ଼ିଶାରେ ଥିଏଟର ଆଉ ବଞ୍ଚିବ ନାହିଁ କିନ୍ତୁ ହୃଦୟ କହୁଥିଲା ଯେ, ଆମ ସାଂସ୍କୃତିକ ପରମ୍ପରା ଥିଏଟରକୁ ମରିବା ପାଇଁ ଦେବନାହିଁ। ଭଗବାନ ମନର ଆଶଙ୍କା ଓ ହୃଦୟର ନିବେଦନ (ମୋଭଳି ଅନେକଙ୍କର) ଉପଲବ୍ଧି କଲେ। 'ପୁନରପି ଜନମ, ପୁନରପି ମରଣଂ - ପୁନରପି ଜନନୀ ଜଠରେ ଶୟନମ୍' ନିୟମ ମଧ୍ୟ ଦେଇ ଆମ ନାଟ୍ୟ କଳା ଗତି କଲା। ରଙ୍ଗମଞ୍ଚର ଥିଏଟର ମରିଗଲା ସିନା କିନ୍ତୁ ସୁପ୍ତ ଅବସ୍ଥାରେ ଥିବା ଯାତ୍ରା ଜାଗି ଉଠିଲା। ଯାତ୍ରା ଉଭୟ ସହର ଓ ଗ୍ରାମାଞ୍ଚଳରେ ପହଞ୍ଚାଉଛି ନାଟକକୁ ଓ ଦେଖଉଛି ଆମ ସଂସ୍କୃତିର ଝଲକ୍।

ମ୍ୟାଟ୍ରିକ୍ ପାସ୍ ହୋଇଗଲା ଫାଷ୍ଟ ଡିଭିଜନ୍‌ରେ ଏବଂ ଭଲ ମାର୍କ ରଖି। ଘରେ ସମସ୍ତେ ଖୁସି, କାରଣ ବୃତ୍ତି ମିଳିବ। ସମ୍ବଲପୁର ସହରକୁ ଉତ୍ତର ଭାରତର ଜଣେ ଲୋକ ଏକ ଜ୍ୟୋତିଷ ଷଣ୍ଢ (ଭବିଷ୍ୟତ ବାଣୀ କହିପାରୁଥିବା) ଆଣିଥିଲେ। ପ୍ରଶ୍ନଟିଏ ମନ ମଧ୍ୟରେ ପଚାରିଲି । ଦୁଇ ହାତ ମୁଠା କଲେ ଷଣ୍ଢ ମହାଶୟ ଗୋଟିଏ ମୁଠାକୁ ଶୁଙ୍ଘିବେ। ଡାହାଣ ମୁଠା ହଁ ଓ ବାଆଁ ମୁଠା ନାହିଁ। ଷଣ୍ଢ ମହାରାଜଙ୍କ ଉପରେ ମୋର ବିଶ୍ୱାସ ଜନ୍ମିଲା ଯେତେବେଳେ ଆମେ ଦୁଇଜଣ ସାଙ୍ଗ ବହୁତ ଦୂରରୁ ଅଲଗା ହୋଇ ଷଣ୍ଢକୁ ଘେରିଥିବା ଗହଳି ଭିତରେ ପଶିଗଲୁ। ମୋର ପ୍ରଶ୍ନ ଥିଲା ଯେ ଗହଳି ଭିତରୁ ମୋ' ସାଙ୍ଗକୁ ବାହାରକର ଓ ଷଣ୍ଢ ଗହଳି ଭିତରୁ ମୋ' ସାଙ୍ଗକୁ ଖୋଜି ବାହାର କଲେ। ଅଣେ ଦେଇ ମୁଁ (ଛାତ୍ର ହେତୁ କନ୍‌ସେସନ୍) ମନରେ ତିନୋଟି ପ୍ରଶ୍ନ ପଚାରିଲି, ପ୍ରତ୍ୟେକ ଥର ପ୍ରଶ୍ନ ଥିଲା ମୁଁ ଆଇପିଏସ ହେବି କି ନାହିଁ ଓ ସବୁଥର ଷଣ୍ଢ ଡାହାଣ ହାତ ଶୁଙ୍ଘିଲେ ଅର୍ଥାତ୍ ହଁ କଲେ । ପିଲାଦିନୁ ମୋର ପୋଲିସ ପ୍ରତି ଏକ ଆକର୍ଷଣ କାରଣ ମୋ' ବାପା ମାଜିଷ୍ଟ୍ରେଟ ଥିଲେ ଓ ଚୋରଙ୍କୁ ଦଣ୍ଡ ଦେଉଥିଲେ। ବେଳେ ବେଳେ ଥାନାରୁ ଚୋରଙ୍କୁ ଧରି ପୋଲିସ ଘରକୁ ଆସେ, ପୋଲିସ ଓ ଚୋରଙ୍କ ପଛରେ ବହୁତ ପିଲା ମଜା ଦେବା ପାଇଁ ଆସନ୍ତି।

ନନା ବାରଣ୍ଡାରେ ବସିଥିଲା ବେଳେ ମୁଁ ପାଖରେ ଠିଆ ହୋଇଯାଏ ପୋଲିସ ହାବିଲଦାର ଯେତେବେଳେ ସ୍ୟାଲୁଟ୍ ମାରନ୍ତି ମୋତେ ଲାଗେ ମୁଁ ସେଥିରୁ ଅଧା ପାଇଲି । ନନା ଫାଇଲରେ ଦୁଇ ତିନି ଧାଡ଼ି ଲେଖି ଚୋରକୁ ଫେରେଇ ଦିଅନ୍ତି ଅର୍ଥାତ୍ ସିଏ ଜେଲ୍‌କୁ ଯାଏ। କିନ୍ତୁ ପ୍ରତ୍ୟେକ ଥର ଚୋରକୁ ପଚାରନ୍ତି 'ପୋଲିସ ତମକୁ ବାଡ଼େଇଛନ୍ତି' ଓ ସେ ନାହିଁ କରନ୍ତି। ପିଲାମାନଙ୍କ ସମ୍ମୁଖରେ ମୋ' ସମ୍ମାନ ବଢ଼ିଯାଏ। ଦିନେ ଜଣେ ସାଙ୍ଗ ଆଶ୍ଚର୍ଯ୍ୟ ହୋଇ ମୋତେ ପଚାରିଲା ତୋ' ନନା କାହିଁକି ପଚାରୁଛନ୍ତି ପୋଲିସ ବାଡ଼େଇଲା କି ନାହିଁ । ମୁଁ ତା' ସାଙ୍ଗେ ଏକମତ ହେଲି। ବାଳକର ଇଚ୍ଛା ହୁଏ ପୋଲିସ ଚୋରକୁ ବାଡ଼ାଉ। ଚୋରକୁ ମାଡ଼ ପଚାରେ କିଏ ? ବରଂ ଉପଭୋଗ କରିବା କଥା।

ବାପାଙ୍କ ମାଜିଷ୍ଟ୍ରେଟ୍ ହେବା ଓ ପରବର୍ତ୍ତୀ ସମୟରେ ଜଣେ ବଡ଼ଭାଇ (ଶରତ ଭାଇନା) ଆଇପିଏସ୍ ପାଇବା ମୋତେ ପ୍ରଭାବିତ କଲା। ବଡ଼ ଭାଇନା ଆଇପିଏସ୍ ପାଇଲେ ଏବଂ ସମ୍ବଲପୁରରେ ଟ୍ରେନିଂ ପାଇଲେ। ଡ୍ରେସ୍ ପିନ୍ଧିଗଲେ ସେ ବହୁତ ସାଲ୍ୟୁଟ୍ ପାଆନ୍ତି। ଜାନୁଆରୀ ୨୬ ପ୍ୟାରେଡ୍‌ରେ ପ୍ୟାରେଡ୍ କମାଣ୍ଡ କରି ଖୋଲା ଜିପ୍‌ରେ ଠିଆ ହୋଇ ସାରା ସହର ପରିକ୍ରମା କଲେ। ବିଚାରୀ ବୋଉ ଚାହିଁଲା ଟିକେ ଦେଖିବା ପାଇଁ କିନ୍ତୁ ଶୋଭାଯାତ୍ରା ଗଲା ଅନ୍ୟ ଏକ ରାସ୍ତାରେ। ସେକାଳର ସବୁ ଭାରତୀୟ ମହିଳା ପରି ମୋ' ବୋଉର ଦଶା। ହାଣ୍ଡିଶାଳରୁ ଦୁଆର ବନ୍ଧ ଆସିବା ଯେଉଁ ସମୟରେ ଭାଗ୍ୟର କଥା ବୋଲି ଧରାଯାଉଥିଲା ସେ ସମୟରେ ଜଣେ ଗୃହିଣୀ କେମିତି ରାସ୍ତାକୁ ଆସିଥାନ୍ତା ? ଏସବୁ ପରିପ୍ରେକ୍ଷୀ ସହିତ ଷଣ୍ଢ ମହାରାଜାଙ୍କ ଭବିଷ୍ୟତ ବାଣୀ ପରେ ମୁଁ ଦୃଢ଼ ସଂକଳ୍ପ କଲି ଯେ ମୁଁ ଆଇପିଏସ୍ ହେବି, ଯେଉଁ ପୋଲିସ୍‌କୁ ଦେଖିଲେ ଡର ଲାଗୁଛି ତାଙ୍କଠୁ ସାଲ୍ୟୁଟ୍ ପାଇବି। ଗୋଲ ବଜାର ଛକରେ ଜଣେ ଟ୍ରାଫିକ୍ ହାବିଲଦାର ଠିଆ ହେଉଥିଲେ, ଉଚ୍ଚତା ମଧ୍ୟମ, ଦେହର ମାଂସପେଶୀ ଟାଣ, ଝମଚେ ବି ଚର୍ବି ନାହିଁ। କଳା ଚେହେରା ସାଙ୍ଗକୁ ଭିତି ସଂଚାର କରୁଥିବା ମୋଟା ନିଶ। ସାଇକେଲରେ ତିନିଜଣ ବସିଲେ ଧରୁଥିଲେ, ଛକରେ ଭୁଲ୍ ବାଟରେ ଗଲେ ସାଇକେଲ୍ ଜବତ କରୁଥିଲେ। ନାଁ ଥିଲା କାଳାଚାନ୍ଦ ଖମାରୀ। ସମସ୍ତଙ୍କର ତାଙ୍କୁ ଭୟ କିନ୍ତୁ କାଳାଚାନ୍ଦ ଖମାରୀ ମୋତେ ଦେଖିଲେ ହସି ହାତ ଉଠେଇ ଦିଅନ୍ତି ଓ କୁହନ୍ତି 'ବାବୁ ବଡ଼ ଭାଇଙ୍କ ପରି ଆଇପିଏସ୍ ହୁଅ ଏବେଠୁ ହାଇଜମ୍ପ, ଲଙ୍ଗଜମ୍ପ ଶିଖ।' ତାଙ୍କର ଦୃଢ଼ ଧାରଣା ଥିଲା ହାଇଜମ୍ପ, ଲଙ୍ଗଜମ୍ପ ଓ ଦୌଡ଼ ଭଲ ଜାଣିଥିଲେ ଆଇପିଏସ ମିଳିଯିବ ଯେହେତୁ ସେଇଆ କରି ପ୍ରାର୍ଥୀମାନେ କନେଷ୍ଟବଲ ହୁଅନ୍ତି। ଖମାରୀ କନେଷ୍ଟବଲରୁ ହାବିଲଦାର ପର୍ଯ୍ୟନ୍ତ ଉଠିଥିଲେ ଓ ୧୯୭୪ ମସିହାରେ ମୁଁ ରାଉରକେଲା ଏସ୍.ପି. ଭାବେ ରିଜର୍ଭ ଲାଇନ୍‌କୁ

ଗଲି ଓ ସର୍ଜେଣ୍ଟ ମେଜର ଚିହ୍ନେଇ ଦେଲେ ସାର ଭଏ ହେଉଛନ୍ତି ଡ୍ରିଲ୍ ସବ୍‌ଇନ୍ସପେକ୍ଟର ଓ ମୁଁ ବାକ୍ୟ ପୂରଣ କରିଦେଲି କାଳାଚାନ୍ଦ ଖମାରୀ। କାଳାଚାନ୍ଦ ଖମାରୀ ଅବାକ୍ ହୋଇ ଅନେଇଲେ। ମୁଁ ସେତେବେଳେ ମନେ ପକେଇ ଦେଲି ଯେ ସେ ଯେତେବେଳେ ସମ୍ବଲପୁରରେ ଟ୍ରାଫିକ୍ ହାବିଲଦାର୍ ଥିଲେ ମୋତେ ଜାଣିଥିଲେ । ସମସ୍ତ ପ୍ରୋଟକଳକୁ ଉପେକ୍ଷା କରି କହିଲେ 'ଦେଖିଲେ ସାର୍, ମୋ' କଥା ସତ ହେଲା। କେଉଁ ବାପା ମାଆଙ୍କର ଦୁଇଟା ପୁଅ ଆଇପିଏସ ଓ ଦୁଇଜଣ ଓଡ଼ିଶାରେ ? ଖମାରୀ ଠିକ୍ କହିଥିଲେ। ଆଗରୁ ନଥିଲେ ଏବେବି ନାହାଁନ୍ତି। ଆମ ସେଇ ତାଳଚେର ଛୋଟିଆ ଘରେ ରହିଥିବା ପରିବାରର ଦୁଇଜଣ ଆଇପିଏସ୍ ଓ ମୋ' ଭାଇନାର ଜଣେ ପୁଅ ଆଇଏଏସ୍।

ମୁଁ ଜିଦ୍ କଲି ଆର୍ଟସ୍ ପଢ଼ିବା ପାଇଁ। କିନ୍ତୁ ନନାଙ୍କ ଇଚ୍ଛା ସାଇନ୍ସ ପଢ଼ି ଡାକ୍ତର ହେବି। ମୋତେ ବାଧ କରି ସାଇନ୍ସ ପଢ଼େଇଲେ। ଘୋଡ଼ାକୁ ପାଣି ପର୍ଯ୍ୟନ୍ତ ନେଲେ ସିନା କିନ୍ତୁ ପାଣି ପିଏଇପାରିଲେ ନାହିଁ। ବିଜ୍ଞାନ ପାଠ ମୋ' ମୁଣ୍ଡରେ ଢୁକିଲା ନାହିଁ। କ୍ଲାସରେ ଢୁଳେଇଲି ଓ ଇଣ୍ଟରମିଡ଼ିଏଟ୍‌ରେ ଥାର୍ଡ଼ ଡିଭିଜନ ପାଇବାରୁ ବି.ଏ. ପଢ଼ିଲି। ଯାହା ଆନନ୍ଦରେ କରିଥାନ୍ତି ତାହା ବାଧ ହୋଇ କଲି।

ଆଇପିଏସ୍ ହେବାର ପ୍ରବଳ ପିପାସାକୁ ଦମନ କରିପାରିଥାନ୍ତି ଯଦି ଇଣ୍ଟରମିଡ଼ିଏଟ୍ (ସେତେବେଳେ ପ୍ରି ପ୍ରଫେସନାଲ କୁହାଯାଉଥିଲା)ରେ ଭଲ ସେକେଣ୍ଡ ଡିଭିଜନଟିଏ ପାଇଥାନ୍ତି। ମୋର ବହୁତ ସାଙ୍ଗ ସେକେଣ୍ଡ ଡିଭିଜନ କିମ୍ବା ଫାଷ୍ଟ ଡିଭିଜନ ପାଇ ଇଞ୍ଜିନିୟରିଂ ପଢ଼ିଲେ। ସେତେବେଳେ ସିଭିଲ୍ ଇଞ୍ଜିନିୟରିଂ ପାଇଁ ପ୍ରବଳ ପ୍ରତିଯୋଗିତା କାରଣ ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁବାବୁ ଘୋଷଣା କରିଥିଲେ ଯେ, ଟିକରପଡ଼ାରେ ଡ୍ୟାମ୍ ହେବ ଓ ୧୨୦ଟା ଟାଇଲ୍ ଫ୍ୟାକ୍ଟ୍ରି ହେବ। ଛୋଟ ପିଲାଙ୍କ ପଢ଼ା ବହିରେ ଲେଖା ଥିଲା 'ଟାଇଲ ଛପର ଘର, ନିଆଁକୁ ନଥାଏ ଡର'। ସାଙ୍ଗମାନେ ଠେଲାପେଲା ହୋଇ ପଶିଗଲେ ସିଭିଲ ଇଞ୍ଜିନିୟରିଂରେ ଓ କେତେକ ଇଲେକ୍ଟ୍ରିକାଲ ଇଞ୍ଜିନିୟରିଂରେ। କିନ୍ତୁ ପାଶ୍ କଲା ପରେ ଚାକିରି ନାହିଁ। ଓଜନ ମାପ ଇନ୍ସପେକ୍ଟର ଚାକିରି ପାଇ ସନ୍ତୁଷ୍ଟ ହେଲେ। ମୁଁ ଭଲ ପାଠ ପଢ଼ିଥିଲେ ମୋ' ଅବସ୍ଥା ବି ସେଇଆ ହୋଇଥାନ୍ତା। ବିଜ୍ଞାନ ପଢ଼ିବା ପାଇଁ ଅନିଚ୍ଛା ଓ ଆଳସ୍ୟ ଓ ଫଳସ୍ୱରୂପ ପରୀକ୍ଷାରେ ତୃତୀୟ ଶ୍ରେଣୀ ପାଇବା ମୋ' ପାଇଁ ଥିଲା ଭଗବାନଙ୍କ ଆଶୀର୍ବାଦ। ମୁଁ ଯେତିକି ମାର୍କ ରଖିଥିଲି ସେଥିରେ ଖୁସିରେ ମେଡ଼ିକାଲ ପଢ଼ିପାରିଥାନ୍ତି କିନ୍ତୁ ପ୍ରତ୍ୟେକ ମେଡ଼ିକାଲ କଲେଜ ଛାତ୍ରଙ୍କ ରୁମ୍‌ରେ ଟଙ୍ଗା ହୋଇଥିବା କଙ୍କାଳ ଓ ଟେବୁଲ୍ ଉପରେ ଥୁଆ ହୋଇଥିବା ପ୍ରାୟ କେଜିଏ ଓଜନର ବହିକୁ ଦେଖି ଓ କଲେଜ ଲାବ୍ରୋଟରୀରେ ଟଙ୍ଗା ହୋଇଥିବା ଅନେକ ମଡ଼ଙ୍କର ଅସହ୍ୟ ପଚା ଗନ୍ଧ ସହିନପାରି ବିଏ ପାଠ ପଢ଼ିଲି। ବିଷୟ ଥିଲା ଇତିହାସ

ସମ୍ମାନ ଓ ଅର୍ଥନୀତି ପାସ୍। ସମ୍ବଲପୁର ଜିଏମ୍ କଲେଜରୁ ଆସିଲି ରେଭେନ୍ସାକୁ। ସେତେବେଳକୁ ଘରର ଅବସ୍ଥାରେ ବେଶ୍ ଉନ୍ନତି ହୋଇସାରିଲାଣି। ମୋ' ଉପରେ ତିନି ଭାଇ ଚାକିରି କଲେଣି। ଦୁଇ ପିଉସୀ ପୁଅ ଭାଇଙ୍କ ଚାକିରି, ଉପର ତିନି ଭଉଣୀଙ୍କର ବାହାଘର। ବାକି ରହିଲେ ମୋ' ସାନ ଭଉଣୀ ଓ ସାନ ଭାଇ ଓ ପିଉସୀ ପୁଅ ଭାଇ ବସନ୍ତ ଭାଇନା। ସେ ଡାକ୍ତରୀ ପଢୁଥିଲା ଓ ତା'ର ଚାକିରି ପାଇଁ ନନା କିମ୍ବା ଗଣେଶ୍ୱର ଭାଇନାଙ୍କର କୌଣସି ଚିନ୍ତା ନଥିଲା। ରେଭେନ୍ସା କଲେଜ, କେବଳ ଓଡ଼ିଶାର ଶ୍ରେଷ୍ଠ କଲେଜ ନୁହେଁ ଭାରତର କେତୋଟି ଶ୍ରେଷ୍ଠ କଲେଜ ମଧ୍ୟରୁ ଅନ୍ୟତମ। ଓଡ଼ିଶାର ଯେକୌଣସି ମାନ୍ୟଗଣ୍ୟ ବ୍ୟକ୍ତି (ଅଳ୍ପ କେଇଜଣଙ୍କୁ ଛାଡ଼ି ଦେଲେ) ସମସ୍ତେ କେବେନା କେବେ ରେଭେନ୍ସା କଲେଜରେ ପଢ଼ିଛନ୍ତି। ମୋର ଉପର ତିନି ପିଉସୀ ପୁଅ ଭାଇ ଓ ମୋର ତିନି ଭାଇ ରେଭେନ୍ସା କଲେଜର ଛାତ୍ର। ଯେତେବେଳେ ଭାଇନାମାନେ ପାଠ ପଢୁଥିଲେ ଓ ପୂର୍ବ କିମ୍ବା ପଶ୍ଚିମ ଛାତ୍ରାବାସରେ ରହୁଥିଲେ, ଛୁଟିରେ ଆସିଲେ ଆଣୁଥିଲେ ହଷ୍ଟେଲର ମାଗାଜିନ୍ ଉର୍ମି ଓ ଜାଗରଣ। ତା' ସଙ୍ଗେ ବାହାରୁ ପ୍ରକାଶ ପାଉଥିବା ଆଗାମୀ। ଆମେ ଛଡ଼ାଛଡ଼ି ହେଉ ପଢ଼ିବା ପାଇଁ। ଛୋଟ ବୟସ, ହୃଦୟଙ୍ଗମ ବା ବିଶ୍ଳେଷଣ କରିବାର କି ବା ଶକ୍ତି ? ତେଣୁ କବି ବିପିନ୍ ବିହାରୀ ଖମାରୀଙ୍କର କବିତା 'ସଖି, ଅଙ୍ଗୁର ଖାଅ' ପଢ଼ି ଖୁବ୍ ହସିଲୁ। ହିଃ ହିଃ ହିଃ - ଅଙ୍ଗୁରରେ କ'ଣ ପେଟ ଭର୍ତ୍ତି ହେବ ? ଆମ୍ବ ଚାରି ପାଞ୍ଚଟା ଖାଇବା ପାଇଁ କାହିଁକି କହିଲେନି ? ବଡ଼ ଭାଇନାଙ୍କର ପ୍ରବନ୍ଧ (ଗୋଟିଏ ବର୍ଷ ଗଣ ସାହିତ୍ୟ ଓ ଅନ୍ୟ ଏକ ବର୍ଷରେ ରାଧାନାଥଙ୍କ ସାହିତ୍ୟରେ ପ୍ରକୃତି ବର୍ଣ୍ଣନା) ପଢୁଥିଲୁ। ଅଳ୍ପ କିଛି ବୁଝିପାରୁଥିଲି ଓ ବାକି ସବୁ ପଢ଼ି ସାହିତ୍ୟ - ଡାଇରିଆ ହେଲେ ମଧ୍ୟ ବଡ଼ଭାଇଙ୍କ ପ୍ରତି ଶ୍ରଦ୍ଧା ଯୋଗୁ ବାରମ୍ବାର ପଢୁଥିଲି।

ସମ୍ବଲପୁରରେ ମୋ' ପିଠିରେ କଟକିଆ ମୋହର ବାଜିଥିଲା କିନ୍ତୁ ଖୁବ୍ ଶୀଘ୍ର ସମ୍ବଲପୁରୀରେ କଥାବାର୍ତ୍ତା କରିବାରୁ ଯେଉଁମାନେ ମୋହର ମାରିଥିଲେ ସେଇମାନେ କଷ୍ଟକରି ଲିଭାଇ ଦେଲେ। ମୁଁ ତାଙ୍କର 'ସୂତର ଓ ଆମର' ପିଲା ହୋଇଗଲି। କିନ୍ତୁ କଟକରେ ବାଜିଲା ଢେଙ୍କାନାଳିଆ ମୋହର ଓ ତାହା ସବୁଦିନ ପାଇଁ ରହିଗଲା। ସମ୍ବଲପୁର ପିଲାଙ୍କ କଥାବାର୍ତ୍ତା ଜଳ ଜାହାଜର ଇଂଲଣ୍ଡରୁ ଭାରତକୁ ସୁଏଜ କେନାଲ ଦେଇ ଯିବା ଭଳିଆ, ରେଭେନ୍ସାରେ ଛାତ୍ରମାନେ ସେଇ ଜଳଯାତ୍ରା ଉତ୍ତମାଶା ଅନ୍ତରୀପ ଦେଇ ଆସନ୍ତି । ତାଙ୍କ ତାଙ୍କ ଭିତରେ କଥା ହୁଅନ୍ତି ଏଇଭଳି।

ପ୍ରଶ୍ନ - ତୁମର କୁ ଲାଇନ୍ ?

ଉତ୍ତର - ପାରାଦୀପ୍

ପ୍ରଶ୍ନ - ପାରାଦୀପ୍ ଟାଉନ୍ ତାହେଲେ ?

ଉତ୍ତର - ଏତେ ବାଟ କାହିଁ ଯିବ ବା, ତିର୍ତ୍ତୋଲରେ ଓହ୍ଲେଇ ପଡ଼ୁନ।

ପ୍ରଶ୍ନ - ଓଃ ତାହେଲେ ତିର୍ତ୍ତୋଲ?

ଉତ୍ତର - ସେ କଥା କେତେବେଳେ କହିଲି? ତିର୍ତ୍ତୋଲ ମାଇଲିଏ ଥିବ ବାଁ ଆଡ଼କୁ ବାଙ୍କିଯାଅ।

ପ୍ରଶ୍ନ - ଓଃ ତାହେଲେ ସେଇଠେ।

ଉତ୍ତର - ରହୁନ ଏତେ ଅତର୍ଛିଆ କାହିଁକି? ଦିକୋଶ ପରେ ପୋଷ୍ଟ ଅଫିସଟେ ପଡ଼ିବ।

ଏଇମିତି ସାତ ଆଠଟା ପ୍ରଶ୍ନ ପଚରିଲା ପରେ ଉତ୍ତର ମିଳିବ ତିର୍ତ୍ତୋଲ ବାଁ ପଟ ରାସ୍ତା। ସେଠୁ ପ୍ରାୟ ଚାରି ମାଇଲ ଗଲା ପରେ ଗୋଟେ ଗାଁ ପଡ଼ିବ, ସେଇଠୁ ଡାହାଣ ପଟେ ଗଲେ ପୋଷ୍ଟ ଅଫିସ ପଡ଼ିବ ଓ ପୋଷ୍ଟ ଅଫିସର ମାଇଲିଏ ଦୂରରେ ଘର ପାରାଦ୍ୱୀପ ଲାଇନ କହୁଥିବା ବାବୁଙ୍କ ଘର। ସମ୍ବଲପୁରିଆ ପିଲାଙ୍କୁ ଏମିତି ପଚରି ଥିଲେ 'ହଇବୋ, ଶାସନ ଗାଁ, କେତେ ପଟରୁଚ, ବୋଲି ଉତ୍ତର ମିଳିଥାନ୍ତା। ବହୁତ ଦିନ ସମ୍ବଲପୁରରେ ରହି ତାଙ୍କର ଭାଷା ଚାଲିଚଳଣରେ ପ୍ରଭାବିତ ହେବାରୁ ତାଙ୍କ ପାଇଁ ସୁଗୁଣ ଓ ଉପକୂଳବର୍ତ୍ତୀ ଅଞ୍ଚଳରେ ଅଗ୍ରହଣୀୟ ପ୍ରକୃତି (ଯାହା ନିଷ୍ପତ୍ତି ନେଲି, ବଦଳିବାର ପ୍ରଶ୍ନ ଉଠୁନାହିଁ) ମୋ' ଅଲକ୍ଷ୍ୟରେ ମୋ' ମଧ୍ୟରେ ପ୍ରବେଶ କରିସାରିଥିଲା। ଏ ନିଷ୍ପତ୍ତି ଯାହାଙ୍କୁ ସୁହେଇଲା ସେ କହିଲେ ନିୟମ ମାନିବା ଲୋକ, ଯାହାଙ୍କୁ ନ ସୁହାଇଲା ସେ ମୋ' ପଛରେ ମୂର୍ଖ ହୁଣ୍ଡା ବୋଲି କହିଲେ। ଠିକ୍ ଅଛି, ଯାହାକୁ ଆମେ ଉଚିତ୍ ମନେ କଲୁ ତାହା କଲୁ। ନ୍ୟାୟ ପଥରୁ ଧୀରସ୍ଥିର ଲୋକ ପଛାନ୍ତି ନାହିଁ ବୋଲି ସଂସ୍କୃତରେ ଏକ ଶ୍ଳୋକ ଅଛି।

ରେଭେନ୍‌ସା କଲେଜରେ ଦୁଇବର୍ଷ ଥିବା ସମୟରେ ଛାତ୍ର ରାଜନୀତିରେ ପଶିବା ପାଇଁ କେତେକ ବନ୍ଧୁ ପ୍ରବର୍ତ୍ତାଇଲେ। କେହି କେହି ପଚାରନ୍ତି, ତମେ ୟୁନିୟନ ନା ଫେଡ଼ରେସନ? ୟୁନିୟନଟା ହେଲା କଂଗ୍ରେସର ମାନସ ପୁତ୍ର ଓ ଫେଡ଼ରେସନ୍ ହେଲା କମ୍ୟୁନିଷ୍ଟ ଦଳର। ଛାତ୍ରମାନଙ୍କ ମଧ୍ୟରେ ରାଜନୀତି ପ୍ରବେଶ କରାଇବାର ନିଷ୍ପତ୍ତି ନେଇ କଂଗ୍ରେସ ଓ କମ୍ୟୁନିଷ୍ଟ ପାର୍ଟି ଭାରତର ଶିକ୍ଷାପଦ୍ଧତିର ଅନେକ କ୍ଷତି କରିଛନ୍ତି। ସେତେବେଳେ ଇଲେକ୍ସନ ଲଢ଼ାହେଉଥିଲା ସ୍ଲୋଗାନ୍ ଓ ଭାଷଣ ମାଧ୍ୟମରେ। ଏବେ ଚାଲିଛି ଟଙ୍କା ପଇସାର ଖେଳ ଓ ତା' ସାଙ୍ଗକୁ ବୋମା ଫିଙ୍ଗା ଫିଙ୍ଗି। ଆମେ ଥିଲୁ କେଉଁଠେ। ଅଛୁ କେଉଁଠେ ଓ ଯିବୁ କୁଆଡ଼େ ଭାବିଲା ବେଳକୁ ମନ ମଧ୍ୟରେ ଦିଶେ କେବଳ କଳା ମେଘ। ଜହ୍ନ ଉଙ୍କି ମାରିବାର କୌଣସି ସୂଚନା ମିଳୁନାହିଁ।

ପ୍ରଥମ ଥର ପାଇଁ ପଢ଼ିଲି ଭାରତ ଇତିହାସ, ଇଂଲଣ୍ଡ ଇତିହାସ, ମଧ୍ୟପ୍ରାଚ୍ୟ ଇତିହାସ, ଗ୍ରୀକ୍ ଓ ରୋମ୍ ଇତିହାସ ଓ ରାଜନୀତି ବିଜ୍ଞାନ। ଏବେ ମଧ୍ୟ ଇଂଲଣ୍ଡ ଇତିହାସ ପଢ଼ା ହେଉଛି ଯଦିବା ବିଶ୍ୱ ରାଜନୀତିରେ ଇଂଲଣ୍ଡ ଏକ ଅସ୍ତମିତ ସୂର୍ଯ୍ୟ। ଇଂଲଣ୍ଡକୁ ମାଲିକ ଓ ଯେକୌଣସି ଇଂରେଜି ଲୋକ ନାଁରେ ସାହେବ ଶବ୍ଦ ଯୋଡ଼ିବା (ଯଥା ରେଭେନ୍‌ସା ସାହେବ) କିନ୍ତୁ ବାଳ ଗଙ୍ଗାଧର ତିଳକ ଦାସଗିରି ଆମକୁ ଏ ପର୍ଯ୍ୟନ୍ତ ଗ୍ରସ୍ତ କରିଛି। ତା' ବଦଳରେ ଆମେରିକା, ଚୀନର ଇତିହାସ ପଢ଼ିବା ଅଧିକ ଆବଶ୍ୟକ।

ଗ୍ରୀକ୍ ଇତିହାସ ଉପରେ ବହି ମିଳୁନଥିଲା। ରେଭେନ୍‌ସାର ବିଖ୍ୟାତ କନିକା ଲାଇବ୍ରେରୀରେ ମାତ୍ର ଦୁଇଟି କପି ଥିଲା ଓ ଆମର ଜଣେ ସହପାଠୀ ଜଣେ ଅଧ୍ୟାପକଙ୍କ ଜରିଆରେ ସେ ଦୁଇଟି ବହି ନେଇଯାଇ ଶେଷ ପର୍ଯ୍ୟନ୍ତ ରଖିଦେଲେ ଯାହାଦ୍ୱାରା ବାକି ସମସ୍ତେ ପଢ଼ିବାରୁ ବଞ୍ଚିତ ହେଲେ। ପୁଣି କ୍ଲାସ ନଯାଇପାରିଲେ ଅଧ୍ୟାପକ ଯେଉଁ ନୋଟ୍ ଡାକି ଦେଇଥାନ୍ତି ତାହା ମାଗିଲେ ମଧ୍ୟ କେହି ଦିଅନ୍ତିନି (କ'ଣ କରିବା ଖାତାଟା କେଉଁଠି ରହିଯାଇଛି ପରା')। ମୁଁ ବାଣୀବିହାର ଯାଇ ଜଣେ ସମ୍ପର୍କୀୟଙ୍କ ନାଁରେ ଗ୍ରୀକ୍ ହିଷ୍ଟ୍ରି ଆଣିଲି।

୧୯୬୪ ମସିହାରେ ହେଲା ଓଡ଼ିଶା ବ୍ୟାପି ଛାତ୍ର ଆନ୍ଦୋଳନ। ଝିମିଟି ଖେଳରୁ ମହାଭାରତ କଥା ଭଳିଆ କଥା। ରେଭେନ୍‌ସା କଲେଜର ଜଣେ ଛାତ୍ର ପୁରୁଣା କ୍ୟାମେରାଟିଏ ଦେଇଥିଲେ ମରାମତି ପାଇଁ, ଦୋକାନୀ ସାଙ୍ଗେ ବଚସା ହେଲା। ଛାତ୍ର ଆସି କଲେଜରେ କହିଲା ଯେ, ଦୋକାନୀ ତାକୁ ବାଡ଼େଇଲା। ତା'ପରେ ଛାତ୍ରମାନେ ଘେରିଗଲେ ଦୋକାନକୁ। ପୋଲିସ ଆସିଲେ । ଅଫିସର ଇନ୍‌ଚାର୍ଜ ପଦ୍ମନାଭ ଦାସ ଓ ମାଜିଷ୍ଟ୍ରେଟ୍ ପଣ୍ଡା ଯେତେ ବୁଝେଇଲେ ମଧ୍ୟ ପିଲାଙ୍କ ଜିଦ୍ ସେ ଦୋକାନୀକୁ ଡାକ ଏଇଠେ ବିଚାର ହେବ। ଦୋକାନୀ ସେତେବେଳକୁ ଚମ୍ପଟ। ପୋଲିସ କାହାକୁ ବା ଆଣିବ? 'ଆମେ କେସ୍ କରିବୁ ତାକୁ ଆରେଷ୍ଟ କରିବୁ' କହିବା ସତ୍ତ୍ୱେ ପିଲାମାନେ ନିଜ ନିଷ୍ପତ୍ତିରେ ଅଟଳ। ମୁଁ ଦୋକାନର ଟିକିଏ ଦୂରରେ ଠିଆ ହୋଇ ଦେଖୁଥାଏ। ଅନ୍ଧାର ମାଡ଼ି ଆସିଲାଣି ଅନେକ ପିଲା କଥାବାର୍ତ୍ତା ହେଉଥିଲେ ଚାଲ ଫେରିଯିବା କାଲି ପୁଣି ଆସିବା। ଏଇ ସମୟରେ ଗୋଟିଏ ଜିପ୍ ରହିଲା ଓ ସେଥିରୁ ମୋଟା ପେଟା ଗୁଣ୍ଡା ଭଳି ଦିଶୁଥିବା ଚାରି ପାଞ୍ଚଟା ଲୋକ ଓହ୍ଲାଇଲେ ଓ ହୁଙ୍କାରିଲେ 'ଆବେ ମାଇଚିଆ ଗୁଡ଼ା କିରେ? ଦେଖୁଛ କ'ଣ ବେ? ଜାଳିଦିଅ ଦୋକାନକୁ। ଟାଙ୍ଗି ଦିଅ ସେ ଶଳା ଦୋକାନୀକୁ । ପରେ ଜଣାପଡ଼ିଲା ଏମାନେ ହେଲେ ଗୋଟେ ଘେରା ମଦ ଭାଟିର ଲୋକ ଓ ସେମାନଙ୍କୁ ପଠାଯାଇଥିଲା ଗଣ୍ଡଗୋଳ ଉସ୍କେଇବା ପାଇଁ। ତାଙ୍କ କଥାରେ ମାତିଯାଇ ପିଲା ବର୍ଷିଲେ ଟେକା। ମୁଁ ଦୌଡ଼ି ପଳେଇଲି ହଷ୍ଟେଲକୁ। ଏଭଳି ସ୍ଥାନରେ

ଟେକା ମାରିବା ଓ ଲାଠି ମାଡ଼ ଖାଇବା ପରିବର୍ତ୍ତେ ପଳେଇବା ଭଲ। ଯାହା କୁହାଯାଏ ଆପେ ବଞ୍ଚିଲେ ବାପର ନାଁ। କଲେଜ ଭିତରେ ରହି ଦେଖିଲୁ ଦୃଶ୍ୟ, ଟେକା ଖାଇ ପ୍ରଥମେ ପୋଲିସ ଛିନ୍‌ଛତ୍ର ହେଲେ ଓ ତା'ପରେ ଏକତ୍ରୀତ ହୋଇ ପ୍ରତିଆକ୍ରମଣ କଲେ। ପିଲାଙ୍କ ଉପରେ ହେଲା ମାଡ଼ ଭରଣ ପଇସେ। ସିଂହରଡ଼ି ପକାଉଥିବା ଛାତ୍ର ନେତା ପ୍ରଥମେ ଖସିଲେ, ଦଳଟେ ମେଣ୍ଢା ମାଡ଼ ଖାଇଲେ ଓ ଧରା ହୋଇ ଥାନାକୁ ଗଲେ। ତା' ଆର ଦିନ ରେଭେନ୍‌ସା କଲେଜକୁ ଲାଗି ଆଇନ୍ କଲେଜର ଅନ୍ତେବାସୀମାନେ ଜଣେ ଆଇପିଏସ ଅଫିସରଙ୍କ ଗାଡ଼ିକୁ ଅଟକେଇ ତାଙ୍କୁ ପ୍ରବଳ ମାଡ଼ ଦେଲେ ଓ ଜିପ୍‌ଟାକୁ ପୋଡ଼ି ଦେଲେ। ଜଣେ ଦୋକାନୀ ଆଇପିଏସ ଅଫିସର ଓ ତାଙ୍କ ଡ୍ରାଇଭରକୁ ଦୋକାନର ପଛ ପାଖ ରାସ୍ତା ଦେଇ ପାର କରାଇ ଦେଲା। ତା'ପରେ ଆସିଲେ ଦଳ ଦଳ ପୋଲିସ। କଲେଜ ପରିସର ମଧ୍ୟରୁ ଟେକା ମାଡ଼ ହେବାରୁ କଲେଜ ଭିତରେ ପଶିଲେ ଓ ଲାଠି ଚାର୍ଜ ହେଲା। ଛାତ୍ର ଆନ୍ଦୋଳନକୁ ସମର୍ଥନ କରୁଥିବା ଖବରକାଗଜ ଲେଖିଲେ 'ନିର୍ମମ ପ୍ରହାର' ଓ ସରକାରଙ୍କୁ ସମର୍ଥନ କରୁଥିବା ଖବରକାଗଜ ଲେଖିଲା 'ମୃଦୁ ଲାଠି ଚାଳନା'। ମୃଦୁ ହେଉ କି ନିର୍ମମ ହେଉ ମୋ' ଭାଗ୍ୟକୁ କିଛି ତ୍ରୁଟି ନାହିଁ। ଯେମିତି ଭାବେ ଟେକା ବର୍ଷଣ ହେଲା ମୁଁ ଅନୁମାନ କଲି ଯେ, ନିଶ୍ଚୟ ପୋଲିସ ଲାଠି ଚାର୍ଜ କରିବ ଓ ପିଲାଙ୍କ (କେତେକ ଅଧ୍ୟାପକଙ୍କର) ବଦ୍ଧ ଧାରଣା ଯେ ଅଧ୍ୟକ୍ଷଙ୍କ ବିନା ଅନୁମତିରେ ପୋଲିସ କଲେଜରେ ପ୍ରବେଶ କରିପାରିବ ନାହିଁ ତାହା ଅମୂଳକ ପ୍ରମାଣିତ ହେବ। ଆଇନ୍ ଉପରେ କେହି ନୁହଁନ୍ତି।

ଛାତ୍ର ଆନ୍ଦୋଳନ ଚାଲିଲା ଏକ ମାସରୁ ଅଧିକ ଧରି। ହଷ୍ଟେଲ ଛାଡ଼ିବା ପାଇଁ ନିର୍ଦ୍ଦେଶ ହେବାରୁ ମୁଁ ସାନ ଭଉଣୀକୁ ଧରି ଛତ୍ରପୁର ଚାଲିଗଲି। ସେତେବେଳେ ନନା ସେଇଠି ଅବସ୍ଥାପିତ ଥିଲେ। ଘରେ ରହି ପଢ଼ାପଢ଼ି କଲି। ହଷ୍ଟେଲ ଛାଡ଼ିବା ପୂର୍ବରୁ ଦିନେ ରାତି ଏଗାରଟା ବେଳେ ଜଣେ ଛାତ୍ର ନେତା ହଷ୍ଟେଲକୁ ଆସି ଅନ୍ତେବାସୀଙ୍କୁ ଝିଙ୍ଗାସିଲେ - 'ତମମାନଙ୍କ ଦେହରେ ଓଡ଼ିଆ ରକ୍ତ ନାହିଁକିରେ? ଖାରବେଳ, କପିଳେନ୍ଦ୍ର, ମଧୁବାବୁଙ୍କ ଦାୟାଦ ବୋଲି ନିଜକୁ କହୁଛ କିନ୍ତୁ ଏତିକି ଟିକିଏ ସାହସ ନାହିଁ? ବାଜି ରାଉତକୁ ମନେ ରଖିଛ ଟି? ହସି ହସି ଛାତି ପତେଇ ଦେଲା ଗୁଳି ଖାଇବା ପାଇଁ। ଆମର ବନ୍ଧୁମାନେ ଜେଲ୍‌ରେ ସଢୁଛନ୍ତି କିନ୍ତୁ ତମେମାନେ ଘୁଙ୍ଗୁଡ଼ି ମାରୁଛ? ଓଡ଼ିଶା ବାହାରର ପୋଲିସ ଆସି ରେଭେନ୍‌ସା କଲେଜ ଛକକୁ ଦଖଲ କରିସାରିଲାଣି ଆଉ ତମ ଆଖିକୁ ନିଦ ଆସୁଛି କେମିତି? ଆସ ଭାଇମାନେ ଦୁଇ ତିନିଟା ସିଆରପି ଗାଡ଼ିରେ ନିଆଁ ଲଗେଇଦେବା ଓ ସବୁଦିନ ପାଇଁ ପୋଲିସକୁ କଲେଜ ଛକରୁ ଫେରେଇ ଦେବା ବିଖ୍ୟାତ କବି ଗୋଦାବରୀଶ ମହାପାତ୍ରଙ୍କର 'ଉଠ କଙ୍କାଳ, ଛିନ୍ନ ଶୃଙ୍ଖଳ, ଜାଗ ଦୁର୍ବଳ'

ସଙ୍ଗେ କ୍ଷୀଣ ପ୍ରତିଯୋଗିତା କରି ଛାତ୍ରନେତା ଜଣକ ଉଦ୍‌ବୋଧନ ଦେଲେ ଓ ସେଥିରେ କେତେକ ସୁପ୍ତ ଛାତ୍ର ଜାଗି ଉଠିଲେ ଓ ମଶାରୀ ବାଡ଼ ଧରି ଚାଲିଲେ ବିଦେଶୀ ପୋଲିସ ଅର୍ଥାତ୍ (କେନ୍ଦ୍ରୀୟ ରିଜର୍ଭ ପୋଲିସ)କୁ ଠିକଣା ଜବାବ ଦେବା ପାଇଁ। ଛାତ୍ର ନେତା ଧରିଥାନ୍ତି କିରାସିନ ବୋତଲ ଓ ଦିଆସିଲି। ପରେ ଶୁଣାଗଲା ଯେ ଏମାନେ କେନ୍ଦ୍ରୀୟ ରିଜର୍ଭ ପୋଲିସ ଗାଡ଼ି ନିକଟରେ ପହଞ୍ଚି ଦେଖିଲେ ଯେ ଡ୍ରାଇଭର ଷ୍ଟେରିଂରେ ଲଦି ହୋଇ ଶୋଇଛି। ପଛରେ ଦୁଇଜଣ କନେଷ୍ଟବଲ ବନ୍ଧୁକ ଧରି ଢୁଳୋଉଛନ୍ତି। ଛାତ୍ର ନେତା ନିଜେ ନଧରି କିରାସିନ ବୋତଲ ଧରେଇ ଦେଲେ ଜଣେ ଛାତ୍ରକୁ ଓ ନିର୍ଦ୍ଦେଶ ଦେଲେ କିରାସିନ ପକେଇ ନିଆଁ ମାରିଦିଅ। ସେ ପିଲା ଥତ ମତ ହେଉଥାଏ। ଏଇ ସମୟରେ ଦୁଇ ଜଣ ଥାନା ସିପେହୀ (ପିନ୍ଧିଥାନ୍ତି ଲାଲ୍ ପଗଡ଼ି ଖାକି ସାର୍ଟ ଆଉ ହାପ୍ ପ୍ୟାଣ୍ଟ, ଆଣ୍ଠୁ ପର୍ଯ୍ୟନ୍ତ ପଟି, ଗୋଡ଼ରେ ସ୍ୟାଣ୍ଡେଲ ଓ ହାତରେ ଛୋଟ ଲାଠି) ଆସୁଥିଲେ। ଜଣେ ବାଡ଼ିଟାକୁ ଘୂରେଇ ଘୂରେଇ ଗାଉଥାଏ 'ଭଜମନ ସବୁରି ଦୁଃଖ ହର ହରିକି, ହରି କରିବେ ଭବୁ ପାରିକି।' ସିପେହୀ ବାବୁଙ୍କୁ ହରି ଭବୁ ପାରି କଲେ କି ନାହିଁ କେଜାଣି କିନ୍ତୁ ଏତିକି ଶୁଣି ଛାତ୍ରର ହାତରୁ ଖସିଗଲା ବୋତଲଟା ଓ ମାଲୋ ମଲି କହି ସେ ଧାଇଁଲା କଲେଜ ଆଡ଼କୁ। ତା' ପଛକୁ ବାକି ସମସ୍ତେ। ନେତା ତାଙ୍କୁ ସମ୍ଭାଳିବେ କ'ଣ ନିଜ ରକ୍ଷଣ ଅସମ୍ଭବ। ଦୌଡ଼ି ଯାଉଥିଲେ ଛନ୍ଦି ହୋଇ ପଡ଼ିଲେ ଓ ପୋଲିସ ଧରିନେଲା। ସମ୍ବର୍ଦ୍ଧନା କଲା ଦୁଇ ତିନି ପାହାରରେ ଓ ତା' ପରଦିନ ସେ ଗଲେ ଜେଲ୍‌କୁ। ପୋଲିସ ଠାରୁ ମାଡ଼ ଖାଇବା ଓ ଜେଲ୍ ଯିବା ତାଙ୍କ ପାଇଁ ଥିଲା ରାଜନୀତି କ୍ଷେତ୍ରରେ ସ୍ୱର୍ଣ୍ଣ ପଦକ ପ୍ରାପ୍ତି ପରି। ପଛ ଧାଡ଼ିର ଏଇ ଛାତ୍ର ଏବଂ (ନେତା) ପରେ ମନ୍ତ୍ରୀ ହେଲେ ଓ ଆଗ ଧାଡ଼ିରେ ବସୁଥିବା ଓ ବିଶ୍ୱ ବିଦ୍ୟାଳୟର ମୁଖ ଉଜ୍ଜ୍ୱଳ କରୁଥିବା ଛାତ୍ରମାନଙ୍କର ଚରିତ୍ର ପଞ୍ଜିକା ସେ ହିଁ ଲେଖିଲେ। ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। ଆଜି ଯେ ପଛ ଧାଡ଼ିରେ କାଲି ସେ ଆଇନ୍ ପ୍ରଣୟନ କରିବେ ଏବଂ ଆଜିର ଆଗ ଧାଡ଼ିର ଛାତ୍ର କାଲି ଆଇଏଏସ ଆଇପିଏସ ହୋଇ ମଧ୍ୟ ତାଙ୍କ ଆଦେଶ ପାଳନ କରିବେ।

୧୯୬୪ ମସିହାର ଛାତ୍ର ଆନ୍ଦୋଳନ ଏତେ ବ୍ୟାପକ ଓ ତା'ର ପ୍ରଭାବ ଏତେ ଗଭୀର ଥିଲା ଯେ ତାକୁ ଅଙ୍ଗେ ନିଭାଇ ଥିବା ଲୋକେ କେବେବି ଭୁଲି ପାରିବେ ନାହିଁ। ସେତେବେଳେ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ନଥିଲେ, କାମରାଜ ପ୍ଲାନ କରି ତାଙ୍କୁ ବିଦା କରିଦିଆଯାଇଥିଲା। କିନ୍ତୁ ତାଙ୍କର ଘନିଷ୍ଠ ବନ୍ଧୁ ଓ ତାଙ୍କ ନେତୃତ୍ୱକୁ ମାନୁଥିବା ବିରେନ୍ ମିତ୍ର ଥିଲେ ମୁଖ୍ୟମନ୍ତ୍ରୀ। ଆଉ ଜଣେ ସହଯୋଗୀ ଥିଲେ ନୀଳମଣି ରାଉତରାୟ। ବିଜୁ - ବିରେନ୍ - ନୀଳମଣି ମେଣ୍ଟ ନବକୃଷ୍ଣ ଚୌଧୁରୀଙ୍କୁ ହଟେଇ ମହତାବଙ୍କୁ ମୁଖ୍ୟମନ୍ତ୍ରୀ କରିଆଣିଥିଲେ, ପୁଣି ମହତାବ ସିଂହଦେଓ ମିଳିତ ମନ୍ତ୍ରୀମଣ୍ଡଳକୁ ଭାଙ୍ଗି ବିଜୁ ପଟ୍ଟନାୟକ

ମୁଖ୍ୟମନ୍ତ୍ରୀ ହେଲେ। ରାଧାନାଥ ରଥଙ୍କୁ କୋଣଠେସା କରିଦେଲେ ଓ ପବିତ୍ର ମୋହନ ପ୍ରଧାନଙ୍କୁ ଅପଦସ୍ତ କଲେ। ରାଧାନାଥ ରଥଙ୍କ ହାତରେ 'ସମାଜ', ଡକ୍ଟର ମହତାବଙ୍କ ହାତରେ 'ପ୍ରଜାତନ୍ତ୍ର' ଓ ସିଂହଦେଓଙ୍କ ହାତରେ 'ଗଣତନ୍ତ୍ର' ସେତେବେଳର ଜଣାଶୁଣା ଖବରକାଗଜ। ଖବରକାଗଜ ମାତୃଭୂମି ମଧ୍ୟ ସରକାରଙ୍କ ବିପକ୍ଷରେ। ସରକାରଙ୍କ ସପକ୍ଷରେ କେବଳ ଗୋଟିଏ ଖବରକାଗଜ 'କଳିଙ୍ଗ'। ତା'ର କାଟ୍‌ତି ବେଶି ନଥିଲା। ପଶ୍ଚିମ ଓଡ଼ିଶାରେ ପଢ଼ା ହେଉଥିଲା ସମାଜ ଓ ଗଣତନ୍ତ୍ର। ଅନ୍ୟ ଜିଲ୍ଲାମାନଙ୍କରେ ସମାଜ ପ୍ରଜାତନ୍ତ୍ର ଓ ମାତୃଭୂମିର ଆଦର ବେଶି। 'ଛାତ୍ରଙ୍କ ଉପରେ ନିର୍ମମ ପ୍ରହାର', ଶାନ୍ତିପୂର୍ଣ୍ଣ ଶୋଭାଯାତ୍ରା ଉପରେ ଅଙ୍କନକ ଲାଠି ମାଡ଼', 'ପୋଲିସ ହାଜତ୍‌ରେ ପାଣି ମାଗିଲେ ମୂତ ପିଏଇବା' 'ଦରମରା ଛାତ୍ରଙ୍କୁ ପ୍ରବଳ ମାଡ଼', 'ହଷ୍ଟେଲରେ ପଶି ଭଙ୍ଗାରୁଜା ଲୁଟ୍ ପାଟ୍', 'ମେସ୍‌ରେ ପଶି ଭାତ ଡାଲି ଖାଇଯିବା' ଇତ୍ୟାଦି ଖବର ବାରମ୍ବାର ବାହାରିବାରୁ ଖବର ଯେତିକି ବାହାରିଲା ତୁଣ୍ଡ ବାଇଦ ତା'ଠାରୁ ଢ଼େର ବେଶି ବାଜିଲା। ଛତ୍ରପୁରରେ ମୁଁ ଜଣଙ୍କ ଠାରୁ ଶୁଣିଲି ଯେ ପୋଲିସ ପିଲାଙ୍କୁ କାଚ ଗୁଣ୍ଡ ଉପରେ ଶୁଆଇ ଦେଲେ, ରାଇଫଲରେ ମୁଣ୍ଡକୁ ଛେଚି ଦେଲେ, ଘଣ୍ଟା ଘଣ୍ଟା ଆଣ୍ଠୁ ତଳେ ଗୋଡ଼ି ଦେଇ ଆଣ୍ଠେଇ ଦେଲେ। ବହୁ ଛାତ୍ରନେତା ସାରା ଓଡ଼ିଶାରୁ ବାହାରିପଡ଼ିଲେ ଆନ୍ଦୋଳନକୁ ଆଗେଇ ନେବା ପାଇଁ। ପ୍ରତିଦିନ କଟକ 'ଲ' କଲେଜ, ରେଭେନ୍‌ସା କଲେଜ, ମେଡ଼ିକାଲ କଲେଜ, ଇଞ୍ଜିନିୟରିଂ ସ୍କୁଲ୍‌ରୁ ପ୍ରସେସନ୍ ବାହାରି 'ସରକାର ଡାଉନ୍ ଡାଉନ୍', 'ଷ୍ଟୁଡ଼େଣ୍ଟସ୍ ୟୁନିଟ୍ ଲଙ୍ଗଲିଭ୍' 'ଅତ୍ୟାଚର ଚଳିବ ନାହିଁ ଯଦି ଚଳିବ ନିଆଁ ଜଳିବ', 'ବିଚାର ବିଭାଗ ତଦନ୍ତ ହେଉ' 'ମଦ ବୋତଲ କେଉଁଠି, ବିଜୁ ବିରେନ୍ ଯେଉଁଠି', 'ଛାତ୍ର ଜନତା ମିଶିଯାଅ, ସରକାରକୁ ନିକାଳି ଦିଅ' ଇତ୍ୟାଦି ସ୍ଲୋଗାନ ଦେଇ ଜିଲ୍ଲାପାଳ ଅଫିସକୁ ଯାଆନ୍ତି ଓ ଯେଉଁମାନେ ୧୪୪ ଆଦେଶ ଅମାନ୍ୟ କରୁଥିଲେ ତାଙ୍କର ନାଆଁ ଓ କୀର୍ତ୍ତି ମାଇକ୍‌ରେ ଘୋଷଣା କରାଯାଉଥିଲା। ସେ ଟେବୁଲ୍ ଉପରେ ଠିଆ ହୋଇ ସମସ୍ତଙ୍କୁ ନମସ୍କାର କରୁଥିଲେ ଓ କରତାଳି ପାଉଥିଲେ। କରତାଳି ଅପେକ୍ଷା ତାଙ୍କ ପାଇଁ ବେଶି ଆକର୍ଷଣର ବିଷୟ ଥିଲା କେହି ଜଣେ କଲେଜ ଛାତ୍ରୀ ତାଙ୍କ ବେକରେ ଫୁଲ ମାଳ ଝୁଲେଇବେ। ତା'ପରେ ସେ ଆଗେଇ ଯାଆନ୍ତି ପଡ଼ିଥିବା ଏକ ରସିକୁ ପାର ହେବା ପାଇଁ। ମାଜିଷ୍ଟ୍ରେଟ ଓ ପୋଲିସ ସତର୍କ କରନ୍ତି କିନ୍ତୁ ତାଙ୍କୁ ଭ୍ରୁକ୍ଷେପ ନକରି ସେ ବୀର ଦର୍ପରେ ଆଗେଇ ଯାଆନ୍ତି ଓ ପ୍ରତ୍ୟେକ ପାହୁଣ୍ଡ ସାଙ୍ଗରେ କରତାଳି ପାଆନ୍ତି। ତା'ପରେ ଖାତାରେ ନିଜ ନାଁ ଓ ଠିକଣା ଲେଖନ୍ତି ଓ ଟ୍ରକ୍‌ରେ ଚଢ଼ନ୍ତି ଜେଲ୍ ଯିବା ପାଇଁ। ଏଇମିତି ମୋର ଜଣେ ସାଙ୍ଗ ଜେଲ୍ ଯାଇଥିଲେ ଓ ଫେରିବା ପରେ ମୁଁ ବ୍ୟସ୍ତ ହୋଇ ପଚାରିଲି 'କିଓ ତୁମ ନାଆଁ ତ ପୋଲିସ ରେକର୍ଡ଼ରେ ରହିଗଲା, ଚାକିରି

ପାଇବ ? "ଉତ୍ତର ମିଳିଲା 'ତମର ସେ ଢେଙ୍କାନାଳିଆ ବୁଦ୍ଧି ଗଲାନି। କିଓ ନିଜ ନାଁ କିଏ ଲେଖେ ? ମୁଁ ଆଉଜଣଙ୍କ ନାଁ ଲେଖିଦେଇଛି।" ମୋର ମନ୍ତବ୍ୟ ଆଉ ଜଣେ ଯଦି ତୁମ ନାଁ ଲେଖିଥିବ ତାହାହେଲେ କ'ଣ ହେବ ଶୁଣି ତାଙ୍କ ମୁହଁ କଳା ପଡ଼ିଗଲା। ସେ ବନ୍ଧୁଟି ଏମଏ ପାସ୍ କରି ଭଲ ଚାକିରି ପାଇଲେ। ତାଙ୍କ ନାଆଁ ଲେଖୁନାହିଁ କାରଣ ତାଙ୍କ ପିଲା ଛୁଆଙ୍କ ଆଗରେ ତାଙ୍କର ଭାବମୂର୍ତ୍ତି କମେଇବା ମୋ' ଉଦ୍ଦେଶ୍ୟ ନୁହେଁ। ସେତେବେଳେ ଓଡ଼ିଶାରେ ଗୋଟିଏ ବିଶ୍ୱବିଦ୍ୟାଳୟ ଥିଲା। ତେଣୁ କଟକ, ସମ୍ବଲପୁର, ବାରିପଦା, ବରହମ୍ପୁର, ଜୟପୁର, ଛାତ୍ରଙ୍କ ମଧ୍ୟରେ ସମ୍ପର୍କ, ବୁଝାମଣା ଓ ଭାବଗତ ମିଶ୍ରଣ ଥିଲା। ଜଗତସିଂହପୁରରେ ଜଣେ ଛାତ୍ରକୁ ପୋଲିସ ଥାନାକୁ ନେଇଗଲେ ସୁଦୂର ସୁନ୍ଦରଗଡ଼ରେ ଛାତ୍ରମାନେ ପ୍ରତିବାଦ କରୁଥିଲେ। ତିନୋଟି ବିଶ୍ୱ ବିଦ୍ୟାଳୟ ହୋଇଯିବା ପରେ ଛାତ୍ରମାନଙ୍କର ମେଣ୍ଟ ଭାଙ୍ଗିଗଲା ଓ ସରକାରଙ୍କୁ ହଲେଇ ଦେବା ପାଇଁ ବିରୋଧୀ ଦଳଙ୍କ ହାତରେ ଯେଉଁ ତିନୋଟି ପ୍ରଧାନ ଆୟୁଧ ଥିଲା ଯଥା ଛାତ୍ର, ଶ୍ରମିକ, କୃଷକ ସେଥିମଧ୍ୟରୁ ଗୋଟିଏ ଗଲା। ବତୀ ଲିଭିବା ପୂର୍ବରୁ ହୁତ୍ ହୁତ୍ କରି ଜଳିବା ପରି ୬୪ ମସିହାର ଛାତ୍ର ଆନ୍ଦୋଳନ ଥିଲା ଓଡ଼ିଶା ବ୍ୟାପି ଶେଷ ଛାତ୍ର ବିପ୍ଳବ। ତା' ପୂର୍ବରୁ ୧୯୫୬ ମସିହାରେ ସୀମା ଆନ୍ଦୋଳନ କରିଥିଲେ ଛାତ୍ରମାନେ। ୫୬ ମସିହା ଛାତ୍ର ଆନ୍ଦୋଳନ ପାଇଁ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ବନବାସରେ ଗଲେ, ୬୪ ଛାତ୍ର ଆନ୍ଦୋଳନ ବିଜୁ - ବିରେନ୍ଙ୍କୁ ଖଣ୍ଡିଆ ଖାବରା କରିଦେଲା। ୬୭ ମସିହା ନିର୍ବାଚନରେ କଂଗ୍ରେସ ଦଳର ସତ୍ତା ରହିଲା ନାହିଁ।

ଆନ୍ଦୋଳନ ସରିବା ପରେ ପୁଣି ପାଠ ଆରମ୍ଭ ହେଲା, ପ୍ରାୟ ସବୁ ଛାତ୍ରଙ୍କ ଉପସ୍ଥାନ କମ୍, ସମସ୍ତେ ଡାକ୍ତରଙ୍କୁ ଆଠ ଟଙ୍କା ଲେଖାଏଁ ଲାଞ୍ଚ ଦେଇ ବେମାର ପଡ଼ିଥିଲେ ବୋଲି ସାର୍ଟିଫିକେଟ୍ ଆଣିଲେ ଓ ପରୀକ୍ଷା ଦେଲେ। ମୁଁ ବିଏ ଅନର୍ସ ପାଇଲି ଭଲ ମାର୍କ ରଖି। ଇଣ୍ଟରମିଡ଼ିଏଟ୍‌ରେ ତୃତୀୟ ଶ୍ରେଣୀ ପାଇବା ଆଘାତକୁ ଭୁଲିଗଲି। ପଛକୁ ନ ଅନେଇ ଆଗକୁ ଅନେଇଲି। ମୋତେ ନିଷ୍ପତ୍ତି ନେବାକୁ ପଡ଼ିଲା କେଉଁ ବିଷୟ ପଢ଼ିବି ଓ କେଉଁ ବିଶ୍ୱ ବିଦ୍ୟାଳୟରେ ନାମ ଲେଖାଇବି। ଇତିହାସ ନା ରାଜନୀତି ବିଜ୍ଞାନ ? ଉତ୍କଳ ବିଶ୍ୱ ବିଦ୍ୟାଳୟ ନା ଆହ୍ଲାବାଦ ବିଶ୍ୱବିଦ୍ୟାଳୟ ? ଶେଷରେ ନିଷ୍ପତ୍ତି ନେଲି ଆହ୍ଲାବାଦରେ ପଢ଼ିବି ଓ ରାଜନୀତି ବିଜ୍ଞାନ ବିଷୟ ନେବି। ଦିନକୁ ଦରକାର ପଡ଼ିଲେ କୋଡ଼ିଏ ଘଣ୍ଟା ପଢ଼ିବି କିନ୍ତୁ ସର୍ବ ଭାରତୀୟ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବି। 'ଅତି ବେଶି ହେଲେ ଏବାବୁ ସବ୍ ଡ଼େପୁଟି କଲେକ୍ଟର ହେବେ, ନହେଲେ କେଉଁ ଗୋଟେ ସ୍କୁଲରେ ମାଷ୍ଟର' ତାଚ୍ଛଲ୍ୟର ଉତ୍ତର ଦେବାକୁ ପଡ଼ିବ। ଅର୍ଥ ପ୍ରତିବନ୍ଧକ ନଥିଲା, ନନା ଭଲ ଦରମା ପାଉଥିଲେ । ଦାୟିତ୍ୱ କେବଳ ସାନ ଭାଇ ଓ ସାନ ଭଉଣୀ।

ଆହ୍ଲାବାଦରେ ପହଞ୍ଚି ପ୍ରଥମେ ହଲାଣ୍ଡ ହଲ ହଷ୍ଟେଲରେ ରହିଲି। ସେତେବେଳେ ମୋ'ଠାରୁ ବର୍ଷେ ସିନିୟର ଲକ୍ଷ୍ମୀ ବାବୁ (ଡ଼କ୍ଟର ଲକ୍ଷ୍ମୀ ନାରାୟଣ ମିଶ୍ର ଭୂତପୂର୍ବ କୁଳପତି ଉତ୍କଳ ବିଶ୍ୱ ବିଦ୍ୟାଳୟ) ବହୁତ ସାହାଯ୍ୟ କରିଥିଲେ ଓ ତା'ପରେ ବିଖ୍ୟାତ ଗଙ୍ଗନାଥ ଝା ହଷ୍ଟେଲରେ ସିଙ୍ଗଲ ରୁମ୍ ପାଇଲି। ପାଖ ରୁମ୍‌ରେ ରହୁଥିଲେ ରାଜେନ୍ଦ୍ର ପଣ୍ଡା (କବି ଓ ଆଇଏଏସ)। ବର୍ଷେ ପରେ ଆର ପାଖ ରୁମ୍‌କୁ ଆସିଲେ ଉମାକାନ୍ତ ସାମଲ (ଆଇଏଏସ)। ସାତ ଆଠ ରୁମ୍ ଛାଡ଼ି ରହୁଥିଲେ ଅନୁଗ୍ରହ ନାରାୟଣ ତିୱାରୀ (ଆଇଏଏସ ଓ ଅବସରପ୍ରାପ୍ତ ଚିଫ୍ ଇନଫରମେସନ କମିଶନର) ଓ ବାଦଲ ଦାଶ (ଆଇପିଏସ ଓ ପରେ ଆଇଏଏସ) ତଳେ ରହୁଥିଲେ ପୂର୍ଣ୍ଣେନ୍ଦୁ ସେନାପତି (ଆଇପିଏସ) ଓ ଡି.ପି. ପରିଡ଼ା (ହାଇକୋର୍ଟ ଆଡ଼ଭୋକେଟ୍) ଓ ଅନେକ ଓଡ଼ିଆ ବନ୍ଧୁ ଥିଲେ। ଆହ୍ଲାବାଦ ବିଶ୍ୱ ବିଦ୍ୟାଳୟରେ ଓଡ଼ିଆ ଛାତ୍ରଙ୍କର ଭାରି ଖାତିର କାରଣ ସେମାନେ ଥିଲେ ପାଠୁଆ, ପରିଶ୍ରମୀ ଓ ଶୃଙ୍ଖଳା ପ୍ରିୟ। ଏଇଠାରେ ପ୍ରଥମେ ହିନ୍ଦୀ କହିବାକୁ ପଡ଼ିଲା। ମୋର ହିନ୍ଦୀ ଜ୍ଞାନ ମନ୍ଦ ନଥିଲା କାରଣ ସମ୍ବଲପୁରରେ ସ୍କୁଲରେ ପଢୁଥିବା ସମୟରେ ମୁଁ ହିନ୍ଦୀ ପଢ଼ି 'ପ୍ରବେଶ' ପାସ୍ କରିଥିଲି ଓ ଅନ୍ୟ ଛାତ୍ର ବନ୍ଧୁମାନେ ଗଳ ଗଳ ହିନ୍ଦୀ କହିପାରୁଥିବାରୁ ତାଙ୍କ ଠାରୁ ହିନ୍ଦୀ କହିବା ଶିଖିଲି। କିନ୍ତୁ ଆମ କଟକ, ପୁରୀ ଓ ଅନ୍ୟ ଜିଲ୍ଲାରୁ ଯାଇଥିବା ଛାତ୍ରମାନେ ଆହ୍ଲାବାଦରେ ବହୁତ ଅସୁବିଧାରେ ପଡ଼ିଲେ। ହିନ୍ଦୀ ଡିକ୍‌ସନାରୀ ପଢ଼ି ଭଣ୍ଡାରୀ ବାଳ କାଟିବାକୁ ଆସିଲେ କହୁଥିଲେ 'କାଟୋ ମେରା ଜୁଲ୍‌ଫ।' ବାଉଁଶକୁ କାଟି ମଶାରୀ ବାଡ଼ କରାଯାଉଥିଲା ଓ ମୋର ଜଣେ ସାଙ୍ଗ ବଢ଼େଇକୁ ବରାଦ କଲେ 'ବାଉଁଶ କୋ କାଟ୍ କର ଛାଞ୍ଚ କର ଖଟକା କଣା ମେ ଗେଞ୍ଜନା ହୋ।' ମୁଁ କଥାଟାକୁ ସମ୍ଭାଳି ଦେଇ ବଢ଼େଇକୁ ବୁଝେଇବା ପାଇଁ ଯାଉଥିଲି ଓ ପ୍ରତିଦାନରେ ପାଇଲି ଧମକ - ରହମ, ହିନ୍ଦୀ କହିବା କେଉଁ ବଡ଼ କଥା କି? ଓଡ଼ିଆ ଶବ୍ଦରେ ହଲନ୍ତ ଲଗାଇଲେ ତ ହିନ୍ଦୀ, ଆଉ କ'ଣ? ତାଙ୍କ ସାଙ୍ଗରେ ସହମତ ହେଲା ଆଉ ଜଣେ ଓ 'ମୂଢ଼ ସଭାରେ ମୂକ ଯଥା ଧାର୍ମିକ' ନ୍ୟାୟରେ ମୁଁ ଚୁପ୍ ରହି ନିଜ ରୁମ୍‌କୁ ପଳେଇ ଆସିଲି। ବନ୍ଧୁଙ୍କ ଭାଷା ବୁଝି ନପାରିଲେ ମଧ୍ୟ ତାଙ୍କ ଅଙ୍ଗଭଙ୍ଗୀରୁ ବଢ଼େଇ ଅନୁମାନ କରିନେଲା ସେ କ'ଣ ଚାହୁଁଛନ୍ତି। ତେଣୁ ସେ ତାଙ୍କୁ ଗୋଟିଏ ମୂଢ଼ ବୋଲି ଭାବିଥିବ ନହେଲେ ୨୫ ପଇସା ଜାଗାରେ ୫୦ ପଇସା ନିଅନ୍ତା କାହିଁକି? ବନ୍ଧୁ ଜଣଙ୍କ ଯେତେବେଳେ ସନ୍ଧ୍ୟାରେ ଜାଣିଲେ ଯେ, ପ୍ରକୃତ ରେଟ୍ ୨୫ ପଇସା ବହୁତ ଅନୁତାପ କଲେ।

ପାଠ କେମିତି ପଢ଼ା ଯାଏ ଓ ପିଲାମାନେ କେମିତି ପାଠ ପଢ଼ନ୍ତି ତାହା ଆହ୍ଲାବାଦ ବିଶ୍ୱ ବିଦ୍ୟାଳୟରେ ଦେଖିବା କଥା। ଏମିତି ନିଷ୍ଠାପର ଅଧ୍ୟାପକ ଭାଗ୍ୟରେ ଥିଲେ

ମିଳନ୍ତି। ଯେଉଁମାନଙ୍କ ବହି ଆମେ ପଢ଼ୁଥିଲୁ ସେଇମାନେ ପାଠ ପଢ଼ାଉଥିଲେ। ଜଣେ ଅଧ୍ୟାପକ ପାଠ ପଢ଼ଉଥିବା ସମୟରେ କ୍ଲାସ ସରିବାକୁ ଦୁଇ ତିନି ମିନିଟ୍ ଥିବ ପରବର୍ତ୍ତୀ ଅଧ୍ୟାପକ ଆସି ଦୁଆର ବନ୍ଧ ପାଖେ ଠିଆ ହୋଇଯାଆନ୍ତି। ଜଣେ ବାହାରିବା ପରେ ଆଉ ଜଣେ ପଶନ୍ତି ଓ ସଙ୍ଗେ ସଙ୍ଗେ ପାଠ ଆରମ୍ଭ କରନ୍ତି। ପାଣିପାଗ ରାଜନୀତି ଓ ବାଜେ କଥା କିଛି ହୁଏ ନାହିଁ। ସିଧା ସଳଖ ପାଠ। ପୁଣି କୌଣସି ଅଧ୍ୟାପକଙ୍କ ଘରକୁ ଯିବା ମନା। କଟକରେ ଅନେକ ଛାତ୍ର ହଳ ହଳ ହୋଇ ଯାଆନ୍ତି କେତେକ ଅଧ୍ୟାପକଙ୍କ ଘରକୁ। ସେସବୁ ଆହ୍ଲାବାଦରେ ଶକ୍ତ ମନା। ଉତ୍କଳ ବିଶ୍ୱ ବିଦ୍ୟାଳୟରେ ଏମ୍‌ଏରେ ଆଠଟା ପେପର, ଆହ୍ଲାବାଦରେ ୧୩। ୧୩ଟି ପେପର ମଧ୍ୟରୁ ୧୦୦ ନମ୍ବର ରଚନା ଓ ୧୦୦ ନମ୍ବର ଇଣ୍ଟରଭ୍ୟୁ। ପୁଣି ପ୍ରତ୍ୟେକ ବର୍ଷ ପରୀକ୍ଷା (ଉତ୍କଳ ବିଶ୍ୱ ବିଦ୍ୟାଳୟରେ ଦୁଇ ବର୍ଷରେ ଥରେ)। ବଳଦ କାନ୍ଧରେ ଜୁଆଳି ପଡ଼ିଲା ପରି ବ୍ୟବସ୍ଥା। ଘୁଞ୍ଚିବାର ଯୁ ନାହିଁ।

ମୋ' ପାଇଁ ରାଜନୀତି ବିଜ୍ଞାନ ଥିଲା ନୂଆ ବିଷୟ। କାରଣ ଇତିହାସ ଅନର୍ସ ଓ ଅର୍ଥନୀତି ପାସ୍ ନେଇ ମୁଁ ଆସିଥିଲି ରାଜନୀତି ବିଜ୍ଞାନ ପଢ଼ିବା ପାଇଁ। ଯେଉଁମାନେ ରାଜନୀତି ବିଜ୍ଞାନ ଅନର୍ସ ପାସ୍ କରିଆସିଥିଲେ ସେମାନେ ଅଧିକ ସୁବିଧାଜନକ ସ୍ଥିତିରେ ଥିବାରୁ ତାଙ୍କ ସହିତ ପ୍ରତିଯୋଗିତା କରିବା ପାଇଁ ମୋତେ ଅଧିକା ପରିଶ୍ରମ କରିବାକୁ ପଡ଼ିଲା। ସେତେବେଳେ ବନ୍ଧୁତା ହୋଇଗଲା ଅନୁଗ୍ରହ ନାରାୟଣ ତିୱାରୀଙ୍କ ସାଙ୍ଗରେ। ସେ ଖରିଆରର ଏକ ବିଖ୍ୟାତ ପରିବାରର। ତାଙ୍କର ଜଣେ ବଡ଼ ଭାଇ ଆଇପିଏସ ଓ ଆଉ ଜଣେ ଭାଇ ମାଇନିଂ ଇଞ୍ଜିନିୟର ଥିଲେ। ଆଉ ଜଣେ ଭାଇ ଅବୋଧ ନାରାୟଣ ତିୱାରୀ ପରେ ପ୍ରମୋସନ୍ ପାଇ ଆଇଏଏସ ହେଲେ। ତିୱାରୀ ବାବୁ ମୋତେ ବହୁତ ସାହାଯ୍ୟ କଲେ। ଆମେ ଏକା ସଙ୍ଗେ ବୁଲିଯାଉ, ସିନେମା ଦେଖୁ। ଓଡ଼ିଆ ଛାତ୍ର ମହଲରେ ଯୋଡ଼ି ବଳଦ ଆଖ୍ୟା ପାଇଲୁ। ସେ ଓ ଉମାକାନ୍ତ ସାମଲ ମୋ' ଆଇପିଏସ ପାଇବାରେ କେତେ ସାହାଯ୍ୟ କଲେ ତାହା ପରେ ଲେଖିବି। କୃତଜ୍ଞତା ଜଣେଇବା ପାଇଁ ଆଉ କ'ଣ ବା ଅଧିକା କରିବି ?

ପଞ୍ଚମ ବର୍ଷ ପରୀକ୍ଷା ଫଳ ବିଶେଷ ଭଲ ନହୋଇଥିଲେ ମଧ୍ୟ ମୋତେ ନିରାଶ କରିନଥିଲା। ଏମ୍‌ଏ ଫାଇନାଲରେ ଥିବା ସମୟରେ ମୁଁ ରହିଲି ଆଇପିଏସ ଓ ଆଲାଏଡ୍ ପରୀକ୍ଷା ଦେବା ପାଇଁ। ମୁଁ ବେଶି ଉତ୍ସାହିତ ହେଲି ଯେତେବେଳେ ଶୁଣିଲି ମୋର ଆଉ ଜଣେ ଅନ୍ତରଙ୍ଗ ବନ୍ଧୁ (ବାଣୀ ବିହାରରେ ପଢ଼ୁଥିବା) ଶ୍ରୀନିବାସ ରଥ ପରୀକ୍ଷା ଦେବେ। ଆହ୍ଲାବାଦରେ ପଢ଼ୁଥିବା ଓଡ଼ିଆଙ୍କ ମଧ୍ୟରେ ରାଜେନ୍ଦ୍ର ପଣ୍ଡା (ଆମ ଠାରୁ ବର୍ଷେ ସିନିୟର ଓ ଡ୍ରପ କରି ଆମ ସାଙ୍ଗରେ ପଢ଼ିଲେ) ଓ ପୂର୍ଣ୍ଣେନ୍ଦୁ ସେନାପତି ପରୀକ୍ଷା ଦେଲେ । ପରୀକ୍ଷା

ପାଇଁ ଫର୍ମ ଫିଲପ୍ କରିଛି ଶୁଣି ରାଜନୀତି ବିଭାଗର ମୁଖ୍ୟ ପ୍ରଫେସର ଏବି ଲାଲ ଡକେଇଲେ ଓ କେତେକ ଉପଦେଶ ଦେଲେ। ହଷ୍ଟେଲର ୱାଡ଼େନ୍ (ଅର୍ଥାତ୍ ମନିଟର) ନିଜ ନାଁରେ ଲାଇବ୍ରେରୀରୁ ବହି ଆଣି ମୋତେ ଦେଲେ। ତିୱାରୀ ବାବୁ ଅନେକ ବହି ଦେଲେ। ଏମଏ ପ୍ରଥମ ବର୍ଷ ପରେ ମୁଁ ଛୁଟିରେ ଆସିଥିଲି ବାଲେଶ୍ୱର। ବିନୋଦ ଭାଇନା ଥାନ୍ତି ସିଟିଓ ଓ ନନା ଥାନ୍ତି ସେଟ୍‌ଲମେଣ୍ଟ ଚାର୍ଜ ଅଫିସର। ସାନ ଭାଇ ସାନ ଭଉଣୀ ମଧ୍ୟ ପଢୁଥାନ୍ତି। ବୋଉ ଓ ଭାଉଜ ଘର କଥା ସମ୍ଭାଳୁ ଥିଲେ। ସେ ଭାଉଜଙ୍କୁ ଧନ୍ୟବାଦ ଯେ ଏତେ ଦାୟିତ୍ୱ ମୁଣ୍ଡେଇ ମଧ୍ୟ ପ୍ରତିବାଦ କରିବା ତ ଦୂରର କଥା ଉଚ୍ଚ ସ୍ୱରରେ ମଧ୍ୟ ସେ କଥା କହିନାହାଁନ୍ତି। ବିନୋଦ ଭାଇନା ଓ ଭାଉଜଙ୍କ ପ୍ରତି ମୋ' ସମ୍ମାନ ସବୁଦିନେ ବହୁତ ଉଚ୍ଚରେ। ନନା ଉତ୍ସାହିତ କଲେ ତୁ ନିଶ୍ଚୟ ପାଇବୁ। ବୋଉ କୋଷ୍ଠି ଦେଖି କହିଲା ସମୟ ଭଲ ପଡ଼ିଛି ପରିଶ୍ରମ କର ନିଶ୍ଚୟ ପାଇବୁ। ମୁଁ ସନ୍ଧ୍ୟା ସାତଟା ବେଳେ ଖାଇଦେଇ ଶୋଇପଡ଼େ ଓ ଦଶଟା ବେଳେ ଘର ସାମନା ପଡ଼ିଆରେ ଖଟ ଓ ମଶାରୀ ପକେଇ ଇଲେକ୍ଟ୍ରି ବଲ୍‌ବଟେ ଆଣି ରାତି ୧୦ଟାରୁ ସକାଳ ୪ଟା ପର୍ଯ୍ୟନ୍ତ ପଢ଼େ ଓ ୪ଟାରୁ ୮ଟା ପର୍ଯ୍ୟନ୍ତ ଶୋଇପଡ଼େ। ରାତି ୧୨ଟା ସରିକି ଦିଜଣ କନେଷ୍ଟବଲ ରାସ୍ତାରେ ପେଟ୍ରୋଲିଂ ପାଇଁ ଯାଆନ୍ତି ଓ ଦିନେ ମୁଁ ପଢୁଥିବା ସମୟରେ କେତେବେଳେ ଆସି ଖଟ ପାଖରେ ଠିଆ ହୋଇଛନ୍ତି ମୁଁ ଜାଣିନାହିଁ। ହଠାତ୍ ଛାଇ ଦେଖି ଚମକି ପଡ଼ିଲି ଓ ଜଣେ ପଚାରିଲେ କିଓ ବାବୁ ରାତିସାରା କ'ଣ ପଢୁଛ ? ଆମେ ଏବାଟେ ଦୁଇ ତିନିଥର ଯିବା ଆସିବା କରୁଛୁ ତୁମେ ବହିରୁ ମୁଣ୍ଡ ଟେକିବା ଦେଖୁନାହୁଁ। ସାବାସ, ଏଇମିତି ପାଠ ପଢ଼ିଲେ ବଡ଼ ଅଫିସର ହେବ ନହେଲେ ଆମ ଭଳିଆ କନେଷ୍ଟବଲ ହୋଇ ପବ୍ଲିକ୍‌ଠୁ ଗାଳି ଓ ଉପର ଅଫିସରଙ୍କଠୁ ଫଜିତ୍ ଶୁଣିବାକୁ ପଡ଼ିବ ।' ଖଟରୁ ଓହ୍ଲେଇପଡ଼ି ମୁଁ ଦୁହିଁଙ୍କୁ ନମସ୍କାର କଲି (ଯେହେତୁ ସେମାନେ ବୟସ୍କ ଥିଲେ) ଓ କହିଲି ଯେ ଆଜ୍ଞା ମୁଁ ଆଇପିଏସ ପରୀକ୍ଷା ଦେଉଛି। ଖୁସି ହୋଇ ସେ ଦୁଇଜଣ ଆଶୀର୍ବାଦ କଲେ - 'ବାବୁ ତୁମ ଭଳି ଭଲ ପିଲା ଆଇପିଏସ ହେବା କଥା। ଆଇପିଏସ ହେଲେ ଆମଭଳି ଗରିବ ସିପେହିଙ୍କ କଥା ଭୁଲିବନି।' ଜୀବନର ସାଫଲ୍ୟ ପଛରେ ନନା ବୋଉଙ୍କ ଆଶୀର୍ବାଦ, ବିନୋଦ ଭାଇନା ଭାଉଜଙ୍କର ପ୍ରୋତ୍ସାହନ ଥିଲା ମୋ' ପାଇଁ ମୂଲ୍ୟବାନ। କିନ୍ତୁ ଏଇ ଦୁଇଜଣ କନେଷ୍ଟବଲଙ୍କର ଶୁଭେଚ୍ଛାକୁ ମୁଁ କେବେ ଅଣଦେଖା କରିନାହିଁ।

ଶିକ୍ଷାବର୍ଷ ଆରମ୍ଭ ହେବା ମାତ୍ରେ ଆହ୍ଲାବାଦ ଫେରି ଆସିଲି ଓ ପହଞ୍ଚିବା ପରଦିନ ଠାରୁ ପାଠ ଆରମ୍ଭ କଲି। ହଷ୍ଟେଲ ୱାଡ଼େନ୍ ରୁମ୍ ଆଗରେ ନୋଟିସ୍ ମାରିଦେଲେ ଡୁ ନଟ୍ ଡିଷ୍ଟର୍ବ। ସନ୍ଧ୍ୟା ସାତରେ ମୁଁ ଖାଇ ଶୋଇପଡ଼େ, ମୋ' ରୁମ୍‌ରେ ବର୍ଷେ ଜୁନିଅର ଉମାକାନ୍ତ ସାମଲ ଆସି ପାଠ ପଢ଼ନ୍ତି ଓ ୧୦ଟା ବେଳେ ନିଦରୁ ଉଠେଇ କଫି କପେ

ବନେଇ ପିଇବା ପାଇଁ ଦିଅନ୍ତି। ସାରା ହଷ୍ଟେଲ୍ ଶୁନ୍‌ଶାନ୍। ୧୦ ରୁ ୪ ପର୍ଯ୍ୟନ୍ତ ମୁଁ ପାଠ ପଢ଼େ। ୪ଟା ବେଳେ ଶୋଇ ଆଠଟା ବେଳେ ଉଠେ ଓ ନିତ୍ୟକର୍ମ ସାରି କ୍ଲାସ ଯାଏ। ପରୀକ୍ଷା ହେଲା ଆହ୍ଲାବାଦରେ। ପ୍ରତିଦିନ ଉମାକାନ୍ତ କିମ୍ବା ତିୱାରୀ ବାବୁ ସାଙ୍ଗରେ ଯାଉଥିଲେ। ପରୀକ୍ଷା ଶେଷ ହେଲା ପର୍ଯ୍ୟନ୍ତ ରହୁଥିଲେ ଓ ଫେରିବା ବାଟ ସାରା ଆଲୋଚନା ହୁଏ ପ୍ରଶ୍ନ କେମିତି ଥିଲା ଉତ୍ତର କ'ଣ ହେଲା। ଏଇଭଳି ଭାବେ ଅନୁଧ୍ୟାନ କରି ଉଭୟ ବନ୍ଧୁ ମୋତେ ଅଭୟବାଣୀ ଶୁଣେଇଲେ - ଇଣ୍ଟରଭ୍ୟୁ ନିଷ୍ଚୟ ମିଳିବ। ସେମାନଙ୍କ ଭବିଷ୍ୟତବାଣୀ ସତ ହେଲା ଓ ମୁଁ ନନାଙ୍କୁ ଟେଲିଗ୍ରାମ୍ କରି ଖବର ଜଣେଇ ଦେଲି। ଇଣ୍ଟରଭ୍ୟୁ ପାଇଁ ପ୍ରାୟ ୧୦୦ ଟଙ୍କା ଦରକାର ପଡ଼ିବ କାରଣ ମୋର ସୁଟ୍ ନଥିଲା, ଭଲ ଯୋତା ହଳେ ନଥିଲା, ଟାଇ ମଧ୍ୟ ନଥିଲା। ଆମେ ତିନି ବନ୍ଧୁ ଗଲୁ ଓ ଆହ୍ଲାବାଦ୍‌ର ବିଖ୍ୟାତ ଏ ଟୁ ଜେଡ୍ ଦୋକାନରୁ ୬୬ ଟଙ୍କାରେ ଟେରିକଟନ କନା (ସିଲେଇ ମଜୁରୀ ସମେତ) କିଣିଲୁ। ଭଲ ସାର୍ଟଟେ ପଡ଼ିଲା ୯ ଟଙ୍କା ଓ ଟାଇ ଅଢ଼େଇ ଟଙ୍କା ଓ ମୋଜା ବାରଣା। ଜୀବନରେ ପ୍ରଥମ ଥର ପାଇଁ ସୁଟ୍ ଟାଇ ପିନ୍ଧିଲି ଓ ଗଲି ଇଣ୍ଟରଭ୍ୟୁ ପାଇଁ। ଇଣ୍ଟରଭ୍ୟୁର ଫଳାଫଳ ଉପରେ ନିର୍ଭର କରିବ ମୋର ଭବିଷ୍ୟତ । ସାଙ୍ଗରେ ଗଲେ ବନ୍ଧୁ ଅନୀଳ ପଟ୍ଟନାୟକ। ମୋତେ ନର୍ଭସ ହେବା ଦେଖି ବୁଝଉଥାନ୍ତି - ବ୍ୟସ୍ତ ହୁଅନି ଭାଇ, ସେମାନେ ସବୁ ଭଲ ଲୋକ। ତୁମକୁ ଅପଦସ୍ତ କଲାଭଳି କୌଣସି ପ୍ରଶ୍ନ ପଚାରିବେ ନାହିଁ । ପୂର୍ବରୁ ସିନିୟରମାନେ କହି ଦେଇଥିଲେ - ଯାହା ନଜାଣିଛ କହିଦେବ ମୁଁ ଜାଣିନି । ବ୍ଲଫ ମାରିବ ନାହିଁ ଓ ଧୀରସ୍ଥିର ସ୍ୱରରେ କଥାବାର୍ତ୍ତା କରିବ। ଇଣ୍ଟରଭ୍ୟୁ ହଲ୍‌କୁ ଯିବା ପୂର୍ବରୁ ଅନୀଳ ପଟ୍ଟନାୟକ ରାସ୍ତାକୁ ଦେଖେଇ ମୋତେ କହିଲେ ଦେଖ ବାଁ ପଟେ ଏକ ଶବ ଯାଉଥାନ୍ତି। ବାମେ ଶବ ଶିବା ଶୁଭଦାୟକ ବୋଲି ଏକ ଶ୍ଳୋକ ଅଛି। ସାହସ ବଢ଼ିଗଲା। ଇଣ୍ଟରଭ୍ୟୁ ହଲ୍‌କୁ ଗଲି। ସେଠି ଥିବା ଜଣଙ୍କ ବହି (ପ୍ରଫେସର ଆପାଦୁରାଇ) ମୁଁ ପଢ଼ିଥିଲି । ଯାହା ଜାଣିଥିଲି ଠିକ୍ ଠିକ୍ ଉତ୍ତର ଦେଲି, ଦୁଇ ତିନିଟା ପ୍ରଶ୍ନର ଉତ୍ତର ଜାଣିନଥିଲି ବୋଲି ମାନିଗଲି। ହଷ୍ଟେଲକୁ ଫେରିଲା ବେଳକୁ ପୋର୍ଟିକୋରେ ଠିଆ ହୋଇଛନ୍ତି ତିୱାରୀ ବାବୁ ଓ ଉମାକାନ୍ତ ସାମଲ। ଟାଣି ନେଇଗଲେ ତିୱାରୀ ବାବୁଙ୍କ ରୁମ୍‌କୁ ଓ ସେଇଠେ କ'ଣ ପଚରାଗଲା ଓ କ'ଣ ଉତ୍ତର ଦିଆଗଲା ତା'ର ଚର୍ଚ୍ଚା ହେଲା ଓ ସମସ୍ତେ ଏକମତ ହେଲେ ଯେ, ଭଲ ହୋଇଛି। ଖୁବ୍ ଭଲ ନୁହେଁ କିନ୍ତୁ ଶତକଡ଼ା ୬୦ ମାର୍କ ନିଷ୍ଚୟ ରହିବ। ସେଦିନ ପ୍ରୋଗ୍ରାମ କରାଗଲା ଯେ, ତିୱାରୀ ବାବୁ, ମୁଁ ଓ ସାମଲ ଯିବୁ ସିନେମା। ବାହାରେ ଖାଇବୁ। ମୁଁ ବାଛିଲି ପିକ୍‌ଚର ଦେବଦାସ କିନ୍ତୁ ସାମଲ କହିଲେ ନାଇମ ଭାଇନା ଆଜି ଖୁସିର ଦିନ ହସ ଖୁସିର ସିନେମାଟେ ଦେଖିବା ଦେବଦାସ ଭଳି ମୁହଁ ଶୁଖେଇ ଦେଉଥିବା ପିକ୍‌ଚରଟେ କାହିଁକି ଦେବା ? ଗଲୁ ଦେଖିବା

ପାଇଁ କାଶ୍ମୀର କି କଲି। ହଁ ମୋର ଇଣ୍ଟରଭ୍ୟୁର ଚର୍ଚ୍ଚା ହେବା ପରେ ମୁଁ ନନାଙ୍କ ପାଖକୁ ଇଣ୍ଟରଭ୍ୟୁ ଭଲ ହୋଇଛି ବୋଲି ଟେଲିଗ୍ରାମ୍ କରିଦେଲି। ପରେ ଶୁଣିଲି ଯେ ବାଲେଶ୍ୱରରେ ବୋଉ ସକାଳୁ ଉଠି ପୂଜା ଘରେ ବସିଲା ଓ ଦିନ ୧୨ଟା ବେଳେ ବାହାରିଲା। ପୂଜା ଘରୁ ଫେରି ଭାଉଜଙ୍କୁ କହିଲା ନିଶ୍ଚୟ ପାଇବ।

ଇଣ୍ଟରଭ୍ୟୁ ହେଲା ମାର୍ଚ୍ଚ ୨୩ ତାରିଖରେ। ପରୀକ୍ଷା ଫଳ ଘୋଷଣା କରାଗଲା ଜୁନ୍ ପ୍ରଥମ ସପ୍ତାହରେ। ସେତେବେଳେ କଟକରେ ଆସି ରହୁଥାଏ, କାରଣ ବିନୋଦ ଭାଇନାଙ୍କ ବଦଳି ହୋଇଗଲା କଟକ। ନନା ଏକୁଟିଆ ରହିଲେ ବାଲେଶ୍ୱରରେ। ଦିନେ ସନ୍ଧ୍ୟା ବେଳେ ଖବରକାଗଜବାଲା ପାଟି କରି କରି ଗଲା - ଆଇଏଏସ ପରୀକ୍ଷା ଫଳ। ତରବର ହୋଇ ଜଣଙ୍କୁ ପଠେଇଲି ଓ ଖଣ୍ଡେ ସମାଜ କିଣି ଦେଖିଲା ବେଳକୁ ମୋ' ନାଁ ନାହିଁ । ଅର୍ଥାତ୍ ମୁଁ ପାଇନାହିଁ। ସମ୍ବାଦକୁ ବିଶ୍ୱାସ କରିବା ପାଇଁ ମୁଁ ରାଜି ନଥିଲି। ବୋଉ ମଧ କହିଲା - କାଗଜ ଭୁଲ ଲେଖିଥିବ। ଏତେ ଭଲ ସମୟ, ବର୍ଷେ ହେଲା ଦିନକୁ ୧୮ ଘଣ୍ଟା ସେ ଖଟିଛି, ସେସବୁ କ'ଣ ନଷ୍ଟ ହୋଇଗଲା? ବିନୋଦ ଭାଇନା ଓ ମୁଁ ରିକ୍ସାରେ ଗଲୁ ସମାଜ ଅଫିସ୍‌କୁ, ସେମାନେ କହିଲେ ଯେ ପ୍ରଫେସର ଶ୍ରୀରାମ ଦାଶ ଏ ଲିଷ୍ଟ ଦେଇଛନ୍ତି। ପ୍ରଫେସର ଶ୍ରୀରାମ ଦାଶଙ୍କୁ ଦେଖାକରିବାକୁ ସେ କହିଲେ ବିଜୟ ସ୍ୱାଇଁ ବୋଲି ଜଣେ କୃତି ଛାତ୍ର ପାଖରେ ଏ ଲିଷ୍ଟ ଅଛି। ବିଜୟ ସ୍ୱାଇଁ ମୋ' ସହପାଠୀ। ସେ ବିଏ ପରେ 'ଲ' ପଢୁଥିଲେ, ମୋତେ ଦେଖିଲା ମାତ୍ରେ କୁହାଟ ମାରିଲେ - ଖାଲି ହାତରେ ଆସିଛ ନା ମିଠେଇ ଧରି ଆସିଛ? ଏଇ ପ୍ରଶ୍ନଟି ଆମ ଦୁଇ ଭାଇଙ୍କର ଶୁଖି ଯାଇଥିବା ମୁହଁରେ ହସ ଫେରାଇଆଣିଲା। ଲିଷ୍ଟରେ ଦେଖିଲୁ ଯେ ମୁଁ ଓଡ଼ିଆ ଛାତ୍ରଙ୍କ ମଧ୍ୟରେ ପ୍ରଥମ ହୋଇଥିଲି। ତେଣୁ ଓଡ଼ିଶାରେ ପୋଷ୍ଟିଂ ହେବ। ସେଇଠୁ ସିଧା ଗଲୁ ଚଣ୍ଡୀ ମନ୍ଦିର ଓ ଭୋଗ ନେଇ ଘରକୁ ଫେରିଲୁ। ଦୁଇ ମହଲାରେ ଥିବା ଫ୍ଲାଟକୁ ଅନେଇଲୁ ଦେଖିଲୁ ରାସ୍ତାକୁ ମୁହଁ କରିଥିବା ରୁମ୍‌ର ଝରକା ଖୋଲା ଓ ସେଇ ଝରକା ବାଟ ଦେଇ ରାସ୍ତାକୁ ଅନଉଥିଲେ ବୋଉ ଓ ଭାଉଜ। ତା'ପରଦିନ ଖବରକାଗଜରେ ମୋ' ନାଁ ବାହାରିଲା। ନନା ବାରିପଦା ଟୁର୍‌ରେ ଯାଇଥିଲେ। ଗଣେଶ୍ୱର ଭାଇନା ଘରେ ଖାଇବସିଥିଲେ ଓ ସେ କାଗଜଟା ପଢ଼ି ଖବର ଦେଲେ। ଦୁଇଦିନ ପରେ ନନାଙ୍କ ବଦଳି ହେଲା କଟକ ଓ ସେ ଯେତେବେଳେ ଶୁଣିଲେ ଯେ ମୋର ଓଡ଼ିଶାରେ ପୋଷ୍ଟିଂ ହେବା ନିଶ୍ଚିତ, କହିଲେ ଯାହାହେଉ ଓଡ଼ିଶାରେ ମୋର ଦୁଇ ଦୁଇଟା ପୁଅ ଆଇପିଏସ୍। ସେତେବେଳେ ବଡ଼ ଭାଇ ଶରତ ଭାଇନା ଲଣ୍ଡନ ସ୍କୁଲ୍ ଅଫ୍ ଇକନୋମିକ୍ସରେ ଇଂଲଣ୍ଡ ସରକାରଙ୍କ ବୃତ୍ତି ପାଇ ପାଠ ପଢୁଥିଲେ। ଫେରିଲେ ଏସ୍‌ପି ହେବେ।

# ଚାକିରୀର ପହିଲି ଶିହରଣ

ମୋର ଆଇପିଏସ୍ ପାଇବା ଉପରେ ବିଭିନ୍ନ ପ୍ରତିକ୍ରିୟା ହେଲା। କେହି କହିଲେ ତା' ଭାଗ୍ୟ ଯୋର, ଆଉ କେହି କହିଲେ ପରିଶ୍ରମର ଫଳ ପାଇଲା। ଉଭୟ କଥା ସତ। ଜଙ୍ଗଲରେ ବୁଲୁଥିବା ସିଂହ ଯଦି ହରିଣ ପଲକୁ ଦେଖିଲା ତେବେ ତା' ଭାଗ୍ୟ ଯୋର ବୋଲି କହିବା। କିନ୍ତୁ ସେ ଶିକାର ଖାଇବା ପାଇଁ ପାଇବ ଯଦି ପରିଶ୍ରମ କରି ହରିଣଟିଏ ଧରିବ । ଶୋଇଥିବା ସିଂହ ମୁହଁରେ କେବେ ହରିଣ ପଶେ କି ?

ଆଇପିଏସ ମିଳିଲେ ମଧ୍ୟ ପଛକୁ ଅନେଇବାର ପ୍ରଶ୍ନ ନାହିଁ। ପଢ଼ା ପଢ଼ି ରୀତିମତ ଚାଲିଲା। ଆରବର୍ଷ କାଳେ ଆଇଏଏସ ମିଳିଯିବ। ଏଣେ ଟ୍ରେନିଂ ଯିବା ପାଇଁ ପ୍ରସ୍ତୁତି। ପୋଷାକ ପତ୍ର କିଣିବା ପାଇଁ ଗୁଡ଼ାଏ ଟଙ୍କା ଲାଗିବ। ନନା ଓ ବିନୋଦ ଭାଇନା ମିଶି ସେ ଟଙ୍କା ଦେଇଦେଲେ ଓ ଜୁଲାଇ ୧୬ ତାରିଖ ଦିନ ମୁଁ ମଶୌରୀରେ ପହଞ୍ଚିଲି। ଡ଼େରାଡୁନ୍ ଷ୍ଟେସନରୁ ଟ୍ୟାକ୍ସିଟେ କରି ମୁଁ ଗଲି ମସୁରୀ। ମୁଁ ଫୁଲପ୍ୟାଣ୍ଟ ଏବଂ ସାର୍ଟ ପିନ୍ଧିଥିବା ଦେଖି ଡ୍ରାଇଭର ବିସ୍ମିତ ହେଲା କାରଣ ସେ ନିଜେ ସ୍ୱେଟର ପିନ୍ଧିଥିଲା। ମସୁରୀରେ ପହଞ୍ଚି ଟ୍ୟାକ୍ସିରୁ ଓହ୍ଲାଇବା ମାତ୍ରେ ଠକ୍ ଠକ୍ ଥରିଲି। ଅଧ ଘଣ୍ଟେ ମଧ୍ୟରେ ରୁମ୍ ମିଳିଯିବାରୁ ରୁମ୍ ଭିତରେ ପଶି କମ୍ବଳ ଘୋଡ଼ି ହୋଇ ବସିଗଲି।

ଆଜିଠୁ ଚାକିରି ଜୀବନ ଆରମ୍ଭ। ମସୁରୀର ପାଗ ମୁଁ ଅନୁମାନ କରିପାରିନଥିଲି ଓ ଆଗକୁ ପଡ଼ିଥିବା ଦୀର୍ଘ ଚାକିରି ଜୀବନର ପାଗ କେମିତି ଅନୁମାନ କରିବି ? ଚାକିରିର ରାସ୍ତା ସମସ୍ତଙ୍କ ପାଇଁ ପିଚୁ ରାସ୍ତା ନୁହେଁ, ଅନେକ ଖାଲ ଢ଼ିପ ଆବଡ଼ା ଖାବଡ଼ା ରାସ୍ତା ଦେଇ ଯାଇଛନ୍ତି। ମୁଁ ଅଧିକାଂଶ ଦିନ ପିଚୁ ରାସ୍ତାରେ ଯାଇଛି ପୁଣି କେତେବେଳେ ଆବଡ଼ା ଖାବଡ଼ା ରାସ୍ତା ମୋ' ହାବୁଡ଼ରେ ପଡ଼ିଛି। ଝୁଣ୍ଟିଛି କ୍ଷତ ବିକ୍ଷତ ହୋଇଛି। କିନ୍ତୁ ଶୀର୍ଷସ୍ଥାନରେ ପହଞ୍ଚିପାରିଛି। ଯାହା କହନ୍ତି 'ଶ୍ରେୟାଣେ ବହୁ ବିଘ୍ନାନୀ' (ଶ୍ରେଷ୍ଠତା ପାଇବାକୁ ହେଲେ ବହୁ ବାଧା ବିଘ୍ନ ସହିବାକୁ ପଡ଼େ)

ପାଞ୍ଚ ଶହରୁ ଉର୍ଦ୍ଧ୍ୱ ଶିକ୍ଷାର୍ଥୀ ଅଫିସର ଓ ସେମାନଙ୍କ ମଧ୍ୟରେ ବହୁ ମହିଳା। ଦକ୍ଷିଣ ଭାରତୀୟ ମହିଳା ଅଫିସରମାନେ ରକ୍ଷଣଶୀଳ। ଦିଲ୍ଲୀ, ପଞ୍ଜାବ ଝିଅମାନେ ଅତ୍ୟାଧୁନିକ । ସେଥିରୁ କେହି କେହି ଖୋଲାଖୋଲି ସିଗାରେଟ୍ ଓ ମଦ ପିଉଥିଲେ। କ୍ଲାସ୍ କୁହ ରାସ୍ତା କୁହ ସବୁଠି ଦେଖିଲି ଏକ ମୁକ୍ତ ସମାଜ। ହାତ ଧରାଧରି ହୋଇ ପୁଅ ଝିଅ ଅପରାହ୍ଣରେ ମାର୍କେଟ୍ ବୁଲି ଯାଆନ୍ତି। ହଷ୍ଟେଲକୁ ଆସନ୍ତି ପଲ ପଲ ଦୋକାନୀ। ବିଭିନ୍ନ ପ୍ରକାର କନା ଦେଖେଇ ମାପ ନେଇଯାଆନ୍ତି ଏବଂ ସୁଟ୍, ସାର୍ଟ ସିଲେଇ କରିଆଣି ଦେଇଦିଅନ୍ତି। ହଷ୍ଟେଲର ଅନ୍ୟ ଦୃଷ୍ଟିରୁ ପରିବେଶ ଠିକ୍ ଥିଲା। ଶୀତ ପୋଷାକ

ପିନ୍ଧି ବାରଣ୍ଡାରେ ବସିଲେ ବରଫାବୃତ ହିମାଳୟ ଦିଶନ୍ତି, ପୂର୍ଣ୍ଣମୀରେ ହିମାଳୟ ସୁନା ପରି ଝଟକନ୍ତି । ଆକାଶରେ ପେଟ୍ରୋଲିଂ କରନ୍ତି ଆକାଶ ବାହିନୀର ଏରୋପ୍ଲେନ୍ । ରାସ୍ତା ଦୁଇ କଡ଼ରେ ବହୁତ ତୀବ୍ବତୀୟ ରମଣୀ ଧାଡ଼ି ବାନ୍ଧି ଉଲେନ୍ ଜିନିଷ ବିକନ୍ତି । ମୁଁ ଏଗାର ଟଙ୍କାରେ ଏକ ଧଳା ଫୁଲ ସ୍ୱେଟର କିଣିଥିଲି ଯାହାକୁ ୧୯୮୦ ମସିହାରେ ଜଣେ ମାଗିବାରୁ ଦେଇଦେଲି ।

ମୋତେ ଆଇଏଏସ୍ ପାଇଁ ପ୍ରସ୍ତୁତ ହେବାକୁ ପଡ଼ିଲା । ଏଣେ ପଢ଼ା ଯାଉଥିବା ପାଠକୁ ବୁଝି ପରୀକ୍ଷା ଦେବାକୁ ପଡୁଥିଲା । ଗୋଟିଏ ମୁଣ୍ଡରେ ଦୁଇଟି ବୋଝ, କେତେ ସମ୍ଭାଳିଥାନ୍ତି ? ତେଣୁ ଆଇଏଏସ ପ୍ରସ୍ତୁତି ପ୍ରତି ନିଘା ଦେଲି । ପଢ଼ାଯାଉଥିବା ପାଠକୁ ଅବହେଳା କଲି ତା'ଦ୍ୱାରା ମୋର କ୍ଷତି ହେଲା, ଆଇଏଏସ୍ ତ ପାଇଲି ନାହିଁ ହେଲେ ପାଠକୁ ଅବହେଳା କରିବାରୁ କମ୍ ମାର୍କ ମିଳିଲା ଓ ର୍ୟାଙ୍କ ଖସିଗଲା । ଇତୋଃ ନଷ୍ଟ ତତୋଃ ନଷ୍ଟ - (ଇଆଡ଼େ ନଷ୍ଟ ସିଆଡ଼େ ନଷ୍ଟ)

କିନ୍ତୁ ଆଲାଏଡ୍ ସର୍ଭିସ ପାଇଁ ଇଣ୍ଟରଭ୍ୟୁ ଆସିଲା । ସେତେବେଳେ ମୁଁ ମାଉଣ୍ଟଆବୁରେ ଥାଏ । ଦେଖିଲି ଅନେକ ଆଲାଏଡ୍ ଅଫିସର ଆଇପିଏସରେ ଯୋଗଦେଇଛନ୍ତି । ତେଣୁ ଇଣ୍ଟରଭ୍ୟୁ ଯିବା ପାଇଁ ମନା କରିଦେଲି ଓ ଆଉଥରେ ଆଇଏଏସ ପରୀକ୍ଷା ଦେଲି । ମାଉଣ୍ଟଆବୁରେ କଠିନ ଶାରୀରିକ ପରିଶ୍ରମ ସତ୍ତ୍ୱେ ଟିକିଏ ସମୟ ପାଇଲେ ପାଠ ପଢୁଥିଲି ଓ ଛୁଟି ନେଇ ଅହମଦାବାଦ ଗଲି ପରୀକ୍ଷା ଦେବା ପାଇଁ । ଏଥର ମଧ୍ୟ ଲିଖିତ ପରୀକ୍ଷାରେ ସଫଳ ହେଲି ଓ ସର୍ବଭାରତୀୟ ପ୍ରଶାସନିକ ସେବା ଓ ବୈଦେଶିକ ସେବା ପାଇଁ ଇଣ୍ଟରଭ୍ୟୁ ଆସିଲା । ପ୍ରଥମ ଥର ଆଇପିଏସ ପାଇଲା ପରେ ଯେଉଁମାନେ 'ହଁ ବାଜୁ ବାଜୁ ବାଜିଗଲା' କହୁଥିଲେ ସେମାନେ ମୁଁ ତିନି ତିନି ଥର ଲିଖିତ ପରୀକ୍ଷାରେ ସଫଳ ହେବା ଦେଖି ଚୁପ୍ ରହିଲେ ।

ମାଉଣ୍ଟଆବୁ ଜୀବନ ଭାରି କଷ୍ଟ । ସକାଳ ସାଢ଼େ ଚାରିଟାରୁ ଶଯ୍ୟା ତ୍ୟାଗ । ଶେଯ ଛାଡ଼ିବାକୁ ଇଚ୍ଛା ନହେଲେ ମଧ୍ୟ ହଷ୍ଟେଲ ପାଖରେ ଜଣେ କନେଷ୍ଟବଲ ଆସି ବିଗୁଲ ବଜେଇ ଦିଏ ଓ ଚମକି ପଡ଼ି ଆମେ ଉଠୁ । ଅର୍ଡ଼ର୍ଲି ନେଇ ଆସେ ଗରମ ଚା । ଅଧସା ପାଟିରେ ଚା' ପିଇଦେଇ ନିତ୍ୟକର୍ମ ସାରୁ, ଖିଅର ହୋଇ ପିଟି ଡ୍ରେସ ପିନ୍ଧି ମାର୍ଚ୍ଚ କରି ଯାଉ ପ୍ୟାରେଡ଼ ଗ୍ରାଉଣ୍ଡ । ଦେଢ଼ ଘଣ୍ଟା ପିଟି ପରେ ଦଶ ମିନିଟ୍ ରିହାତି । ସେଥିରେ ପିଟି ଡ୍ରେସ୍‌କୁ ଖୋଲି ପ୍ୟାରେଡ଼ ଡ୍ରେସ୍ ଓ ରାଇଫଲ ଧରି ଚା' ପିଇସାରି ଫଲଇନ୍ ହେବାକୁ ପଡ଼େ । ଟିକିଏ ଡ଼େରି ହେଲେ ହାବିଲଦାର ରାଇଫଲ ଟେକି ପଡ଼ିଆରେ ଏକ ଚକର ମାରିବା ପାଇଁ ଆଦେଶ ଦିଏ । ପ୍ୟାରେଡ଼ ହୁଏ ପ୍ରାୟ ଦୁଇ ଘଣ୍ଟା । ୯ଟା ବେଳକୁ ପ୍ୟାରେଡ଼ ସାରି ମାର୍ଚ୍ଚ କରିଆସୁ ହଷ୍ଟେଲକୁ । ଗାଧୋଇ ସାରି ଅନ୍ୟ ପୋଷାକ ପିନ୍ଧି

ଜଳଖିଆ ଖାଇ ଯାଉ କ୍ଲାସ୍ ଆଟେଣ୍ଡ କରିବା ପାଇଁ। ଆଇନ୍ ସମ୍ବିଧାନ ତଦନ୍ତ ପ୍ରକ୍ରିୟା ମେଡ଼ିକାଲ ବିଷୟ ଓ ଅନ୍ୟାନ୍ୟ କେତେକ ବିଷୟ ପଢ଼ାହୁଏ।

ମସୁରୀରେ ଛାତ୍ରରୁ ବାବୁ ହେଲି ଓ ମାଉଣ୍ଟଆବୁରେ ବାବୁରୁ ପୋଲିସ ସାହେବ ହେଲି। ଆମ ବ୍ୟାଚ୍‌ରେ ପଚିଶ ଜଣ ଥିଲେ ଭୂତପୂର୍ବ ସାମରିକ ଅଫିସର। ସେତେବେଳେ ସରକାର ନିୟମ କରିଥିଲେ ଯେ ଆର୍ମି ଅଫିସର କେବଳ ଗୋଟିଏ ପେପର ପରୀକ୍ଷା ଦେଇ ଓ ସ୍ୱତନ୍ତ୍ର ଇଣ୍ଟରଭ୍ୟୁ ମାଧ୍ୟମରେ ଆଇଏଏସ ଆଇପିଏସ ପାଇପାରିବେ, ସେଥିରେ ପୁଣି ସିନିୟରିଟି ପାଇବେ। ଆମ ସାଙ୍ଗରେ ଯେଉଁମାନେ ଟ୍ରେନିଂ ପାଉଥିଲେ ସେମାନେ ଆମଠୁ ଚାରି ପାଞ୍ଚ ବର୍ଷ ସିନିୟର ହୋଇଗଲେ। ସରକାର ବହୁତ ଅନ୍ୟାୟ ଆଦେଶ ଦିଅନ୍ତି ସେ ମଧ୍ୟରୁ ଇଏ ଗୋଟିଏ। ପଚିଶ ଜଣ ଭୂତପୂର୍ବ ଆର୍ମି ଅଫିସରଙ୍କ ମଧ୍ୟରୁ ଦୁଇଜଣଙ୍କ ସାଙ୍ଗେ ବନ୍ଧୁତା କରିହେଲା ବାକି ମାନେ ପ୍ରଥମେ ଇନ୍ଦ୍ର ଚନ୍ଦ୍ର ମାନିଲେ ନାହିଁ। ଏ ସମସ୍ତଙ୍କ ଘଟାଟୋପ କହିଲେ ନସରେ ଓ ସେମାନଙ୍କ କଥାକୁ ଯଦି ବିଶ୍ୱାସ କରାଯାଏ ତେବେ ଆମେ ଭାବିବା ଯେ ୧୯୬୫ ମସିହା ଭାରତ ପାକିସ୍ଥାନ ଯୁଦ୍ଧରେ ପାକିସ୍ଥାନ ହାରିବାର ମୁଖ୍ୟ କାରଣ ଏଇ କେତେ ଜଣଙ୍କର ଯୁଦ୍ଧ କୌଶଳ ଥିଲା। ଦିନେ ସେଥିରୁ ଜଣକୁ ମୁଁ ବଡ଼ ନିରୀହ ଭାବେ ପଚାରିଲି - ତୁମମାନଙ୍କ ଭଳି ବିଚକ୍ଷଣ ଅଫିସରମାନଙ୍କୁ ଆର୍ମି ଛାଡ଼ିଲା କେମିତି? ଭବିଷ୍ୟତରେ ଚୀନ୍ କିମ୍ବା ପାକିସ୍ଥାନ ସାଙ୍ଗରେ ଯୁଦ୍ଧ ହେଲେ ଭାରତ ପିଠିରେ କିଏ ପଡ଼ିବ? ଶ୍ଳେଷଟା ବୁଝିପାରି ଆର୍ମି ଅଫିସର ଜଣକ ପ୍ରଥମେ ନିରୁତ୍ତର ରହିଲେ। ମଣିଷ ଯେତେବେଳେ ଯୁକ୍ତିରେ ହାରିଯାଏ ସେ କଦର୍ଯ୍ୟ ଭାଷା ବ୍ୟବହାର କରେ କିମ୍ବା ହାତ ଉଞ୍ଚାଏ। ଏ ଭଦ୍ରଲୋକ ପ୍ରଥମ ଉପାୟଟି ଗ୍ରହଣ କରି ଓଡ଼ିଆ ଗୁଡ଼ା କେମିତି ପଛୁଆ ସେଇ କଥା କହିଲେ। ଓଡ଼ିଶାକୁ କେମିତି ଜାଣିଲ ବୋଲି ପଚାରିବାରୁ ତାଙ୍କ ପାଟିରୁ ବାହାରି ପଡ଼ିଲା - କାହିଁକି ମୁଁ କଟକରେ ଏନସିସିରେ ଥିଲି। ଏନସିସିରେ କଲେଜ ପିଲାଙ୍କୁ ଲେଫ୍ଟ ରାଇଟ୍ ଶିଖଉଥିଲି। ପାକିସ୍ଥାନକୁ କେତେବେଳେ ଘଉଡ଼େଇଲ ବୋଲି ପଚାରିବାରୁ ହାତ ଉଞ୍ଚେଇଲେ। ଦୂରରୁ ହାବିଲଦାର ଦେଖିପାରି ଧମକଟେ ଦେଲେ ଓ ପଡ଼ିଆରେ ଚାରି ଚକର ମାରିବା ପାଇଁ କହିଲେ। ଆମ ସାଙ୍ଗେ ମିଶିବା ପାଇଁ ସେମାନଙ୍କୁ ଦୁଇ ତିନି ମାସ ସମୟ ଲାଗିଲା।

ମାଉଣ୍ଟଆବୁରେ ମଧ୍ୟ ପାଠକୁ ଅବହେଳା କରିବାକୁ ପଡ଼ିଲା। କାରଣ ଆଇଏଏସ ପରୀକ୍ଷା ପାଇଁ ପ୍ରସ୍ତୁତ ଚାଲିଥାଏ। ତେଣୁ କମ୍ ମାର୍କ ମିଳିଲା। ୧୧୦ ଜଣଙ୍କ ମଧ୍ୟରେ ମୁଁ ଥିଲି ସପ୍ତମ ଓ ଓଡ଼ିଆଙ୍କ ମଧ୍ୟରେ ପ୍ରଥମ। ଟ୍ରେନିଂ ଶେଷ ହେଲା ବେଳକୁ ମୋ' ପୋଜିସନ ହେଲା ପଚିଶ। ଯଦିବା ମନ୍ଦ ନୁହେଁ, ଓଡ଼ିଶା ପୋଷ୍ଟି ହୋଇଥିବାଙ୍କ ମଧ୍ୟରେ

ମୁଁ ସବା ତଳକୁ ରହିଗଲି। ଭବିଷ୍ୟତରେ ଏଥିପାଇଁ ବହୁତ କ୍ଷତି ସହିଲି। ପ୍ରମୋଶନ ସବୁବେଳେ ପଛରେ ହେଲା।

ମସୁରୀରେ ଥିଲା ବେଳେ ଜଣେ ଭଦ୍ରମହିଳା ମୋ' ପ୍ରତି ଆକର୍ଷିତ ହୋଇଥିଲେ । ଖୁବ୍ ଉଚ୍ଚ ପରିବାରର ଓ ଅଡ଼ିଟ୍ ଆକାଉଣ୍ଟସ ସର୍ଭିସ୍‌ରେ ଥିଲେ। କିନ୍ତୁ ତାଙ୍କ ପ୍ରତି ଆକର୍ଷିତ ହେଉଥିଲେ ଜଣେ ଆଇଏଏସ ଅଫିସର। ଭଦ୍ରମହିଳା ଜଣକ ମାର୍ଜିତ ଓ ସଂସ୍କୃତି ସମ୍ପର୍ଣ୍ଣା । ତାଙ୍କ ନାଁ କହିବା ଉଚିତ୍ ମନେକରୁନାହିଁ। ମୁଁ ତାଙ୍କୁ ଦିନେ କହିଦେଲି ମୁଁ ସବୁଦିନେ ଓଡ଼ିଶାରେ ରହିବି ଓ ମୁଁ ଏକ ରକ୍ଷଣଶୀଳ ମଧ୍ୟବିତ୍ତ ପରିବାରର। ତୁମର ପରିପ୍ରେକ୍ଷୀ ଅଲଗା ତେଣୁ ଆମର ଯୋଡ଼ି, ଘିଅ ସାଙ୍ଗେ କ୍ଷୀରର ମିଶ୍ରଣ ଭଳିଆ ହେବ। ତା'ଛଡ଼ା ତୁମେ ମୋଠୁ ବୟସରେ ବଡ଼ ହେବ। ସେ କଥାକୁ ବୁଝିଲେ ଓ ତା'ପର ଠାରୁ କେବଳ ବନ୍ଧୁ ଭାବେ ବ୍ୟବହାର କଲେ। ଦିଲ୍ଲୀରେ ତାଙ୍କ ସାଙ୍ଗେ ଦେଖାହେଲା ୨୦୦୪ ମସିହାରେ। ସେ ମୋତେ ଚିହ୍ନି ପାରିଲେ, ମୁଁ ଚିହ୍ନି ପାରିଲି ନାହିଁ। ଅସମ୍ଭବ ମୋଟି କପାଳରେ ବହୁତ କୁଞ୍ଚ ଏବଂ ପ୍ରତ୍ୟେକ କୁଞ୍ଚ ତାଙ୍କ ଜୀବନରେ ଆସିଥିବା ଅନେକ ଝଡ଼ ବତାସର ସୂଚନା ଦେଉଥିଲା। ତାଙ୍କ ଦୁଃଖ କଥା ସେ ମୋତେ କହିଲେ, ସ୍ୱାମୀ ଚାଲିଗଲେ, ଝିଅଟିଏ ମରିଗଲା। ଯଦିବା ସେ ଦୁଇବର୍ଷ ପରେ ଆଇଏଏସ ପାଇଲେ ତଥାପି ଜୀବନରେ ତୃପ୍ତି କ'ଣ ଜାଣିପାରିଲେ ନାହିଁ। ସେ ଥିଲେ ବାପା ମାଆଙ୍କ ଗୋଟିଏ ସନ୍ତାନ ଓ ମୋତେ କହିଲେ ତୁମଭଳି ଭାଇଟିଏ ଥାଆନ୍ତା କି ?

ଜୀବନର ଡଙ୍ଗା ବେଳେ ବେଳେ ନାଉରୀ କଥା ନମାନି କୁଆଡ଼େ ଭାସିଯାଏ ତାହା କଳନା କରିବା କଷ୍ଟ। ଆମେ ସମସ୍ତେ କେତେ କ'ଣ ସ୍ୱପ୍ନ ଦେଖିଥିଲୁ। ସବୁ ସ୍ୱପ୍ନ କେବେ ସାକାର ହୁଏନାହିଁ।

ମାଉଣ୍ଟଆବୁ ଟ୍ରେନିଂ ପରେ ଦେଢ଼ ମାସ ଆର୍ମି ଟ୍ରେନିଂ, ତା'ପରେ ଓଡ଼ିଶାକୁ ଆସି ପିଟିସିରେ ରାଜ୍ୟ ପୋଲିସ ଟ୍ରେନିଂ ପାଇଲି। ପିଟିସିରେ ଥିବାବେଳେ ଖବର ପାଇଲି ଯେ ଆଇଏଏସ ଇଣ୍ଟରଭ୍ୟୁ ମିଳିଛି। ଜଣେ ବନ୍ଧୁ ଯିଏକି ଥରେ ଆଇପିଏସ ପାଇଗଲେ ଓ ତା'ପରେ ଯେତେଥର ପରୀକ୍ଷା ଦେଲେ ଫେଲ୍ ମାରିଲେ, ସେ କହିଲେ ତମେ ବଡ଼ ଲକି। ମୁଁ କହିଲି ହଁ ଥରେ ନୁହେଁ ଦୁଇ ଥର ନୁହେଁ ତିନି ଥର ଲକି, ସେତିକିରେ ସେ ଚୁପ୍ ରହିଲେ। ଏଥର ଆଇଏଏସ ଇଣ୍ଟରଭ୍ୟୁରେ ବିଶେଷ ଭଲ ହୋଇପାରିଲା ନାହିଁ ତଥାପି ଶତକଡ଼ା ୫୫ ମିଳିଲା। ୯୩୯ ମାର୍କ ରଖିଥିବା ଅସଂରକ୍ଷିତ ପ୍ରାର୍ଥୀମାନେ ଆଇଏଏସ ପାଇଲେ । ମୋର ନମ୍ବର ଥିଲା ୯୩୫। ସମୁଦାୟ ମାର୍କ ଥିଲା ଶତକଡ଼ା ୫୩, ପୂର୍ବବର୍ଷ ଶତକଡ଼ା ୫୦ ନମ୍ବର ଥାଇ ମଧ୍ୟ ଅନେକ ଆଇଏଏସ ପାଇଥିଲେ। ଏ ବର୍ଷ କମ୍ ସଂଖ୍ୟାରେ ଆଇଏଏସ ମିଳିଥିବାରୁ ମୁଁ ପାଇପାରିଲି ନାହିଁ। କିନ୍ତୁ ପାଇଥିଲେ

ଓଡ଼ିଶା ବାହାରେ ପୋଷ୍ଟିଂ ହୋଇଥାନ୍ତା ଓ ଘରଲୋକଙ୍କ ଠାରୁ ଦୂରରେ ରହିଥାନ୍ତି । ସାହିତ୍ୟର 'ସ' କ'ଣ ଜାଣିନଥାନ୍ତି ଓ ଆଜି ଓଡ଼ିଆରେ ମୋ' ଆତ୍ମ ଜୀବନୀ ଲେଖି ପାରିନଥାନ୍ତି । ଅଦୃଶ୍ୟ ଶକ୍ତି ଆମ ପାଇଁ ରାସ୍ତାଟିଏ ତିଆରି କରିଦେଇଛନ୍ତି ଓ ଆମେ ସେଇବାଟେ ଯିବୁ । କେଉଁଠେ ପହଞ୍ଚିବୁ ସମୟ କହିବ ଓ ସମୟ ମଧ୍ୟ କହିବ ଜଳୁଥିବା ମହମବତିଟି କେତେବେଳେ ଲିଭିଯିବ କିମ୍ବା ସରିଯିବ ।

ଅନୁଗୁଳ ପୋଲିସ ଟ୍ରେନିଂ କଲେଜରେ ତିନି ମାସ ଟ୍ରେନିଂ । ଏଇ ଟ୍ରେନିଂର ଆବଶ୍ୟକତା ଥିଲା ଏଇଥିପାଇଁ ଯେ ରାଜ୍ୟର ସ୍ୱତନ୍ତ୍ର ଆଇନ୍ ଓ ପୋଲିସ ମାନୁଆଲ ଇତ୍ୟାଦି ବିଷୟରେ ଅବଗତ ହେବା । ପ୍ରିନ୍ସପାଲ ଥିଲେ ବିନୋଦ କୁମାର ମହାପାତ୍ର ଯିଏ ଯୁଦ୍ଧ ସମୟରେ ସୈନ୍ୟ ବିଭାଗରେ ଚାକିରି କରୁଥିଲେ ଓ ସ୍ୱାଧୀନତା ପରେ ତାଙ୍କୁ ଡିଏସ୍‌ପି ଚାକିରି ମିଳିଲା । ପରେ ସେ ଆଇପିଏସକୁ ପଦୋନ୍ନତି ପାଇଲେ ଓ ବହୁତ ଦିନ କଟକ ଏସ୍‌ପି ଥିଲେ । ୧୯୬୪ ମସିହା ଛାତ୍ର ଆନ୍ଦୋଳନ ସମୟରେ ତାଙ୍କ ନେତୃତ୍ୱରେ ପୋଲିସ ବାହିନୀ କଟକରେ ଆନ୍ଦୋଳନର ମୁକାବିଲା କରିଥିଲେ । ସୈନ୍ୟ ବାହିନୀରୁ ଯେତେ ଅଫିସର ପୋଲିସ ଓ ପ୍ରଶାସନିକ ସେବାରେ ଆସିଥିଲେ ସେମାନଙ୍କ ମଧ୍ୟରେ ଖୁବ୍ ଭଲ ମେଣ୍ଟ ଥାଏ । ବାରେନ୍ ଆଇଏଏସ ପାଇ ଚିଫ ସେକ୍ରେଟେରୀ ହେଲେ । ଧର୍ମରାଜ ଆଇପିଏସ ପାଇ ଡିଆଇଜି ଥିଲେ । ସେମାନେ ଆର୍ମିର ର୍‌ୟାଙ୍କ ଅନୁସାରେ ଆଇଏଏସ ଓ ଆଇପିଏସରେ ସିନିୟରଟି ର୍‌ୟାଙ୍କ ପାଉଥିଲେ । ବିନୋଦ ମହାପାତ୍ର ଏସ୍‌ପି ପାହ୍ୟାର ହେଲେ ମଧ୍ୟ ଡିଆଇଜି ଜେମ୍‌ସ୍ ଧର୍ମରାଜଙ୍କୁ ଜିମି ଓ ଚିଫ୍ ସେକ୍ରେଟେରୀ କେନ୍‌ଥ ବ୍ୟାରେନ୍‌ଙ୍କୁ କେନି ବୋଲି ଡାକୁଥିଲେ । ଏତେ ଆନ୍ତରିକତାର ଅନ୍ୟ ଏକ କାରଣ ଥିଲା ମିଳି ମିଶି ଖାଇବା ଓ ପିଇବା । ସବୁବେଳେ ଚିରୁଟ୍ ପିଉଥିବା ବିନୋଦ ମହାପାତ୍ରଙ୍କ ଆମ୍ଭମାନଙ୍କ ପ୍ରତି ବ୍ୟବହାର ଖୁବ୍ ଭଲ କିନ୍ତୁ ଉପର ଅଫିସରଙ୍କ ପ୍ରତି ବେଖାତିର ମନୋଭାବ ବେଳେ ବେଳେ ପରିଲକ୍ଷିତ ହେଉଥିଲା । ଭାଇସ୍‌ପ୍ରିନ୍ସପାଲ ଥିଲେ ଆଶୁତୋଷ ରାୟ ଯିଏ ସବ୍‌ଇନ୍ସପେକ୍ଟରରେ ଚାକିରି ଆରମ୍ଭ କରିଥିଲେ ଓ ଡିଏସ୍‌ପି ପର୍ଯ୍ୟନ୍ତ ଗଲେ । ପିଲାଦିନେ ମୁଁ ଲୁଚେଇ ଲୁଚେଇ ଯେଉଁ ଡିଟେକ୍ଟିଭ ନଭେଲ ପଢୁଥିଲି ତନ୍ମଧ୍ୟରେ ତାଙ୍କ ଦ୍ୱାରା ଲିଖିତ 'ବ୍ଲଡ଼ ଆକ୍ସର', 'ହାଇଦ୍ରାବାଦରେ ଷଡ଼ଯନ୍ତ୍ର' ଥିଲା ଅନ୍ୟତମ । ଖୁବ୍ ଗପୁଡ଼ି ଲୋକ । ଆମକୁ ଅନେକ ଥର ଘରକୁ ଡାକି ଖାଇବା ପାଇଁ ଦେଇଛନ୍ତି । ଡ୍ରିଲ ସବ୍ ଇନ୍ସପେକ୍ଟର ଥିଲେ ଧନୁ ବାବୁ ନାମକ ଜଣେ ଲୋକ । ଦିନେ ସେ ମୋ ପାଖକୁ ମୋଟା ଫାଇଲ୍‌ଟେ ନେଇ ଆସିଲେ ଓ କ'ଣ ବୋଲି ପଚାରିବାରୁ ବଡ଼ ଦମ୍ଭର ସହିତ କହିଲେ 'ସାର୍ ପଣ୍ଡିତ ନେହେରୁ, ସର୍ଦ୍ଦାର ପଟେଲ, ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥ ଏଇମିତି ଅନେକଙ୍କ ଚିଠି ମୁଁ ରଖିଛି, ଆପଣ ପଢୁଥାନ୍ତୁ ମୁଁ ପରେ ଆସି

ନେଇଯିବି।' ମୁଁ ତଟସ୍ଥ ହୋଇ ଫାଇଲ ଆଡ଼େଇଲି। ମନ ମଧ୍ୟରେ ପ୍ରଶ୍ନ ଉଙ୍କି ମାରୁଥାଏ ଯେ ଓଡ଼ିଶାର ପୋଲିସ ଟ୍ରେନିଂ କଲେଜର ସବ୍‌ଇନ୍ସପେକ୍ଟର ପାହ୍ୟାର ଜଣେ ଲୋକକୁ ପଣ୍ଡିତ ନେହେରୁ କାହିଁକି ଚିଠି ଲେଖନ୍ତେ? ଦେଖିଲା ବେଳକୁ ସବୁ ଚିଠି ଥିଲା ସ୍ୱୀକୃତିପତ୍ର। ଭାରତବର୍ଷରେ ଏଭଳି ବଡ଼ଲୋକ କେହି ନଥିଲେ ଯାହାକୁ ଧନୁ ବାବୁ ଚିଠି ଲେଖିନାହାଁନ୍ତି। ସେ କନେଷ୍ଟବଲ ଥିଲା ବେଳୁ ଚିଠି ଲେଖି ଆସୁଛନ୍ତି ଓ ଯେହେତୁ ବିଦ୍ୟା ଅଣ ମେଟ୍ରିକ୍, ନିଶ୍ଚୟ ଓଡ଼ିଆରେ ଲେଖିଥିବେ କିନ୍ତୁ ପଣ୍ଡିତ ନେହେରୁଙ୍କ ଠୁ ଆରମ୍ଭ କରି ରାଜ ଗୋପାଳଚାରୀ, ରାଜେନ୍ଦ୍ର ପ୍ରସାଦ ବିଭିନ୍ନ ରାଜ୍ୟର ରାଜ୍ୟପାଳ ଓ ମୁଖ୍ୟମନ୍ତ୍ରୀଙ୍କ ପିଏମାନେ ଚିଠି ପାଇଲୁ ବୋଲି ଧନୁ ବାବୁଙ୍କୁ ଉତ୍ତର ଦେଇଛନ୍ତି। ମୁଁ କଥାଟାକୁ ହାସ୍ୟାସ୍ପଦ ବୋଲି କହିବି ନାହିଁ ବରଂ ସେ ସମୟର ରାଜନୈତିକ ନେତାଙ୍କର ଉଦାରତା ଓ ମହାନୁଭବତା କେତେ ଗଭୀର ତାହା ଚିନ୍ତା କରୁଥିଲି ।

ପ୍ରିନ୍ସପାଲ ଭାଇସପ୍ରିନ୍ସପାଲଙ୍କର ଆମ ପ୍ରତି ମନୋବୃତ୍ତି ଦେଖି ହାବିଲଦାରମାନେ ପ୍ୟାରେଡ୍ କ'ଣ କରେଇବେ ବରଂ ସବ୍‌ଇନ୍ସପେକ୍ଟର ଓ ଓ୍ୱାର୍ଲିସ ଏସଆଇଙ୍କର ପ୍ୟାରେଡ୍ କରେଇବା ପାଇଁ ଆମକୁ କହନ୍ତି। ତିନି ମାସ କଟିଗଲା ପରେ ଗଲୁ ରେଲଓ୍ୱେ ପୋଲିସ ଓ ରେଳବାଇ ବିଭାଗର ଟ୍ରେନିଂ ପାଇଁ। ତା'ପରେ ଜିଲ୍ଲା ପୋଲିସ ଟ୍ରେନିଂ। ମୋ' ଭାଗ୍ୟରେ ପଡ଼ିଲା ପୁରୀ। ମୋତେ ପିଟିସିର ଜଣେ ଦୁଇଜଣ ଇନ୍ସପେକ୍ଟର ଚେତାବନୀ ଦେଲେ - ସାର୍ ସେ ଏସ୍‌ପି ପ୍ରତି ଟିକିଏ ସାବଧାନ ଥିବେ ତାଙ୍କ କଥାରେ କିଛି ଠିକଣା ନାହିଁ। ପାଞ୍ଚଦିନ ମଧ୍ୟରେ ମୋତେ ଜଏନ୍ କରିବାକୁ ପଡ଼ିବ। ଇତି ମଧ୍ୟରେ ପୁରୀ ଏସ୍‌ପି ଜଣେ ଦୁଇଜଣଙ୍କୁ ଫୋନ୍ କରି ପଚାରି ସାରିଲେଣି - ସେ କେବେ ଆସିବ କେମିତି ଆସିବ? ବହପ ପାଇ ମୁଁ ତାଙ୍କୁ ଫୋନ୍ କଲି। ଫୋନ୍ କଲା ମାତ୍ରେ ସ୍ନେହବୋଳା ଧମକ ଦେଇ ପଚାରିଲେ - ତମେ କେବେ ଆସିବ ଖବର ଦେବନି ମୁଁ ବନ୍ଦୋବସ୍ତ କେମିତି କରିବି? ମୁଁ କ୍ଷମା ପ୍ରାର୍ଥନା କରି ପ୍ରୋଗ୍ରାମ ବିଷୟରେ କହିଲି। ଚାରିଦିନ ପରେ ଟ୍ରେନ୍‌ରେ ପୁରୀରେ ପହଞ୍ଚିଲା ବେଳକୁ ଷ୍ଟେସନରେ ସର୍ଜେଣ୍ଟ ମେଜର, ଟାଉନ୍ ଇନ୍ସପେକ୍ଟର ଓ ଆଉ କିଛି ପୋଲିସ ଅଫିସର ଉପସ୍ଥିତ ଥିଲେ। ଏଇଠୁ ଆରମ୍ଭ ହେଲା ଚାକିରି ଜୀବନର ଯେକୌଣସି ସରକାରୀ ଗସ୍ତ ସମୟରେ ପାରମ୍ପରିକ ଭାବରେ ପାଛୋଟି ନେବାର ଦୃଶ୍ୟ। ଅବସର ନେବା ପରେ ସରିବା କଥା କିନ୍ତୁ ମୋ' ଭାଗ୍ୟ ଏତେ ଭଲ ଯେ ଯେହେତୁ ଏକଦା ମୁଁ ସିଆଇଏସଏଫ୍‌ର ଡିଜି ଥିଲି ବିମାନ ଯାତ୍ରା କଲେ ସିଆଇଏସଏଫ ଅଫିସରମାନେ ଏଆରପୋର୍ଟରେ ପାଛୋଟି ନିଅନ୍ତି ଓ ରାଜ୍ୟର ଅନେକ ସ୍ଥାନରେ ପୋଲିସ ଅଫିସରମାନେ ସେଇଆ କରନ୍ତି। ଚିଫ୍ ସେକ୍ରେଟେରୀ ପାହ୍ୟାରେ ଅବସର ନେଇଥିବା ମୋର ଜଣେ ବନ୍ଧୁ ଏସବୁ ଦେଖି କହିଲେ - 'ଆପଣଙ୍କ

ଚାକିରି ଆମ ଚାକିରି ଠାରୁ ଭଲ । ଆପଣଙ୍କୁ ପାଛୋଟି ନେବା ପାଇଁ ଏତେ ଅଫିସର ଆସିଛନ୍ତି ଅଥଚ ମୋ'ଠାରୁ ବହୁତ ସାହାଯ୍ୟ ପାଇଥିଲେ ମଧ୍ୟ ଏସଡ଼ିଓଟେ ମଧ୍ୟ ଆସିନାହିଁ।' ମୁଁ ତାଙ୍କୁ ବୁଝେଇଲି ଯେ ଆଇଏଏସ ଅଫିସରଙ୍କର କୌଣସି ନିର୍ଦ୍ଦିଷ୍ଟ ବିଭାଗ ନାହିଁ। ଆଜି ବାଣିଜ୍ୟକର କମିଶନର ତ କାଲି ପରିବହନ କମିଶନର। ଏବର୍ଷ ଅର୍ଥ ବିଭାଗ ସେକ୍ରେଟେରୀ, ଆରବର୍ଷ ଶିକ୍ଷା ବିଭାଗ। ଆପଣ ବହୁ ବିଭାଗରେ ହାକିମ ହେଲେ ଓ ଚାକିରି ଥିବା ପର୍ଯ୍ୟନ୍ତ ଅନେକ ବିଭାଗର ସଲାମି ପାଇଲେ କିନ୍ତୁ ଆମ ବିଭାଗଟା ହେଲା ଏକ ପରିବାର ଭଳିଆ, ପରିବାରର ମୁଖ୍ୟ ସମ୍ମାନଟା ଅବସର ପରେ ମଧ୍ୟ ପାଉଛି। ଅବସରପ୍ରାପ୍ତ ସେନାବାହିନୀ ମୁଖ୍ୟ ଯେତିକି ସମ୍ମାନ ପାଆନ୍ତି ସେହି ପାହ୍ୟାର ଅବସରପ୍ରାପ୍ତ କ୍ୟାବିନେଟ୍ ସେକ୍ରେଟେରୀ ତା'ର କାଣିଚାଏ ମଧ୍ୟ ପାଆନ୍ତି ନାହିଁ। ସେ ମୁଣ୍ଡ ହଲେଇଲେ। ତା'ପରେ ହସି ହସି କହିଲେ 'କାହାର କେତେବେଳେ ଭାଗ୍ୟ ଖୋଲେ ତାହା କିଏ କହିବ ? '

ଚାରିଟା ବେଳେ ଏସ୍‌ପିଙ୍କୁ ନମ୍ବର ଓ୍ୱାନ୍ ପୋଷାକ ପିନ୍ଧି ଦେଖା କଲି। ଏସ୍‌ପି ଶ୍ରୀଯୁକ୍ତ ଏନକେ ସିଂହ ଥିଲେ ଜଣେ କଡ଼ା ମିଜାଜ୍‌ର ଅଫିସର। ସାମାନ୍ୟ ବିଶୃଙ୍ଖଳା ସହ୍ୟ କରିବେ ନାହିଁ, କଥା ହୁଅନ୍ତି କମ୍ ଓ ବିଲ୍‌କୁଲ୍ ହସନ୍ତି ନାହିଁ କହିଲେ ଚଳେ। ତାଙ୍କୁ ତଳିଆ କର୍ମଚାରୀ ଖୁବ୍ ଡରନ୍ତି। ସେଇଥିପାଇଁ ମୁଁ ଖାଇସାରି ପୋଷାକ ପିନ୍ଧୁଥାଏ ହେଡ଼କ୍ଲର୍କ ଆସି ଦେଖାକଲେ ଓ ସହାନୁଭୂତି ଦେଖାଇ କହିଲେ - ସାର୍ ତେରଟା ଜିଲ୍ଲାରୁ ଆପଣ ଏଇଠିକି କାହିଁକି ଆସିଲେ? ତା'ପରେ ଦୁଇ ଆଡ଼କୁ ଅନାଇ ଅନୁଚ୍ଚ ସ୍ୱରରେ କହିଲେ 'ସାର୍ ସାବଧାନ ଥିବେ। ସେ ମହା ହୁଙ୍କାପିଟା ଲୋକ କେତେବେଳେ ଆପଣଙ୍କୁ ଅଡୁଆରେ ପକେଇଦେବେ ଠିକଣା ନାହିଁ।' ଏସ୍‌ପିଙ୍କ ବିଷୟରେ ଏତେ ଗୁଡ଼ିଏ ନକରାତ୍ମକ ମତ ଶୁଣିଥିବାରୁ ତାଙ୍କୁ ଦେଖା କରିବା ପର୍ଯ୍ୟନ୍ତ ମୋ' ମନରେ କିଛି ଶଙ୍କା ଓ ସନ୍ଦେହ ଥିଲା। କିନ୍ତୁ ଦେଖା ହେବା ମାତ୍ରେ ମୁଁ ନିଶ୍ଚିତ ହେଲି ସେ ଏକ ନାରିକେଳ ସ୍ୱଭାବର ଲୋକ। ଉପରଟା ରୁକ୍ଷ ଓ ଶକ୍ତ ଭିତରଟା ନରମ ଓ ମଧୁର। ଯିଏ ତାଙ୍କୁ ଠିକ୍ ଭାବେ ନଚିହ୍ନିଛି ସେ ଭୁଲ୍ ବୁଝିଛି। ଦେଖା ହେବା ମାତ୍ରେ ରହିବା ଜାଗା ଠିକ୍ ଅଛି କି ବୋଲି ପଚାରି କାଗଜ ଖଣ୍ଡିଏ ବଢ଼େଇ ଦେଲେ ଯେଉଁଥିରେ ଟ୍ରେନିଂ ପାଇଁ ମୋତେ କ'ଣ କ'ଣ କରିବା ଦରକାର ଲେଖାଯାଇଥିଲା। ସେଥିରେ ଗୋଟିଏ ଧାଡ଼ି ଥିଲା ଯେ ସେ ଯେତେବେଳେ କୌଣସି ଅଫିସ ପରିଦର୍ଶନ ବା କେସ୍ ତଦାରଖ କରିବା ପାଇଁ ଯିବେ ମୁଁ ସାଙ୍ଗରେ ଯିବି। ତା' ସାଙ୍ଗେ ସାଙ୍ଗେ ମୌଖିକ ଆଦେଶ - ତମେ ସବୁଦିନେ ରାତିରେ ମୋ' ଘରେ ଖାଇବ ମୁଁ ଥାଏ ନଥାଏ। ଶ୍ରୀ ଏନ.କେ. ସିଂହ ହେଉଛନ୍ତି ବିହାରର ଲୋକ। ତାଙ୍କ ଜେଜେବାପା ସ୍ୱାଧୀନତା ସଂଗ୍ରାମୀ ଓ ବିହାର

ଆସେମ୍ବ୍ଲିର ବାଚସ୍ପତି ଥିଲେ। ଡକ୍ଟର ମହତାବ ତାଙ୍କୁ ବହୁତ ଭଲପାଉଥିଲେ ଓ ତତ୍କାଳୀନ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ (ପାଟଣା ମହାରାଜା) ତାଙ୍କ କଥାକୁ ଗୁରୁତ୍ୱ ଦେଉଥିଲେ। ଏସ୍‌ପି ମୋ' ରହିବା ପାଇଁ ସ୍ୱତନ୍ତ୍ର ରୁମ୍‌ର ବନ୍ଦୋବସ୍ତ କରିଦେବା, ଅଫିସ ରୁମ୍ ଠିକଣା କରେଇବା ସବୁଦିନ ସନ୍ଧ୍ୟାରେ ଘରକୁ ଡାକି ଟ୍ରେନିଂ ଓ ଅନ୍ୟାନ୍ୟ ବିଷୟରେ କଥାବାର୍ତ୍ତା କରିବା ଓ ଏକା ସାଙ୍ଗରେ ଖାଇବା ଦେଖି ମୁଁ ବିଚାର କଲି ଯେ ବେଳେ ବେଳେ ମଣିଷର ପ୍ରକୃତ ରୂପ କ'ଣ ଓ ଅନ୍ୟମାନଙ୍କୁ ସେ କିପରି ଦିଶନ୍ତି? ଡେ଼ଙ୍ଗା ଲୋକଙ୍କୁ ବାଙ୍ଗରା ଭାବୁଥିବା ଲୋକର ଚକ୍ଷୁ ଦୋଷ କି ମାନସିକ ବିକୃତି ତା' ଜାଣିବା କଷ୍ଟ।

ଏସ୍‌ପିଙ୍କ ସାଙ୍ଗରେ ଥରେ ଗସ୍ତରେ ଯିବା ପରେ ତାଙ୍କପ୍ରତି ମୋର ସମ୍ମାନ ଆହୁରି ବଢ଼ିଗଲା। ସେ ଟୁର୍‌ରେ ଗଲେ ଗୋଟିଏ ବାକ୍ସ ନେଇଥାନ୍ତି ଯେଉଁଥିରେ ଚାଉଳ, ଡାଲି, ଗୁଣ୍ଡ ମସଲା, ଆଳୁ, ବିନ୍, ଗୁଣ୍ଡ ଦୁଗ୍ଧ, ଅଟା ଓ ଚିନି ଥାଏ। ତାଙ୍କ ଡ୍ରାଇଭର ପଣ୍ଡା ରୋଷେଇ ଜାଣେ। ଦୁଇବେଳା ଏସ୍‌ପି ଖାଲି ଭାତ, ଡାଲି, ଆଳୁ ବିନ୍ ଭଜା ଖାଇ ରହନ୍ତି ଓ ସକାଳେ ପରଟା ଆଳୁ ଭଜା। କିନ୍ତୁ ଘରେ ପାଞ୍ଚ ପ୍ରକାର ତରକାରି। ଅଧସ୍ତନ କର୍ମଚାରୀଙ୍କ ଠାରୁ ଚା' କପେ ଗ୍ରହଣ ନକରିବା ସିନିୟର ଅଫିସର ଆମ ଦେଶରେ କେତେଜଣ ଅଛନ୍ତି?

ମୁଁ ଚାକିରିରେ ଜଏନ୍ କରିବା ପୂର୍ବରୁ ମୋତେ ନନା କେତୋଟି କଥା କହିଥିଲେ - ଟୁର୍‌ରେ ଗଲେ ସବୁଠାରୁ ଶସ୍ତା ଓ ନିକୃଷ୍ଟ ଖାଦ୍ୟ ଖାଇବୁ। ଅଧସ୍ତନ କର୍ମଚାରୀଙ୍କୁ କୌଣସି ନିର୍ଦ୍ଦିଷ୍ଟ ଖାଦ୍ୟ କରିବା ପାଇଁ କହିବୁ ନାହିଁ। ଯଦି କେଉଁଠାରେ ଶସ୍ତା ପନିପରିବା ମିଳେ ତାକୁ କିଣିବୁ ନାହିଁ କାରଣ ଘରକୁ ଆଣିଲେ ଅଡ଼ର୍ଲି ପନିପରିବା ଦେଖିବେ ତୋ'ର ପଇସା ଦେବାଟା ଦେଖିବେ ନାହିଁ। ସେଇଭଳି ଅଧସ୍ତନ କର୍ମଚାରୀଙ୍କ ଦ୍ୱାରା କୌଣସି ଜିନିଷ କିଣେଇବୁ ନାହିଁ କାରଣ ମାର୍କେଟ୍‌ରେ ପଇସା ଦେବାଟା କେହି ଦେଖନ୍ତି ନାହିଁ। କାହାଠାରୁ ଉପହାର ନେବୁନାହିଁ କି ମାଗଣା ଜିନିଷ କିଛି ରଖିବୁ ନାହିଁ। ମୁଁ ଦେଖିଲି ଏସ୍‌ପିଙ୍କୁ ମଧ୍ୟ କେହି ଏହିଭଳି ପରାମର୍ଶ ଦେଇଛନ୍ତି ଏବଂ ସେ ତାଙ୍କ ମୂଲ୍ୟବୋଧ ରକ୍ଷା କରୁଛନ୍ତି। ପରେ ସେ ସିବିଆଇରେ ଥିବାବେଳେ ସଞ୍ଜୟ ଗାନ୍ଧୀଙ୍କୁ ଗିରଫ କରିଥିଲେ ଓ ୧୯୮୦ ମସିହାରେ କଂଗ୍ରେସ କ୍ଷମତାକୁ ଫେରିବା ପରେ ହରିଆନା ପୋଲିସ ଏକ ମିଛ କେସ୍ କରି ତାଙ୍କୁ ଦିଲ୍ଲୀରୁ ହରିୟାଣା ନେଇଗଲା। କିନ୍ତୁ ତାଙ୍କର ଖ୍ୟାତି ଏତେ ଭଲ ଥିଲା ଯେ ବିଖ୍ୟାତ ଓକିଲ ରାମଜେଠ ମଲାନୀ, ବିଖ୍ୟାତ ଅବସରପ୍ରାପ୍ତ ଜଜ୍ ତାରକୁଣ୍ଡେ ଜଷ୍ଟିସ ମୁଲ୍ଲା ଓ ଅନେକ ସାମ୍ବାଦିକ ହରିୟାଣା ପୋଲିସର ପିଛା କରି ପୋଲିସ ଷ୍ଟେସନରେ ପହଞ୍ଚିଲେ। ଏ ସମସ୍ତଙ୍କୁ ଦେଖି ପୋଲିସ ଭୟକରି ତାଙ୍କୁ ହାଜତରେ

ପୁରାଇଲା ନାହିଁ ଓ ଚୌକିରେ ବସାଇଲା। ଘଣ୍ଟେ ଦୁଇ ଘଣ୍ଟା ପରେ ଏସ୍‌ପି ଆସି 'ସାର୍ ଆପଣ ଯାଆନ୍ତୁ ବୋଲି' କହିଲେ।

ଏନ.କେ. ସିଂହ ସବୁବେଳେ କହନ୍ତି ଯେ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ସମସ୍ତେ ସମ୍ମାନ ପାଇବା କଥା କିନ୍ତୁ ସବୁଠୁ ବେଶି ସମ୍ମାନ ଯିବା କଥା ଆଇନ୍‌କୁ। ଆଇନ୍ ଓ ନିଜର ବିବେକ ଅନୁସାରେ ଥରେ ନିଷ୍ପତ୍ତି ନେଇଗଲେ କେବେ ବଦଳେଇବ ନାହିଁ। ଥରେ ବଦଳେଇଲେ ସାରା ଜୀବନ ବଦଳଉଥିବ।• ଥରେ ମୁଁ ବସିଥାଏ, ଜଣେ ମନ୍ତ୍ରୀ ତାଙ୍କୁ ଫୋନ୍ କଲେ, ମନ୍ତ୍ରୀ କ'ଣ କହୁଥାନ୍ତି ମୋର ଜାଣିବାର ଉପାୟ ନଥିଲା କିନ୍ତୁ ଏସ୍‌ପି କହୁଥାନ୍ତି ସାର୍ ସେ କଥା ହୋଇପାରିବ ନାହିଁ, ମୁଁ କରିବାର ପ୍ରଶ୍ନ ଉଠୁନାହିଁ। ମୁଖ୍ୟମନ୍ତ୍ରୀଙ୍କୁ କହିବେ ? କୁହନ୍ତୁ କିନ୍ତୁ ମୋ' ଆଦେଶ ବଦଳିବ ନାହିଁ। ପରେ ମୋତେ ଏସ୍‌ପି କହିଲେ ଯେ ଗୋଟିଏ ଦଙ୍ଗା କେସ୍‌ରେ ୧୨ ଜଣ ଗିରଫ ହୋଇଥିଲେ। ସେମାନଙ୍କ ମଧ୍ୟରୁ ତିନିଜଣ ମନ୍ତ୍ରୀଙ୍କ ଲୋକ, ମନ୍ତ୍ରୀ ଚାହୁଁଥିଲେ ସେମାନଙ୍କୁ ଛାଡ଼ି ଦେବା ପାଇଁ। ଏସ୍‌ପି ମନା କଲେ। ଏସ୍‌ପିଙ୍କଠୁ ଶିଖି ମୁଁ ସବୁବେଳେ ଏଇ ନିୟମ ପାଳନ କଲି, ଯାହା ଉଚିତ ଓ ନ୍ୟାୟ ସେଇଆ କଲି ବୋଲି ବହୁତ ସ୍ଥାନରେ ମନ୍ତ୍ରୀଙ୍କ ସାଙ୍ଗରେ ଅପଡ଼ ହେଲା। ୧୯ ବର୍ଷ ଚାକିରିରେ ୧୭ ଥର ବଦଳି। ସେକଥା ପରେ ଲେଖିବା।

ଥାନା ପରିଦର୍ଶନ କରିବା ସମୟରେ ପ୍ରାୟ ଦୁଇ ଘଣ୍ଟା ପରେ ଏସ୍‌ପି ଚୌକି ମୋତେ ଛାଡ଼ ଦିଅନ୍ତି ଓ ନିଜେ ପାଖରେ ବସନ୍ତି ଓ କହନ୍ତି ଏବେ ତୁମେ ଇନ୍‌ସ୍‌ପେକ୍ସନ କର ଓ ମୁଁ ଦେଖିବି କେମିତି କରୁଛ। ସେଇଭଳି କେତେକ ଆଇନ୍ ଶୃଙ୍ଖଳା ପରିସ୍ଥିତିର ମୁକାବିଲା ପାଇଁ ମୋତେ ପଠେଇଦିଅନ୍ତି ଯଦିବା ଟ୍ରେନିଂ ପାଉଥିବା ଆଇପିଏସ୍ ଅଫିସରମାନଙ୍କୁ ଏଭଳି ଦାୟିତ୍ୱ ଦେବା କଥା ନୁହେଁ। କିନ୍ତୁ ଏସ୍‌ପିଙ୍କ ଯୁକ୍ତି ଥିଲା ଘୋଡ଼ା ଚଢ଼ିବା ଶିଖିବାକୁ ହେଲେ ଘୋଡ଼ାରେ ବସିବାକୁ ପଡ଼ିବ, ପହଁରା ଶିଖିବାକୁ ହେଲେ ପାଣିରେ ପଶିବାକୁ ପଡ଼ିବ। ତାଙ୍କଠାରୁ ଏଇ ପ୍ରକାର ଟ୍ରେନିଂ ପାଇ ମୋର ଆତ୍ମବିଶ୍ୱାସ ବହୁତ ବଢ଼ିଗଲା। ସପ୍ତାହରେ ତିନି ଦିନ ନାଇଟ୍ ରାଉଣ୍ଡ ଯିବାକୁ ପଡ଼େ। ଅର୍ଥାତ ରାତି ୧୧ ରୁ ରାତି ୩ ସାଇକେଲରେ ପୁରା ଟାଉନ ବୁଲି ଦେଖିବି ଯେ ପୋଲିସ ଠିକ୍ ଡ୍ୟୁଟି କରୁଛି କି ନାହିଁ। ରାତି ଉଜାଗର ରହିବା ମୋ' ପକ୍ଷରେ କଷ୍ଟକର ନଥିଲା କାରଣ ଆହ୍ଲାବାଦରେ ପଢ଼ିବା ଦିନୁ ମୋର ଅଭ୍ୟାସ ଜାରି ରଖିଥିଲି। ଥରେ ପେଟ୍ରୋଲିଂ ସମୟରେ ଦେଖିଲି ପୁରୀ ସ୍ୱର୍ଗଦ୍ୱାର ଆଉଟ୍‌ପୋଷ୍ଟରେ ରାତିରେ ଜଗିଥିବା କନେଷ୍ଟବଲ ଢୁଳଉଛି। ମୁଁ ଚୁପ୍‌ଚାପ୍ ଷ୍ଟେସନ ଡାଏରୀଟି ନେଇ ପଳେଇ ଆସିଲି। ତା'ପରଦିନ ସକାଳେ ଚାଲିଲା ଘଣ୍ଟା ଚକଟା। ଅଭିଜ୍ଞ ଇନ୍‌ସ୍‌ପେକ୍ଟର ଶ୍ରୀ ରାୟ ଥାନା ବାବୁଙ୍କୁ କହିଲେ 'ଏଇଟା ଏଏସ୍‌ପି ସାହେବଙ୍କ କାମ। ଦିଶୁଛନ୍ତି କଲେଜ ଟୋକା ଭଳିଆ ଓ ପିଲାବୁଦ୍ଧି

ଯାଇନି।' ମୋ' ରୁମ୍‌କୁ ଆସି ମୋତେ କହିଲେ - ସାର୍ ଆପଣଙ୍କ ପାଇଁ କୌତୁକର କଥା, କିନ୍ତୁ ଜଣେ କନ୍‌ଷ୍ଟେବଲ ଓ ହାବିଲଦାରର ଚାକିରି ଯିବ। ଆପଣ ଯାହା ବିଚାର କରିବେ।' ଇନ୍‌ସପେକ୍ଟରଙ୍କୁ ଚା କପେ ଓ କିଛି ବିସ୍କୁଟ ଖୁଆଇ ଷ୍ଟେସନ ଡାଏରୀ ବହିଟି ଫେରେଇ ଦେଲି ଓ କାହାକୁ କହିଲିନି। କିନ୍ତୁ ତିନି ଚାରି ଦିନ ପରେ ଏସ୍‌ପି ଜାଣିଲେ, ପିଲାଳିଆ ବୁଦ୍ଧି ଯାଇନି ବୋଲି ଇନ୍‌ସପେକ୍ଟରଙ୍କର ମୋ' ପ୍ରତି ମନ୍ତବ୍ୟ ମଧ୍ୟ ଶୁଣିଲେ। ମୋତେ କହିଲେ ତମେ ସେ କନେଷ୍ଟବଲକୁ ଉଠେଇ ଗାଳି ଦେଇଥାନ୍ତ ଏମିତି ଭାଷାରେ ଯେ ସେ କେବେ ଭୁଲିନଥାନ୍ତା। ତୁମେ ଷ୍ଟେସନ ଡାଏରୀ ବହିଟା ନେଇଆସିବା ଦ୍ୱାରା ଦୁଇ ଘଣ୍ଟା ଖୋଜା ପଡ଼ିଲା କାରଣ ପୋଲିସ ଭାବିଲା ଯେ କେହି ବଦମାସ ସାହି ଟୋକା ଏଇକାମ କରିଛି। କିଛିକ୍ଷଣ ଚୁପ୍ ହୋଇ ପୁଣି ଏସ୍‌ପି କହିଲେ ତୁମେ ବେଶ୍ ଉଦାର, ଉଦାର ହେବା ଭଲ କିନ୍ତୁ ଉପର ଅଫିସରଙ୍କୁ ଖବର ଲୁଚେଇବା ଠିକ୍ ନୁହେଁ। ମନେ ମନେ କାନ ମୋଡ଼ି ହୋଇ ଚାପୁଡ଼ା ମାରିହେଲି ଯେ ଏଭଳି 'ମାଙ୍କଡ଼ାମି' ଆଉ କେବେ କରିବି ନାହିଁ।

ବୋଲଗଡ଼ର ଗୋଟିଏ ଗାଁ, ସେଇଠାରେ ଦୁଇଦଳ ମଧ୍ୟରେ ଭୀଷଣ କନ୍ଦଳ। ମୁଖ୍ୟମନ୍ତ୍ରୀ ଚାହିଁଲେ ପୋଲିସ ପରସ୍ପର ପ୍ରତି ଆରୋପ କରୁଥିବା ଦୁଇ ଦଳରୁ ବିବୃତି ନେଉ ଓ ଯଦି ସମ୍ଭବ ତେବେ ସମାଧାନ କରିଦେଉ। କିନ୍ତୁ ଜଣେ ନିରପେକ୍ଷ ଅଫିସରଙ୍କୁ ପଠାଯାଉ। ଏସ୍‌ପି ମୁଖ୍ୟମନ୍ତ୍ରୀଙ୍କୁ ମୋ' ନାଁ କହିବାରୁ ମୁଖ୍ୟମନ୍ତ୍ରୀ ରାଜିହେଲେ ଓ ମୁଁ ଯାଇ ଗାଁରେ ପହଞ୍ଚିଲି। ଦୁଇ ଦଳ ଫୁଲମାଳ ଦେଇ ଅଭ୍ୟର୍ଥନା କଲେ ଓ ଯେତେବେଳେ ଏକାଠି ବସି ଖାଇଲୁ ମୁଁ ଭାବିଲି ଯେ ଏକାଠି ବସି ଖାଉଛନ୍ତି ପୁଣି କନ୍ଦଳ କ'ଣ? ନିଶ୍ଚୟ କିଛି ଛୋଟ ଘଟଣା ହୋଇଥିବ। କିନ୍ତୁ ଖାଇସାରିବା ପରେ ଯେତେବେଳେ ତଦନ୍ତ ଆରମ୍ଭ କଲି ଅତିଶୀଘ୍ର ଅନୁଭବ କଲି ଯେ ଦୁଇଦଳ ମଧ୍ୟରେ ମାନସିକ ଦୂରତା ପୃଥିବୀ ଠାରୁ ମଙ୍ଗଳ ଗ୍ରହର ଦୂରତା ବା ତା'ଠାରୁ ବେଶି। କନ୍ଦଳ ଆରମ୍ଭ ହୋଇଛି ୧୯୨୮ ମସିହାରୁ। ୧୯୨୮ରୁ ୧୯୬୯ ମଧ୍ୟରେ କେତେ ଯେ କେସ୍ ହୋଇଛି ତା'ର ଠିକଣା ନାହିଁ। ସମସ୍ୟାର ସମାଧାନ ମୋ' ସାମର୍ଥ୍ୟର ବାହାରେ ଥିଲା। ପରେ ଆସିବି କହି ବିଦାୟ ନେଲି । ଦୁଇପକ୍ଷ, ଯେଉଁମାନେ ଦଶ ମିନିଟ୍ ତଳେ ବାକ୍ ଯୁଦ୍ଧରେ ବ୍ୟସ୍ତ ଥିଲେ ସେମାନେ କାନ୍ଧକୁ କାନ୍ଧ ମିଳାଇ ମୋତେ ବିଦାୟ ଦେଲେ। ଏହାର ଅନୁରୂପ ଘଟଣା ପାଠକମାନେ ପଢ଼ିପାରିବେ ଏଚ୍.ଇ. ବିଲ୍‌ଙ୍କର 'ଇଣ୍ଡିଆନ୍ ଇଙ୍କ' ଉପନ୍ୟାସରେ। ସେଥିରେ ବର୍ଣ୍ଣିତ ହୋଇଛି କେମିତି ବାଲେଶ୍ୱରରେ ଗୋଟିଏ ଗାଁରେ ଧାନ କଟା ସରିଲେ ଗାଁର ଦୁଇଦଳ ସାଙ୍ଗ ହୋଇ ବାଲେଶ୍ୱର ଯାଆନ୍ତି, ବାଲେଶ୍ୱର କୋଟ୍‌ରେ ପରସ୍ପର ବିରୁଦ୍ଧରେ କେସ୍ କରନ୍ତି ପୁଣି ହସ ଖୁସି ହୋଇ ଫେରନ୍ତି। ଧାନ ବୁଣା ବୁଣି ଆରମ୍ଭ

ହେବା ମାତ୍ରେ କେସ୍ ଫେରେଇ ଆଣନ୍ତି। ବୋଲଗଡ଼ର ଏଇ ଗାଁରେ ମଧ୍ୟ ୧୯୨୮ ରୁ ୧୯୬୯ ପର୍ଯ୍ୟନ୍ତ ଏହିପରି ସଲାକୁସ୍ତି ଚାଲିଥିଲା। କେସ୍ ପରେ କେସ୍ ହୋଇଛି ଅଥଚ କାହାର ମୁଣ୍ଡ ଫାଟିନି କି ଘର ପୋଡ଼ିନି। ପରସ୍ପରକୁ ଡକା ଚାଲିଛି ମହାପାତ୍ରେ, ମହାନ୍ତିଏ, ରାଉତିଏ। ଗୋଟିଏ ଦଳ ନଡ଼ିଆ ପାଚେଡ଼ି କଲେ ଆଉ ଦଳେ ମାଛ ଝୋଳ କରୁଛନ୍ତି। ଏକା ସାଙ୍ଗେ ଖାଉଛନ୍ତି ଓ ପୋଲିସକୁ ବାରମ୍ବାର ଗାଁକୁ ଦଉଡ଼ଉଛନ୍ତି। ସବୁ ଶୁଣି ଏସ୍‌ପି ବହେ ହସିଲେ ଓ କହିଲେ 'ମରନେ ଦୋ'। ମୁଁ କହିଲି ସାର୍ ସେମାନେ କାହିଁକି ମରିବେ ? ବୋଲଗଡ଼ ପୋଲିସ ଧାଇଁ ଧାଇଁ ମରୁଛି। ଦରଖାସ୍ତ ପକାଉଛନ୍ତି ଚିଫ୍‌ମିନିଷ୍ଟର, ଚିଫ୍‌ଜଷ୍ଟିସ ଓ ଆଇଜିଙ୍କ ପାଖକୁ ଓ ସବୁ ଦରଖାସ୍ତ ପଡୁଛି ଥାନାବାବୁଙ୍କ ମୁଣ୍ଡ ଉପରେ।

ମୋ' ପୁରୀ ରହଣି ସମୟରେ ବିଶ୍ବ ପ୍ରସିଦ୍ଧ ନବକଳେବର ହେଲା। ସେତେବେଳର ପୋଲିସ ହାତରେ ନା ମୋବାଇଲ ଫୋନ୍, ନା ଓ୍ବାକି ଟକି। ବଡ଼ କଷ୍ଟରେ ଅଳ୍ପ କେତେକ ଓ୍ବାକି ଟକି ଅଣାଗଲା। ପ୍ରତ୍ୟେକର ଓଜନ ତିନି ଚାରି କେଜି ଲେଖାଏଁ, ପୁଣି ବେଶ୍ ବଡ଼ ଗୋଲାଇ ଓ ଅଧ ହାତ ଲମ୍ବା। ଅନ୍ କଲା ମାତ୍ରେ ପ୍ରଥମେ ମହାବାତ୍ୟାର ଶବ୍ଦ ସ୍ବାଗତ କରିବ ତା'ପରେ କଥା ହେବା ବେଳକୁ ପଚାଶ ଥର ଏଁ ଏଁ ନକଲେ ବୁଝିହେବ ନାହିଁ। କନେଷ୍ଟବଲ ଠାରୁ ଆରମ୍ଭ କରି ଇନ୍ସପେକ୍ଟର ପର୍ଯ୍ୟନ୍ତ ସମସ୍ତେ ହାପ୍ ପ୍ୟାଣ୍ଟ ପିନ୍ଧା, ସବ୍ ଇନ୍ସପେକ୍ଟର, ଇନ୍ସପେକ୍ଟର ପିନ୍ଧୁଥିଲେ ମୁଣ୍ଡରେ ସୋଲ ଟୋପି, ଗୋଡ଼ରେ ଆଣ୍ଠୁ ପର୍ଯ୍ୟନ୍ତ ପଟି। ଅଫିସର ଓ କନେଷ୍ଟବଳଙ୍କ ହାତରେ ଗୋଟିଏ ଗୋଟିଏ ଛୋଟିଆ ଲାଠି, ଅଳ୍ପ କେତେକଣ ପୋଲିସଙ୍କ ହାତରେ ୩୦୩ ରାଇଫଲ।

ନବକଳେବର ପାଇଁ ପ୍ରସ୍ତୁତି ଚାଲିଲା, ଏସ୍‌ପି ଅନେକ ଥର କଟକରେ ଆଇଜିଙ୍କ ମିଟିଂ ପାଇଁ ଗଲେ। ଡିଆଇଜି ପୁରୀରେ ଆସି ଅନେକ ଥର ମିଟିଂ କଲେ। ଖବରକାଗଜ ବାଲା ଆକଳନ କଲେ ଯେ ଯାତ୍ରୀ ଆଠଲକ୍ଷ ପର୍ଯ୍ୟନ୍ତ ହୋଇଯିବେ। ଯିଏ ପଢ଼ିଲେ ତାଙ୍କ ଆଖି ଖୋସି ହୋଇଗଲା। ଇରେ ବାବା ଏତେ ଲୋକ, ପୋଲିସ ସମ୍ଭାଳି ପାରିବ ତ ? ଗୋଟିଏ ଖବର କାଗଜ ପ୍ରସ୍ତାବ ଦେଲା ଯେ ସୈନ୍ୟବାହିନୀକୁ ଡକାଯାଉ କିନ୍ତୁ ସରକାରଙ୍କର ଆତ୍ମବିଶ୍ୱାସ ଥିଲା ଯେ ଓଡ଼ିଶା ପୋଲିସ ସେ କାମ କରିପାରିବ। ଆଇଜି ରାମକୃଷ୍ଣ ପାଢ଼ୀ, ଡିଆଇଜି ନରସିଂହ ସ୍ବାଇଁ ଓ ଏସ୍‌ପି ଏନ.କେ. ସିଂହ ଏମାନେ ଥିଲେ ଜଣାଶୁଣା ଅଫିସର। ବିଶେଷତଃ ଡିଆଇଜି ନରସିଂହ ସ୍ବାଇଁ ଓ ଏନ୍.କେ. ସିଂହ ଏତେ ବଡ଼ ଜନସମୁଦ୍ରକୁ ସମ୍ଭାଳି ପାରିବେ ବୋଲି ସରକାରଙ୍କର ବିଶ୍ୱାସ ଥିଲା।

ସେତେବେଳେ ମୁଁ ସାକ୍ଷୀଗୋପାଳ ଥାନା ଦାୟିତ୍ୱରେ ଥିଲି। ଟ୍ରେନିଂ ସମୟରେ ଆଇପିଏସ୍ ଅଫିସରଙ୍କୁ ୨ ମାସ ଥାନା ଦାୟିତ୍ୱରେ ରହିବାକୁ ହାଏ। ମୋତେ ଏସ୍‌ପି ଡାକି ଆଦେଶ ଦେଲେ ଯେ ସାକ୍ଷୀଗୋପାଳ ଅଞ୍ଚଳରେ ଥିବା ରାସ୍ତାର ଟ୍ରାଫିକ୍ ନିୟନ୍ତ୍ରଣ

ଦାୟିତ୍ୱରେ ମୁଁ ରହିବି। ତା'ସହିତ ଅପରାଧ ନିରାକରଣ ପାଇଁ ସ୍ୱତନ୍ତ ଭାବେ ଡକା ହୋଇ ଆସିଥିବା କମାଣ୍ଡାଣ୍ଟ୍ ଅମୀୟ ଭୂଷଣ ତ୍ରିପାଠୀଙ୍କୁ ସାହାଯ୍ୟ କରିବି। ମୋତେ ସହାୟତା କରିବା ପାଇଁ ଜଣେ ସର୍ଜେଣ୍ଟ ଓ ଜଣେ ସବ୍‌ଇନ୍ସପେକ୍ଟର ଦିଆଗଲା। ଟ୍ରାଫିକ୍ ନିୟନ୍ତ୍ରଣ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା କାରଣ ରାସ୍ତା ବହୁତ ଅଣଓସାରିଆ ଓ ବଙ୍କା ଟଙ୍କା ଥିଲା। ବେଶି ଦୁର୍ଘଟଣା ରାତିରେ ହେଉଥିବାରୁ ରାତିରେ ମୋତେ ଗାଡ଼ି ଚେକ୍ କରିବାକୁ ପଡୁଥିଲା। ମୋ' ପାଖେ ଜିପ୍ ତ ନଥିଲା, ମଟରସାଇକେଲ ଚଲାଇବା ତ ଶିଖିନଥିଲି ତେଣୁ ସର୍ଜେଣ୍ଟ କିମ୍ବା ସବ୍‌ଇନ୍ସପେକ୍ଟରଙ୍କ ମଟରସାଇକେଲ ପଛରେ ବସି ଯାଉଥିଲି। ସମ୍ମାନହାନିର ପ୍ରଶ୍ନ ନଥିଲା କାରଣ ଅନେକ ସ୍ଥାନକୁ ସାଇକେଲରେ ଯାଇଛି। ଥରେ ଅଧେ ଶଗଡ଼ରେ ବସି ଯାଇଥିଲି ଓ ପୁରୀକୁ ବସ୍‌ରେ ଯାଏ। ଥରେ ମଟରସାଇକେଲ ଚଲେଇବା ଶିଖିବାକୁ ଚାହୁଁଥିଲି, ସର୍ଜେଣ୍ଟ ମେଜର ହସି ହସି କହିଲେ - 'ସାର୍, ଆଇପିଏସ୍ ଅଫିସର ଟ୍ରେନିଂ ସମୟରେ ସାଇକେଲ ଚଲାନ୍ତି। ଏଏସ୍‌ପି ପୋଷ୍ଟିଂ ହେଲା ମାତ୍ରେ ଜିପ୍ ଚଢ଼ିବେ, ଏସ୍‌ପି ହେଲେ କାର ଚଲେଇବେ। ମୋଟରସାଇକେଲ ଶିଖି ଆପଣ କ'ଣ ଲାଭ ପାଇବେ ?'

ମୁଁ ରହୁଥିବା ସୁନ୍ଦର ରୁମ୍‌ଟିକୁ ଖାଲି କରିବାକୁ ପଡ଼ିଲା କାରଣ ଜଣେ ସିନିୟର ସେଠି ରହିବେ। ନବକଳେବର ସମୟରେ ମୁଖ୍ୟମନ୍ତ୍ରୀ, ଚିଫ୍ ଜଷ୍ଟିସ୍, ଚିଫ୍ ସେକ୍ରେଟେରୀ, ଆଇଜି, ମନ୍ତ୍ରୀ, ହାଇକୋର୍ଟ୍ ଜଜ୍ ଆସି ସରକାରୀ ବାସସ୍ଥାନ ରହିବେ। ସର୍କିଟ୍ ହାଉସ୍‌ରେ ୬ଟି ରୁମ୍, ଆଇବିରେ ଅଳ୍ପ କେତୋଟି। ଏମାନଙ୍କ ପାଇଁ ଜାଗା ଯଥେଷ୍ଟ ନୁହେଁ। ଏଭଳି ଶିଳ ଶିଳପୁଆ ଜାଗା ପାଉନଥିଲେ, ମୁଁ ଶିମିଳି ତୁଳା ନିଜ ରୁମ୍‌ଟାକୁ ରକ୍ଷା କିଭଳି କରିପାରିଥାନ୍ତି ? ମୋ' ରୁମ୍ ଧନ୍ୟ ହୋଇଗଲା ଯେହେତୁ ଡିଆଇଜି ସେଠି ରହିଲେ। ମୁଁ ଓ କେତେଜଣ ଅଫିସର (ଏଏସ୍‌ପି, ଏସ୍‌ପି ପାହ୍ୟାର) ଶାଳବଣି ପାଖରେ ନୂଆ ତିଆରି ହୋଇଥିବା ଶ୍ରୀ ରାଉତରାୟ ନାମକ ଜଣେ ଓକିଲଙ୍କ ଭଡ଼ାରେ ନିଆଯାଇଥିବା ଘରେ ଜାକଜୁକି ହୋଇ ରହିଲୁ। ନବକଳେବର ଦିନର କଷ୍ଟ ଭୁଲି ହେବନାହିଁ। ସକାଳ ୫ରୁ ଯିବାକୁ ହେଲା। ତେଣୁ ସାଢ଼େ ୩ଟାରୁ ଉଠିଲି। ଗୋଟିଏ ଜିପ୍‌ରେ ପାଞ୍ଚ ଜଣ ଯିବା କଥା, ଦୁଇଜଣ ସିନିୟର ସାମ୍‌ନାରେ ବସିଲେ ଓ ଆମେ ପଛରେ। ପଛରେ ବସିଥିବା ତିନିଜଣଙ୍କ ମଧ୍ୟରେ ଜଣକ ଆତ୍ମସମ୍ମାନକୁ ବୋଧେ ବାଧା ହେଲା ତେଣୁ ସେ ଡ୍ରାଇଭରକୁ ହଟେଇ ଜିପ୍ ଚଲେଇଲେ। ଏଇମିତି ଚଲେଇଲେ ଯେ ବଡ଼ଦାଣ୍ଡରେ ପହଞ୍ଚିଲା ପରେ ମୁଁ ପ୍ରଭୁ ଜଗନ୍ନାଥଙ୍କୁ ମୋର ଓ ଅନ୍ୟମାନଙ୍କର ଜୀବନ ବଞ୍ଚେଇ ଥିବାରୁ କୋଟି କୋଟି ଧନ୍ୟବାଦ ଦେଲି। ସେ ଭଦ୍ରଲୋକ ବହୁତ ଉଚ୍ଚ ପୋଜିସନକୁ ଗଲେ ଓ ଚାକିରି କାଳ ମଧ୍ୟରେ ତାଙ୍କର ଗାଡ଼ି ଚଲାରେ ଷ୍ଟିଅରିଂ ମୋଡ଼ିବା

ଓ ବ୍ରେକ୍ ମାରିବା ମଧ୍ୟରେ ସମନ୍ୱୟର ଅଭାବ ରହୁଥିବାରୁ ତାଙ୍କ ଦ୍ୱାରା ଅନେକ ବୁଲା କୁକୁର ଶହୀଦ ପ୍ରାପ୍ତ ହୋଇଥିଲେ। ମଣିଷ ଥରେ ଅଧେ ଜଖମ ହୋଇଛନ୍ତି, ମରିନାହାଁନ୍ତି କିନ୍ତୁ।

ସକାଳ ପାଞ୍ଚରୁ ସନ୍ଧ୍ୟା ପର୍ଯ୍ୟନ୍ତ ରହିବା, ପାଣି ଟୋପେ ନାହିଁ, ଖାଇବା କଥା ତ ଛାଡ଼ ଓ ପରିସ୍ରା ଲାଗିଲେ ମଣିଷ ମଲା। କିନ୍ତୁ ଜଣେ ଆଶ୍ୱାସନା ଦେଲେ ଯେ ଦେହରୁ ଏତେ ଝାଳ ବାହାରିବ ପରିସ୍ରା ଲାଗିବ କେମିତି ? ନବକଳେବର କାର୍ଯ୍ୟରେ ବ୍ୟସ୍ତ ରହୁଥାନ୍ତି କଲେକ୍ଟର ପ୍ରସନ୍ନ ପଟ୍ଟନାୟକ, ଏସ୍‌ପି ଏନ୍.କେ. ସିଂହ ଓ ମନ୍ଦିର ପ୍ରଶାସକ ପରମାନନ୍ଦ ତ୍ରିପାଠୀ। ଗୋର୍ଖା ବାହିନୀ କର୍ଡ଼ନ କରିଥାନ୍ତି ଓ ତାଙ୍କୁ ନିର୍ଦ୍ଦେଶ ଦିଆଯାଇଥାଏ ବିନା ପାସ୍‌ରେ କର୍ଡ଼ନ ଭିତରକୁ କାହାକୁ ଛାଡ଼ିବ ନାହିଁ। ଗୁର୍ଖା ବାହିନୀ କାମରେ ଭାରି ଟାଇଟ୍। ତାଙ୍କ ଓଏମ୍‌ପିର ଡିଆଇଜି ପୋଲିସ ପୋଷାକ ପିନ୍ଧିଥିବା ଶ୍ରୀ ଶ୍ୟାମ ସୁନ୍ଦର ପାଢ଼ୀ ଆସିଲେ କିନ୍ତୁ ଗୁର୍ଖା ହାବିଲଦାର ସାଲ୍ୟୁଟଟିଏ ମାରିଲେ ସିନା ଛାଡ଼ିବା ପାଇଁ ମନା କଲେ। କହିଲେ ଏସ୍‌ପି କିମ୍ବା ଏଏସ୍‌ପିଙ୍କ ଠାରୁ ପରମିଶନ ଆଣନ୍ତୁ। ଡିଆଇଜିଙ୍କ ଦୁର୍ଦ୍ଦଶା ମୁଁ ଦୂରରୁ ଦେଖିପାରି ଆସିଲି ଓ ଓଏସ୍‌ପି ସୁବେଦାରଙ୍କୁ ମୁଁ ପଚାରିଲି, ତାଙ୍କୁ କ'ଣ ଆପଣ ଜାଣି ନାହାଁନ୍ତି ? ଉତ୍ତର ମିଳିଲା ହାଁ ସାହେବ, ହମାର ଡିଆଇଜି ହେଁ ଲେକିନ୍ କର୍ଡ଼ନ ପାସ୍ ନେହିଁ ହେଁ ଔର ଆପ୍‌କା ହୁକୁମ୍ ନେହିଁ ହେ। କୈସେ ଜାନେଦୁଙ୍ଗା ? ମୁଁ ଅନୁମତି ଦେବାରୁ ସେ ଛାଡ଼ିଦେଲେ। ଶ୍ରୀଯୁକ୍ତ ପାଢ଼ୀଙ୍କ ଆଗରେ ମୁଁ ଦୁଃଖ ପ୍ରକାଶ କରିବାରୁ ସେ ମୋତେ ଓଲଟି କହିଲେ - 'ବୁଝିଲ କି ହେ ବିପିନ୍ ବାବୁ ମୁଁ ହେଲି ଓଏମପିର ମାଲିକ। ମୋ' ଫୋର୍ସ ଷ୍ଟ୍ରଙ୍ଗ ହେଲେ ମୋର ଖ୍ୟାତି ବଢ଼ିବ ତେଣୁ ଆପଣ ଦୁଃଖ ପ୍ରକାଶ କାହିଁକି କରୁଛନ୍ତି ?' ମୋର କିନ୍ତୁ ଭୟ ଥିଲା ଯେ କାଳେ ଗୁର୍ଖା ଫୋର୍ସ ମୁଖ୍ୟମନ୍ତ୍ରୀଙ୍କୁ ରୋକିଦେବେ। ଏ ପ୍ରଶ୍ନ ଉଠାଇବାରୁ ଏସ୍‌ପି କହିଲେ ସମସ୍ତଙ୍କୁ କର୍ଡ଼ନ ପାସ୍ ଦିଆହୋଇଛି। ସତକୁ ସତ ମୁଖ୍ୟମନ୍ତ୍ରୀ ଆସିବା ସମୟରେ ତାଙ୍କ ପ୍ରାଇଭେଟ୍ ସେକ୍ରେଟେରୀ ଦୁଇଟି କର୍ଡ଼ନ ପାସ୍ ଦେଖେଇଲେ ଓ ଗୁର୍ଖା ହାବିଲଦାର ସାଲ୍ୟୁଟ ମାରି ଛାଡ଼ି ଦେଲା। ଏ ସଂକ୍ରାନ୍ତରେ ଭାରତର ବଡ଼ଲାଟ ଲର୍ଡ଼ କର୍ଜନ ଓ ସେନାଧକ୍ଷ ଜେନେରାଲ କିଚନରଙ୍କ ମଧ୍ୟରେ ହୋଇଥିବା କଲମ ଯୁଦ୍ଧ ମନେ ପକାଯାଇପାରେ। ବିନା ପ୍ରୋଗ୍ରାମରେ ଲର୍ଡ଼ କର୍ଜନ ସେନା ବାହିନୀ ଅଧୀନରେ ଥିବା ଲାଲ୍‌କିଲ୍ଲା ଦ୍ୱାରଦେଶରେ ଆସି ପହଞ୍ଚିଗଲେ। ମୁତୟନ ଥିବା ସୈନିକ ତାଙ୍କୁ ସମ୍ମାନ ଦେଖାଇଲେ ସିନା ଭିତରକୁ ଛାଡ଼ିଲେ ନାହିଁ। ଲର୍ଡ଼ କର୍ଜନ ବିରକ୍ତ ହୋଇ ଫେରିଗଲେ ଓ ଜେନେରାଲ କିଚନରଙ୍କୁ ଚିଠି ଲେଖିଲେ ଉକ୍ତ ସୈନିକକୁ ବରଖାସ୍ତ କରିବା ପାଇଁ। କିଚନର ମନାକଲେ। କଲମ ଯୁଦ୍ଧ ବହୁତ ଦିନ ପର୍ଯ୍ୟନ୍ତ ଚାଲିଲା। କଥା ଗଲା ଇଂଲଣ୍ଡର ପ୍ରତିରକ୍ଷା

ମନ୍ତ୍ରଣାଳୟକୁ ଓ ସୈନିକ ଜଣଙ୍କର କିଛି କ୍ଷତି ହେଲାନାହିଁ। ସେହିପରି ୧୯୪୧ ମସିହାରେ ଓଡ଼ିଶାର ଗଭର୍ଣ୍ଣର ହଥର୍ଣ୍ଣ ଲୁଇସଙ୍କ ଗାଡ଼ି ବିନା ପ୍ରୋଗ୍ରାମରେ ଆସୁଥିଲା। ମଙ୍ଗଳାବାଗ ଛକରେ ପ୍ରବଳ ଭିଡ଼ ହୋଇଥିବାରୁ ଟ୍ରାଫିକ୍ ହାବିଲଦାର ଗଭର୍ଣ୍ଣରଙ୍କ ଗାଡ଼ିକୁ ଅଟକାଇ ଅନ୍ୟ ଦିଗରୁ ଆସିଥିବା ରିକ୍ସା ଓ ଗାଡ଼ିମାନଙ୍କୁ ପାସ୍ ଦେଲେ। ଏଥିରେ ରାଜ୍ୟପାଳ ଯେତିକି ରାଗିଲେ ତାଠୁ ବେଶି ରାଗିଲେ ତାଙ୍କ ଏଡ଼ିସି। ଉପରସ୍ଥ ହାକିମଙ୍କର କ୍ରୋଧାଗ୍ନିରେ ଘୃତ ଦାନ କରିବା ଆମ ଅଫିସରମାନଙ୍କର ପୁରୁଣା ଅଭ୍ୟାସ। ରାଜ୍ୟପାଳଙ୍କ ତରଫରୁ ଏଡ଼ିସି, ଏସ୍‌ପିଙ୍କୁ ଚିଠି ଲେଖିଲେ ଉକ୍ତ ହାବିଲଦାରଙ୍କୁ ତୁରନ୍ତ ଡିସ୍‌ମିସ୍ କରି ରିପୋଟ୍ ଦିଅନ୍ତୁ। ବ୍ରିଟିଶ ଶାସନ, ରାଜ୍ୟପାଳଙ୍କ ଅଖଣ୍ଡ କ୍ଷମତା, ଫୁଙ୍କିଦେଲେ କଲେକ୍ଟର ଏସ୍‌ପି ଉଡ଼ିଯିବେ। ସାମାନ୍ୟ ହାବିଲଦାରକୁ କିଏ ପଚାରୁଛି ? କିନ୍ତୁ ଏସ୍‌ପି ମିଷ୍ଟର ହାରଗ୍ରୀଭ୍‌ସ୍ ଘଟଣାର ସମ୍ପୂର୍ଣ୍ଣ ତଦନ୍ତ କରି ଚିଠି ଲେଖିଲେ ଯେହେତୁ ପ୍ରୋଗ୍ରାମ ନଥିଲା ହାବିଲଦାରଙ୍କର ଜାଣିବାର ଉପାୟ ନଥିଲା ଯେ ଗଭର୍ଣ୍ଣର ସାହେବ ଆସୁଛନ୍ତି। ଯଦିଓ ଗାଡ଼ି ରାଜଭବନର, ସେଥିରେ ଗଭର୍ଣ୍ଣର ବସିଛନ୍ତି ନା ନାହିଁ ସେ କେମିତି ଅବା ଜାଣିବେ ? ତେଣୁ ଅନ୍ୟ ଗାଡ଼ିକୁ ଆଗ ଛାଡ଼ିବା ପାଇଁ ବାଧ୍ୟ ହେଲେ ଓ ମୋ' ମତରେ ସେ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ। ସାମାନ୍ୟ ଭାବପ୍ରବଣ ହୋଇ ଏସ୍‌ପି ଲେଖିଲେ ଯେ ମୋର ଫୋର୍ସ ପ୍ରତି ଏକ କର୍ତ୍ତବ୍ୟ ଅଛି ଏବଂ ମୋର ଏ ଚିଠି ପାଇବା ପରେ ଯଦି ମାନ୍ୟବର ରାଜ୍ୟପାଳ ହାବିଲଦାର ଡିସ୍‌ମିସ୍ ହେବେ ବୋଲି ନିଷ୍ପତି ନିଅନ୍ତି ତେବେ ସେ ଆଦେଶ ମୋତେ ପଠାଇବା ପରିବର୍ତ୍ତେ ମୋର ଏଥିସହିତ ସଂଲଗ୍ନ ହୋଇଥିବା ଇସ୍ତଫାପତ୍ରକୁ ଗ୍ରହଣ କରି ମୋର ପରବର୍ତ୍ତୀ ଏସ୍‌ପିଙ୍କୁ ସେ ଆଦେଶ ଦିଆଯାଉ। ରାଜ୍ୟପାଳ ଏସ୍‌ପିଙ୍କୁ ଡକେଇ ତାଙ୍କର ନିରପେକ୍ଷତା ଓ ସାହସିକତା ପାଇଁ ଧନ୍ୟବାଦ ଦେଲେ ଓ ଆଦେଶ ପ୍ରତ୍ୟାହାର କଲେ। ଆଜିକାଲି ରାଜନୀତି ହେଉ କିମ୍ବା ଶାସନରେ ହେଉ ଦୁଧ ଦାନ୍ତ ପଡ଼ିନଥିବା ଚରିତ୍ରଙ୍କୁ ଯଦି କେହି ଅଟକାଏ ସେ ସାଙ୍ଗେ ସାଙ୍ଗେ ପଚାରିବେ - ଜାଣିଛ ମୁଁ କିଏ ? ମୂଲ୍ୟବୋଧ କମୁଛି ସତ କିନ୍ତୁ ଏକଥା ମାନିବାକୁ ପଡ଼ିବ । ଇତିହାସ ଚକପରି ଘୂରେ ଓ ଯାହା ତଳକୁ ଯାଏ ସେ ପୁଣି ଉପରକୁ ଉଠେ। ସେଦିନ ଦେଖିବା ପାଇଁ ଆମେ ବଞ୍ଚିଥିଲେ ହେଲା।

ସେହି ସମୟରେ ସୀମାନ୍ତ ଗାନ୍ଧୀ ଭାରତଗସ୍ତରେ ଆସି ଓଡ଼ିଶାକୁ ଆସିଲେ। ତାଙ୍କ ଗାଡ଼ିକୁ ପାଇଲଟିଂ କରିବା ଦାୟିତ୍ୱ ମୋର ଥିଲା। ଏସ୍‌ପିଙ୍କ ସାଙ୍ଗରେ ମୁଁ ଏୟାରପୋର୍ଟ ଗଲି। ସେଇଠି ଜଣେ ସିନିୟର ଅଫିସର ଏସ୍‌ପିଙ୍କୁ ପଚାରିଲେ - ସୀମାନ୍ତ ଗାନ୍ଧୀଙ୍କ ଗସ୍ତ ଉପରେ ସାରା ପୃଥିବୀ ଦୃଷ୍ଟି ରଖିଛି। ତାଙ୍କ ପାଇଁ କଡ଼ା ସିକ୍ୟୁରିଟି ହୋଇଛି। ତାଙ୍କୁ ପାଛୋଟି ଆଣିବା ପାଇଁ ପ୍ରଧାନମନ୍ତ୍ରୀ ଦିଲ୍ଲୀ ଏୟାରପୋର୍ଟକୁ ଯାଇଥିଲେ, ତେଣୁ ଗସ୍ତର

ଗୁରୁତ୍ୱ ତୁମେ ବୁଝିପାରୁଥିବ। କେଉଁ ହିସାବରେ ତୁମେ ଟ୍ରେନିଂ ପାଉଥିବା ଏଏସ୍‌ପିଙ୍କୁ ଏ ଦାୟିତ୍ୱ ଦେଲ ? ଯଦି କିଛି ଏପଟ ସେପଟ ହୁଏ କିଏ ଦାୟୀ ହେବ ? ଏସ୍‌ପି କହିଲେ ମୁଁ ଦାୟୀ ହେବି କିନ୍ତୁ ମୁଁ ଭଲଭାବେ ଜାଣେ ଯେ ମୋ' ଏଏସ୍‌ପି କିଛି ଭୁଲ୍ କରିବ ନାହିଁ। ଏସ୍‌ପିଙ୍କୁ ଗଭର୍ଣ୍ଣର ଡାକି କଥା ହେବା, ପିଠି ଥାପୁଡ଼େଇବା ମୁଖ୍ୟମନ୍ତ୍ରୀ ପାଖକୁ ଡାକି କଥାବାର୍ତ୍ତା କରିବା ଦେଖି କେତେଜଣ ପ୍ରଶାସନିକ ଓ ପୋଲିସ ଅଫିସର ଚାପା ଗଳାରେ କଟୁ ମନ୍ତବ୍ୟ ଦେଲେ। ଈର୍ଷାଜନିତ ଓ ଈର୍ଷୁକ ଲୋକ ନିଜେ କ୍ଷତି ସହେ ଏକଥା ସମସ୍ତେ ଜାଣନ୍ତି । ଏଇ ସମୟରେ ଏକ ଅପ୍ରୀତିକର ଘଟଣା ଘଟିଲା। ସେକ୍ରେଟେରିଏଟ୍ ପଡ଼ିଆ ସାମ୍‌ନାରେ ଖାନ୍ ସାହେବଙ୍କ ମିଟିଂ ହେଲା ଓ ମଣ୍ଡପ ପଛ ପଟେ ଆଇଜି, କମିଶନର, ଡିଆଇଜି ଓ ଏସ୍‌ପିଙ୍କ ଛଡ଼ା ଆଉ କେହି ରହିବେ ନାହିଁ ବୋଲି ମୁଖ୍ୟମନ୍ତ୍ରୀଙ୍କ କଡ଼ା ନିର୍ଦ୍ଦେଶ ଥିଲା। ମଣ୍ଡପ ଉପରେ ଖାନ୍ ସାହେବ ମୁଖ୍ୟମନ୍ତ୍ରୀ ଓ ଉପମୁଖ୍ୟମନ୍ତ୍ରୀ ରହିଲେ। ମୋତେ ରଖାଯାଇଥାଏ ଏସ୍‌ପିଙ୍କ ପାଖରେ କାରଣ ଖାନ୍ ସାହେବଙ୍କ ଗାଡ଼ି ମୁଁ ପାଇଲଟିଂ କରି ନେବି। ମିଟିଂ ଚାଲିଥାଏ ମୁଁ ଦେଖିଲି ଗେଟ୍ ପାଖେ ଠିଆ ହୋଇଥିବା ପୋଲିସ ସବ୍‌ଇନ୍ସପେକ୍ଟରଙ୍କ ସାଥିରେ କେହିଜଣେ ହାତ ହଲେଇ ପାଟିତୁଣ୍ଡ କରୁଛନ୍ତି। କଥାଟା କ'ଣ ବୁଝିବା ପାଇଁ ଗଲି ଓ ଜଣାପଡ଼ିଲା ଯେ ମନ୍ତ୍ରୀ ହରିହର ପଟେଲ ମଣ୍ଡପ ତଳକୁ ଆସିବା ପାଇଁ ଚାହୁଁଛନ୍ତି ଓ ନଛାଡ଼ିବା ପାଇଁ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶ ଅଛି ବୋଲି ସବ୍‌ଇନ୍ସପେକ୍ଟର ବୃନ୍ଦାବନ ମିଶ୍ର କହିବାରୁ ମନ୍ତ୍ରୀଙ୍କ ପିଏ କହୁଥାନ୍ତି ଜାଣିଛନ୍ତି ଏହାର ଫଳ କ'ଣ ହେବ ? ପିଏ ସାଙ୍ଗେ କଥା ନହୋଇ ମୁଁ ମନ୍ତ୍ରୀଙ୍କ ପାଖକୁ ଗଲି ଓ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶ ଅଛି ବୋଲି କହିବାରୁ ସେ ଧୀର ସ୍ୱରରେ କହିଲେ ମୁଁ କେଉଁଠି ବସିବି ? ମନ୍ତ୍ରୀମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ହୋଇଛି ବୋଲି କହି ମୁଁ ତାଙ୍କ ସାଙ୍ଗରେ ଜଣେ ଅଫିସରଙ୍କୁ ପଠାଇଲି ଓ ସେ ସେଇଠାରେ ବସିଲେ। ବସିଲା ପୂର୍ବରୁ ମୋ' ଆଡ଼କୁ ଅନେଇ ହାତ ହଲେଇଲେ। ଏଇ ଘଟଣା ମୁଁ ଏସ୍‌ପିଙ୍କୁ କହିବାରୁ ସେ ଆଇଜି ଓ କମିଶନରଙ୍କୁ କହିଲେ ଓ ଉଭୟ ସେ ସବ୍‌ଇନ୍ସପେକ୍ଟରଙ୍କୁ ସାବାସି ଦେବା ପାଇଁ ଏସ୍‌ପିଙ୍କୁ କହିଲେ।

ସାକ୍ଷୀଗୋପାଳ ଥାନା ଦାୟିତ୍ୱରେ ଥିବା ସମୟରେ ଅନେକ ପୁରୁଣା ଦେୱାନୀ କେସ୍‌ର ମୁଁ ରାଜିନାମା କରେଇଛି। ଦେୱାନୀ କେସ୍ ପାଇଁ ମାର୍‌ପିଟ୍ ହେଉଥିଲା, ଡେର କଟିବାରୁ ଗଛ ମରିଗଲା। ଥରେ ଗୋଟିଏ ଗାଁକୁ ଯାଇଥିଲି ଫଇସଲା କରିବା ପାଇଁ, ସେଇଠାରେ ଅଙ୍କ ଉଚ୍ଚ ଓ ଆଭିଜାତ୍ୟ ପୂର୍ଣ୍ଣ କଥାବାର୍ତ୍ତା କରୁଥିବା ଜଣେ ଭଦ୍ରଲୋକଙ୍କୁ ତାଙ୍କ ନାଁ ପଚାରିବାରୁ ସେ କହିଲେ ମୋ' ନାଁ ହରିହର ମହାପାତ୍ର। ବେଶଭୂଷା ଶାସେନି ବ୍ରାହ୍ମଣଙ୍କ ଭଳି କିନ୍ତୁ କଥାବାର୍ତ୍ତା ଭିନ୍ନ ହୋଇଥିବାରୁ ପୁଣି ପଚାରିଲି - ଆପଣ ଗାଁରେ ନାଁ

ସହରରେ ରହନ୍ତ ? ଆଉ ସମ୍ଭାଳି ନପାରି ଜଣେ ବୁଢ଼ା ବ୍ରାହ୍ମଣ କହିଲେ - 'ତେମେ ଜାଣିନ କିଓ ? କି ଅଫିସର ହେଇଛ ହେ ? ହରିକୁ ଜାଣିନ ? ବିହାର ଆଡ଼େ କେଉଁ ରାଜ୍ୟରେ ଜଜ୍ ହୋଇଥିଲା ପରା ।' ଏବେ ମୁଁ ନିଜ ଭୁଲ୍ ବୁଝି ପାରିଲି ଯେ, ସବୁଜ ସାରଥି ଓ ଅବସରପ୍ରାପ୍ତ ଜଜ୍ ହରିହର ମହାପାତ୍ରଙ୍କ ସାଙ୍ଗରେ ମୁଁ କଥାବାର୍ତ୍ତା ହେଉଥିଲି । ତାଙ୍କ ଶିଷ୍ଟାଚର ଓ ନମ୍ରତା ଭୁଲିହେବ ନାହିଁ । ଯାହା କୁହନ୍ତି 'ନମ୍ରନ୍ତି ଫଳିନ ବୃକ୍ଷା ନମ୍ରନ୍ତି ଗୁଣିନଃ ଜନାଃ ।' ଫଳ ପୂର୍ଣ୍ଣ ଗଛ ନଇଁଗଲା ପରି ଗୁଣୀ ଲୋକ ନଇଁ ଯାଆନ୍ତି ।

ପୁରୀରେ ଟ୍ରେନିଂ ସରିଲା । ଇତି ମଧ୍ୟରେ ଜିଲ୍ଲାପାଳ ଓ ଏସ୍‌ପିଙ୍କ ମଧ୍ୟରେ ବହୁତ ବାଦ ବିବାଦ ହେଲା । କଳି ଲଗେଇଲେ ଅଳ୍ପ କେତେଜଣ ଓଏଏସ୍ ଅଫିସର । ପ୍ରତ୍ୟେକ ଜିଲ୍ଲାରେ ମୁଷ୍ଟିମେୟ ଅଫିସର ଚାହାଁନ୍ତି ନାହିଁ ଜିଲ୍ଲାପାଳ ଓ ଏସ୍‌ପିଙ୍କ ମଧ୍ୟରେ ଭଲ ସମ୍ପର୍କ ରହୁ । ସେମାନଙ୍କ ଯୋଜନା ଓ ଉଭୟ ଜିଲ୍ଲାପାଳ ଏସ୍‌ପିଙ୍କର ପ୍ରଚଣ୍ଡ ଆତ୍ମାଭିମାନ ବିବାଦକୁ ବହୁ ଉପରକୁ ନେଇଗଲା । ଶେଷରେ ସରକାର ନିଷ୍ପତି କଲେ ଉଭୟ ବଦଳି ହେବେ । ଏସ୍‌ପି ଗଲେ କୋରାପୁଟ ଓ କଲେକ୍ଟର ଗଲେ ଫୁଲବାଣୀ । ଏସ୍‌ପିଙ୍କ ପାଇଁ ସାମାନ୍ୟ ଅପମାନ ଜିଲ୍ଲାପାଳଙ୍କ ପାଇଁ ବେଶି । ଯିବା ପୂର୍ବରୁ ଏସ୍‌ପି ମୋତେ ପଚାରିଲେ - ତମେ ମୋ ସାନ ଭାଇ ଭଳିଆ ମୋ' କାମରେ ତ୍ରୁଟି କ'ଣ ଦେଖିଲ ବିନା ଦ୍ୱିଧାରେ କୁହ । ଧର୍ମ ସଂକଟରେ ମୁଁ ପଡ଼ିଲି । ଜଣେ ରାଜା ବିଦୂଷକଙ୍କୁ ପ୍ରଶ୍ନ ପଚାରିଲା ପରି ଏ ପ୍ରଶ୍ନ । ଏଣୁ ମାଇଲେ ବ୍ରହ୍ମ ହତ୍ୟା ତେଣୁ ମାଇଲେ ଗୋହତ୍ୟା । ଚୁପ୍ ରହିଲି କିନ୍ତୁ ଏସ୍‌ପି ନଛୋଡ଼ ବନ୍ଧା । ପୁଣିଥରେ ସେ ପ୍ରଶ୍ନକୁ ଦୋହରାଇଲେ ଓ ମୁଁ ବାଧ୍ୟ ହୋଇ କହିଲି - ତିନୋଟି ଜିନିଷ ମୋ' ଦୃଷ୍ଟିରେ ପଡୁଛି । ପ୍ରଥମ ହେଲା, କର୍ମଚାରୀଙ୍କୁ ଠିଆ କରି ଉଚ୍ଚ ପାଟିରେ କଥାବାର୍ତ୍ତା ହେବା । ଦ୍ୱିତୀୟ, ଅଳ୍ପ ଦୋଷରେ ବେଶୀ ଦଣ୍ଡ ଦେବା ଓ ତୃତୀୟ ...

ଚୁପ୍ ରହିଲ କାହିଁକି କହୁନ ? ପ୍ରଥମ ଦୁଇଟି କଥା ମାନୁଛି କିନ୍ତୁ ତୃତୀୟଟା କ'ଣ ?

ଏଥର ସାହସ ବାନ୍ଧି କହିଲି - ସାର୍ ଆପଣ ଓଡ଼ିଆଟା କଥିତ ଭାଷା ନକହି ଲିଖିତ ଭାଷା କହୁଛନ୍ତି । ବର୍ଣ୍ଣବୋଧ ପଢ଼ି ଯଦି ଆପଣ ଓଡ଼ିଆ କହିବେ ତେବେ ସମସ୍ତେ ପଛରେ ହସିବେ । ଏହା ଶୁଣି ସେ କଥିତ ଭାଷା ଶିଖିବା ପାଇଁ ଚେଷ୍ଟା କରିବେ ବୋଲି କହିଲେ ।

ଏସ୍‌ପିଙ୍କ ସଙ୍ଗେ ବହୁତ ଥର ମୁଁ ଗାଡ଼ିରେ ଯାଇଛି । ଡ୍ରାଇଭର ଗାଡ଼ିର ବେଗ ଟିକିଏ ବଢ଼େଇ ଦେଲେ ଏସ୍‌ପି ବର୍ଣ୍ଣବୋଧରୁ ଶବ୍ଦ ବାହାର କରି କହନ୍ତି - 'ପଣ୍ଡା,

ଏତେ ତୁରନ୍ତ ବେଗରେ ଗାଡ଼ି ଚାଳନା କଲେ ଦୁର୍ଘଟଣାର ଭୟ ଅଛି।' ଏମିତି ଅନେକ ବାକ୍ୟ ଶୁଣି ମୁଁ ବଡ଼ କଷ୍ଟରେ ହସକୁ ରୋକେ।

ଥରେ ଜଣେ କନେଷ୍ଟବଲ ଛୁଟି ଦରଖାସ୍ତ ଧରି ଆସି ପହଞ୍ଚିଲେ, ମୁଁ ପାଖରେ ବସିଥାଏ। ଏସ୍‌ପି ଘୋଷଣା କଲେ - ଛୁଟି ଦରଖାସ୍ତ ଗ୍ରହଣ କରାଯିବ ନାହିଁ ଯେହେତୁ ନବକଳେବର ଆସୁଛନ୍ତି। ଦରଖାସ୍ତ ଫେରସ୍ତ ନିଅ। ବିଚରା କନେଷ୍ଟବଲଟି କାକୁତି ମିନତି କରି କହିଲା - ହଜୁର ଘରୁ ଚିଠି ଆସିଛି ମୋ' ସ୍ତ୍ରୀର ପିଲାଛୁଆ ହେବ। କନେଷ୍ଟବଲକୁ ସଂଶୋଧନ କରିବାକୁ ଯାଇ ଏସ୍‌ପି କହିଲେ ପିଲାଛୁଆ ହେବ? ହେବ କ'ଣ? କୁହ ଅଛନ୍ତି। ମୁଁ ତାଙ୍କୁ ଇଂରାଜୀରେ ବୁଝେଇବା ପାଇଁ ଯାଉଥିଲି ମୋତେ କହିଲେ ମୁଁ କ'ଣ ଓଡ଼ିଆ ଜାଣିନି ଯେ ମୋତେ ବୁଝଉଛ? ଏସ୍‌ପି କହିବା ସତ୍ତ୍ୱେ କନେଷ୍ଟବଲ ମିଶ୍ର କ'ଣ କହୁଛି ସେ କଥା ଇଂରେଜୀରେ ବୁଝେଇବାରୁ କନେଷ୍ଟବଲ ମିଶ୍ରଙ୍କୁ ତାଙ୍କର ଓଡ଼ିଆ ଜ୍ଞାନ କିପରି ସୀମିତ ତାକୁ ଦର୍ଶାଇବା ପାଇଁ ସେ କହିଲେ - 'ଯାହା କହିବ ସ୍ପଷ୍ଟ କହିବ। କୁହ ମୋ' ସ୍ତ୍ରୀ ଗର୍ଭବତୀ ଅଛନ୍ତି, ତୁରନ୍ତ ପ୍ରସବ କରିବେ। ତେଣୁ ମୋର ଉପସ୍ଥିତି ଦରକାର। ଏଭଳି କୁହନ୍ତି ହେଲେ ଘରେ ପିଲା ହେବେ ଏକଥା କ'ଣ କହୁଛ? '

ପରେ ମିଶ୍ର (ନାଁ ମନେ ଅଛି ଯେହେତୁ ସେ ମୋର କିଛିଦିନ ଅର୍ଡ଼ର୍ଲି ଥିଲେ) ମୋତେ ରୁମ୍‌ରେ ଦେଖାକରି କହିଲେ - ଆପଣ ସାନ ସାହେବ ଥିବାରୁ ଛୁଟି ମିଳିଗଲା ନହେଲେ ବଡ଼ ସାହେବଙ୍କୁ ପିଲା ହେବ ଓ ପିଲା ଅଛନ୍ତି ପ୍ରଭେଦ ବୁଝେଇ ପାରିନଥାନ୍ତି। ସିଂହର ଗୁମ୍ଫାରୁ ଅକ୍ଷତ ଅବସ୍ଥାରେ ଫେରିଆସିଥିବା ହରିଣଟେ ପରି କନେଷ୍ଟବଲ ମିଶ୍ର ଦୁଇ ଆଡ଼କୁ କନ କନ କରି ଅନେଇଲେ ଓ ଭକ୍ତିପୂର୍ଣ୍ଣ ସାଲ୍ୟୁଟ୍‌ଟିଏ ମାରି ଗଲେ ଛୁଟିରେ ଗାଁକୁ।

ଏସ୍‌ପି ଯିବାର ଅଳ୍ପ ଦିନ ପରେ ମୋର ବଦଳି ହେଲା ବଡ଼ବିଲକୁ। ବର୍ତ୍ତମାନ ପୋଲିସ ସବ୍‌ଡ଼ିଭିଜନ ଦାୟିତ୍ୱରେ ସ୍ୱାଧୀନ ଭାବେ କାମ କରିବି।

ମୋର ପ୍ରଥମ ପୋଷ୍ଟିଂ ହେଲା ବଡ଼ବିଲ୍। କିନ୍ତୁ ପୋଷ୍ଟିଂ ପୂର୍ବରୁ ମୁଁ ବିନା କାମରେ ଦୁଇ ମାସ ବସି ରହିଲି। ଟ୍ରେନିଂ ସମୟରେ ମୁଁ ଦିନଟିଏ ବି ଛୁଟି ନେଇନି କିନ୍ତୁ ମୋ' ବ୍ୟାଚରେ ଥିବା ସମସ୍ତେ କିଛି ନା କିଛି କାରଣରୁ ଛୁଟି ନେଲେ। ଜଣେ ୨ ମାସ ଛୁଟି ନେଇଥିଲେ, ନିୟମ ଅନୁସାରେ ଯେତିକି ଦିନ ଛୁଟି ନିଆଯିବ ସେତିକି ଦିନ ଟ୍ରେନିଂ ବଢ଼ିଯିବ। ତେଣୁ ପ୍ରଥମେ ମୋର ପୋଷ୍ଟିଂ ହୋଇଥାନ୍ତା ଓ ଅନ୍ୟମାନେ ପରେ ଯାଇଥାନ୍ତେ କିନ୍ତୁ ଜଣେ ପୋଲିସ ଅଫିସରଙ୍କର ପରାମର୍ଶରେ ଆଇଜି ନିଷ୍ପତ୍ତି ନେଲେ ଯେ ପୂରା ବ୍ୟାଚ ଏକା ସାଙ୍ଗରେ ପୋଷ୍ଟିଂ ହେବ। ନୂଆ ଏସ୍‌ପି ମୋତେ କହିଲେ ଆପଣ

ଭୁବନେଶ୍ୱରରେ ବସିଥାନ୍ତୁ ଦରକାର ହେଲେ ଆମେ ଡାକିବୁ। ଆଇଜିଙ୍କୁ ପରାମର୍ଶ ଦେଉଥିବା ଜଣେ ଏଆଇଜି ମୋତେ ଟ୍ରେନିଂ ଦେଇଥିବା ଏସ୍‌ପିଙ୍କର ଥିଲେ ଘୋର ବିରୋଧି। ତେଣୁ ତାଙ୍କର ମୋ' ପ୍ରତି ଅସୂୟା ଭାବ ରହିଲା। ପୁଣି ଜଣେ ଡିଆଇଜି ସାମାନ୍ୟ କାରଣରୁ ମୋତେ ରାଗରେ ମାର ନମାର। ସେତେବେଳେ ଅବସର ବୟସ ଥିଲା ୫୮ ପୁଣି ଜନ୍ମ ତାରିଖ ଦିନ ଅବସର। ମୁଁ ଅଫିସରମାନଙ୍କ ଲିଷ୍ଟ ଦେଖି ମୋ' ଉପରେ ଯେତେ ଅଫିସର ଥିଲେ ତାଙ୍କର ଅବସର ଦିନ ଲେଖିଲି କିନ୍ତୁ ଭୁଲ୍‌ରେ ଲେଖିଦେଲି, ଅନ୍ ଅର୍ ବିଫୋର ଅର୍ଥାତ୍ ସେଇଦିନ କିମ୍ୱା ପୂର୍ବରୁ। ସେଥିରେ ଅବଶ୍ୟ ଡିଆଇଜିଙ୍କ ନାଁ ଥିଲା। ସେ ମୋତେ ଡାକି ପଚାରିଲେ - 'ଅନ୍ ଲେଖିଲ ବିଫୋର କାହିଁକି ଲେଖିଲ?' ମୁଁ ନିରୀହ ଭାବେ ଉତ୍ତର ଦେଲି - ସାର୍, ଅକାଳ ବିୟୋଗ ଚାକିରିରୁ ବରଖାସ୍ତ, ବାଧ୍ୟତାମୂଳକ ଅବସର କିମ୍ୱା ଇସ୍ତଫା ଇତ୍ୟାଦି ବହୁତ ସମ୍ଭାବନା ଅଛି। ଡିଆଇଜି ଭାଗ୍ୟକୁ ମୋ' ମୁଣ୍ଡ ଫଟେଇ ନାହାଁନ୍ତି। ଫଁ ଫଁ ହୋଇ କହିଲେ, 'ତା'ମାନେ ତୁମେ ଚାହୁଁଛ ତମ ସିନିୟରମାନେ ମରନ୍ତୁ କିମ୍ୱା ଡିସ୍‌ମିସ୍ ହୁଅନ୍ତୁ? ଆଉ ତୁମେ ପ୍ରମୋଶନ ପାଇବ?' ତୁମେ ଭବିଷ୍ୟତରେ କେବେ ଭଲ ଅଫିସର ହୋଇପାରିବ ନାହିଁ କହି ରାଗରେ ଲିଷ୍ଟଟାକୁ ଫୋପାଡ଼ି ଦେଲେ ଓ କହିଲେ ଯାଅ। କିଛିଦିନ ପରେ ତାଙ୍କର ମୋ' ଏସ୍‌ପିଙ୍କ ସାଙ୍ଗେ ଦେଖା ହେଲା ଓ ତାଙ୍କୁ କହିଲେ 'ସେ ସେମିତି ତ ଭଲ ପିଲା ନୁହେଁ, ତମେ ତାକୁ ଅଧିକ ବିଗାଡ଼ି ଦେଇଛ। ଏହିଭଳି ଦୁଇ ଚାରିଟା ଅଫିସର ହେଲେ ପୋଲିସ ବିଭାଗର କଥା ସରିଲା।'

ବଡ଼ବିଲ୍‌ରେ ପହଞ୍ଚି ଆଇବିରେ କିଛିଦିନ ରହିଲି ଓ ମୋ' ପୂର୍ବବର୍ତ୍ତୀ ଅଫିସର ଘର ଖାଲି କରିବା ପରେ ତାକୁ ଦଖଲ କଲି। ବିରାଟ ଘର, ଉପର ମହଲାରେ ରହେ ତଳ ମହଲା ଅଫିସ। ଘର ଭଡ଼ା ଦିଏ ପଚିଶ ଟଙ୍କା, ବିଜୁଳି ଖର୍ଚ୍ଚ ହୁଏ ତିନି ଚାରି ଟଙ୍କା। ଏକାଥରକେ ବିଭାଗୀୟ ପରୀକ୍ଷା ସବୁ ପାସ୍ କରିବାରୁ ଦୁଇଟା ଇନକ୍ରିମେଣ୍ଟ ମିଳିଗଲା। କେବଳ ରୋଷେୟା ଗୋଟେ ହେଲେ ହେଲା। ଥାନା ବାବୁ ଜଣେ ରୋଷେୟା ଯୋଗାଡ଼ କରିଦେଲେ, ସେ ଜଣେ ଇଂରେଜ ଖଣି ମାଲିକ ପାଖେ କାମ କରୁଥିଲା। ପ୍ରଥମେ ଆସିବା ପାଇଁ କୁଣ୍ଠାବୋଧ କରୁଥିଲା ଏଇ କାରଣରୁ ଯେ ମୁଁ ବ୍ରାହ୍ମଣ ଓ ସେ ଅସବର୍ଣ୍ଣ। ତାକୁ ମୁଁ ଜାତି ଫାତିରେ ବିଶ୍ୱାସ କରେନି ବୋଲି ଆଶ୍ୱାସନା ଦେବାରୁ ସେ ଆନନ୍ଦରେ କାମ କଲା। ତା'ର ବିଶେଷତ୍ୱ ହେଉଛି ଯେ ତାକ ନାଁ ଲାଲୁ ଓ ସବୁବେଳେ ଲାଲ୍ ସାର୍ଟ ପିନ୍ଧେ। ମୋ' ଘରେ ସୁବିଧାରେ ରହିଲା ସତ କିନ୍ତୁ ଦିନେ ଦେଖିଲି ସେ ଆଲମାରି ଖୋଲି କ'ଣ ଜିନିଷ ଖୋଜୁଛି। ପଚାରିବାରୁ କହିଲା ପୋଲିସ ସାହେବ ହୋଇ ବୋତଲ କେମିତି ରଖିନ? ପରେ ମୁଁ ଜାଣିଲି ଯେ ଲାଲୁର ସାହେବ ମାଲିକ

ତାକୁ ମଝିରେ ମଝିରେ ଗ୍ଲାସେ ୨ ଗ୍ଲାସ ମଦ ଦିଅନ୍ତି ଓ ସେ ଟୋକା ପାପୁଲିରେ ପାଦୁକ ପିଇଲା ପରି ପିଇଦିଏ। ମୋ' ସାଙ୍ଗରେ ଦୁଇ ବର୍ଷ ରହିବା ହେତୁ ତା'ର ପିଇବା ଅଭ୍ୟାସ ଚାଲିଗଲା।

ବଡ଼ବିଲରେ ବହୁତ ସମସ୍ୟା ଥିଲା। ବହୁତ ଲୁହା ଖଣି। ପନ୍ଦର ହଜାର ଉପରେ ତାଲିକାଭୁକ୍ତ ଶ୍ରମିକ । ଓଡ଼ିଶା ସରକାରଙ୍କର ଗୋଟିଏ ଲୁହା କାରଖାନା ପାଞ୍ଚ କିଲୋମିଟର ଦୂର ମାଟକାମ୍‌ବେଡ଼ାରେ ଥିଲା। ଶ୍ରମିକ ୟୁନିୟନଗୁଡ଼ିକର ପରିଚାଳକ ଥିଲେ କେନ୍ଦୁଝର ମାଇନ୍‌ସ ୱାର୍କର୍ସ ୟୁନିୟନ। ଗୁରୁ ମହାନ୍ତି, ଦିବାକର ରାଏ, ଦୀନବନ୍ଧୁ ଶତପଥି ଥିଲେ ନେତା। ତାଙ୍କ ତଳେ ବହୁତ ଛୋଟ ନେତା ଥିଲେ ଓ ସେମାନଙ୍କ କାମ ହେଲା ପ୍ରତିଦିନ କୌଣସି ନା କୌଣସି ଖଣିରେ ମ୍ୟାନେଜରଙ୍କୁ ଘେରାଉ କରିବା। କାଳେ ପୋଲିସ ବଳ ପ୍ରୟୋଗ କରିବ ସେଥିପାଇଁ ଆଗଧାଡ଼ିରେ ମହିଳା ଶ୍ରମିକଙ୍କୁ ବସେଇ ଦିଅନ୍ତି । ମୁଁ ମାଜିଷ୍ଟ୍ରେଟ୍ ପୋଲିସ୍ ନେଇ ପହଞ୍ଚିଲେ କମ୍ୟୁନିଷ୍ଟ ଶ୍ରମିକ ନେତା ହୁଁକାରନ୍ତି - ଆମେରିକାର ଦଲାଲ୍ ଫେରିଯାଅ। ପରିସ୍ଥିତି ଥିଲା ବଡ଼ ଜଟିଳ। ମ୍ୟାନେଜରଟା ନଖାଇ ନ ପିଇ ଛଟପଟ ହେଉଥିବ କେତେବେଳେ ମାଡ଼ ଖାଇବ ଠିକଣା ନାହିଁ। ଏଣେ ମହିଳାମାନଙ୍କ ଉପରେ ବାଡ଼ି ଉଠେଇଲେ 'ପୋଲିସର ବର୍ବର ପ୍ରହାର, ମହିଳାମାନଙ୍କ ପ୍ରତି ଦୁର୍ବ୍ୟବହାର, ଇତ୍ୟାଦି ଖବର ଛପାଇ ଗଣମାଧମ ଚିତ୍କାର କରିବେ। ଆସେମ୍ବ୍ଲିରେ ପାଟିତୁଣ୍ଡ ହେବ ଓ ନାନା ପ୍ରକାର ତଦନ୍ତ ହେବ। ବହୁତ ଭାବି ଚିନ୍ତି ଉପାୟ ବାହାର କଲି ଯେ ଫୋର୍ସ ସହିତ ଫାୟାର ବିଗ୍ରେଡ଼ଙ୍କୁ ନେଲି ଓ ପାଣିରେ ପାଞ୍ଚ ଛଅ ବୋତଲ କାଳି ମିଶେଇ ସେଇ ପାଣିକୁ ମହିଳା ଓ ପୁରୁଷଙ୍କ ଉପରେ ଛଟା ହେଲା। ଶାଢ଼ୀ ଓଦାରେ ଜୁବୁବୁବୁ ହେବା ମାତ୍ରେ ମହିଳାମାନେ ବହୁ ଅକଥନୀୟ ଗାଳି ଦେଇ ଡିଆଁ ମାରିଲେ ଓ ପୁରୁଷ ଶ୍ରମିକମାନେ 'କାହିଁକି ବେ ଆମ ଲୁଗା ମଇଳା କଲ' ବୋଲି ଫାୟାର ବ୍ରିଗେଡ଼ ପାର୍ଟିଙ୍କୁ ବହୁ ଅଭିଶାପ ଦେଲେ। ମୋ' ନାଁରେ ପିଟିସନ ଗଲା ଯେ ମହିଳାମାନଙ୍କ ଲୁଗା ଓଦା କରିଥିବାରୁ ମୁଁ ସେମାନଙ୍କ ସମ୍ମାନ ହାନି କଲି। ମୋର କୈଫିୟତ ଥିଲା ଯେ "ଆଇନ୍ କହୁଛି ଯେତିକି ଆବଶ୍ୟକ ସେତିକି ବଳ ପ୍ରୟୋଗ କରିବ, ଯେହେତୁ ପାଣି ମାଡ଼ଟା ଲାଠି ମାଡ଼ଠୁ କମ୍ ଭୟଙ୍କର, ମୁଁ ସେଇ ପନ୍ଥା ଗ୍ରହଣ କଲି।"

ଅନେକ ସମୟରେ ଖଣି ମାଲିକ ଓ ୟୁନିୟନ କର୍ମକର୍ତ୍ତାଙ୍କ ମଧ୍ୟରେ ସଲ୍ଲା କୁସ୍ତି ହୁଏ। ସେତେବେଳେ କେତେ ପରିମାଣର ବୋନସ ଦିଆଯିବ କୌଣସି ନିର୍ଦ୍ଦିଷ୍ଟ ଆଇନ୍ ନଥିଲା ଓ ଖଣି ମାଲିକ ଶ୍ରମିକ ସଂଘ ବାଲାଙ୍କୁ ଡକେଇ ହିସାବ କିତାବ ବୁଝାନ୍ତି ଓ ଦର୍ଶେଇ ଦିଅନ୍ତି ଯେ ଶତକଡ଼ା ୮ ବୋନସ୍ ପ୍ରାପ୍ୟ। ତା'ପରେ ନିଷ୍ପତ୍ତି ନିଆଯିବ ଯେ

ଶତକଡ଼ା ୪ ଘୋଷଣା କରାଯିବ, ଚକା ବନ୍ଦ ଓ ଘେରାଉ ହେବ। ଲେବର ଅଫିସର ଆସି ଆଲୋଚନା କରିବେ ଓ ଦୀର୍ଘ ସମୟ ଆଲୋଚନା ପରେ ଖଣି ମାଲିକ ବାଧ୍ୟ ହୋଇ ଷତକଡ଼ା ୬ ବୋନସ୍ ଦବ। ବୋନସ୍ ପାଇଲା ପରେ ଶ୍ରମିକ ନେତା ଶ୍ରମିକମାନଙ୍କ ଠାରୁ ଗୋଟିଏ ପରସେଣ୍ଟ ଓ ମାଲିକ ଠାରୁ ଗୋଟିଏ ପରସେଣ୍ଟ ନିଅନ୍ତି ଏବଂ ଆମେ ପୋଲିସ ଓ ମାଜିଷ୍ଟ୍ରେଟ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଠିଆ ହୋଇ ଗାଳି ଶୁଣି ଆସୁ। ଏହିଭଳି ସଲ୍ଲା କୁସ୍ତି ହେଉଛି ଜାଣିଲେ ମଧ୍ୟ ଯିବାକୁ ପଡୁଥିଲା। ଭାଗ୍ୟକୁ କେବେ ଫାଇରିଂ କରିବାକୁ ଦରକାର ପଡ଼ିନାହିଁ ଓ ଥରେ ମାତ୍ର ଲାଠି ଚାର୍ଜ କରାଗଲା। ତା' ପୁଣି ଶୂନ୍ୟରେ ବାଡ଼ି ବୁଲେଇବା କଥା। ବାଡ଼ି ବୁଲେଇ ଗୋଡ଼େଇ ନେଲା ମାତ୍ରେ ପ୍ରଥମେ ନେତା ଚମ୍ପଟ ମାରନ୍ତି। ସେମାନଙ୍କ ଆଘ୍ରାଣ ଶକ୍ତି ଏତେ ତୀବ୍ର ଯେ ପୋଲିସ ଅଫିସର ଓ ମାଜିଷ୍ଟ୍ରେଟଙ୍କ ହାବଭାବରୁ ଜାଣିପାରନ୍ତି ଲାଠି ଚାର୍ଜ ହେବ ବୋଲି। ଦୌଡ଼ି ଯାଉଥିବା ଶ୍ରମିକମାନେ ପରସ୍ପର ଠାରେ ଧକ୍କା ବାଜି ବା ଝୁଣ୍ଟିପଡ଼ି ସାମାନ୍ୟ ଆଘାତ ପ୍ରାପ୍ତ ହୁଅନ୍ତି। ଅଥଚ ନେତାମାନେ ବିବୃତ୍ତି ଦିଅନ୍ତି 'ପୋଲିସର ବର୍ବର ଆକ୍ରମଣ' 'ମହିଳା ଶ୍ରମିକଙ୍କ ଉପରେ ଅକଥନୀୟ ଅତ୍ୟାଚାର' ସରକାରଙ୍କର ଆଦିବାସୀ ମାରଣ ନୀତି (ଯେହେତୁ ସବୁ ଶ୍ରମିକ ଆଦିବାସୀ) ଇତ୍ୟାଦି। ପୋଲିସରେ ଚାକିରି କଲେ 'ପଥର ପଡ଼ିଲେ ସହି' ଆଭିମୁଖ୍ୟ ବଜାୟ ରଖିବାକୁ ପଡ଼ିବ ଏକଥା ସମସ୍ତେ ଜାଣନ୍ତି। କିନ୍ତୁ କଥା ପଡ଼ିଲେ 'ମାଛ ଖାଇବ ଇଲିସି....' ନାମକ ପୁରୁଣା କ୍ୟାସେଟ୍ ବାରମ୍ବାର ସେମାନେ ବଜାନ୍ତି। ବାମପନ୍ଥୀମାନେ ଏକଦା ସାରା ଦେଶର ଅଧିକାଂଶ ଶ୍ରମିକ ୟୁନିୟନ ଓ ଛାତ୍ରସଂଘକୁ ଅକ୍ତିଆର କରିଥିଲେ ଓ ଦେଶର ପ୍ରଗତିକୁ ବହୁତ ପରିମାଣରେ ରୋକିଥିଲେ। ଚୀନର ଭାରତ ଆକ୍ରମଣ ସମୟରେ ଏଇଥିଲା ଗୋଟିଏ ଦଳ ଯିଏ ଚୀନକୁ ନିନ୍ଦା କରିନଥିଲା। ନିଜକୁ ସର୍ବହରାର ସାଥୀ କହୁଥିବା ଏମାନଙ୍କ ନେତାମାନେ ବଡ଼ବିଲରେ ଫଟା ସାର୍ଟ ପିନ୍ଧି ଶ୍ରମିକଙ୍କ ସାଙ୍ଗେ ମିଶନ୍ତି ଓ ତା' ସାଙ୍ଗେ ଗାଁରେ, କଟକରେ ଓ ଭୁବନେଶ୍ୱରରେ ସୁନ୍ଦର କୋଠା ତିଆରି କରନ୍ତି।

ଶ୍ରମିକ ସମସ୍ୟା ସାଙ୍ଗରେ ବିହାରକୁ ଚୋରା ଚାଉଳ ରପ୍ତାନୀ ଏକ ସମସ୍ୟା ଥିଲା। ସେଥିପାଇଁ ଆଣ୍ଟି ସ୍ମଗଲିଂ ପୋଷ୍ଟ ଥିଲା। ତା'ଛଡ଼ା ଅଧିକାଂଶ ଗାଡ଼ିର ପରମିଟ୍ ନଥିଲା। ପ୍ରତିଦିନ ଏଇଭଳି ଗାଡ଼ି ମୋ' ହାବୁଡ଼ରେ ପଡ଼େ ଓ ମୁଁ ତାକୁ ଧରି କେସ୍ କରେ। କେସ୍ ସଂଖ୍ୟା ବହୁଗୁଣରେ ବଢ଼ି ଯିବାରୁ ମାଜିଷ୍ଟ୍ରେଟ୍‌ମାନେ ଚିନ୍ତିତ ହେଲେ। କିନ୍ତୁ ଓକିଲମାନେ ମୋ' ଉପରେ ବହୁତ ଖୁସି ଥିଲେ। ସେତେବେଳେ ମାଜିଷ୍ଟ୍ରେଟ୍‌ମାନେ ମଧ୍ୟ ବିଚକ୍ଷଣ ଥିଲେ। ଜଣେ ରୂପଜୀବିକୁ ପୋଲିସ ଗିରଫ କଲା, ରୂପଜୀବିର ନିୟମିତ ଗ୍ରାହକ ଜଣେ ଓକିଲ ଥିଲେ। ତାଙ୍କ କଥାରେ ପଡ଼ି ରୂପଜୀବି ଅଭିଯୋଗ କଲା ଯେ ଥାନାରେ ହେଡ଼

କନେଷ୍ଟବଲ ତାଙ୍କ ପରେ ଜମାଦାର ବାବୁ ଓ ସବା ଶେଷରେ ଥାନା ବାବୁ ଧର୍ଷଣ କଲେ। ସମସ୍ତ ସାକ୍ଷ୍ୟ ପ୍ରମାଣ ନେଇ ମାଜିଷ୍ଟ୍ରେଟ ଆଦେଶ ଦେଲେ 'ଯେହେତୁ ପୋଲିସ ବିଭାଗରେ ତଳ କର୍ମଚାରୀ ଉପର କର୍ମଚାରୀଙ୍କୁ ସମ୍ମାନ ଦିଅନ୍ତି, ଧର୍ଷଣ ହୋଇଥିଲେ ସେ ସୁଯୋଗ ପ୍ରଥମେ ଥାନା ବାବୁ ନେଇଥାନ୍ତେ ଓ ତାଙ୍କ ପରେ ଜମାଦାର ଓ ସର୍ବ ଶେଷରେ ହେଡ୍ କନେଷ୍ଟବଲ। କିନ୍ତୁ ଅଭିଯୋଗ ହେଉଛି ଯେ ପ୍ରଥମେ ହେଡ୍ କନେଷ୍ଟବଲ ଓ ସର୍ବଶେଷରେ ଥାନା ବାବୁ। ଏଣୁ ଅଭିଯୋଗ ବିଶ୍ୱାସ ଯୋଗ୍ୟ ନୁହେଁ।' ମୁଁ ଥରେ ବିପଦରେ ପଡ଼ିଥାନ୍ତି। ଜଣେ ବିହାରୀ ଘେରା ମଦ ବିକ୍ରି କଲାବାଲା ବଲାନୀ ମାଇନସ୍‌ରେ ମଦ ବିକେ ଓ ଶ୍ରମିକମାନଙ୍କୁ ଧାରରେ ମଦ ଦିଏ। ଗ୍ଲାସେ ଦେଇଥିଲେ ତିନି ଗ୍ଲାସେ ଲେଖେ ଓ ମାସକୁ ଟଙ୍କାକୁ ଆଠଣା ଦରରେ ସୁଧ ଆଦାୟ କରେ। ସ୍ଥାନୀୟ ପୋଲିସ ଓ ଏକ୍ସାଇଜ୍ ତା' ପକେଟ୍‌ରେ । ତେଣୁ ମୁଁ ନିଜେ ଗଲି। ଦୋକାନର ଚଟାଣ ହୋଇଥାଏ ପଟାରେ। ତା' ତଳେ ଟିଣ ଟିଣ ଘେରା ମଦ। ଦୋକାନରେ ଥାଏ କେବଳ ଚନା ଚୁର ଓ ବୁଟ ଏବଂ ପାଖରେ ଥୁଆ ହୋଇଥାଏ ଅଧା ବୋତଲ ମଦ ଯାହାକି ଅପରାଧ ସୀମା ଭିତରେ ଆସୁନାହିଁ। ମୁଁ ଖୋଳତାଡ଼ କରୁଥିବା ସମୟରେ ସେ ଲୋକ ଚୌକିରେ ବସି ତା' ବାଘୁଆ ନିଶକୁ ମୋଡୁଥାଏ। ଅନେକ ଲୋକ ଠିଆ ହୋଇଥାନ୍ତି, ପରସ୍ପର ମଧ୍ୟରେ ଟୁପୁରୁ ଟାପୁରୁ ହେଉଥାନ୍ତି, ମୋତେ କିଛି କହୁନଥାନ୍ତି। ହଠାତ୍ ପାଦ ତଳୁ ଫମ୍ପା ଆବାଜ ଆସିଲା। ପଟା ଖୋଲି ଦେବା ମାତ୍ରେ ବାହାରିଲା ଟିଣ ଟିଣ ମଦ। ତଥାପି ସେ ଲୋକର ଗାଲୁ ଯାଉନଥାଏ। ଉଚ୍ଚ ସ୍ୱରରେ କହୁଥାଏ 'ହମ୍ ଦରୋଗା ପ୍ରସାଦ ଜୀ କୋ ଜାନ୍‌ତେ ହେଁ।' ସେତେବେଳେ ଦାରୋଗା ପ୍ରସାଦ ରାଏ ବିହାରର ଚିଫ୍ ମିନିଷ୍ଟର ଥିଲେ। ତାକୁ ହାତକଡ଼ି ପକେଇ ପାଞ୍ଚ କିଲୋମିଟର ଚଳେଇ ଚଳେଇ ବଡ଼ବିଲ ଅଣାଗଲା। ମାଜିଷ୍ଟ୍ରେଟ ଆଗରେ ପେସ୍ ହେଲାବେଳକୁ ତା'ର ନିଶ ହଲକ ନାହିଁ। ମାଜିଷ୍ଟ୍ରେଟ ଅର୍ଡ଼ରରେ ଲେଖିଲେ ଯେ ସେ ଲୋକ ନିଜେ ନିଶ କଟେଇକି ଆସିଛି। ପ୍ରକୃତ ଘଟଣାଟା ପାଠକେ ଅନୁମାନ କରିପାରୁଥିବେ।

ମୁଁ ୧୯୭୦ ମସିହା ମାର୍ଚ୍ଚ ୧୭ ତାରିଖରେ ଜଏନ୍ କଲି। ସେତେବେଳେ କଲିକତା ସହର ନକ୍ସଲାଇଟ୍‌ଙ୍କ ଦ୍ୱାରା ଆକ୍ରାନ୍ତ। ପ୍ରତ୍ୟେକ ଦିନ ଭୁଜାଲି କିମ୍ୱା ପାଇପ୍ ଗନ୍ ଦ୍ୱାରା ପୋଲିସ ପାର୍ଟି ଉପରେ ଆକ୍ରମଣ ଓ ତଳିଆ କର୍ମଚାରୀ କିମ୍ବା ଛୋଟିଆ ଦୋକାନୀଙ୍କୁ ହତ୍ୟା। ବଡ଼ ବଡ଼ ଦୋକାନରେ ମାଲିକ ସମ୍ପୂର୍ଣ୍ଣ ନିରାପଦ ଥିଲେ। କାରଣ କହିବା ଅନାବଶ୍ୟକ।

ନକ୍ସଲ ଆନ୍ଦୋଳନର ପ୍ରଭାବ ଜାମ୍‌ସେଦପୁରକୁ ଆସି ଉଭୟ ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲାକୁ ବ୍ୟାପିଲା। ବଡ଼ବିଲରେ ଜଣେ ସ୍ପେଶାଲ ବ୍ରାଞ୍ଚ ଇନ୍‌ସପେକ୍ଟର

(ପାଣିଗ୍ରାହୀ ବାବୁ) ସେମାନଙ୍କ ବିଷୟରେ ଆସି ମୋତେ ସଠିକ୍ ଖବର ଦେଉଥିଲେ। ସେମାନେ କିଛି ହତ୍ୟା କରିବା ପୂର୍ବରୁ ଆମେ ସେ ଦଳକୁ ଧରିଦେଲୁ ଓ ଜବତ୍ କଲୁ କିଛି ପାଇପ୍ ଗନ୍, ଭୁଜାଲି, ବାରୁଦ, ଛୁରୀ, ମାଓ ସଂକ୍ରାନ୍ତୀୟ ଲେଖା ଇତ୍ୟାଦି ସମେତ ଗୋଟିଏ ଖାତାରେ ଓ ସେଥିରେ ମୋ ସମେତ କେତେ ଜଣ ସରକାରୀ କର୍ମଚାରୀଙ୍କ ନାଁ ଥିଲା। ସେମାନେ ସ୍ୱୀକାର କଲେ ଯେ ସେଇଟା ଥିଲା ହିଟ୍‌ଲିଷ୍ଟ। ଠିକ୍ ସମୟରେ ଖବର ପହଞ୍ଚିବା ଓ ସେମାନେ ଆମକୁ ଧରିବା ପୂର୍ବରୁ ଆମେ ସେମାନଙ୍କୁ ଧରି ନେବାରୁ 'ମୋତେ ତ ଦଇବ ରଖିଲା' ଭଳିଆ କଥା ହେଲା। ଧରା ପଡ଼ିଥିବା ନକ୍ସଲମାନଙ୍କୁ ଜେଲ୍ ହୋଇଗଲା। ମୋତେ ସରକାରଙ୍କ ତରଫରୁ ପ୍ରଶଂସା ପତ୍ର ମିଳିଲା। ଏହା ଥିଲା ମୋ' ପାଇଁ ସରକାରଙ୍କ ତୃତୀୟ ପ୍ରଶଂସା ପତ୍ର। ପ୍ରଥମ ଥିଲା ନବକଳେବର ସମୟରେ କାର୍ଯ୍ୟ କରିବା ଓ ଦ୍ୱିତୀୟ ଥିଲା ଖାନ୍ ସାହେବଙ୍କ ଗସ୍ତ ସମୟରେ ଏସ୍‌ପିଙ୍କୁ ଉପଯୁକ୍ତ ଭାବେ ସହଯୋଗ କରିବା। ବଡ଼ବିଲ ପୋଲିସର ବିଭିନ୍ନ କ୍ଷେତ୍ରରେ ସାଫଲ୍ୟ ବାରମ୍ବାର ଖବରକାଗଜରେ ବାହାରୁଥିବାରୁ ମୋର ଜଣେ ସହକର୍ମୀ ଅଭିଯୋଗଭରା ସ୍ୱରରେ କହିଲେ - ହଁ ତମେ ତ ଖାଲି କାମ କରୁଛ ଓ ଆମେ ଘାସ କାଟୁଛୁ।'

ସେତେବେଳେ ଡିଆଇଜି ଥିଲେ ନରସିଂହ ସ୍ୱାଇଁ। ଅତି ବିଚକ୍ଷଣ ଓ ବୁଦ୍ଧିମାନ ଲୋକ, 'ଅ'କହୁ କହୁ କ୍ଷ କ'ଣ ଜାଣିଦେବେ। ସେ ବାରମ୍ବାର ଆସି ନକ୍ସଲାଇଟ୍ ସମସ୍ୟା ଓ ଆଇନ୍ ଶୃଙ୍ଖଳା ପରିସ୍ଥିତିର ତର୍ଜମା କରୁଥିଲେ। ଏସ୍‌ପି ଥିଲେ ଅମୀୟ ଭୂଷଣ ତ୍ରିପାଠୀ । ନିରପେକ୍ଷ, ଦକ୍ଷ ଓ ସମସ୍ତଙ୍କୁ ନେଇ ଚଳେଇ ପାରିବାର ଗୁଣ ତାଙ୍କର ଥିଲା। ସେ ମୋତେ ଏତେ ଭଲ ପାଉଥିଲେ ଯେ ମୁଁ କେଉଁଝରେ ଗଲେ ତାଙ୍କ ଘରେ ଖାଏ ଓ ସେ ବଡ଼ବିଲ ଆସିଲେ ମୋ' ଘରେ ଖାଆନ୍ତି। ଡିଆଇଜି ମଧ୍ୟ ସେଇଭଳି ସମ୍ପର୍କ ମୋ' ସାଙ୍ଗେ ରଖିଥିଲେ। ଶ୍ରୀଯୁକ୍ତ ସ୍ୱାଇଁଙ୍କର ପରଲୋକ ୧୯୯୫ ମସିହାରେ ହେଲା। ଅମୀୟ ଭୂଷଣ ତ୍ରିପାଠୀ ଏବେ ଓଡ଼ିଶାର ଜଣେ ଜଣାଶୁଣା ବ୍ୟକ୍ତି।

ମୁଁ ବଡ଼ବିଲରେ ଜଏନ୍ କଲା ବେଳକୁ ଶ୍ରୀନିବାସ ମହାପାତ୍ର ବୋଲି ଜଣେ କଲେକ୍ଟର ଥିଲେ। ସେ ଡ଼େପୁଟି କଲେକ୍ଟରରୁ ଉଠି କଲେକ୍ଟର ହୋଇଥିଲେ ଓ ମୋ' ନନାଙ୍କ ସଙ୍ଗେ ତାଙ୍କର ଖୁବ୍ ଭଲ ସମ୍ପର୍କ ଥିଲା। ପରିଚୟ ହେଲା ମାତ୍ରେ ମୋ' ସାଙ୍ଗେ ତୁ ତା ସମ୍ପର୍କ ରଖିଲେ ଓ ଯେବେ ବଡ଼ବିଲ ଆସନ୍ତି ମୋତେ ଖାଇବା ପାଇଁ ଡାକନ୍ତି। ତାଙ୍କ ପରେ ଆସିଲେ ଆସାମର ବୋଡ଼ୋ ଜାତିର ଜଣେ ଭଦ୍ରଲୋକ - ନାଁ ସୋଡ୍ରେକ୍ ମାରୁଇନ୍। ବିଚରା ଭାରି ସରଳ ଲୋକ କିନ୍ତୁ ଅଳ୍ପ କଥାରେ ରାଗିଯାଆନ୍ତି। ପୂର୍ବ କଲେକ୍ଟର ଶ୍ରୀନିବାସ ମହାପାତ୍ରଙ୍କ ସଙ୍ଗେ ଏସ୍‌ପିଙ୍କ ସମ୍ପର୍କ ଖୁବ୍ ଭଲ ଥିବାରୁ ଜଣେ ଦୁଇଜଣ ଓଏଏସ୍ ଅଫିସର ଅଶ୍ୱସ୍ତ ହୋଇପଡ଼ିଲେ କିନ୍ତୁ ମାରଉନ୍‌ଙ୍କ ଆଗରେ ଖଚ

ଚୁଗୁଲି କରିବା ପାଇଁ ସୁଯୋଗ ପାଇଲେ। ଏସ୍‌ପି ତାଙ୍କୁ ବେଖାତିର କରୁଛନ୍ତି, ଏଏସ୍‌ପି (ମୁଁ) ଦେଖା କରୁନାହାଁନ୍ତି ଇତ୍ୟାଦି କଥା ଗୁଡ଼ିଏ କହି ଏସ୍‌ପି କଲେକ୍ଟର ମଧ୍ୟରେ ଯୁଦ୍ଧ ଲଗେଇ ଦେଲେ। ଉଭୟ ପରସ୍ପରକୁ କଡ଼ା ଭାଷାରେ ଚିଠି ଲେଖିଲେ ଓ ଅତିଷ୍ଠ ହୋଇ ସରକାର କମିଶନର ଓ ଡିଆଇଜିଙ୍କୁ ପଠାଇଲେ ମିଳିତ ତଦନ୍ତ ପାଇଁ। ଉଭୟ କଲେକ୍ଟରଙ୍କ ଭୁଲ୍ ବୋଲି କହିଲେ ଓ ତାଙ୍କର ବଦଳି ହେଉ ବୋଲି ସୁପାରିଶ କଲେ କିନ୍ତୁ ସେକ୍ରେଟେରିଏଟ୍‌ରେ ଆଇଏଏସ୍ ଲବି କେବଳ କଲେକ୍ଟର ବଦଳି ହେଲେ ଆଇଏଏସର ସମ୍ମାନ କ୍ଷୁଣ୍ଣ ହେବ ବୋଲି କଥାବାର୍ତ୍ତା ହୋଇ ଏସ୍‌ପିଙ୍କ ବଦଳି ପାଇଁ ଲାଗିପଡ଼ିଲେ। ଫଳରେ ଉଭୟ ବଦଳି ହେଲେ। ବସନ୍ତ ମହାନ୍ତି ବୋଲି ଜଣେ ଭଦ୍ର ଲୋକ ଏସ୍‌ପି ହୋଇ ଆସିଲେ। ସେ କ୍ଲର୍କରୁ ଉଠି ଷ୍ଟେନୋଗ୍ରାଫର, ଷ୍ଟେନୋଗ୍ରାଫରରୁ ସ୍ପେଶାଲ ବ୍ରାଞ୍ଚ ଇନ୍ସପେକ୍ଟର ତା'ପରେ ପୋଲିସ ଡିଏସ୍‌ପି ହୋଇ ଏସ୍‌ପି ହେଲେ। ଦୁଇଜଣ ଗୋରା ଏସ୍‌ପିଙ୍କ ପାଖରେ ସେ ଷ୍ଟେନୋ ଥିଲେ। ଗୋରା ଏସ୍‌ପି ତଳିଆ କର୍ମଚାରୀଙ୍କୁ ବଙ୍କା ବଙ୍କା ହିନ୍ଦୀରେ କଥା କହୁଥିଲେ ଓ ସହକର୍ମୀଙ୍କ ସାଙ୍ଗରେ ଇଂରାଜୀରେ କଥା ହୁଅନ୍ତି। ଏସ୍‌ପି ବୋଧହୁଏ ସେଇ ଦିନଠାରୁ ଶିଖି ମୋ' ସାଙ୍ଗରେ ଓ ଡିଏସ୍‌ପିଙ୍କ ସାଙ୍ଗରେ ଇଂରାଜିରେ ଓ କନେଷ୍ଟବଲ, ହାବିଲଦାରଙ୍କ ସାଙ୍ଗରେ ହିନ୍ଦୀରେ କଥା ହୁଅନ୍ତି। ଏକ ଉଦାହରଣ, କନେଷ୍ଟବଲଙ୍କ ପୋଷାକ ଠିକ୍ ନଥିଲେ ଏସ୍‌ପିଙ୍କ ମନ୍ତବ୍ୟ - କନେଷ୍ଟବଲ, ଏ ଡ୍ରେସ୍ ହମେ ପସନ୍ଦ ନେହିଁ। ଥାନା ଇନ୍ସପେକ୍ସନ କରନ୍ତି ଲଗାତାର ପାଞ୍ଚଦିନ ଓ ମୋତେ ମଝିରେ ମଝିରେ ଇଂରେଜିରେ କହନ୍ତି - ଆପଣଙ୍କ ଆଇପିଏସ ଅଫିସରମାନେ ବେଶି ଗଭୀରକୁ ଯାଇପାରନ୍ତି ନାହିଁ। ଏଇମିତି ଅନେକ ଥର ଶୁଣିଲା ପରେ ଥରେ ବିରକ୍ତ ହୋଇ କହିଲି ଆକାଶରେ ଉଡ଼ିବା ଲୋକ ଗଭୀର ପାଣିରେ ପଶିବେ କାହିଁକି ? ଏସ୍‌ପିଙ୍କ ସାଙ୍ଗେ ଅନେକ ଥର ଇମିତି କଥା କଟାକଟି ହେବା ସତ୍ତ୍ୱେ ସେ ମୋତେ ଖୁବ୍ ଭଲ ପାଉଥିଲେ ଓ ମୋର ତାଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି ଥିଲା। ବଡ଼ବିଲ୍ ଆସିବା ପୂର୍ବରୁ ସେ ଫୋନ୍ କରି କହିଲେ 'ଆଜି ଆପଣଙ୍କ ଘରେ ଖାଇବି ଲାଲୁକୁ କହିବେ ସାହେବି ଖାନା କରିଥିବ।'

ବଡ଼ବିଲରେ ବର୍ଷେ ଦଶମାସ ରହିବା ପରେ ମୁଁ ପଦୋନ୍ନତି ପାଇ ଡେପୁଟି କମିଶନର ଟ୍ରାନ୍ସପୋର୍ଟ ହୋଇ କଟକ ଆସିଲି। ସେ ପୋଷ୍ଟରେ ମୋ' ପୂର୍ବରୁ ଯେ ଥିଲେ (ମାନବେଶ ମୁଖାର୍ଜୀ) ସେ ଜିଲ୍ଲା ଏସ୍‌ପି ହୋଇଯାଇଥିଲେ। ମୋ' ପରେ ଏ ପର୍ଯ୍ୟନ୍ତ ଯେତେ ଯାଇଛନ୍ତି (୧୯୭୨ ରୁ ଆଜି ପର୍ଯ୍ୟନ୍ତ) ସମସ୍ତେ ଏସ୍‌ପି ହୋଇସାରି ଯାଇଛନ୍ତି। ମୁଁ ଏକମାତ୍ର ବ୍ୟତିକ୍ରମ। କାରଣ ବଡ଼ କୌତୂହଳପୂର୍ଣ୍ଣ। ପରିବହନ କମିଶନର ଚନ୍ଦ୍ର ବାବୁ ଜୈନ୍ କେନ୍ଦୁଝର ଆସିଥିବା ସମୟରେ ଟ୍ରକ୍ ମାଲିକ ସଂଘ, ବସ ମାଲିକ

ସଂଘର କର୍ମକର୍ତ୍ତାମାନେ ତାଙ୍କୁ ଭେଟି ଅଭିଯୋଗ କଲେ ଯେ 'ବଡ଼ବିଲ ଏଏସ୍‌ପି କଥାକଥାକେ ଗାଡ଼ିଗୁଡ଼ା ଜବତ କରିଦେଉଛନ୍ତି। ଗାଡ଼ି ରଖିଲେ ଦୋଷ ତ୍ରୁଟି ତ ରହିବ, ତା'ବୋଲି.... ?' କମିଶନର ସବୁ ଶୁଣି ଖାଲି ଏତିକି ମନ୍ତବ୍ୟ ଦେଲେ ଆଚ୍ଛା ହେଉ ଦେଖିବା। ତା'ପରେ ଭୁବନେଶ୍ୱର ଫେରି ସେ ଚିଫ୍ ସେକ୍ରେଟେରୀଙ୍କୁ ଦେଖାକରି ମୋତେ ଡ଼େପୁଟି କମିଶନର ଭାବେ ନେବା ପାଇଁ ଅନୁରୋଧ କଲେ ଓ ମୁଁ 'ସାନ ହାକିମ'ରୁ 'ବଡ଼ ହାକିମ' ହୋଇଗଲି।

ବହୁତ ଦୁଃଖର ସହ ବଡ଼ବିଲ ଛାଡ଼ିଲି କାରଣ ସମସ୍ତଙ୍କ ସାଙ୍ଗେ ଭଲ ସମ୍ପର୍କ ଥିଲା। ସର୍ବସାଧାରଣଙ୍କ ତରଫରୁ ମୋତେ ମ୍ୟୁନିସିପାଲିଟି ପଡ଼ିଆରେ ଏକ ବିରାଟ ବିଦାୟ ସମ୍ବର୍ଦ୍ଧନା ଦିଆଗଲା। ପୋଲିସ ଅଫିସର ସର୍ବସାଧାରଣଙ୍କ ଠାରୁ ବିଦାୟ ସମ୍ବର୍ଦ୍ଧନା ପାଇବା ବିରଳ।

## କର୍ତ୍ତବ୍ୟର ଆହ୍ବାନ

ଆବହମାନ କାଳରୁ ମୋଟର ଗାଡ଼ି ଓ ଡ୍ରାଇଭରଙ୍କ ଲାଇସେନ୍ସ ଏସ୍‌ପି ଅଫିସରେ ମିଳୁଥିଲା। ପୋଲିସର ସମ୍ପୂର୍ଣ୍ଣ କର୍ତ୍ତୃତ୍ୱ ଥିଲା। ମାସାନୀ କମିଟିର ରିପୋର୍ଟକୁ ଭିତ୍ତି କରି ଭାରତ ସରକାର ନୂଆ ନିୟମ ପ୍ରଣୟନ କରିବା ପାଇଁ ରାଜ୍ୟମାନଙ୍କୁ ପରାମର୍ଶ ଦେଲେ। ପ୍ରସ୍ତାବିତ ନିୟମରେ ଥିଲା ଯେ ଏସ୍‌ପି ପରିବର୍ତ୍ତେ ପ୍ରତ୍ୟେକ ଜିଲ୍ଲାରେ ଜଣେ ଆରଟିଓ ରହିବେ। ଯିଏ ଲାଇସେନ୍‌ସ ଦେବେ। ରାଜ୍ୟରେ ଜଣେ ଟ୍ରାନ୍‌ସ୍‌ପୋର୍ଟ କମିଶନର ରହିବେ। ମୋର ବଦଳି ହେଲା ଟ୍ରାନ୍‌ସପୋର୍ଟ କମିଶନର ଅଫିସ୍‌କୁ ଡ଼େପୁଟି କମିଶନର ହିସାବରେ। କ୍ରମ ଅନୁସାରେ ମୁଁ ଥିଲି ଦ୍ୱିତୀୟ ଡ଼େପୁଟି କମିଶନର, ମୋ' ପୂର୍ବରୁ ଯିଏ ଥିଲେ ସେ ଆଡ଼ିସ୍‌ନାଲ ଏସ୍‌ପି, ଏସ୍‌ପି ହୋଇ ଡ଼େପୁଟି କମିଶନର ହେଲେ। ମୋ' ପରେ ଯେତେ ଡ଼େପୁଟି କମିଶନର ହେଲେ ସମସ୍ତେ ଏକାଧିକ ଜିଲ୍ଲାରେ ଏସ୍‌ପି ହୋଇ ଡ଼େପୁଟି କମିଶନର ହୋଇଛନ୍ତି। ତେଣୁ ମୁଁ ଜଣେ ସବ୍‌ଡ଼ିଭିଜନାଲ ପୋଲିସ ଅଫିସର ତହିଁରୁ ସିଧା ଡ଼େପୁଟି କମିଶନର, ଯେଉଁଥିରେ ଏସ୍‌ପିଙ୍କ ଦରମା ଏବଂ ସ୍ୱତନ୍ତ୍ର ଦରମା ଥିଲା, ହେବାଟା ଅନେକଙ୍କ ପାଇଁ ଭ୍ରୁକୁଞ୍ଚନ କିମ୍ବା ଈର୍ଷାର କାରଣ ହେଲା। ସେ ପୋଷ୍ଟରେ ଏକମାତ୍ର ଅସୁବିଧା ଯେ କ୍ୱାଟର ନଥିଲା କିନ୍ତୁ ପାଞ୍ଚ ମାସ ପରେ କ୍ୱାଟର ମିଳିଗଲା। ମୋ'ଠାରୁ ୨ ବର୍ଷ ସିନିୟର ଆଇପିଏସ୍ ଅଫିସରମାନେ ଅତିରିକ୍ତ ଏସ୍‌ପି ଥିଲେ। ମୁଁ ସିଧାସଳଖ ଏସ୍‌ପି ପାହ୍ୟା ପାଇଥିବାରୁ ସେମାନେ ବିରକ୍ତ ହେବା ସ୍ୱାଭାବିକ। କିନ୍ତୁ ଏ ପୋଷ୍ଟ ତ ମୁଁ ମାଗି ନଥିଲି, କମିଶନରଙ୍କ ପ୍ରସ୍ତାବରେ ସରକାର ମୋତେ

ଅବସ୍ଥାପିତ କଲେ, ତେଣୁ 'ଛାମୁ ଯାହା ଦେଲେ ହରଷେ' ତାକୁ ପ୍ରତିବାଦ କାହିଁକି କରିବି ?

ଦୁଇ ବର୍ଷ ହେଲା ରହଣି। ସେଥିରେ ବହୁତ କିଛି ଶିଖିଲି। ତିନି ଜଣ ବିଶିଷ୍ଟ ଆଇଏଏସ୍ ଅଫିସରଙ୍କ ଅଧିନରେ ଚାକିରି କରି ବହୁତ କିଛି ଜାଣିଲି। ପ୍ରଥମେ ଥିଲେ ଚନ୍ଦ୍ରବାବୁ ଜୈନ୍ ଯିଏ ପରେ ଭାରତ ସରକାରଙ୍କର ବାଣିଜ୍ୟ ସଂସ୍ଥାର ଚେୟାରମ୍ୟାନ୍ ହେଲେ। ତାଙ୍କ ପରେ ଆସିଲେ ଏସ୍ଏମ୍ ବର୍ଣ୍ଣ ଯିଏ ପରେ ଚିଫ୍ ସେକ୍ରେଟେରୀ ହେଲେ, କେନ୍ଦ୍ର ସରକାରଙ୍କର ସ୍ୱରାଷ୍ଟ୍ର ବିଭାଗ ସଚିବ ହେଲେ ଓ ରାଜ୍ୟପାଳ ପଦବୀ ପାଇଲେ। ତୃତୀୟ ହେଲେ ଟିୟୁ ବିଜୟ ଶେଖରନ୍, ସେ କେନ୍ଦ୍ର ସରକାରଙ୍କର ସେକ୍ରେଟେରୀ ପଦବୀରୁ ଅବସର ନେଇ କେନ୍ଦ୍ରୀୟ ଦୁର୍ନୀତି ନିବାରଣ କମିଶନର ଚେୟାରମ୍ୟାନ ହେଲେ। ଏ ସଂସ୍ଥାରେ ଥିଲାବେଳେ ଅନେକ ରୁଲ୍ ଗଠନ କରିଥିଲି ଓ ବହୁତ ବେଆଇନ୍ ଭାବେ ଚାଲୁଥିବା ଗାଡ଼ି ଜବତ କରାଯାଇଥିଲା। ଏକ ଘଟଣା ମନେପଡ଼େ ଯାହା ପାଠକମାନଙ୍କର କୌତୂହଳ ସୃଷ୍ଟି କରିବ। ଜଣେ ମନ୍ତ୍ରୀ ଟ୍ରାନ୍ସପୋର୍ଟ କମିଶନରଙ୍କୁ ଡକେଇ କହିଲେ 'କେନ୍ଦ୍ରାପଡ଼ା, ଜଗତସିଂହପୁର ଅଞ୍ଚଳରେ ବିନା ପରିମିଟ୍‌ରେ ଏତେ ଗାଡ଼ି ଚାଲୁଛି ଆପଣଙ୍କ ବିଭାଗ କ'ଣ କରୁଛି ? ' କମିଶନର ବିଜୟ ଶେଖରନ୍ ମୋତେ ଡକେଇ କହିଲେ 'ସେ ଆର୍‌ଟିଓ ବୋଧେ କିଛି କରୁନାହିଁ ଆପଣ ନିଜେ ଯାଆନ୍ତୁ ଓ ବିନା ପରମିଟ୍ ଗାଡ଼ିଗୁଡ଼ାକୁ ଜବତ କରନ୍ତୁ।' ଆଦେଶ ମାନି ବହୁତ ଷ୍ଟାଫ୍ ନେଇ ମୁଁ ଗଲି ଓ ସକାଳରୁ ସନ୍ଧ୍ୟା ସୁଦ୍ଧା ୨୧ଟି ଗାଡ଼ି ଜବତ କରି ବିଭିନ୍ନ ଥାନା ମଧ୍ୟରେ ରଖେଇ ଦେଲି। ସନ୍ଧ୍ୟାରେ କମିଶନରଙ୍କୁ କହିବାରୁ ସେ ଭାରି ଖୁସି ହେଲେ କିନ୍ତୁ ତା'ପରେ କ'ଣ ହେଲା ଜାଣନ୍ତୁ –

ତା' ଆରଦିନ ଅଫିସକୁ ଆସିବା ମାତ୍ରେ କମିଶନର କହିଲେ ମନ୍ତ୍ରୀ ଭୀଷଣ ବିରକ୍ତ, ଯାଆନ୍ତୁ ଭୁବନେଶ୍ୱର ଯାଇ ତାଙ୍କୁ ବୁଝାନ୍ତୁ। ମୁଁ ଭାବିଲି ଏ କି ବିଚିତ୍ର ପରିସ୍ଥିତି, ଆଦେଶ ନମାନିଲେ ବିରକ୍ତ ମାନିଲେ ବିରକ୍ତ । ମୁଁ ଗଲି ମନ୍ତ୍ରୀଙ୍କ ପାଖକୁ। ଚା, ଜଳଖିଆ ଦେଇସାରି ମନ୍ତ୍ରୀ ପାଖରେ ଠିଆ କରି ଜଣକୁ କହିଲେ 'କୁହ କ'ଣ ହେଲା। ସେ ଜାଣନ୍ତୁ। ସରକାରୀ ଅଫିସରମାନେ କ'ଣ ପବ୍ଲିକ୍‌ଙ୍କ ଦୁଃଖ ବୁଝନ୍ତି ? ' ମନ୍ତ୍ରୀଙ୍କ ମୁଖରୁ ଶୁଣି ଧୋତି ପଞ୍ଜାବୀ ପିନ୍ଧିଥିବା ଓ ଦଶ ଆଙ୍ଗୁଠିରେ ୧୨ରୁ ୧୪ଟି ମୁଦି ପିନ୍ଧିଥିବା ସେ ଥନ୍ତଲ ପେଟିଆ ବାବୁ ପାନ ଛେପ ଢ଼ୋକି କହିଲେ – 'ସାର୍ ଆଉ କ'ଣ କହିବି ? ସମଗ୍ର କେନ୍ଦ୍ରାପଡ଼ା ଓ ଜଗତ୍‌ସିଂହପୁର ଅଞ୍ଚଳରେ ଶାଗ ମୁଠାଟେ ମିଳିଲାନି। ମାଛ କାତିଟେ ମଧ୍ୟ ଆମେ ଦେଖିଲୁନି। ବସ୍‌ରେ ସବୁ ଆସେ। ଆମ ବାବୁମାନେ ଆଖି ବୁଜି ବସ୍ ବନ୍ଦ କରିଦେଲେ ତେଣୁ ଆମେ କଷ୍ଟ ଭୋଗୁଛୁ।' ତାଙ୍କ ସାଙ୍ଗେ କଥାଯୋଡ଼ି ଆଉ

ଜଣେ ସାର୍ଟ ପେଣ୍ଟ ପିନ୍ଧାବାଲା ସତର୍ପଣରେ କହିଲେ 'ସାର୍ ସେକ୍ରେଟେରିଏଟ୍‌ରେ ଅଧାସିଟ୍ ଖାଲି। ଆମର ଅଧିକାଂଶ ଷ୍ଟାଫ୍ ଆସନ୍ତି ସେ ଅଞ୍ଚଳରୁ। ବସ୍ ତ ବନ୍ଦ ହେଲା ଏବେ ଆସିବେ କେମିତି ?' ଏସବୁ ଶୁଣି ମନ୍ତ୍ରୀ ମୋତେ ପଚାରିଲେ 'ଆଖି ବୁଜି ବସ୍‌ଗୁଡ଼ା ଜବତ୍ କାହିଁକି କରିଦେଲେ ?' ମୁଁ ଉତ୍ତର ଦେଲି ଆପଣ ଆଦେଶ ଦେଇଥିଲେ। ସାମାନ୍ୟ ଅପ୍ରତିଭ ହୋଇ ମନ୍ତ୍ରୀ କହିଲେ 'ହଁ ମୁଁ କହିଥିଲି। ଆଇନ୍ ତା' ବାଟରେ ଯିବା କଥା। କିନ୍ତୁ ତା' ବୋଲି ଆପଣ ସବୁ ବସ୍ ଜବତ କରିଦେବେ ?' ମୁଁ କହିଲି କେଉଁଟା ଧରିବୁ କେଉଁଟା ଛାଡ଼ିବୁ ସେମିତି ତ କିଛି ନିର୍ଦ୍ଦେଶ ନାହିଁ। ମନ୍ତ୍ରୀଙ୍କୁ ଘେରିଥିବା ଲୋକଙ୍କ ଭିତରୁ ଜଣେ କହିଲା 'ସାର୍ କେବଳ ଆମମାନଙ୍କ ବସ୍‌ଗୁଡ଼ା ଜବତ ହୋଇଗଲା ସେମାନଙ୍କ ବସ୍‌ସବୁ ଠିକ୍ ଭାବେ ଅଛନ୍ତି।' ଆମେ ସେମାନେ ଏ ଦୁଇ ଶବ୍ଦର ସୂକ୍ଷ୍ମ ପ୍ରଭେଦ ବୁଝିନପାରି ମୁଁ ସେ ଭଦ୍ରଲୋକଙ୍କୁ ପଚାରିଲି 'ସେମାନେ ପୁଣି କିଏ ?' ଆମେ ରାସ୍ତାରେ ଯେଉଁ ଗାଡ଼ି ଦେଖିଲୁ ତାକୁ ଧରିଲୁ। ସେ ଭଦ୍ରଲୋକ ଉତ୍ତର ଦେବା ପୂର୍ବରୁ ମନ୍ତ୍ରୀ କହିଲେ 'ଛାଡ଼ନ୍ତୁ ସେ କଥା। ଏବେ ଲୋକମାନେ ଆସିବେ କେମିତି ସେ କଥା ଚିନ୍ତା କରନ୍ତୁ।' ମୁଁ ପ୍ରସ୍ତାବ ଦେଲି ସେମାନେ ଫାଇନ୍ ଦେଇ ପରମିଟ୍ ସାତ ଦିନ ଭିତରେ ନେବାର ଲିଖିତ ପ୍ରତିଶ୍ରୁତି ଦିଅନ୍ତୁ ତାହା କଲେ ଆମେ ଛାଡ଼ିଦେବୁ। ହାତ ହଲେଇ ମନ୍ତ୍ରୀ କହିଲେ 'ନା ନା ସେମିତି ହେଲେ ଲୋକେ ଆଉ ଡରିବେ ? ଆଇନ୍‌ର ମର୍ଯ୍ୟାଦା ରହିବ ? ଆପଣ ଅଳ୍ପ କେତେଟା ଗାଡ଼ିକୁ ଛାଡ଼ି ଦିଅନ୍ତୁ। ବାକି ସବୁ ଜୋରିମନା ଦେଇ ପରମିଟ୍ ନେଲେ ଛଡ଼ାଯିବ' କହି ମନ୍ତ୍ରୀ ଗୋଟିଏ କାଗଜ ବଢ଼ାଇ ଦେଲେ ଯେଉଁଥିରେ ସାତ ଆଠଟା ଗାଡ଼ିର ନମ୍ବର ଥିଲା। 'ଏଇ ଗାଡ଼ିଗୁଡ଼ା ଲୋକମାନେ ବେଶି ଆବଶ୍ୟକ କରୁଛନ୍ତି କହି ମୋ' ପାଇଁ ପୁଣି ଥରେ ଚା ମଗାଇଲେ। ଫେରିଲା ବେଳକୁ ମୋତେ ଆଡ଼ିସ୍‌ନାଲ ଆରଟିଓ ଓ ଆସିଷ୍ଟାଣ୍ଟ କମିଶନର କହିଲେ ଯେ ସାତଟା ଗାଡ଼ିରୁ ତିନୋଟି ହେଉଛି ମନ୍ତ୍ରୀଙ୍କ ବେନାମି ବାକି ଚାରିଟା ତାଙ୍କ ଦଳ ଲୋକଙ୍କର। ସେତେବେଳେ ଏଇଭଳି ରାଜନୈତିକ ଚାପ ପଡୁଥିଲା କିନ୍ତୁ ପ୍ରତିରୋଧ କଲେ ମନ୍ତ୍ରୀ ଏମଏଲଏମାନେ ଚୁପ୍ ରହୁଥିଲେ। ଏଇ କ୍ଷେତ୍ରରେ ମୁଁ କମିଶନରଙ୍କୁ ପ୍ରସ୍ତାବ ଦେଲି ଯେ କେବଳ ସାତୋଟି ଗାଡ଼ି ନୁହେଁ ସବୁ ଗାଡ଼ିକୁ ସାତ ଦିନ ଭିତରେ ପରମିଟ୍ କରିବାର ସୁଯୋଗ ଦେଇ ଛାଡ଼ି ଦିଆଯାଉ ଏବଂ ସେ ରାଜି ହେଲେ। ମନ୍ତ୍ରୀ ସାମାନ୍ୟ କ୍ଷୁବ୍ଧ ହେଲେ ସତ କିନ୍ତୁ ତା'ପରେ ଯେବେ ଦେଖା ହୋଇଛି ମୋତେ ଭଲ ବ୍ୟବହାର କରିଛନ୍ତି। ଏକଥା କହିବାରୁ ଜଣେ ବନ୍ଧୁ ପରିହାସ କରି କହିଲେ ରାଜନୀତି କରୁଥିବା ଲୋକ କଲମ ଅର୍ଥାତ୍ (ସାମ୍ବାଦିକ) ଲାଠି ଅର୍ଥାତ୍ (ପୋଲିସ୍) ଓ କଳା କୋର୍ଟ (ବୁଝାଇବା ଦରକାର ନାହିଁ)ଙ୍କ ଲାଙ୍ଗୁଡ଼ରେ ହାତ ମାରନ୍ତି ନାହିଁ।

ଟ୍ରାନ୍ସ୍‌ପୋର୍ଟ କମିଶନରଙ୍କ ଅଫିସରେ ବହୁତ ଓଏଏସ୍ ଅଫିସର। ସମସ୍ତ ଆରଟିଓ ମଧ୍ୟ ଓଏଏସ୍। ଏମାନଙ୍କ ମଧ୍ୟରୁ ଅଳ୍ପ କେତେଜଣଙ୍କୁ ଛାଡ଼ିଦେଲେ ବାକି ସମସ୍ତଙ୍କ ସଙ୍ଗେ କାମ କରିବା ବଡ଼ କଷ୍ଟ। ଜଣେ ଆଇପିଏସ୍ ଅଫିସରଙ୍କ ଅଧୀନରେ ସେମାନେ କାମ କରିବେ ସେକଥା ସେମାନେ ଗ୍ରହଣ କରିପାରୁନଥିଲେ। ଆଇଏଏସ ଅଫିସରଙ୍କ ଅଧୀନରେ କାମ କରି ତାଙ୍କୁ ସନ୍ତୁଷ୍ଟ କରିପାରିଲେ ସବୁଦିନେ ଆଶୀର୍ବାଦ ମିଳିବ। ଆଇପିଏସ ଅଫିସରଙ୍କ ଠାରୁ ସାମୟିକ ଲାଭ ମିଳିବ କିନ୍ତୁ ଚିରସ୍ଥାୟୀ ଉପକାର କ'ଣ ମିଳିବ ? ମୁଁ ଆରଟିଓ ଅଫିସର ପରିଦର୍ଶନରେ ଗଲେ ଜଣେ ଦୁଇଜଣ ଆରଟିଓ ଛୁଟିରେ ଚାଲିଯିବାର ଅଭିଜ୍ଞତା କମିଶନରଙ୍କୁ ଜଣେଇଲେ ମଧ୍ୟ କିଛି ଲାଭ ହେଉନଥିଲା । ତେଣୁ ଏ ବିଷୟରେ ଅଯଥା ଭାବପ୍ରବଣ ନହୋଇ କାମ କରେଇ ନେବାକୁ ପଡୁଥିଲା। ଅବସ୍ଥାର ପରିବର୍ତ୍ତନ ହେଲା। ୧୯୯୦ ମସିହା ପରେ ସଞ୍ଜୀବ ହୋତା ଟ୍ରାନ୍ସ୍ପୋର୍ଟ କମିଶନର ହୋଇ ଡେ଼ପୁଟି କମିଶନରଙ୍କୁ ଅଧିକ କ୍ଷମତା ଦେଲେ। ସେଇ ସମୟରେ ମୋ' ପୁଅ ଜନ୍ମ ହେଲା, ତା'ର ବିଭିନ୍ନ ଖାଇବା ଓ ଅନ୍ୟାନ୍ୟ ଖର୍ଚ୍ଚ ଯୋଗୁ ଦରମା ମୋ' ପାଇଁ ଯଥେଷ୍ଟ ନଥିଲା। ସରକାରଙ୍କ ଠୁ ଲୋନ୍ ନେଇ ଗୋଟିଏ ଗାଡ଼ି କିଣିବାରୁ ପଇସା କଟିଯାଉଥିଲା। ଘରଭଡ଼ା ଇତ୍ୟାଦି ଖର୍ଚ୍ଚ ବହୁତ ଥିଲା। ମୋର ବିବାହ ହେଲା ଏକ ବିଖ୍ୟାତ ପରିବାରରେ। ଶ୍ୱଶୁର ସ୍ୱର୍ଗତ ଦେବୀ ପ୍ରସାଦ ଦାଶ ସେତେବେଳେ ଓଡ଼ିଶା ସରକାରଙ୍କ ସେକ୍ରେଟେରୀ ଥିଲେ। ତାଙ୍କ କକେଇ ଥିଲେ ବିଖ୍ୟାତ ଇତିହାସ ପ୍ରଫେସର ଘନଶ୍ୟାମ ଦାଶ। ମୋ' ଧର୍ମପତ୍ନୀ ବିବାହ ବେଳକୁ ଏମ୍‌ଏ ପଢୁଥିଲେ, ବିବାହ ପରେ ପାଠ ବନ୍ଦ। ତେଣୁ ଯୋଗ୍ୟତା ବିଏସସିରେ ସୀମିତ ହୋଇରହିଲା। ସୀମିତ ରୋଜଗାରରେ ମାପିଚୁପି ଚଳିବା ଏକ ବିରାଟ ଆହ୍ୱାନ; ଅବଶ୍ୟ ମୋ' ପତ୍ନୀ ସେ କାର୍ଯ୍ୟ ସୁରୁଖୁରୁରେ ଚଳାଉଥିଲେ। କଟକରେ ରହିବା ଦ୍ୱାରା ବନ୍ଧୁ ବନ୍ଧୁବାନ୍ଧବ ଆସୁଥିଲେ ଓ ସେମାନେ ଆସିଲେ ପକେଟ୍ ଉପରେ ପ୍ରେସର ବଢ଼ିଯାଏ। ପ୍ରତି ମାସରେ ମୋତେ କିଛି କିଛି ଧାର କରିବାକୁ ପଡ଼େ। ଧାର ଦେଉଥିଲେ ଜଣେ ବନ୍ଧୁ ଓ ଶେଷ ପର୍ଯ୍ୟନ୍ତ ତାଙ୍କ ସାଙ୍ଗେ ମୋର ବନ୍ଧୁତା ରହିଛି।

ଭଲ ସରକାରୀ ଘର ପାଇବା, ସାରା ଓଡ଼ିଶା ଟୁର୍। ଯେତେବେଳେ ଫିଏଟ୍ ଗାଡ଼ି ଦୁର୍ଲଭ, ସେତେବେଳେ ସରକାରୀ କୋଟାରେ ଗୋଟେ ଗାଡ଼ି ପାଇବା ଦରମା ସାଙ୍ଗକୁ ସ୍ୱତନ୍ତ୍ର ଦରମା ମିଳିବା ଇତ୍ୟାଦି କେତେ ଜଣ ସିନିୟରଙ୍କୁ ଅସହ୍ୟ ହେବାରୁ ସେମାନେ ଏ ପଦ ପାଇବା ପାଇଁ ଆଇଜିଙ୍କୁ ଦରଖାସ୍ତ ଦେଲେ। ଆଇଜିଙ୍କ ନିକଟ ସମ୍ପର୍କୀୟ ତାଙ୍କୁ ବୁଝେଇ ଦେଲେ ଯେ ସିଏ ମୁହଁ ଖୋଲି କହୁନାହିଁ କିନ୍ତୁ ଚାହୁଁଛି ପୋଲିସ୍‌କୁ ଫେରି ଆସିବା ପାଇଁ। ଆଇଜି ଆର.କେ. ପାଢ଼ୀ ମୋ'ଠାରୁ ସତ୍ୟାସତ୍ୟ ନବୁଝି ସରକାରଙ୍କୁ

ଲେଖିଦେଲେ ମୋତେ ପୋଲିସକୁ ଫେରେଇ ଆଣିବା ପାଇଁ ଓ ମୋର କଟକ ଆଡ଼ିସ୍‌ନାଲ ଏସ୍‌ପି ଭାବେ ପୋଷ୍ଟିଂ ହେଲା। ଏସ୍‌ପି ପାହ୍ୟାରେ ଥିଲି ଆଡ଼ିସ୍‌ନାଲ ଏସ୍‌ପି ହେଲି। ମାସକୁ ୧୫୦ ଟଙ୍କା ସ୍ୱତନ୍ତ୍ର ଦରମା କଟିଗଲା। ଅର୍ଥନାଶ ଓ ଅପମାନ ଯୋଗ। କିନ୍ତୁ କ'ଣ କରିବା ? ସରକାର ଦଉଡ଼ି ଅଫିସର ଗାଈ, ଯେଣିକି ଟାଣିଲେ ତେଣିକି ଯାଇ । କଟକ ଏସ୍‌ପି ମୋ'ଠାରୁ ତିନି ବର୍ଷ ସିନିୟର ହୋଇଥିବାରୁ ମୋତେ ବେଶି ବାଧିଲା ନାହିଁ। ଜ୍ୟୋତିଷଙ୍କ ବାଣୀ ଥିଲା ଆପଣଙ୍କୁ ଯଦି କେହି କ୍ଷତି କରିବାକୁ ଚାହେଁ ଲାଭ ହେବ।' ଦୁଇବର୍ଷ ଟ୍ରାନ୍‌ସ୍‌ପୋର୍ଟ କମିଶନର ଅଫିସରେ କାମ କରି ସେକ୍ରେଟେରିଏଟ୍‌ରୁ କିଭଳି କାମ ଆଦାୟ କରାଯାଇପାରେ ତାହା ଶିଖିବା ପରେ ପୋଲିସ ବିଭାଗର ଅଭିଜ୍ଞତା ନିହାତି ଦରକାର ଥିଲା। ତା' ନହୋଇଥିଲେ ମୁଁ ଏସ୍‌ପି ହୋଇ ଅନ୍ୟମାନଙ୍କ ଉପରେ ନିର୍ଭର କରିଥାନ୍ତି।

କଟକ ଆଡ଼ିସନାଲ ଏସ୍‌ପି ହେଲି ଦଶମାସ। ଟୁର୍‌ରେ ଗଲେ ସାଙ୍ଗରେ ଖାଇବା ଜିନିଷ ନେଇଯାଏ କିମ୍ବା କିଛି କିଣି ଖାଇଦିଏ। ଥାନା ବାବୁଙ୍କ ଉପରେ ନିର୍ଭର କରେନାହିଁ। ତା'ସତ୍ତ୍ୱେ ଏକ ବିଚିତ୍ର ଅଭିଜ୍ଞତା ବର୍ଣ୍ଣନା କରୁଛି। ଥରେ ଏକ ଦୂର ସ୍ଥାନରୁ ଫେରିବା ସମୟରେ ଦିନ ୨ଟା ବେଳେ ଏକ ଇନ୍‌ସ୍ପେକ୍ଟରଙ୍କ ଅଫିସରେ ପଶିଗଲି। ଥାନାକୁ ଲାଗି ଇନ୍‌ସପେକ୍ଟରଙ୍କ ଅଫିସ। ଥାନାରେ ଶ୍ମଶାନର ନୀରବତା। ଜଣେ କନେଷ୍ଟବଲ ଗୋଡ଼ରେ ଯୋତା ନାହିଁ କି ଫିତା ନାହିଁ ଅଣ୍ଟାରେ ବେଲ୍ଟ ନାହିଁ କି ମୁଣ୍ଡରେ ପଗଡ଼ି ନାହିଁ ସେଇ ଅବସ୍ଥାରେ ବେଞ୍ଚ ଉପରେ ବସି ହାଇମାରୁଥିଲା। ମୁଁ ଥାନା ମଧ୍ୟ ଦେଇ ଇନ୍‌ସପେକ୍ଟରଙ୍କ ଅଫିସକୁ ପଶିଗଲି। ଦେଖିଲାବେଳକୁ ଜଣେ ବୁଢ଼ାଲୋକ ଇନ୍‌ସପେକ୍ଟରଙ୍କ ଚୌକିରେ ବସି ରେକର୍ଡ଼ ଦେଖୁଥାନ୍ତି ଓ କ'ଣ କ'ଣ ଲେଖୁଥାନ୍ତି। ମୋତେ ଦେଖି ଦୌଡ଼ି ପଳାଉଥିଲେ, ଧରି ପକେଇଲି ଓ କନେଷ୍ଟବଲକୁ କହିଲି ତୁରନ୍ତ ହାଜତରେ ପୁରାଅ କେସ୍ କରାଯିବ। ମୋତେ କିଛି ଉତ୍ତର ନଦେଇ କନେଷ୍ଟବଲ ପଗଡ଼ି ପିନ୍ଧି ଦୌଡ଼ିଲା ଏଏସ୍‌ଆଇଙ୍କୁ ଡାକିବା ପାଇଁ (ଥାନା ବାବୁ ବାହାରକୁ ଯାଇଥିଲେ)। ହାଜତରେ ଭର୍ତ୍ତିକର କହିବାରୁ ଏଏସଆଇ ମୋତେ ବଲ ବଲ କରି ଅନାଇଲେ ଓ ବୃଦ୍ଧ ଜଣକ ଖନି ମାରିଯାଉଥିବା ପାଟିରେ କହିଲେ 'ସାର୍ ମୁଁ ପାଞ୍ଚବର୍ଷ ତଳେ ରିଟାୟାର୍ଡ଼୍ କଲି, ଏବେ ଇନ୍‌ସପେକ୍ଟରଙ୍କ ଆଡ଼ଭାଇଜର ଅଛି। ସେ ବଡ଼ ବ୍ୟସ୍ତ ଲୋକ। ତାଙ୍କର ରିପୋର୍ଟ ଇତ୍ୟାଦି ମୁଁ ଲେଖିଦିଏ।' ସେ ଅଫିସରଙ୍କୁ ମୁଁ ଚେଷ୍ଟା କଲି ବଦଳି କରିବା ପାଇଁ କିନ୍ତୁ ସେ ମନ୍ତ୍ରୀଙ୍କ ଖାସ୍ ଲୋକ ହୋଇଥିବାରୁ କିଛି ହେଲାନାହିଁ।

ସେଇ ସମୟରେ ଜଗତସିଂହପୁର କଲେଜ ଅଧ୍ୟାପକମାନେ ଧର୍ମଘଟ କଲେ କାରଣ କେତେକ ଗୁଣ୍ଡା ସେମାନଙ୍କୁ ବାଡ଼େଇଲେ ଓ ପୋଲିସ କୌଣସି ପଦକ୍ଷେପ

ନେଲେନାହିଁ। ଏସ୍‌ପି ଛୁଟିରେ ଥିବାରୁ ମୁଁ ଏସ୍‌ପି ଦାୟିତ୍ୱରେ ଥିଲି, ଆଇଜି ନରସିଂହ ସ୍ୱାଇଁ ମୋତେ ପଠେଇଲେ ସମସ୍ୟାର ସମାଧାନ କରିବା ପାଇଁ। କଲେଜର ପ୍ରିନ୍ସିପାଲ ଥିଲେ କେ.ସି. ପଟ୍ଟନାୟକ ଯିଏ ମୋତେ ସମ୍ବଲପୁର କଲେଜରେ ପାଠ ପଢ଼େଇଥିଲେ। ଭଲ ଶିକ୍ଷକମାନେ ସବୁଦିନେ ସମ୍ମାନର ପାତ୍ର। ମୁଁ କଲେଜରେ ପଶିଲା ବେଳକୁ ମୋତେ ପାଛୋଟି ନେବା ପାଇଁ ରୁମ୍‌ରୁ ବାହାରି ଆସିଲେ ଓ ସାଙ୍ଗରେ ଥିଲେ କେତେଜଣ ଉତ୍ତେଜିତ ଅଧ୍ୟାପକ। ମୁଁ ସାର୍‌ଙ୍କୁ ସାଲ୍ୟୁଟ୍ ମାରିବାରୁ ସମସ୍ତଙ୍କର ମନୋଭାବ ମୋ' ପ୍ରତି ଅନୁକୂଳ ହୋଇଗଲା। ଅଧ୍ୟାପକମାନେ କେତେ ପିଲାଙ୍କୁ ପାଠ ପଢ଼ଉଛନ୍ତି ସମସ୍ତଙ୍କୁ ମନେ ରଖିବା କଷ୍ଟ କିନ୍ତୁ ମୋ' ଭିଣୋଇ ଡକ୍ଟର ଅମୂଲ୍ୟ ମିଶ୍ର ତାଙ୍କର ସହକର୍ମୀ ହୋଇଥିବାରୁ ସେ ମୋ' କାନ୍ଧରେ ହାତ ପକେଇ ଟିଚରସ୍ କମନ୍‌ରୁମ୍‌କୁ ନେଇଗଲେ ଓ ସମସ୍ତଙ୍କ କଥା ଶୁଣିବା ପାଇଁ ଅନୁରୋଧ କଲେ। ଜଗତସିଂହପୁର କଲେଜ ଥିଲା ପ୍ରାଇଭେଟ୍ କଲେଜ, ଜଣେ ଅବସରପ୍ରାପ୍ତ ଏସ୍‌ପି (ଶ୍ରୀକୃଷ୍ଣ ମହାପାତ୍ର) ବହୁତ କଷ୍ଟରେ କଲେଜ କରିଥିଲେ କିନ୍ତୁ ଦୁଇଜଣ ଛାତ୍ର କଲେଜକୁ ଧ୍ୱଂସ କରିବା ପାଇଁ ବସିଥିଲେ। ପରୀକ୍ଷା ହଲ୍‌ରେ ଛୁରା ଧରି କପିକରିବା, ଅଧ୍ୟାପକଙ୍କୁ ବାଡ଼େଇବା, ସେମାନଙ୍କୁ ତୁ ତା ଭାଷାରେ କଥାବାର୍ତ୍ତା କରିବା ଇତ୍ୟାଦି ଅପରାଧ କରୁଥିଲେ ବାରମ୍ବାର। ଥାନାରେ କୁହାଗଲେ ମଧ୍ୟ ଥାନାବାବୁମାନେ କୌଣସି ପଦକ୍ଷେପ ନେଉନଥିଲେ। ବରଂ ଥରେ ଥାନାକୁ ଯାଇ ଅଧ୍ୟାପକମାନେ ଦେଖିଲେ ଯେ ସେ ଦୁଇଜଣ ଥାନାରେ ବସି କୋକାକୋଲା ପିଉଛନ୍ତି। ଥାନା ଇନ୍ସପେକ୍ଟରଙ୍କୁ ଡାକି କହିଲି 'ଆଜି କେସ୍ କର ୨୪ ଘଣ୍ଟା ମଧ୍ୟରେ ତାଙ୍କୁ ଆରେଷ୍ଟ କରି ହାଜତରେ ପୂରେଇବ, ହାତକଡ଼ି ପକେଇ କଲେଜ ସାମନାରେ ନେବ।' କିନ୍ତୁ ସେମାନେ ମିଳିଲେ ନାହିଁ। ଚାରି ପାଞ୍ଚ ଦିନ ପରେ ଜଣେ ଅଧ୍ୟାପକ ଆସି କହିଲେ ଯେ, ସେମାନେ କଟକ କଚେରୀ ଆଗରେ ବୁଲୁଛନ୍ତି। ସାଙ୍ଗେ ସାଙ୍ଗେ ଲାଲ୍‌ବାଗ ଥାନାକୁ ଫୋନ୍ କରି ବାସୁଦେବ ସିଂ ବୋଲି ଜଣେ ସବ୍‌ଇନ୍ସପେକ୍ଟରଙ୍କୁ ଡକେଇଲି ଓ ପୃଷ୍ଠ ଭୂମି କହି ଗିରଫ କରିବା ପାଇଁ ଆଦେଶ ଦେଲି। ବାଘ ହରିଣ ଉପରେ ଝାମ୍ପି ପଡ଼ିଲା ପରି ବାସୁଦେବ ସିଂ ଦୁଇଜଣଙ୍କୁ ଧରି ଘୋଷାଡ଼ି ଘୋଷାଡ଼ି ଥାନାକୁ ନେଇଗଲେ। ୨ ଘଣ୍ଟା ପରେ ମୁଁ ଥାନାକୁ ଗଲା ବେଳକୁ ସେ ଦୁଇଜଣଙ୍କ ଉପରେ ଯଥେଷ୍ଟ ପୋଲିସ ଚର୍ଚ୍ଚା ହୋଇସାରିଲାଣି। କେସ୍ ବହୁତ ଦିନ ଚାଲିଲା। ଅଧ୍ୟାପକମାନଙ୍କ ଗୋଡ଼ ହାତ ଧରିବାରୁ ସେମାନେ ସାକ୍ଷୀ ଦେଲେ ନାହିଁ। ଖଲାସ ହେଲେ ସିନା କିନ୍ତୁ ଘୋଷଡ଼ା ବହୁତ ପାଇଲେ। ସେ ଦୁଇଜଣ ବର୍ତ୍ତମାନ ନେତା। ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। ମାଷ୍ଟରଙ୍କ ମାଡ଼ ଖାଇଲେ ପିଲା ମଣିଷ ହୁଅନ୍ତି। ପୋଲିସର ଚର୍ଚ୍ଚା ହେଲେ ନେତା ବନନ୍ତି - ଏକଥା କ'ଣ ଆମେ ଜାଣିନୁ ?

ଆଉ ଏକ ଘଟଣା। ପାରାଦ୍ୱୀପ ଠାରୁ କିଛି ଦୂରରେ ଏକ ଗାଁ ବଗଦିଆ। ଗାଁରେ ସାତୋଟି ପରିବାରକୁ ଛାଡ଼ି ସମସ୍ତେ କମ୍ୟୁନିଷ୍ଟ। ନିର୍ବାଚନ ସମୟରେ ଗାଁ ସଭା ଡକାଗଲା ଓ ନିଷ୍ପତ୍ତି ନିଆଗଲା ଯେ ସମସ୍ତେ କମ୍ୟୁନିଷ୍ଟ ଦଳକୁ ଭୋଟ ଦେବେ। ସମସ୍ତେ ଦେଲେ ମଧ୍ୟ ୭ଟି ପରିବାର ଉତ୍କଳ କଂଗ୍ରେସକୁ ଦେଲେ ଏବଂ କହିଲେ। ଦଣ୍ଡସ୍ୱରୂପ କମ୍ୟୁନିଷ୍ଟମାନେ ସେମାନଙ୍କ ଘର ଆକ୍ରମଣ କରି ମୂଲ୍ୟବାନ ଜିନିଷ ନେଇଗଲେ, ସମ୍ପତ୍ତି ନଷ୍ଟ କଲେ ଓ ପ୍ରବଳ ମାଡ଼ ଦେଲେ। ମାଡ଼ ଖାଇଥିବା ଲୋକ ପାରାଦ୍ୱୀପ ଥାନାକୁ ଗଲେ। ଥାନାରେ ଅଫିସର ହେଉଛି ଆସୁଛି କହି ମାରିଲେ ଡିଆଁ। ଇନ୍ସପେକ୍ଟର ଜରୁରୀ କାମ ଅଛି କହି କୁଆଡ଼େ ଚାଲିଗଲେ ଓ ଏଏସ୍ଆଇଙ୍କୁ ଜର ହୋଇଗଲା। ଅଭିଯୋଗ ପତ୍ରଟି ପାଇ ରାଇଟର କନେଷ୍ଟବଲ କ'ଣ କରିବେ ବୋଲି ଡିଏସ୍‌ପିଙ୍କୁ ପଚାରିଲେ। ସେତେବେଳେ ଡିଏସ୍‌ପିଙ୍କୁ ପ୍ରବଳ ଜ୍ୱର। ସେତେବେଳେ କେନ୍ଦ୍ର ସରକାର ଓ ରାଜ୍ୟ ସରକାର କମ୍ୟୁନିଷ୍ଟଙ୍କ ସମର୍ଥନରେ ଚାଲୁଥିଲା। ଚୋରି କରି ପାଇକପଣିଆ ଦେଖାଇବାରେ ସିଦ୍ଧହସ୍ତ ସ୍ଥାନୀୟ କମ୍ୟୁନିଷ୍ଟ ନେତା ଓଲଟି ଉତ୍କଳ କଂଗ୍ରେସ ନାଁରେ କେସ୍ କଲେ। ମୋତେ ବିଜୁ ବାବୁ ଫୋନ୍ କଲେ ଓ ଆଦେଶ ଦେବା ଭଙ୍ଗୀରେ କହିଲେ ଜଲଦି ଯାଇ କିଛି କର। ବିଜୁ ବାବୁଙ୍କର ଏକ ବିଶେଷତ୍ୱ ଥିଲା ଯେ, ସେ କ୍ଷମତାରେ ଥାଆନ୍ତୁ ବା ନଥାନ୍ତୁ ଯେ ସେ କେବଳ ଆଦେଶ ଦିଅନ୍ତି ଅନୁରୋଧ କରନ୍ତି ନାହିଁ। ମୋତେ ଆଇଜି ଡାକି କହିଲେ ଏଥିରେ ରାଜନୀତି ଅଛି। କେସ୍‌ଟା ସାବଧାନ ସହକାରେ ଦେଖିବ। ମୁଁ ପାରାଦ୍ୱୀପରେ ପହଞ୍ଚି ସେ ଗାଁକୁ ଗଲି। ମନା କରିବା ସତ୍ତ୍ୱେ ଡିଏସ୍‌ପି ପ୍ରଫୁଲ୍ଲ ମିଶ୍ର ଗରମ ଶାଲ୍‌ଟିଏ ଘୋଡ଼ି ହୋଇ ସାଙ୍ଗରେ ଗଲେ। ଗାଁରୁ ଫେରି ଥାନାରେ ପହଞ୍ଚିଲା ମାତ୍ରେ ଦେଖିଲି ଆକାଶରୁ କରକାପାତ ପରି ଇନ୍ସପେକ୍ଟରଙ୍କ ଠାରୁ ଆରମ୍ଭ କରି ଏଏସଆଇ ପର୍ଯ୍ୟନ୍ତ ନିଜ ଡ୍ୟୁଟି ସାରି ଫେରି ଆସୁଛନ୍ତି। ସମସ୍ତେ ରାଇଟର କନେଷ୍ଟବଲ ଉପରେ ମାର ନମାର। ସମସ୍ତଙ୍କ ମୁହଁରେ ଗୋଟିଏ କଥା 'ମୋତେ ଟିକେ କହିଲନି ମୁଁ ଯାଇଥାନ୍ତି।' ସେଇଠି ମୋ' ନିର୍ଦ୍ଦେଶରେ ସାତୋଟି ଡକାୟତି କେସ୍ କରାଗଲା। ସୁପରଭିଜନ ନୋଟ୍ ଲେଖି ସ୍ଥାନୀୟ ପୋଲିସକୁ ଦେଇଦେଲି ଓ ତା' ଆରଦିନ କଟକ ଆସି ଡିଆଇଜିଙ୍କୁ ଦେଖାକରି ସବୁ କହିବାରୁ ସେ କହିଲେ "ମୋତେ ବହୁତ ଲୋକ ବହୁତ କଥା କହିସାରିଲେଣି। ମୁଁ ଚେଷ୍ଟା କଲି ପାରାଦ୍ୱୀପ ଫୋନ୍ କରିବା ପାଇଁ, ଭଲ ହେଲା ଫୋନ୍ ଲାଇନ୍ ଲାଗିଲାନି। କମ୍ୟୁନିଷ୍ଟଙ୍କ ନାଁରେ କେସ କରିଦେଲେ, ମୁଖ୍ୟମନ୍ତ୍ରୀ ବିଚଳିତ ହେବେ। କିନ୍ତୁ ମୁଁ ତାଙ୍କୁ ବୁଝେଇ ଦେବି।" ଏ ଘଟଣାର କିଛିଦିନ ପରେ ବିଶିଷ୍ଟ ଲେଖକ ରବି ସିଂ ଏକ ସାହିତ୍ୟ ସଭାରେ ଯୋଗଦେବା ପାଇଁ ଶ୍ରୀରାମଚନ୍ଦ୍ର ଭବନ ଯାଇଥିଲେ। ସେଠାରେ ବିଶିଷ୍ଟ କବି ସଚି

ରାଉତରାୟ ଥିଲେ। ସଭାରେ ବୋମା ଫୁଟିଲା; ଯଦିବା କାହାର କ୍ଷତି ହୋଇନାହିଁ ଚହଳ ବହୁତ ପଡ଼ିଲା। କେହି କେହି କହିଲେ ଯେ ରବି ସିଂ ହେଉଛନ୍ତି ସଚ୍ଚି ରାଉତରାୟଙ୍କ ଶତ୍ରୁ ତେଣୁ ସେ ବୋମା ଫୁଟେଇଛନ୍ତି। ଏକ ଅଜ୍ଞାତ ସ୍ଥାନରୁ ରବି ସିଂ ମୋତେ ଫୋନ୍ କଲେ। ମୁଁ ଚାହିଁଥିଲେ ଟେଲିଫୋନ୍‌ବାଲାଙ୍କୁ ପଚାରି ଜାଣିପାରିଥାନ୍ତି କିନ୍ତୁ ତାଙ୍କୁ କହିଲି ଆପଣ ଲାଲ୍‌ବାଗ୍ ଥାନାକୁ ଆସନ୍ତୁ ମୁଁ ଯାଉଛି। ମୋ' ଉପରେ ଭରସା ରଖି ରବିବାବୁ ଲାଲ୍‌ବାଗ ଥାନାକୁ ଆସିଲେ ଏବଂ ମୁଁ ଇନ୍‌ସ୍‌ପେକ୍ଟରଙ୍କୁ କହିଲି ତାଙ୍କ ଘର ତଲାସ କର। ତଲାସୀ କରି କିଛି ମିଳିଲା ନାହିଁ ଓ ମୁଁ ରବି ସିଂକୁ ଛାଡ଼ିଦେଲି।

ଏହାର କିଛିଦିନ ପରେ ବାଙ୍କୀ ପାଖରେ ଧଳା ପଥର ବୋଲି ଏକ ଗାଁରେ ଗୋଟିଏ ଘର ଭିତରେ ବୋମା ଫୁଟି ପାଞ୍ଚ ଜଣ ଆହତ ହେଲେ। ସେମାନେ ମଧ୍ୟ କମ୍ୟୁନିଷ୍ଟ ସମର୍ଥକ। ଅଭିଯୋଗ ହେଲା ଯେ ଆହତ ଲୋକମାନେ ବୋମା ଭିଡୁଥିଲେ ଧଳାପଥର ଗାଁ ଉପରେ ଆକ୍ରମଣ କରିବାକୁ। ବୈଦେଶ୍ୱର ଥାନା ବାବୁ ଜପକୃଷ୍ଣ ମହାନ୍ତି କେତେଜଣଙ୍କୁ ଗିରଫ କରିଥିଲେ କିନ୍ତୁ ସେମାନଙ୍କ ନେତା ବାଙ୍କୀର ଜଣେ ପ୍ରତିଷ୍ଠିତ ନେତା ହୋଇଥିବାରୁ ତାଙ୍କୁ ଗିରଫ କରିବା ପାଇଁ କେହି ସାହସ କରୁନଥିଲେ କିନ୍ତୁ ବୈଦେଶ୍ୱର ଥାନାରୁ ବାର୍ତ୍ତା ପାଇବା ମାତ୍ରେ ବାଙ୍କୀ ଥାନା ଇନ୍‌ଚାର୍ଜ ସୂର୍ଯ୍ୟମଣୀ ତ୍ରିପାଠୀ ନେତା ମହାଶୟଙ୍କୁ ବାନ୍ଧି ଜେଲ୍‌କୁ ପଠାଇଦେଲେ। ନିଷ୍ପତି ତାଙ୍କ ନିଜର ଥିଲା କିନ୍ତୁ କୁହାଗଲା ଯେ ମୁଁ ତାଙ୍କୁ ପ୍ରବର୍ତ୍ତାଇଥିଲି। ମୋର ଗୁପ୍ତ ଶତ୍ରୁମାନେ ଭାବିଲେ ଯେ, ଏ ସମସ୍ତ ଘଟଣା (ଜଗତସିଂହପୁର, ପାରାଦ୍ୱୀପ, ରବି ସିଂ ଓ ବାଙ୍କୀ)ରେ ମୋ' ଭୂମିକା ଯୋଗୁ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥି ମୋ' ଉପରେ ବିରକ୍ତ ହେବେ। ମୁଖ୍ୟମନ୍ତ୍ରୀ ବିରକ୍ତ ହେଲେ ଅନ୍ୟ ଅଫିସରମାନେ ବିମୁଖ ହେବେ। କିନ୍ତୁ ଆଇଜି ଶ୍ରୀ ସ୍ୱାଇଁ କହିଲେ ଯେ ରାଉରକେଲା ବିପର୍ଯ୍ୟସ୍ତ ଅବସ୍ଥାରେ ଅଛି ସେଠିକୁ ବିପିନ୍ ମିଶ୍ରଙ୍କୁ ପଠାଯାଉ। ମୁଖ୍ୟମନ୍ତ୍ରୀ ତୁରନ୍ତ ରାଜି ହୋଇଗଲେ। ଏ ପର୍ଯ୍ୟନ୍ତ ରାଉରକେଲାକୁ ଯେଉଁମାନେ ଏସ୍‌ପି ହୋଇ ଯାଉଥିଲେ ସେମାନେ ଗୋଟିଏ ଦୁଇଟି ଜିଲ୍ଲାର ଏସ୍‌ପି ହୋଇଯାଉଥିଲେ। କାରଣ ରାଉରକେଲାର ସମସ୍ୟା ଅତ୍ୟନ୍ତ ଗୁରୁତର। ମୁଁ ଏପର୍ଯ୍ୟନ୍ତ ଏକମାତ୍ର ଓ ଶେଷ ଏସ୍‌ପି ଯେକି ସିଧାସଳଖ ଅତିରିକ୍ତ ଏସ୍‌ପିରୁ ରାଉରକେଲା ଏସ୍‌ପି ହୋଇଗଲେ। ତା' ସଙ୍ଗେ ସଙ୍ଗେ କଟକରେ ଥିବା ଅବସ୍ଥାରେ ବହୁତ ଚୋରା ଘଉଳ, ସାର କାରବାର ଧରିବା ଅପମିଶ୍ରଣ କାରଖାନା ଧରିବା, ଡକାୟତି କେସ୍ ଧରିବା, ସହରରେ ଅସାମାଜିକ ବ୍ୟକ୍ତିଙ୍କ କାର୍ଯ୍ୟକଳାପ ବନ୍ଦ କରିବା ପାଇଁ ସରକାରଙ୍କ ଠାରୁ ପ୍ରଶଂସା ପତ୍ର ପାଇଲି। ପୂର୍ବରୁ ନବକଳେବରରେ ଡ୍ୟୁଟି କରିବା ଓ ବଡ଼ବିଲ୍‌ରେ ନକ୍ସଲାଇଟଙ୍କୁ ଧରିବା ପାଇଁ ପ୍ରଶଂସା ପତ୍ର ପାଇଥିଲି। ଏବେ ସେସବୁ ଖେଳେଇଲେ ମନେ ପଡ଼ିଯାଏ ରାତି ୨ଟାରେ

ଘରକୁ ଫେରି ନଖାଇ ଅପେକ୍ଷା କରି ରହିଥିବା ସ୍ତ୍ରୀ ସାଙ୍ଗେ ଶୁଖିଲା ଭାତ ଖାଇବାର ଦୃଶ୍ୟ।

ପରିବାରକୁ ଛାଡ଼ି ମୁଁ ଏକୁଟିଆ ଗଲି ରାଉରକେଲା। ଗାଡ଼ିରେ କେବଳ ମୁଁ ଏବଂ ଡ୍ରାଇଭର। ରେଡ଼ିଓ ଲାଗିଥିଲେ ଗୀତ ଶୁଣିଥାନ୍ତି କିନ୍ତୁ ସେସବୁ ମୋ' ପାଇଁ ଦୁର୍ଲ୍ଲଭ ଥିଲା। ବାଟସାରା ଭାବି ଭାବି ଯାଉଥାଏ ଭରିକିରି ଜୀବନ କଥା। ତିନିଜଣ ଟ୍ରାନ୍‌ପୋର୍ଟ କମିଶନରଙ୍କ ମଧ୍ୟରୁ କେବଳ ଜଣେ ସଚ୍ଚୋଟ ଥିଲେ କିନ୍ତୁ ତାଙ୍କର ମହିଳାମାନଙ୍କ ସହିତ ଅତ୍ୟଧିକ ବନ୍ଧୁତା ବେଳେ ବେଳେ ସୀମା ଲଂଘନ କରୁଥିଲା। ଆଉ ଜଣଙ୍କର ସମସ୍ତ ଆବଶ୍ୟକତା ଆରଟିଓ ଏମ୍‌ଭିଆଇ ମେଣ୍ଟାଉଥିଲେ। ତୃତୀୟ ବ୍ୟକ୍ତି ଜଣକ ସଚ୍ଚୋଟ ଥିଲେ କିନ୍ତୁ ନେତା ଓ ସାମ୍ବାଦିକଙ୍କୁ ପ୍ରବଳ ଭୟ କରୁଥିଲେ। ଛତାରେ ଯଦି ଅସଂଖ୍ୟ କଣା ତେବେ ସେ ଛତା କେମିତି ଆମକୁ ବର୍ଷା ଦାଉରୁ ବା ରକ୍ଷା କରିବ? ଭାଗ୍ୟକୁ କୌଣସି ଅସୁବିଧାରେ ପଡ଼ିନାହିଁ, ପଡ଼ିଥିଲେ ସାହାଯ୍ୟ କରିବା ତ ଦୂରର କଥା କେହି ଆହା ବି କହିନଥାନ୍ତେ। ସେହିଭଳି କଟକରେ ଅତିରିକ୍ତ ଏସ୍‌ପି ହେବାର ଅଭିଜ୍ଞତା। ଜଣେ ସିନିୟର ପୋଲିସ ଅଫିସର ମୋତେ ଦେଖିଲେ ବିଗୁଡୁଥିଲେ। ତାଙ୍କର ସନ୍ଦେହ ଥିଲା ଯେ ତାଙ୍କର ଅବସର ସମୟ ଘୁଞ୍ଚାଇ ଦେବା ପାଇଁ ସେ ଜାରି କରିଥିବା ପ୍ରୟାସ ମୋ' ବଡ଼ଭାଇଙ୍କ ଯୋଗୁ ଅସଫଳ ହୋଇଥିଲା। ମୋ' ବଡ଼ ଭାଇ କେନ୍ଦ୍ର ସରକାରଙ୍କର ଗୋଇନ୍ଦା ଅଫିସର ହୋଇଥିବାରୁ କେତେବେଳେ କେମିତି ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯାଉଥିଲେ। ଦୁଇ ଭାଇ ଗୋଟିଏ ରାଜ୍ୟରେ ଏକା ବିଭାଗରେ କାର୍ଯ୍ୟ କରିବାରେ ଅସୁବିଧା ଥାଏ। ବଡ଼ ଭାଇଙ୍କୁ ଶତ୍ରୁତା କରୁଥିବା ଭଦ୍ରଲୋକମାନଙ୍କର ଶିକାର ସାନ ଭାଇ ହୁଏ ଓ ସାନ ଭାଇର ଶତ୍ରୁ ମଧ୍ୟ ବଡ଼ ଭାଇର ଶତ୍ରୁ ହୋଇଯାଆନ୍ତି, କିନ୍ତୁ ଏଥିରେ ସାନ ଭାଇ ବେଶି କ୍ଷତିଗ୍ରସ୍ତ ହୁଏ। କାରଣ ବଡ଼ ଭାଇର ଶତ୍ରୁମାନେ ସିନିୟର। ଜଣେ ଅତି ଉଚ୍ଚ ପୋଲିସ ଅଫିସର ମୋ' ବିଷୟରେ ସରକାରଙ୍କୁ ଲେଖିଦେଲେ ଯେ କଟକ ସହରରେ ଅପରାଧ ବଢ଼ୁଛି, ତାକୁ ରୋକିବାରେ ଅତିରିକ୍ତ ଏସ୍‌ପି ବି.ବି. ମିଶ୍ର ସମ୍ପୂର୍ଣ୍ଣ ଅକ୍ଷମ। ତେଣୁ ତାଙ୍କ କୈଫୟତ ମଗାଯାଉ। ଚିଠି ଲେଖିବା ସାଙ୍ଗେ ସାଙ୍ଗେ କଥାଟା ଖବରକାଗଜରେ ବାହାରିଗଲା ଓ ଖବରକାଗଜ ପଢ଼ି ମୁଁ ସେ ଅଫିସରଙ୍କୁ ଚିଠି ଲେଖିଲି ଯେ କଟକ ସହରକୁ ଛାଡ଼ି ଜିଲ୍ଲାର ବାକି ଅଂଶର ଅପରାଧ ନିୟନ୍ତ୍ରଣ ଦାୟିତ୍ୱ ମୋର। କଟକ ସହରର ଦାୟିତ୍ୱ ଆଉ ଜଣେ ଅଫିସରଙ୍କୁ ଦିଆଯାଇଛି। ସେ ଅଫିସରଙ୍କର ଖ୍ୟାତି ଥିଲା ଯେ ସେ ମୁଖ୍ୟମନ୍ତ୍ରୀଙ୍କ ପ୍ରାଇଭେଟ୍ ସେକ୍ରେଟେରୀଙ୍କ ପାଖକୁ ବାରମ୍ବାର ଯାଆନ୍ତି। ପରେ ପୋଲିସ ଅଫିସର ଜଣକ ସାଙ୍ଗେ ସାଙ୍ଗେ ଚିଠି ଫେରେଇ ଆଣିଲେ। ସେ ପୋଲିସ ଅଫିସର ମୋତେ ରାଜ୍ୟପାଳଙ୍କ ଏଡ଼ିସି ଭାବେ ପଠାଇଦେଲେ। ଏଡ଼ିସି କାମ କରୁଥିବା ସମୟରେ

ମଧ୍ୟପ୍ରଦେଶରେ ଜଙ୍ଗଲ ଯୁଦ୍ଧ ପଦ୍ଧତି ଶିକ୍ଷା କରିବାକୁ ପଠାଇବା ପାଇଁ ସରକାରଙ୍କୁ ଲେଖିଦେଲେ ଓ ମୋତେ ପ୍ରସ୍ତୁତ ହେବା ପାଇଁ ଆଦେଶ ଦେଲେ। ସେ ଚିଠିର କପି ମୁଁ ରାଜ୍ୟପାଳଙ୍କୁ ଦେଇ ମୋତେ ଛାଡ଼ି ଦେବା ପାଇଁ ଅନୁରୋଧ କରିବାରୁ ତାଙ୍କ ବିନା ଅନୁମତିରେ ଏଡ଼ିସିଙ୍କୁ କିପରି ଟ୍ରେନିଂ ପଠାଯାଉଛି କହି ସେ ଭୀଷଣ ବିରକ୍ତ ହେଲେ ଓ ଟ୍ରେନିଂ ବନ୍ଦ ହେଲା। ସେହି ସମୟରେ ଦୁଇଜଣ ଆଇପିଏସ୍ ଅଫିସରଙ୍କର ଜଣେ ପଞ୍ଜାବୀ ଝିଅ ସହିତ ସାହଚର୍ଯ୍ୟ, ଚର୍ଚ୍ଚା ଅଭିଯୋଗର ବିଷୟ ହୋଇଥିଲା। ସେତେବେଳେ ଏସ୍‌ପି ଛୁଟିରେ ଥିବାରୁ ମୁଁ ଦାୟିତ୍ୱରେ ଥିଲି। ତତ୍କାଳୀନ ଆଇଜି ଶ୍ରୀ ଋନ୍ଧ କେସ୍‌ରେ ଅତ୍ୟଧିକ ଆଗ୍ରହ ଦେଖାଉଥିବାରୁ ସେ ଝିଅଟିର ହଠାତ୍ ଅଦୃଶ୍ୟ ହୋଇଯିବାର ପଛରେ ଏମାନଙ୍କର କିଛି ହାତ ନାହିଁ ବୋଲି ରିପୋର୍ଟ ଦେଇଦେଲି। କିଛିଦିନ ପରେ ସେ ଝିଅର ଚିଠି ଗୁରୁଗାଓଁରୁ ଆସିଲା ଓ ସେ ନିଜ ଇଚ୍ଛାରେ ଯାଇଛି ବୋଲି ଲେଖିଥିଲା। ସେତେବେଳେ ମୁଁ ଯଦି ସେ ଦୁଇ ଅଫିସରଙ୍କ ବିରୁଦ୍ଧରେ କିଛି ଲେଖିଥାନ୍ତି ସେମାନେ ସସ୍‌ପେଣ୍ଡ ହୋଇଥାନ୍ତେ। ଏହା ଅପାତ୍ରରେ ଦାନ ବୋଲି ଅନେକ ସେତେବେଳେ କହିଥିଲେ। ପରେ ମୋର ଭୁଲ୍ ଉପଲବ୍ଧି କଲି କାରଣ ସେଥିରୁ ଜଣଙ୍କର ନାରୀ ଓ ସୁରା ଜନିତ ଦୁର୍ବଳତା ଅନେକ ସ୍ଥାନରେ ପଦାରେ ପଡ଼ିଯାଇଥିଲା। ଏ ସମସ୍ତ ସ୍ମୃତିକୁ ମନେ ପକେଇ ରାଉରକେଲାର ଏକ ନୂତନ ଅଧ୍ୟାୟ ଖୋଲିବାକୁ ପଡ଼ିଲା। ମୁଁ ରାଉରକେଲା ଯିବା ପୂର୍ବରୁ ଆଇଜିଙ୍କୁ ଦେଖାକରିଥିଲି ଓ ସେ ମୋତେ କହିଲେ ଯେ "ମୋତେ ଅନେକ କହୁଛନ୍ତି ଭୁଲ୍ ନିଷ୍ପତ୍ତି ବୋଲି। ରାଉରକେଲା ଜିଲ୍ଲା ପାଇଁ ତୁମେ ଜୁନିୟର। କିନ୍ତୁ ମୋର ବିଶ୍ୱାସ ଯେ ତୁମେ ପାରିବ। ତୁମର ଯଦି କିଛି ଅସୁବିଧା ହୁଏ ମୋତେ ଫୋନ୍ କରିବ।" ମୁଁ ବଡ଼ବିଲ ଏସ୍‌ପି ଥିଲାବେଳେ ଶ୍ରୀ ସ୍ୱାଇଁ ମୋର ଡିଆଇଜି ଥିଲେ। ସେ ସବୁଦିନେ ମୋତେ ବିଶ୍ୱାସ ଓ ଶ୍ରଦ୍ଧା କରୁଥିଲେ। ତାଙ୍କର ମୋତେ ଭଲପାଇବାଟା ପରେ ମୋ' ପାଇଁ ବହୁତ ମହଙ୍ଗା ପଡ଼ିଲା। ଆଇଜିଙ୍କୁ ଦେଖା କରିବା ପରେ ମୁଁ ଏଆଇଜି ଅମୀୟ ଭୂଷଣ ତ୍ରିପାଠୀଙ୍କୁ ଦେଖାକଲି। ମୁଁ ବଡ଼ବିଲ ଏସ୍‌ପି ଥିଲା ବେଳେ ସେ ମୋ' ଏସ୍‌ପି ଥିଲେ। ଜଣେ ଦକ୍ଷ ସ୍ୱାଭିମାନୀ ଓ ମର୍ଯ୍ୟାଦାବନ୍ତ ଅଫିସର ହୋଇଥିବାରୁ ମୁଁ ତାଙ୍କୁ ଆଜି ପର୍ଯ୍ୟନ୍ତ ବହୁତ ସମ୍ମାନ ଦେଖାଏ। ଜିଲ୍ଲାରେ ପୋଲିସ ଶାସନ କିଭଳି ଚଳାଇବାକୁ ହୁଏ ସେ ମୋତେ ଉପଦେଶ ଦେଇଥିଲେ। ରାଉରକେଲା ଜିଲ୍ଲାରେ ଶ୍ରୀଧର ମିଶ୍ରଙ୍କ ଠାରୁ ଦାୟିତ୍ୱ ନେଲି। ଜିଲ୍ଲାରେ ମାତ୍ର ଋରୋଟି ପୋଲିସ ଷ୍ଟେସନ। ସେଥିପାଇଁ ଋରିଜଣ ଇନ୍‌ସ୍‌ପେକ୍ଟର ଦୁଇଜଣ ଡିଏସ୍‌ପି ଓ ଜଣେ ଆଡ଼ିସନାଲ ଏସ୍‌ପି ଥାଆନ୍ତି। ଋରିଜଣ ଇନ୍‌ସ୍‌ପେକ୍ଟରଙ୍କୁ ଛାଡ଼ି ଜଣେ ଡିଆଇବି ଓ ଜଣେ ଡିସିଆଇବି ଇନ୍‌ସ୍‌ପେକ୍ଟର ଥାନ୍ତି। ଏସ୍‌ପି ଅଫିସ ଓ ଘର ଉଭୟ ନୂଆ।

ଇଂରେଜମାନେ ୧୮୦୩ରେ ଓଡ଼ିଶା ଦଖଲ କରିବା ସମୟରେ କାଠଯୋଡ଼ି କୂଳରେ ଥିବା ଲୁଣ ଗୋଦାମ ଓ ଅଫିମ ଗୋଦାମ ହାସଲ କଲେ। ଲୁଣ ଗୋଦାମ ହେଲା କଲେକ୍ଟରଙ୍କ ଅଫିସ ଓ ଅଫିମ ଗୋଦାମ ହେଲା ପୋଲିସ ଅଫିସ। ସ୍ୱାଧୀନତା ପରେ କଲେକ୍ଟର ଅଫିସ ତିଆରି ହୋଇଗଲା ଓ ଏସ୍‌ପିଙ୍କ ଅଫିସ ସେଇଠି ଅଛି। ଗତ ୧୦୦ ବର୍ଷ ହେଲା ହୋମ୍ ଡିପାର୍ଟମେଣ୍ଟରୁ ଏସ୍‌ପି ଅଫିସ ହେବା ପାଇଁ ପ୍ରସ୍ତାବରେ, ହଁ ଦେବା ଉତ୍ତର ଆସୁଛି। ସେ ତୁଳନାରେ ରାଉରକେଲା ଅଫିସ୍ ବେଶ୍ ଭଲ। ସେତେବେଳେ କୌଣସି କଲେକ୍ଟର କି ଏସ୍‌ପିଙ୍କୁ କାର୍ ମିଳୁନଥିଲା, ସମସ୍ତେ ଜିପ୍ ଚଢ଼ୁଥିଲେ। କେବଳ ରାଉରକେଲା ଏସ୍‌ପିଙ୍କୁ ଆଇଜି ନରସିଂହ ସ୍ୱାଇଁ କାର୍ ଦେଇଥିଲେ। ତାଙ୍କର ଯୁକ୍ତି ଥିଲା ଏସ୍‌ପିଙ୍କର ମଝିରେ ମଝିରେ ଷ୍ଟିଲ ପ୍ଲାଣ୍ଟ ଜେନେରାଲ ମ୍ୟାନେଜରଙ୍କ ସଙ୍ଗେ ମିଟିଂ ହେବ। ସେମାନଙ୍କ ତଳିଆ କର୍ମଚାରୀ କାର୍‌ରେ ଆସିବେ। ଆମ ଏସ୍‌ପି କ'ଣ ଜିପ୍‌ରେ ଯିବେ? ଆଇଜି ସିନା କାର୍ ଦେଲେ କିନ୍ତୁ ସରକାର ଦେଉଥିବା ଦରମା ଯଥେଷ୍ଟ ନଥିଲା। ଯେକୌଣସି ଆସିଷ୍ଟାଣ୍ଟ ମ୍ୟାନେଜର, ଯାହାଙ୍କ ଦାୟିତ୍ୱ ଥିଲା ଯେ ଦିନକୁ ମାତ୍ର ଆଠ ଘଣ୍ଟା ପାଇଁ ଚାଳିଶ ପଚାଶ ଜଣ ଶ୍ରମିକଙ୍କର କାର୍ଯ୍ୟ ନିରୀକ୍ଷଣ କରିବେ, ତାଙ୍କ ଦରମା କଲେକ୍ଟର ଏସ୍‌ପିଙ୍କ ଦରମାଠୁ ବି ବେଶି ଥିଲା। ଜଣେ ସଫେଇ କର୍ମଚାରୀଙ୍କ ଦରମା ସବ୍‌ଇନ୍ସପେକ୍ଟରଙ୍କ ଦରମାଠୁ ବେଶି ଥିଲା। ପ୍ଲାଣ୍ଟର ଅଫିସରମାନଙ୍କର ଧନଗର୍ବ ଥିବାରୁ ସେମାନଙ୍କ ମଧ୍ୟରୁ ଅନେକ ସାମାଜିକ ଉତ୍ସବରେ ଦେଖାହେଲେ ଆମ ପକେଟ୍ କେତେ ଛୋଟ ତାହା ଦର୍ଶେଇ ଦିଅନ୍ତି। ଯଥା ଆପଣ ଫ୍ରିଜ୍ କେବେ କିଣିଲେ? ସେମାନେ ଜାଣିଥାନ୍ତି ଯେ ମୋର ଫ୍ରିଜ ନଥିଲା। ୧୯୭୬ ମସିହାରେ କିଛି ବକେୟା ଦରମା ମିଳିବାରୁ ଫ୍ରିଜ୍‌ଟିଏ କିଣିଲି। ରାଉରକେଲା ଷ୍ଟିଲପ୍ଲାଣ୍ଟରେ ଜଣେ ଅଫିସର ତାଙ୍କ ଗୋଦାମରେ ଥିବା ପୁରୁଣା କିନ୍ତୁ ବ୍ୟବହାର ହେଉଥିବା ଫ୍ରିଜ ଓ ଏସି ମୋତେ ଶସ୍ତାରେ ଦେବା ପାଇଁ ଯାଚିଥିଲେ କିନ୍ତୁ ମୁଁ ମନା କଲି । ସେମାନଙ୍କଠୁ କୌଣସି ରକମ ସାହାଯ୍ୟ ନେଇଥିଲେ ସେମାନେ ଅଧସ୍ତନ କର୍ମଚାରୀ ଭଳି ବ୍ୟବହାର କରିଥାନ୍ତେ। ସାହାଯ୍ୟ ନନେବା ସତ୍ତ୍ୱେ ସେମାନେ ଚେଷ୍ଟା କରିଥିଲେ। ଜେନେରାଲ ମ୍ୟାନେଜରଙ୍କର ପ୍ରାଇଭେଟ୍ ସେକ୍ରେଟେରୀ ଫୋନ୍ କରି କହିଲେ ଯେ ସେ ଚାହୁଁଛନ୍ତି ଆପଣ କାଲି ସାଢ଼େ ଦଶଟାରେ ଦେଖାକରିବେ। ତାଙ୍କୁ ଉତ୍ତର ଦେଲି ଯେ ତମ ଜେନେରାଲ ମ୍ୟାନେଜରଙ୍କୁ କହିବ ଯଦି ମୋ ପାଖରେ କିଛି କାମ ଅଛି ମୋତେ ଆସି ଦେଖା କରିବେ। ସାଙ୍ଗେ ସାଙ୍ଗେ ଭାରତ ସରକାରଙ୍କ ପାଖକୁ ଗୋଟିଏ ଚିଠି ଗଲା ଯେ ରାଉରକେଲା ଆଇନ୍ ଶୃଙ୍ଖଳା ପରିସ୍ଥିତି ବିପର୍ଯ୍ୟସ୍ତ, ଲୋକମାନେ ଘରୁ ବାହାରି ପାରୁନାହାଁନ୍ତି, ଉତ୍ପାଦନ କମିବା ଉପରେ। ଏ ବିଷୟରେ ଆମେ ଏସ୍‌ପିଙ୍କ ସହ ଦେଖା

କରିବା ପାଇଁ ଚାହୁଁଛୁ କିନ୍ତୁ ସେ ଅନୁମତି ଦେଉନାହାନ୍ତି। ଚିଠିଟା ବୁଲି ବୁଲି ମୋ' ପାଖକୁ ଆସିଲା ମନ୍ତବ୍ୟ ଦେବା ପାଇଁ। ମୁଁ ସବୁ ସ୍କୁଲ ଓ କଲେଜରୁ ଉପସ୍ଥାନ ସଂଖ୍ୟା ସଂଗ୍ରହ କଲି, ସିନେମା ହଲ୍‌ର ଦର୍ଶକ ସଂଖ୍ୟା ମଗେଇଲି, ବ୍ୟବସାୟୀମାନଙ୍କର ବ୍ୟବସାୟ ଠିକ୍ ଚାଲିଛି ବୋଲି ବିବରଣୀ ପାଇଲି ଓ ପ୍ଲାଣ୍ଟରେ ଉପସ୍ଥିତି ପୂର୍ବପରି ଅଛି ବୋଲି ସିଆଇଏସ୍ଏଫ ଠାରୁ ବିବରଣୀ ନେଇଆସିଲି। ଆଇଜିଙ୍କୁ ଚିଠି ଲେଖି ଜଣେଇ ଦେଲି ଯେ ସ୍କୁଲ, କଲେଜ, ସିନେମା ହଲ୍‌କୁ ସମସ୍ତେ ଯାଉଛନ୍ତି, ବ୍ୟବସାୟ ଓ ସାଧାରଣ ଜୀବନ ସ୍ୱାଭାବିକ। ପ୍ଲାଣ୍ଟରେ ଉପସ୍ଥାନ ପୂର୍ବପରି ଅଛି ତେଣୁ ଯଦି ଉତ୍ପାଦନ ହ୍ରାସ ହେବାର ଆଶଙ୍କା ପ୍ରକାଶ ପାଉଛି ତାହା ଦକ୍ଷତା ଓ ସଚ୍ଚୋଟତା ଅଭାବରୁ ହୋଇଥାଇପାରେ। ଏ ଘଟଣା ପରେ ରାଉରକେଲା କାରଖାନା କର୍ତ୍ତୃପକ୍ଷ ଆଉ କେବେ ହାମ୍‌ବଡ଼ା ନୀତି ଦେଖାଇ ନାହାଁନ୍ତି। ଜେନେରାଲ ମ୍ୟାନେଜର ଥରେ ମୋ' ଅଫିସକୁ ଆସିଥିଲେ ଓ ତାଙ୍କ ଅଫିସ ଯିବା ପାଇଁ ନିମନ୍ତ୍ରଣ କରିଥିଲେ। ପ୍ଲାଣ୍ଟରେ ଯିଏ ଜିଏମ୍ ହେଲା ସେ ଗର୍ବରେ ଫାଟି ପଡୁଥିଲା। କାରଣ ଆମର ବଡ଼ ବଡ଼ ସରକାରୀ କର୍ମଚାରୀ ଯାଇ ତାଙ୍କୁ ଦେଖା କରୁଥିଲେ ଓ ବନ୍ଧୁବାନ୍ଧବଙ୍କୁ ଚାକିରିରେ ରଖିବା ପାଇଁ କାକୁତି ମିନତି ହେଉଥିଲେ। ପାଟଣା ରାଜା ରାଜେନ୍ଦ୍ର ନାରାୟଣ ସିଂଦେଓ ଉପମୁଖ୍ୟମନ୍ତ୍ରୀ ଥିବା ସମୟରେ ଜଣେ ଜେନେରାଲ ମ୍ୟାନେଜରଙ୍କୁ ଡକେଇଲେ ଓ ସେ ଯିବା ପାଇଁ ମନା କଲେ। ସାଙ୍ଗେ ସାଙ୍ଗେ ପାଟଣା ମହାରାଜା ଏସ୍‌ପି ସୁନ୍ଦରଗଡ଼କୁ କହିଲେ ତାଙ୍କୁ ଗିରଫ କର। ଭୟରେ ଜେନେରାଲ ମ୍ୟାନେଜର ଯାଇ ତାଙ୍କୁ ଦେଖା କଲେ। ଏକଥା ରାଉରକେଲା ପ୍ଲାଣ୍ଟର ଅନେକ ଅଫିସର ମୋତେ କହିଛନ୍ତି।

ରାଉରକେଲାରେ ଓଡ଼ିଆଙ୍କ ସ୍ଥିତି ଦୟନୀୟ ଅବସ୍ଥାରେ ଥିଲା। ବହୁତ ବଙ୍ଗାଳୀ ଅଫିସର ଉଚ୍ଚ ସ୍ଥାନରେ ଥିଲେ ଓ ଯେହେତୁ ଶତକଡ଼ା ୯୦ ଗୋଡ଼ାଣିଆ ଓଡ଼ିଆଙ୍କ ଗୁଣ ହେଲା ବଙ୍ଗାଳୀଙ୍କ ସଙ୍ଗେ ବଙ୍ଗଳାରେ ଓ ତେଲୁଗୁଙ୍କ ସଙ୍ଗେ ତେଲୁଗୁରେ କଥା ହେବା ତେଣୁ ସେ ଭାଷାଗୁଡ଼ିକର ପ୍ରାଧାନ୍ୟ ବହୁତ ଥିଲା। କେତେଜଣ ସ୍ୱାଭିମାନୀ ଓଡ଼ିଆ ଭଞ୍ଜ କଳା ମଣ୍ଡପ ଓ ପ୍ରଗତି ଉତ୍କଳ ସଂଘ କରି ସଭାସମିତି କରୁଥିଲେ, ତା' ସତ୍ତ୍ୱେ ଲାଗୁଥିଲା ସତେଯେମିତି ରାଉରକେଲାଟା ଓଡ଼ିଶା ବାହାରେ। ୧୯୫୫ ରୁ ୬୦ ମସିହା ମଧ୍ୟରେ ଭାରତ ସରକାର ବସାଇଥିବା ଚାରୋଟି ବଡ଼ ଷ୍ଟିଲ୍ ପ୍ଲାଣ୍ଟ (ରାଉରକେଲା, ଭିଲାଇ, ଦୁର୍ଗାପୁର, ବୋକାରୋ)ରେ କୌଣସି ଶିଳ୍ପରେ ଜଣେ ଓଡ଼ିଆ ଜେନେରାଲ ମ୍ୟାନେଜର ନଥିଲେ। ପୂର୍ବତନ ଆଇପିଏସ୍ ଅଫିସର ନରସିଂହ ରଥ ବହୁତ ଉଚ୍ଚକୁ ଉଠିଥିଲେ କିନ୍ତୁ ତାଙ୍କୁ ଜେନେରାଲ ମ୍ୟାନେଜର କରାଇ ଦିଆଗଲା ନାହିଁ। ପରେ ଜେନେରାଲ

ମ୍ୟାନେଜର ପୋଷ୍ଟକୁ ମ୍ୟାନେଜିଙ୍ଗ ଡାଇରେକ୍ଟର କରାଗଲା ଓ ୨୦୦୨ରେ ସନକ ମିଶ୍ର ରାଉରକେଲା ଷ୍ଟିଲ ପ୍ଲାଣ୍ଟର ମ୍ୟାନେଜିଂ ଡାଇରେକ୍ଟର ହେଲେ।

ରାଉରକେଲାରେ ଥିବା ସମୟରେ ବହୁତ ଥର ଆଇନ ଶୃଙ୍ଖଳା ପରିସ୍ଥିତିର ସମ୍ମୁଖିନ ହେବାକୁ ପଡ଼ିଛି। ମୁଁ ଓ ଏଡ଼ିଏମ ଶ୍ରୀନିବାସ ରଥ (ମୋର ସହପାଠୀ ଓ ପରମ ବନ୍ଧୁ) ସମସ୍ୟାର ମୁକାବିଲା କରିଛୁ। ଡିଆଇଜି ଥିଲେ ଡିଏନ୍ ପଟ୍ଟନାୟକ। ଡିଏସ୍‌ପି ହିସାବରେ ଚାକିରି ଆରମ୍ଭ କରିଥିଲେ ଓ ଡିଆଇଜି ପର୍ଯ୍ୟନ୍ତ ଗଲେ, ଆଉ ଉପରକୁ ଯିବାର କୌଣସି ସମ୍ଭାବନା ନଥିଲା। ସେ କୌଣସି କାର୍ଯ୍ୟରେ ହସ୍ତକ୍ଷେପ କରୁନଥିଲେ। ତାଙ୍କର ଗୋଟିଏ ମାତ୍ର ମନ୍ତ୍ର ଥିଲା 'ଆପଣ ଘଟଣା ସ୍ଥଳକୁ ଯାଆନ୍ତୁ ଓ ଅବସ୍ଥା ଦେଖି ବ୍ୟବସ୍ଥା କରନ୍ତୁ।' ସେ ଜଣେ ଭଲ କଳାକାର ଥିଲେ, ପେଣ୍ଟିଂ, ସୂକ୍ଷ୍ମକାଷ୍ଠ କାର୍ଯ୍ୟ, ବଗିଚା କାମ, ଗାଡ଼ି ମରାମତି, ସଙ୍ଗୀତରେ ନିପୁଣ ଥିଲେ। ଯୁବାବସ୍ଥାରେ ସେ କଲିକତାର ଜଣେ ବିଖ୍ୟାତ ଫୁଟବଲ ଖେଳାଳୀ ଥିଲେ ଓ ମହମଡ଼ାନ୍ ସ୍ପୋର୍ଟିଂର ରାଇଟ୍ ବ୍ୟାକ୍ ଥିଲେ। ଅତି ଭଦ୍ରଲୋକ କିନ୍ତୁ ଗପ ଆରମ୍ଭ କଲେ ତାଙ୍କ କଥା ସରେନାହିଁ। ତାଙ୍କ ପାଇଁ ଅନେକ ଥର ମୁଁ ଦିନ ୩ଟା ୪ଟାରେ ଭାତ ଖାଇଛି। ଡିଆଇଜି କଥା କହୁଛନ୍ତି ମୁଁ କେମିତି ମନା କରିବି? ସମଗ୍ର ସରକାରୀକଳ ଏମିତି, ଆଦେଶ ନିମ୍ନଗାମୀ ଓ ଭକ୍ତି ଉର୍ଦ୍ଧ୍ୱଗାମୀ।

୧୯୬୦ ମସିହା ବେଳକୁ ତମ୍ବାତାର ଚୋରି ଏକ ଗୁରୁତର ଅପରାଧ ବୋଲି ଧରାଯାଉଥିଲା। କାରଣ ଏ ଚୋରି ଦ୍ୱାରା ଦିନ ଦିନ ଧରି ଟେଲିଫୋନ୍ ଯୋଗାଯୋଗ ବନ୍ଦ ହୋଇଯାଉଥିଲା। ମୁଁ ବଡ଼ବିଲର ଏଏସ୍‌ପି ଥିଲାବେଳେ ବହୁତ ଥର ତମ୍ବାତାର ଚୋରି କେସ୍‌ର ତଦାରଖ କରିଛି। ମୟୂରଭଞ୍ଜର ରୋରୁଁଆ ଅଞ୍ଚଳରୁ ଅନେକ ଚୋର ଆସି ବଡ଼ବିଲ ଓ ଚମ୍ପୁଆରେ ରୀତିମତ ଚୋରି କରନ୍ତି। ସେମାନଙ୍କ ନେତା ଥିଲା ଦ୍ୱାରୀ ସେଠୀ। ତାକୁ ହାଟରୁ ବିଷ୍ଣୁ ଜେନା ବୋଲି ଜଣେ ଏଏସଆଇ ସନ୍ଦେହରେ ଧରି ଆଣିଲା। ଖବରପାଇ ମୁଁ ଥାନାରେ ପହଞ୍ଚିଲା ବେଳକୁ ସେ ସତକଥା ବାନ୍ତି କରିସାରିଲାଣି। ବଡ଼ବିଲରେ ପ୍ରାୟ ୯/୧୦ଟା ଚୋରି ଓ ପାଖ ନୂଆମୁଣ୍ଡି (ବର୍ତ୍ତମାନର ବିହାର)ରେ ବହୁତ ଚୋରି କରିଥିଲା। ବିହାରରେ ଯିଏ ଇନ୍‌ସପେକ୍ଟର ଥିଲେ ତାଙ୍କୁ ସରକାର ସାଇକେଲଟିଏ ଦେଇଥିଲେ କିନ୍ତୁ ସେ ବାବୁ ଟାଟା କମ୍ପାନୀରେ ଗୋଟେ ଜିପ୍ ଓ ନିଜର ଏକ କାର୍ (ବେବି ଅଷ୍ଟିନ୍) ରଖି ଅଫିସ ବାରଣ୍ଡାରେ ଗୋଡ଼ ଲମ୍ବେଇ ବସୁଥିଲେ ଓ ଯଦି କେହି ତା' ଘରେ ଚୋରି ହେଲା ବୋଲି ଅଭିଯୋଗ କରେ ତାକୁ ପଚାରନ୍ତି-ଚୋର କାହିଁ, ତା' ନାଁ କ'ଣ, ତା' ଘର କେଉଁଠେ? ଯାଅ ସେ ସବୁ ସଂଗ୍ରହ କରି ଆଣିବୁ ତା'ପରେ ଦେଖିବା। ଅର୍ଥାତ୍ ଚୋରି ମାଲ୍ ସହିତ ଚୋରକୁ ଧରି ପହଞ୍ଚିଲେ କେସ୍ ହୋଇପାରେ ।

ବଡ଼ବିଲ ଥାନା ବାବୁ ଭଗବାନ ମିଶ୍ରଙ୍କୁ ଧରି ମୁଁ ଯେତେବେଳେ ତାଙ୍କ ଅଂଫିସରେ ପହଞ୍ଚିଲି ସେ ବିସ୍ମିତ ଓ ବିବ୍ରତ ହେଲେ। ଆଇପିଏସ ଅଫିସର ଚୋରି କେସ୍ ଧରିବା ପାଇଁ ଆସୁଛନ୍ତି ? ଚୋରି ମାଲ ରଖିଥିବା ଜାଗାଗୁଡ଼ିକର ନାଁ କହିବାରୁ ଦୁଇଜଣ କନେଷ୍ଟବଳ ପଠେଇ ଚୋରି ମାଲ୍ ଓ ମାଲ୍ ରଖିଥିବା ଲୋକଙ୍କୁ ଥାନାକୁ ଧରି ଆଣିଲେ। ତା'ପରେ ମାଡ଼ ହେଲା। ଇନ୍ସପେକ୍ଟର ଭୀଷଣ ରାଗି କହୁଥାନ୍ତି ତୁମ୍ଭମାନଙ୍କ ପାଇଁ ବିହାର ପୋଲିସର ବଦନାମ୍ ହୋଇଗଲା ଓ ସେମାନେ ନାହିଁ ନାହିଁ ବୋଲି କହୁଥାନ୍ତି। ଚୋରି ମାଲ୍ ରଖିବା ଓ ଅଲକ୍ଷ୍ୟରେ ବିହାର ପୋଲିସର ବଦନାମ କରିବା ଏ ଦୁଇଟି ମଧ୍ୟରୁ କେଉଁଟି ବେଶି ଗର୍ହିତ ତାହା ସେମାନଙ୍କ ମୀମାଂସା ଉପରେ ଛାଡ଼ିଦେଇ ମୁଁ ବଡ଼ବିଲ୍ ଫେରି ଆସିଲି। ପରେ ରାଉରକେଲାରେ ପହଞ୍ଚି ଦେଖିଲି ଯେ ଯେଉଁ ଚୋରମାନେ ଅଛନ୍ତି ସେମାନଙ୍କ ତୁଳନାରେ ଦ୍ୱାରୀସେଠୀ ମଶାଟିଏ। ଏଠାରେ ବନ୍ଧମୁଣ୍ଡାରୁ ୱାଗନ୍‌କୁ ଭୁଲ୍ ଟ୍ୟାଗ୍ ଦେଇ ବିମଳାଗଡ଼କୁ ପଠାଇ ଦିଆଯାଏ ଓ ରାତି ଅଧିଆ ସବୁ ମାଲ୍ ଖଲାସ୍। ଚୋରି ମାଲ ରଖନ୍ତି ବଡ଼ ବଡ଼ ବ୍ୟବସାୟୀମାନେ। ଏମାନଙ୍କୁ ପଣ୍ଡାବାବୁ ବୋଲି ଜଣେ ସିଆଇଡ଼ି ଅଫିସର ଧରିଲେ। ଦୁଇଜଣ ରେଳବାଇ କର୍ମଚାରୀ ତିନିଜଣ ବ୍ୟବସାୟୀ ଓ ବହୁତ ଚୋର ଧରାପଡ଼ିଲେ। ରେଳବାଇ କର୍ମଚାରୀ ଓ ବ୍ୟବସାୟୀଙ୍କୁ ତାଙ୍କ ଘରୁ କିମ୍ବା ଅଫିସରୁ ହାତକଡ଼ି ପକେଇ ଚଲେଇ ଚଲେଇ ନିଆଗଲା। ମିଶା ଆଦେଶ ବଳରେ ସେମାନେ ଜେଲ୍‌କୁ ଗଲେ ଓ ଅବସ୍ଥା ଶାନ୍ତ ପଡ଼ିଲା। ରାଉରକେଲା ପୋଲିସର କାର୍ଯ୍ୟକୁ ପ୍ରଶଂସା କରି ଦକ୍ଷିଣପୂର୍ବ ରେଳର ଜେନେରାଲ ମ୍ୟାନେଜର ଆଇଜିଙ୍କୁ ଚିଠି ଲେଖିଲେ।

ରାଉରକେଲାରେ ଥିବାବେଳେ ପ୍ରଥମଥର ପାଇଁ ସଭାରେ ମୋ' ପାଟି ଖୋଲିଲା। ବିଖ୍ୟାତ ନାଟ୍ୟକାର କମଳ ଲୋଚନ ମହାନ୍ତି ଉଦିତ୍ ନଗରରେ ଦୁଇ ତିନୋଟି ନାଟକ କଲେ ଓ ମୋତେ ଉଦ୍‌ଘାଟନ କରିବା ପାଇଁ ଡାକିଲେ। ଶ୍ରୀ ମହାନ୍ତିଙ୍କର କିରାଣୀ ନାଟକ ପଢ଼ି ମୁଗ୍ଧ ହୋଇଥିଲି କିନ୍ତୁ ଦୁଇ ତିନି ହଜାର ଲୋକଙ୍କ ସାମ୍ନାରେ ଓଡ଼ିଆରେ ଭାଷଣ ଦେବାକୁ ଶୁଣି ଛାତି ଧଡ଼ ଧଡ଼ ହେଲା। କିନ୍ତୁ କମଳ ଲୋଚନ ବାବୁ ନଛୋଡ଼ ବନ୍ଧା। କହିଲେ 'ଯାହା ମନକୁ ଆସିବ କହିବେ କାହିଁକି ବ୍ୟସ୍ତ ହେଉଛନ୍ତି ?' ତେଣୁ ଏବେ ଯେମିତି ଅନିଚ୍ଛା ସତ୍ତ୍ୱେ ଆତ୍ମଜୀବନୀ ଲେଖିଲି ସେତବେଳେ ଅନିଚ୍ଛା ସତ୍ତ୍ୱେ ବି ସେମିତି ଭାଷଣ ଦେଲି। ଯାହା ତୁଣ୍ଡକୁ ଆସିଲା କହିଲି। କହୁଥାଏ ହାତ ଦୁଇଟାକୁ ବାରମ୍ବାର ପ୍ୟାଣ୍ଟରେ ପୋଛୁ ଥାଏ। ରାଉରକେଲାରେ ଶୀତ ସତ୍ତ୍ୱେ ହାତରୁ ଝାଳ ବାହାରିଲା। ଭାଷଣ ସରିବା ପରେ ପ୍ଲାଣ୍ଟର ଜଣେ ଓଡ଼ିଆ ଅଫିସର ହାତକୁ ଧରି ପକେଇ କହିଲେ 'ଆପଣ ଏତେ ଭଲ କହୁଛନ୍ତି, ଏଣିକି ଆମ ସଭାକୁ ବାରମ୍ବାର ଡାକିବୁ।' ଘୋଡ଼ାଶାଳରୁ ଛାଟି ପିଟି ହୋଇ ପଳେଇଥିବା ଘୋଡ଼ାକୁ ପ୍ରଶଂସା ମିଳିବାର ଭଳି ଏକ

ବିରଳ ନମୁନା। କମଳ ଲୋଚନ ବାବୁ କହିଥିଲେ ଭାଷଣ ଦେଲା ବେଳେ କିମ୍ବା ଲେଖିଲା ବେଳେ ଅଯଥାରେ କଷ୍ଟକର ଶବ୍ଦ ଖୋଜିବେ ନାହିଁ, ସରଳ ଭାଷାରେ କହିଲେ ତାହା ବେଶି ଗ୍ରହଣୀୟ ହେବ।

ରାଉରକେଲାକୁ ସିନିୟର ଅଫିସରମାନେ ବାରମ୍ବାର ଆସନ୍ତି ଓ ଟୁର୍ ପ୍ରୋଗ୍ରାମରେ ଲେଖା ହୋଇଥାଏ ପହଞ୍ଚିବେ ଦିନବେଳେ। ସମସ୍ତେ ଆଶା କରନ୍ତି ପତିବ୍ରତା ସ୍ତ୍ରୀଟିଏ ରାତି ଅଧରେ ଘରକୁ ଫେରୁଥିବା ସ୍ୱାମୀକୁ ଅପେକ୍ଷା କଲାପରି ଏସ୍‌ପି ନିଜର ସବୁ କାମ ଛାଡ଼ି ଗେଷ୍ଟ ହାଉସ୍‌ରେ ଅପେକ୍ଷା କରିଥିବେ। ସେତେବେଳେ ମୋବାଇଲ୍ ଫୋନ୍ ନଥିଲା ଓ ବେତାର ବିଭାଗ ପୁରୁଣା ଢ଼ଙ୍ଗରେ ଚାଲିଥିଲା, ତେଣୁ କାହାକୁ ମୁଁ ଅପେକ୍ଷା ନକରି କେବଳ ଆଇଜିଙ୍କୁ ଅପେକ୍ଷା କରୁଥିଲି। ଗେଷ୍ଟ ହାଉସ୍‌କୁ ଫାଇଲ୍ ପତ୍ର ନେଇଯାଇ କାମ କରୁଥିଲି। ତେଣୁ ସମୟ ନଷ୍ଟ ହେଉନଥିଲା। ଅଫିସରଙ୍କୁ ଅପେକ୍ଷା ନକରିବା ଦ୍ୱାରା ଅନେକ ଅସନ୍ତୁଷ୍ଟ ହେଲେ ଓ ଜଣେ ଶେଷ ପର୍ଯ୍ୟନ୍ତ ସୁଯୋଗ ଖୋଜିଲେ ମୋତେ ପାନେ ଦେବା ପାଇଁ। ସେ ଭଦ୍ରଲୋକ ଏକ ବାର୍ତ୍ତା ପଠେଇଲେ ଯେ ସେ ରାଉରକେଲା ଆସିବେ ଓ ସର୍କିଟ୍ ହାଉସ୍‌ର ୧ନଂ ରୁମ୍‌ରେ ରହିବେ। ମୁଁ ଉତ୍ତର ଦେଲି ଯେ ୧ନଂ ରୁମ୍ ରାଜସ୍ୱ ମନ୍ତ୍ରୀଙ୍କ ପାଇଁ ସଂରକ୍ଷିତ ଅଛି। ପୁଣି ବାର୍ତ୍ତା ଆସିଲା ଯେ ଆଇବି କିମ୍ବା ଫରେଷ୍ଟ ଗେଷ୍ଟ ହାଉସ୍‌ର ୧ ନଂ ରୁମ୍ ବୁକ୍ କରାଯାଉ। ଉତ୍ତର ପଠେଇଲି ଯେ ଫରେଷ୍ଟ ଗେଷ୍ଟ ହାଉସ ରିପ୍ୟାର ହେଉଛି ଓ ଆଇବିର ୧ ନଂ ରୁମ୍ ତାଙ୍କ ଚିଫ୍ ଇଞ୍ଜିନିୟରଙ୍କ ପାଇଁ ସଂରକ୍ଷିତ ଅଛି। ଏଣିକି ବିରକ୍ତିଭରା ବାର୍ତ୍ତା ଆସିଲା - ବାରମ୍ବାର ନାଁ କହିବା ସତ୍ତ୍ୱେ ବି, ଯେକୌଣସି ସରକାରୀ ଗେଷ୍ଟ ହାଉସ୍‌ର ରୁମ୍ ନଂ-୧ ସଂରକ୍ଷଣ କର। ଏସ୍‌ପି ଅଫିସ୍‌ର କିଛି ଦୂରରେ ବିଦ୍ୟୁତ୍ ବିଭାଗର ଗେଷ୍ଟ ହାଉସ୍। ସେଥିରେ ୧୧ କିମ୍ବା ୧୨ ରୁମ୍ ଥିଲା। ୧ନଂ ରୁମ୍ ମାଗିଲା ମାତ୍ରେ ସେମାନେ ଦେଇଦେଲେ ଓ କଟକରେ ଥିବା ଡିଆଇଜି ମହାଶୟ ଭାରି ଖୁସି ହେଲେ। ତା'ପରେ ହେଲା ଆଣ୍ଟି କ୍ଲାଇମାକ୍ସ। ଡିଆଇଜି ଓ ତାଙ୍କ ପତ୍ନୀ ପହଞ୍ଚିଲା ବେଳକୁ ଗେଷ୍ଟ ହାଉସରେ ଜଣେ ସବ୍‌ଇନ୍ସପେକ୍ଟର, ଓ ମୁଁ ଅଛି ଅଫିସରେ, ଫୋନ୍ ପାଇବା ମାତ୍ରେ ମୁଁ ଗଲି। ପହଞ୍ଚିଲା ମାତ୍ରେ ତାଙ୍କ ପ୍ରଶ୍ନ ଥିଲା - ଆଜି କାଲି ଏସ୍‌ପିମାନେ ଡିଆଇଜିମାନଙ୍କୁ ଅପେକ୍ଷା କରୁନାହାନ୍ତି କି ? ଅନ୍ୟାନ୍ୟ କାର୍ଯ୍ୟରେ ବ୍ୟସ୍ତ ଥିଲି ବୋଲି କହିବାରୁ ଅସନ୍ତୁଷ୍ଟ ହେଲେ ଓ ରୁମ ନଂ ୧କୁ ଖୋଲିବା ପାଇଁ କହିଲେ। କବାଟ ଖୋଲିବା ମାତ୍ରେ ବାହାରି ଆସିଲା ଭକ୍ କରି ମେଞ୍ଚେ ଧୂଆଁ ତା' ସାଙ୍ଗକୁ ମାଛ ଭାଜିବାର ବାସ୍ନା (ଡିଆଇଜି ସମ୍ପୂର୍ଣ୍ଣ ଶାକାହାରୀ)। ଖଟରେ ପଡ଼ିଥିବା ଚଦରରେ ସ୍ଥାନେ ସ୍ଥାନେ କଣା ଓ ଝରକାରେ ଅଳନ୍ଧୁ। ୧ ନଂ ରୁମ୍‌ର ଏ କି ଅବସ୍ଥା ପଚାରିବାରୁ ମ୍ୟାନେଜର ବୁଝେଇଲା - ସାର୍ ଆମର ସବୁଠାରୁ ଭଲ ରୁମ୍ ହେଉଛି

୧୨ନଂ। ୧ନଂଟା ହେଉଛି ଡ୍ରାଇଭର ପିଅନଙ୍କ ପାଇଁ। ଆପଣ ମାଗିଲେ ଆମେ ଦେଲୁ। ମଦଗର୍ବୀ ଡିଆଇଜିଙ୍କର ଏଇ ବ୍ରହ୍ମ କଟଡ଼ା ଖାଇବା ଦେଖି ମୁଁ ନିଜ ହସକୁ ରୋକିପାରିଲି ନାହିଁ। ସେ ପ୍ରବଳ ରାଗି ଗଲେ ଓ କ୍ରୋଧାଗ୍ନିରେ ପାଣି ଛିଞ୍ଚିବା ପରିବର୍ତ୍ତେ ତାଙ୍କ ମେମ୍ ସାହେବ୍ ଘୃତ ପକେଇଲେ - ତୁମଦ୍ୱାରା କିଛି କାମ ହେବନାହିଁ, ତୁମକୁ ଜାଣି ଜାଣି ଅପମାନ କରାଗଲା। ମୁଁ ଜାଣେ ପରା ତମର କିଛି କାମ ଠିକ୍ ନୁହେଁ। ସ୍ୱାମୀ ସ୍ତ୍ରୀ ରାଗରେ ଗାଡ଼ିରେ ବସିଲେ ଏବଂ ଡ୍ରାଇଭରକୁ ଅପେକ୍ଷା ନକରି ଗାଡ଼ି ଚଳେଇ ପଳେଇଲେ ସୁନ୍ଦରଗଡ଼। ଡ୍ରାଇଭରକୁ ଆମେ ପଠେଇବାର ବନ୍ଦୋବସ୍ତ କଲୁ। ଘରକୁ ଫେରି ଏଇ କଥା ସ୍ତ୍ରୀଙ୍କୁ କହି ହସୁଥିବାରୁ ସେ କହିଲେ - ହସୁଛ କ'ଣ, ଶତ୍ରୁଟିଏ ସୃଷ୍ଟି କଲ। ସେ ଭଦ୍ରଲୋକ କଟକ ଫେରି ଯାହାକୁ ଦେଖିଲେ କହିଲେ ଯେ ରାଉରକେଲାର ଏସ୍‌ପି ବହୁତ ବଦ୍‌ମାସ୍, ସବୁଦିନେ କ୍ଲବ ଯାଇ ମଦ ପିଉଛି। ମୁଁ ଏପର୍ଯ୍ୟନ୍ତ ମଦ ସ୍ପର୍ଶ କରିନାହିଁ କହିଲେ ସମସ୍ତେ ବିଶ୍ୱାସ କରିବେ ଓ ସେତେବେଳେ ମଧ୍ୟ ବିଶ୍ୱାସ କରୁଥିଲେ, ଉକ୍ତ ଡିଆଇଜିଙ୍କର ସମସ୍ତ ଅପପ୍ରଚାର ସତ୍ତ୍ୱେ। ଯେଉଁ ଅଫିସର ଜଣେ ସିନିୟର ଆଇପିଏସଙ୍କୁ ଏଭଳି ବ୍ୟବହାର କରନ୍ତି ସେ ଡିଏସ୍‌ପି, ଇନ୍ସପେକ୍ଟର, ସବ୍‌ଇନ୍ସପେକ୍ଟରଙ୍କ ସଙ୍ଗେ କିଭଳି ସମ୍ପର୍କ ରଖୁଥିବେ ତାହା ପାଠକେ ଅନୁମାନ କରନ୍ତୁ। ସରକାରଙ୍କ ବିଭିନ୍ନ ବିଭାଗରେ ଏଭଳି ସାମନ୍ତବାଦ ପ୍ରଥା ଏପର୍ଯ୍ୟନ୍ତ ଅଛି ଯଦିବା ମାତ୍ରା କମିଲାଣି।

ହଠାତ୍ ଦିନେ ଗୁପ୍ତ ବାର୍ତ୍ତା ଆସିଲା ଡିଏମ୍ ଓ ଏସ୍‌ପି ସତର୍କ ରହନ୍ତୁ, ଏକ ବିରାଟ ଘଟଣା ଘଟିବା ପାଇଁ ଯାଉଛି ଯାହାର କିଛି ପ୍ରଭାବ ପଡ଼ିପାରେ। ମିଟିଂ ଡକାଗଲା, ଅଫିସରମାନଙ୍କ ସଙ୍ଗେ ଗୁପ୍ତ ମନ୍ତ୍ରଣା କରାଗଲା ଓ ସ୍ଥାନେ ସ୍ଥାନେ ସାଦା ପୋଲିସ ମୁତୟନ କରାଗଲା। କ'ଣ ଏମିତି ଘଟଣା ହୋଇଥାଇପାରେ ? ପାକିସ୍ତାନ କିମ୍ବା ଚାଇନା ସାଙ୍ଗେ ଯୁଦ୍ଧ ? ଓଡ଼ିଶା ସରକାର ବରଖାସ୍ତ ହେବେ ? ସାମ୍ପ୍ରଦାୟିକ ଦଙ୍ଗା ହେବ ? କେଉଁ ବିଷୟରେ ଆମେ ସତର୍କ ହେବୁ। କାହାଠାରୁ ସୁରାକ୍ ମିଳିଲା ନାହିଁ। ଦୁଇଦିନ ପରେ ଖବରକାଗଜରେ ବାହାରିଲା ଯେ ଭାରତ ପରମାଣୁ ବୋମା ବିସ୍ଫୋରଣ କରିଛି। ଆନନ୍ଦର ଲହରୀ, ଗର୍ବ ଓ ଗୌରବର କଥା। ଚୀନ ଆଉ ଭାରତକୁ ଧମକେଇ ପାରିବ ନାହିଁ।

ଅଥଚ ଏ ଖବର ଠାରୁ ୧୦୦ ଗୁଣ ଅଧିକା ଗୁରୁତ୍ୱପୂର୍ଣ୍ଣ ଓ ସାରା ବିଶ୍ୱରେ ଚାଞ୍ଚଲ୍ୟ ସୃଷ୍ଟି କରିଥିବା ଘଟଣା ବିଷୟରେ କୌଣସି ସୁରାକ୍ ନଥିଲା। ଏପରିକି ସେ ସମୟରେ ଆଇଜି ଗସ୍ତରେ ଥାଇ ମଧ୍ୟ ଜାଣିନଥିଲେ। ଜୁନ୍ ୧୯୭୫ ସକାଳ ୮ଟାରେ ମୁଁ ରାଉରକେଲା ହାଉସ୍‌ରେ ପହଞ୍ଚିଲି ଆଇଜି ନରସିଂହ ସ୍ୱାଇଁଙ୍କ ସଙ୍ଗେ ବ୍ରେକ୍‌ଫାଷ୍ଟ ପାଇଁ। କିଛି ସମୟ ପରେ ଡିଆଇଜି ଆସିଲେ ଓ ଆମେ ଡାଇନିଂ ହଲ୍ ଯିବା ପାଇଁ ବାହାରୁଛୁ

ଡିଆଇଜି ସିଆଇଏସଏଫ ଫୋନ୍ ଦ୍ୱାରା ଜଣେଇଲେ ଯେ ଦେଶରେ ଏମରଜେନ୍ସି ଘୋଷଣା କରାଯାଇଛି ଓ କେତେଜଣ ବିଶିଷ୍ଟ ନେତା ଗିରଫ ହୋଇଛନ୍ତି। ବିଚକ୍ଷଣ ନରସିଂହ ସ୍ୱାଇଁ ସାଙ୍ଗେ ସାଙ୍ଗେ ଚିଫ୍ ସେକ୍ରେଟେରୀଙ୍କୁ ଫୋନ୍ କଲେ ଓ ପଚାରିଲେ ମୁଁ କାର୍‌ରେ ଫେରିବି ନା ସରକାର ମୋ' ପାଇଁ ପ୍ଲେନ୍ ପଠେଇବେ। ଚିଫ୍ ସେକ୍ରେଟେରୀ ଓ ଓଡ଼ିଶା ସରକାର ପ୍ଲେନ୍ ପଠେଇଲେ। ଯିବା ପୂର୍ବରୁ ଶ୍ରୀ ସ୍ୱାଇଁ କହିଲେ ମୌଳିକ ଅଧିକାର ସସ୍‌ପେଣ୍ଡ କରିଦିଆଯାଇଛି। ଅନେକ ନେତା ତ ଗିରଫ ନିଶ୍ଚୟ ହେବେ। ଡକ୍ଟର ମହତାବ, ନବକୃଷ୍ଣ ଚୌଧୁରୀ, ବିଜୁ ପଟ୍ଟନାୟକ ଇତ୍ୟାଦି। ସେପର୍ଯ୍ୟନ୍ତ ଆମେ ବୁଝିପାରିନଥିଲୁ ଏମରଜେନ୍ସି କ'ଣ? ଚୀନ ଆକ୍ରମଣ (୧୯୬୨) ସମୟରେ ଏମରଜେନ୍ସି ଘୋଷଣା ହୋଇଥିଲା ଓ ସାରା ଦେଶରେ କେତେକ କମ୍ୟୁନିଷ୍ଟ ନେତା ଗିରଫ ହୋଇଥିଲେ କିନ୍ତୁ ଏଥର ଏମରଜେନ୍ସି ଭୟାବହ ଥିଲା। ଅନେକ ଚୋରା ବେପାରୀ ଗିରଫ ହେଲେ, ବହୁତ ରାଜନୈତିକ ନେତା ମଧ୍ୟ ଗିରଫ ହେଲେ। ସେ ସମୟରେ ସରକାର ବିରୋଧି ଆନ୍ଦୋଳନ କଲେ ମିଶା ଓ ପାମ୍ପଲେଟ୍ ବାଣ୍ଟିଲେ ଡିଆଇଆର କେସ୍ ହେଉଥିଲା। ରାଉରକେଲାରେ ଆମେ ଗିରଫ କଲୁ ଚୋରା ବେପାରୀ ଓ ଆଣ୍ଟିସୋସିଆଲଙ୍କୁ। ଯେଉଁ ଅଳ୍ପ କେତେକ ରାଜନୈତିକ ନେତା ଗିରଫ ହୋଇଥିଲେ ସେମାନେ ଚାହିଁଲେ ଗିରଫ ହେବା ପାଇଁ। ତେଣୁ ଏମରଜେନ୍ସି ପରେ ଶାହା କମିଶନ ବସିଲା, ରାଜ୍ୟରେ ପଣ୍ଡା କମିଶନ ବସିଲା ଓ ମୋ' ବିରୁଦ୍ଧରେ କୌଣସି ଅଭିଯୋଗ ନଥିଲା। ମାତ୍ରାଧିକ କାର୍ଯ୍ୟ ଅଭିଯୋଗ ତଦନ୍ତ ଭାର ଶାହା କମିଶନ ମୋତେ ଦେଲେ। ସେ ବିଷୟରେ ପରେ କହିବି। ଏମରଜେନ୍ସି ସମୟରେ ସବୁ ଶୂନ୍‌ଶାନ୍, ରାଉରକେଲା କାରଖାନାରେ ପ୍ରତିଦିନ ଉତ୍ପାତ ହେଉଥିବା ଅନେକ ଶ୍ରମିକ ରାତାରାତି ସୁନା ପୁଅ ପାଲଟିଗଲେ। ଛାତ୍ର ଆନ୍ଦୋଳନ ବନ୍ଦ, ଘେରଉ ରାସ୍ତା ରୋକ୍ କରିବା ଲୋକମାନେ ଭୁଲିଗଲେ। ଅଫିସକୁ ଟହଲି ଟହଲି ଡ଼େରିରେ ଆସୁଥିବା କର୍ମଚାରୀମାନେ ଠିକ୍ ସମୟରେ ଆସିଲେ। ରେଲଗାଡ଼ି, ବସ୍‌ଗାଡ଼ି ଠିକ୍ ସମୟରେ ପହଞ୍ଚିଲା ଓ ଅସାମାଜିକ କାର୍ଯ୍ୟ (ଦାଦାଗିରି, ଦାଦାବଟି ଆଦାୟ ଇତ୍ୟାଦି) ବନ୍ଦ ହୋଇଗଲା। ରାଉରକେଲାରେ ପହଞ୍ଚିବା ପରେ ମୁଁ ଅଫିସରମାନଙ୍କୁ ଡାକି କହିଦେଇଥିଲି - ୧୫ ଦିନ ସମୟ ଦେଉଛି ତା'ପରେ ନିଜେ ବୁଲି ଦେଖିବି, ଯଦି କେଉଁଠି ଜୁଆଖେଳ, ଚୋରା ମଦ ବିକ୍ରି ହେଉଛି ଦେଖିବି ସେ ଅଞ୍ଚଳର ଇନ୍‌ସପେକ୍ଟର ସସ୍‌ପେଣ୍ଡ ହେବେ। କାରଣ ପୋଲିସର ବିନା ଆଶୀର୍ବାଦରେ ଏ କାର୍ଯ୍ୟ ହୁଏ ନାହିଁ। ଜୁଆ ଓ ଚୋରା ମଦ କାରବାର ବହୁ ପରିମାଣରେ କମିଗଲା। କାଁ ଭାଁ ଅସାମାଜିକ କାର୍ଯ୍ୟକଳାପ ଯାହାଥିଲା ଏମରଜେନ୍ସିରେ ସେସବୁ ବନ୍ଦ ହୋଇଗଲା। ଆଇନ୍ ଶୃଙ୍ଖଳା ପରିସ୍ଥିତିର ମୁକାବିଲା କରିବା ପାଇଁ ଯେଉଁ ସମୟ ଯାଉଥିଲା ସେ ସମୟରେ ପୁରୁଣା କେସ୍‌ର ତଦନ୍ତ କରି ସମାଧାନ କରାଗଲା।

ଥରେ ଜଣେ ଯୁବନେତା ମୋତେ ଦେଖାକରି ଅଭିଯୋଗ ପୂର୍ଣ୍ଣ ସ୍ୱରରେ କହିଲେ 'ଆପଣ ସାର୍ ଏମିତି ଅନ୍ୟାୟ କାହିଁକି କଲେ ? ମୋତେ ଡିଆଇଏରେ ଗିରଫ କଲେ ? ମୁଁ କହିଲି ତୁମେ ସେମିତି କାମ କରିଥିବ, ଅଯଥାରେ କାହାକୁ ଗିରଫ କରିବା ମୋର ଅଭ୍ୟାସ ନୁହେଁ। ତାଙ୍କର ଉତ୍ତର ଥିଲା ବିଚିତ୍ର - ନାଇଁ ସାର୍ ମୁଁ ସେ କଥା କହୁନି ମୋ' କହିବା କଥା ଯେ ଯେଉଁମାନେ ମିଶାରେ ଗିରଫ ହେଲେ ସେମାନେ ମୋଠୁ ପଲିଟିକାଲି ଜୁନିୟର। ସେମାନେ ମିଶାରେ ଯିବେ ଆଉ ମୁଁ ଯିବି ଡିଆଇଆରରେ ?'

ବୁଝିଲି ସେ କ'ଣ ଚାହୁଁଛନ୍ତି। ତାଙ୍କ ଠାରୁ ପରେ ରାଜନୀତି କରିଥିବା ନେତା ମିଶାରେ ଗିରଫ ହୋଇ ପ୍ରଥମ ଶ୍ରେଣୀ ବନ୍ଦୀ ହେଲେ ଓ ଡିଆଇଆରରେ ଗିରଫ ହୋଇ ସେ ଦ୍ୱିତୀୟ ଶ୍ରେଣୀ ବନ୍ଦୀ ହେଲେ ଏଇଟା ଅପମାନ କଥା ନୁହେଁ କି ? ମୁଁ ପ୍ରସ୍ତାବ ଦେଲି - ମିଶାରେ ଗିରଫ ହେବା ଭଳି କିଛି କାମ କର। ତମେ ଜାଣିଛ ଲୋକେ କାହିଁକି ମିଶାରେ ଗିରଫ ହେଉଛନ୍ତି। ସେଦିନ ସନ୍ଧ୍ୟାରେ ସେ ଅଳ୍ପ କେତେଜଣଙ୍କୁ ନେଇ ଏକ ମିଟିଂ କଲେ, ଇନ୍ଦିରା ଗାନ୍ଧୀ ଓ ନନ୍ଦିନୀ ଶତପଥୀଙ୍କୁ ପ୍ରବଳ ଗାଳି କରି ଏମରଜେନ୍ସିର ପ୍ରବଳ ପ୍ରତିରୋଧ କରିବା ପାଇଁ ଅସ୍ତ୍ର ଉଠାଇବା ପାଇଁ ସମସ୍ତଙ୍କୁ ଆହ୍ୱାନ କଲେ। ମିଶା ପାଇଁ ଏହା ଯଥେଷ୍ଟ ଥିଲା, ପରେ ସେ ମନ୍ତ୍ରୀ ହେଲେ। ଏଇ ଗିରଫ ସାଙ୍ଗେ ମୁଁ ତୁଳନା କରୁଥିଲି ଅଶୋକ ଦାସଙ୍କୁ ଗିରଫ କରିବା କଥା। ୧୯୭୪ରେ କଟକ ଆଡ଼ିସ୍‌ନାଲ୍ ଏସ୍‌ପି ଥିବାବେଳେ ମୋତେ ଧରେଇ ଦିଆଗଲା ଅଶୋକ ଦାସଙ୍କ ବିରୁଦ୍ଧରେ ୱାରେଣ୍ଟ। ଏସ୍‌ପି ଆପା ରାଓ ସକାଳୁ ସକାଳୁ ୱାରେଣ୍ଟ ଧରେଇ ଦେଇ କହିଲେ କାଲି ଯାଜପୁରରେ ବିରାଟ ପ୍ରସେସନ ଓ ମିଟିଂ ହେବ। ନୀଳମଣି ରାଉତରାୟ, ପ୍ରତାପ ମହାନ୍ତି ଇତ୍ୟାଦି ଯିବେ ଓ ପ୍ରାୟ ୧୫ ହଜାର ଲୋକ ଠୁଳ ହେବେ। ଆଜି ରାତି ସୁଦ୍ଧା ଅଶୋକ ଦାସଙ୍କୁ ଗିରଫ କରି କଟକ ପଠେଇ ଦେବ ଓ କାଲି ଆଇନ୍ ଶୃଙ୍ଖଳା ପରିସ୍ଥିତି ସମ୍ଭାଳିବ। ଅଶୋକ ଦାସ ଜଣେ ବିଶିଷ୍ଟ ନେତା, ପରେ ସେ ଜନତା ଦଳର ପ୍ରେସିଡ଼େଣ୍ଟ ମଧ୍ୟ ହୋଇଥିଲେ। ତାଙ୍କ ନାଁରେ କାହିଁକି ୱାରେଣ୍ଟ ହେଲା ମୁଁ ଜାଣିନାହିଁ କାରଣ ସେସବୁ ଏସ୍‌ପି ଆପା ରାଓ ଓ କଲେକ୍ଟର ଅଶୋକ ମୁବାଇଙ୍କ କାମ ଥିଲା। ମୋ' କାମ ଥିଲା ୱାରେଣ୍ଟ ଜାରି। ମୁଁ ଯାଜପୁରରେ ପହଞ୍ଚି ପୋଲିସ ଅଫିସରଙ୍କୁ କହିବାରୁ ସେମାନେ ମୁଣ୍ଡରେ ହାତ ଦେଇ ବସିଲେ। ସତକଥା, ଅଶୋକ ଦାସଙ୍କୁ ଯାଜପୁରରୁ ଗିରଫ କରିବା, ଗୁମ୍ଫା ଭିତରୁ ବାଘକୁ ଘୋଷାଡ଼ି ଆଣିବା ଭଳି କଥା। ସମସ୍ତଙ୍କୁ ଥୟ ଧରି ରହିବା ପାଇଁ କହି ମୁଁ ଅଶୋକ ଦାସଙ୍କୁ ଫୋନ୍ କଲି ଓ ଅନୁରୋଧ କଲି ଥାନାକୁ ଆସିବା ପାଇଁ। ତାଙ୍କ ସାଙ୍ଗରେ ମୋର ପରିଚୟ ସମ୍ବଲପୁରରୁ। ଉଭୟ ଜିଏମ୍ କଲେଜ ଛାତ୍ର ଥିଲୁ। ଥାନାରେ ପହଞ୍ଚି ପରିହାସ କଣ୍ଠରେ କହିଲେ - କ'ଣ ହୋ ପୋଲିସ ସାହେବ କାହିଁକି ଡାକିଲ

ମୋତେ, ଆଜି ଗିରଫ କଲେ କାଲି ସଭାଟା ଭଣ୍ଡୁର ହୋଇଯିବ ଏଇଆ ତ ? ହାଃ ହାଃ ଲୋକ ସବୁ ଆରେଞ୍ଜ ହୋଇସାରିଲେଣି। ଓଲଟା ପଗରିଲି ଖାଇଛ ? ସେ ନାହିଁ କରିବାରୁ ଦୁଇଜଣଙ୍କ ପାଇଁ ଖାଇବା ମଗେଇଲି। ଖାଇବା ସମୟରେ ମିଶାରେ ଗିରଫ ହେବା କଥା କହିଲି। "ଓଃ ଏ କଥା ? ଯାହାହେଉ ସରକାର ମୋତେ ଆଉ ଦୁଇ ପାହାଚ ଚଢ଼େଇ ଦେଲେ। ଆମେ ଯେତିକି ଗିରଫ ହେବୁ ଆମ ରେକର୍ଡ଼ ସେତେ ଭଲ ହେବ। କୁଆଡ଼େ ନେବ କେଉଁ ଜେଲ୍‌କୁ ଯିବି ?" କଟକ ଜେଲ୍ ଯିବାକୁ ପଡ଼ିବ କହିବାରୁ ସେ ଘରକୁ ଯିବା ପାଇଁ ଅନୁମତି ମାଗିଲେ ଓ କହିଲେ ସାଙ୍ଗରେ କେହି ପୋଲିସ ଆସିବେ ନାହିଁ। ମୋତେ ସବ୍ ଇନ୍‌ସପେକ୍ଟର ଓ ଇନ୍‌ସପେକ୍ଟର ଇସାରା ଦେଇ ବାରଣ କରୁଥିଲେ କିନ୍ତୁ ନିଜ କାର୍‌ରେ ତାଙ୍କୁ ତାଙ୍କ ଘରକୁ ପଠେଇଲି। ଶୀଘ୍ର ସେ ଫେରିଆସିଲେ ଓ ସାଙ୍ଗରେ ଆସିଥିଲେ ତାଙ୍କ ଭାଇ। ମୋ' କାର୍‌ରେ କଟକ ଯିବା ପୂର୍ବରୁ ସେ ତାଗିଦ୍ କଲେ 'ଦେଖ ସେ ମୋ' କ୍ଲାସମେଟ୍, କାଲି କିଛି ଗଣ୍ଡଗୋଳ କରିବ ନାହିଁ।' ପରେ ସେ ହାଇକୋର୍ଟରେ ଖଲାସ୍ ହେଲେ ଓ ଖଲାସ୍ ହେବା ପରେ ବିଜୁବାବୁ ମୋ' ବିରୁଦ୍ଧରେ ସ୍ୱାଧିକାର ଭଙ୍ଗ ପ୍ରସ୍ତାବ ଆସେମ୍ବ୍ଲିରେ ଆଣିଲେ। ଅଶୋକ ଦାସଙ୍କୁ କେହି କେହି ପ୍ରବର୍ତ୍ତେଇଲେ ଯେ ମୁଁ ତାଙ୍କୁ ଖରାପ ବ୍ୟବହାର ଦେଖେଇଛି ବୋଲି ଅଭିଯୋଗ ଆଣିବା ପାଇଁ, ସେ ମିଛ କଥା କହିବା ପାଇଁ ମନା କଲେ। ସ୍ୱାଧିକାର ଭଙ୍ଗ ଅଭିଯୋଗ ଖାରଜ ହୋଇଗଲା।

ପୁରୀରେ ୧୯୬୯ ମସିହାରେ ୧୪୪ ଭଙ୍ଗ କରିଥିବା ଅଭିଯୋଗରେ କେତେକ କଲେଜ ଛାତ୍ରଙ୍କୁ ଥାନାକୁ ଅଣାଯାଇଥିଲା। ମୁଁ ଥିଲି ଏଏସ୍‌ପି। ପିଲାମାନଙ୍କୁ ଥାନା ଉପର ମହଲାରେ ବସାଇ ଦିଆଯାଇଥିଲା। ଅନୁରୋଧ କରିବାରୁ ଏମାର ମଠ ମହନ୍ତ ପୁରୀ ତରକାରୀ ବୁନ୍ଦି ପଠେଇ ଦେଇଥିଲେ ଓ ସେମାନଙ୍କୁ ସନ୍ଧ୍ୟାରେ ଛାଡ଼ି ଦିଆଗଲା। ସେମାନଙ୍କ ନାଁ ଥାନା ରେକର୍ଡ଼ରେ ରଖାଗଲା ନାହିଁ ଯାହାଦ୍ୱାରା ଚାକିରି ପାଇବାରେ କୌଣସି ବାଧା ବିଘ୍ନ ଉପୁଜିନାହିଁ। ସେମାନଙ୍କ ଭବିଷ୍ୟତକୁ ଦୃଷ୍ଟିରେ ରଖି ଏତେ ଯତ୍ନ ମୁଁ କଲି। ତା' ସତ୍ତ୍ୱେ ସେଥିରୁ ଜଣେ ସାମାନ୍ୟ ସୁଯୋଗ ପାଇଲେ କହନ୍ତି ମିଷ୍ଟର ମିଶ୍ର ମୋତେ ଗିରଫ କରିଥିଲେ। ଗିରଫ ତ ମୁଁ କରିନଥିଲି ଥାନା ବାବୁ କରିଥିଲେ। ବରଂ ମୁଁ ଛାଡ଼ି ଦେଲି। ଅଥଚ କଥା ଏଭଳି ପରିପ୍ରେକ୍ଷୀରେ କୁହାଯାଏ ଯେଭଳି ମୁଁ ଏକ ଅନ୍ୟାୟ କରିଥିଲି। ପ୍ରତ୍ୟେକ ମଣିଷ ଅଲଗା ଏବଂ ସେମାନେ ଅଲଗା ଭାବରେ ବ୍ୟବହାର କରନ୍ତି। ଏସବୁ ଧୀର ସ୍ଥିର ଭାବେ ଗ୍ରହଣ କରିନେବା କଥା। ଲୋକେ ନିନ୍ଦନ୍ତୁ କିମ୍ବା ପ୍ରଶଂସା କରନ୍ତୁ ସ୍ଥିତପ୍ରଜ୍ଞ ଲୋକ ନିଜ ଆଦର୍ଶରୁ ବିଚ୍ୟୁତ ହେବା ଉଚିତ ନୁହେଁ ବୋଲି ଗୀତାରେ କୁହାଯାଇଛି।

ରାଉରକେଲା ବିଷୟ କହୁ କହୁ ଯାଜପୁର ଓ ପୁରୀ ଆଡ଼କୁ ଆସିଲିଣି। ଏବେ ବ୍ୟକ୍ତିଗତ କଥା କିଛି କହେ। ଏସ୍‌ପି ବଙ୍ଗଳା ବାଡ଼ିପଟେ ବହୁତ ଜାଗା। ପନିପରିବା ଲଗେଇ ସଦ୍ୟ ପରିବା ଖାଇଲୁ ଓ ବାଣ୍ଟିଲୁ। ଛତୁ ଚାଷ କରି କିଛି ଛତୁ ପାଇଲୁ। ଏସ୍‌ପି କ୍ୱାଟରକୁ ଲାଗି ଏଡ଼ିଏମ୍ କ୍ୱାଟର। ପ୍ରଥମେ ଥିଲେ ଶ୍ରୀନିବାସ ରଥ, ପରେ କଲେକ୍ଟର ସୁନ୍ଦରଗଡ଼ ହେଲେ ତା'ପରେ ଆସିଲେ ଅଶୋକ ମିଶ୍ର। ସକାଳ କାନ୍ଥ ଏପାଖେ ଓ ସେପାଖେ ଠିଆ ହୋଇ ଗପସପ କରୁ। ଶ୍ରୀନିବାସ ରଥ ଓ ମୁଁ ଏକା ସଙ୍ଗେ ରେଭେନ୍‌ସାରେ ପଢ଼ୁଥିଲୁ ଓ ଅଶୋକ ମିଶ୍ର (ମୋ' ଠାରୁ ବର୍ଷେ ଜୁନିୟର)ଙ୍କ ସାଙ୍ଗରେ ଆହ୍ଲାବାଦ୍ ବିଶ୍ୱବିଦ୍ୟାଳୟରେ ପରିଚୟ। ଅଶୋକ ମିଶ୍ରଙ୍କ ଭଣଜା (ଡ଼ାକ ନାଁ ମନି) ଆଇପିଏସ ଆଲାଏଡ଼ ପାଇଁ ପଢ଼ୁଥିଲେ, ଇଣ୍ଟରଭ୍ୟୁ ମଧ୍ୟ ପାଇଲେ। ଆମଠାରୁ ଇଣ୍ଟରଭ୍ୟୁ ବିଷୟରେ ପରାମର୍ଶ ନେଉଥିଲେ। ୧୯୭୬ ମସିହାରେ ମନମୋହନ ପ୍ରହରାଜ ଆଇପିଏସ୍ ହେଲେ ଓ ଡିଜି ହିସାବରେ ଅବସର ନେଲେ। ତାଙ୍କ ବିଷୟ ପରେ କହିବି।

ରାଉରକେଲାରେ ହାଡ଼ଭଙ୍ଗା ଶୀତ ଓ ମୁଣ୍ଡ ଫଟା ଖରା। ରେଜେଇ ଘୋଡ଼େଇ ହେଲେ ଶୀତ ସମ୍ଭାଳି ହେବ କିନ୍ତୁ ଖରା ପାଇଁ ଉପାୟ କିଛି ନାହିଁ। ଏସି ଗୋଟିଏ କିଣିବା ପାଇଁ ଆର୍ଥିକ ସମ୍ବଳ ନଥିଲା, ତେଣୁ ଦିପହରେ ଛଟପଟ ହୋଇ କୌଣସି ମତେ ଚଳିଯାଉ ଓ ରାତିରେ ଅଗଣାରେ ଶୋଉ। ସକାଳୁ ଉଠିଲା ବେଳକୁ ଦେହରେ ପରସ୍ତେ ପାଉଁଶ, ରାଉରକେଲା ବାସୀଙ୍କ ପାଇଁ ଲୁହା କାରଖାନାରୁ ଯାହା ଉପହାର ସ୍ୱରୂପ ମିଳୁଥିଲା। ସକାଳୁ ପାଣି ରଖିବାକୁ ପଡୁଥିଲା। ଦିନ ୧୧ଟା ବେଳକୁ ପାଇପ୍‌ରୁ ଆସୁଥିବା ପାଣିରେ ଖୁସିରେ ଚା' ବନେଇ ହେଉଥିଲା। ଉପର ଅଫିସର ଓ ଅନେକ ବନ୍ଧୁବାନ୍ଧବଙ୍କ ବରାଦି ଯେ ତାଙ୍କର ପିଲାଙ୍କୁ ଚାକିରି କରେଇ ଦିଅ ମୋତେ ଏମିତି ଅତିଷ୍ଠ କଲା ଯେ ମୁଁ ଆଇଜିଙ୍କୁ ଚିଠି ଲେଖିଲି ବଦଳି କରିବା ପାଇଁ। କିନ୍ତୁ ଆଇଜି ମନା କଲେ।

ସେଇ ସମୟରେ ପୁଅ ନର୍ସରୀ ସ୍କୁଲରେ ନାଁ ଲେଖେଇଲା। ସେ ଏକ ସମୟ ଥିଲା ଯେ ପିଲାଙ୍କ ପାଠ ଏକ ଗୁରୁତର ସମସ୍ୟା ଭାବେ ଦେଖାଯାଉଥିଲା। ଆମେ ସର୍ବଭାରତୀୟ ସେବା କର୍ମଚାରୀମାନେ ଇଂରେଜୀ ମାଧ୍ୟମ ସ୍କୁଲରେ ପିଲାଙ୍କୁ ପଢ଼େଇବା ପାଇଁ ବାଧ୍ୟ କାରଣ ଓଡ଼ିଶା ବାହାରେ ପୋଷ୍ଟିଂ ନିଶ୍ଚୟ ହେବ। ତେଣୁ ପୁଅ ନୂଆ ନୂଆ ହୋଇଥିବା ଅଙ୍କୁର ସ୍କୁଲରେ ନାଁ ଲେଖାଇଲା। ଆମେ ପାଠ ଆରମ୍ଭ କରୁଥିଲୁ ଗୁରୁଣ୍ଡି ଗୁରୁଣ୍ଡି ଏରୁଣ୍ଡି ଉପରେ ମାଧବ ବସିଲା ଯାଇ, ପୁଅ ଶିଖିଲା ବାବା ବ୍ଲାକ୍ ସିପ୍ ....। ମୋର ଜୀବନରେ ଏକ ଅବଶୋଷ ରହିଗଲା ଯେ ମୋର ଦୁଇ ପିଲା ମୋ' ଲେଖାକୁ ଉପଭୋଗ କରିବା ପାଇଁ ସମର୍ଥ ହେଲେ ନାହିଁ। ନଦୀରୁ ଶାଖା ନଦୀଟେ ବାହାରିଗଲା ପରେ ସେ ସ୍ୱାଧୀନ ଭାବେ ସମୁଦ୍ରକୁ ଯିବ କି ଅନ୍ୟ କେଉଁ ନଦୀର ଉପନଦୀ ହୋଇଯିବ

ସେକଥା ମୂଳ ନଦୀର ଆୟତରରେ ନଥାଏ। ମୋର ସେବେଳେ ପ୍ରବଳ ଭୟ ଯଦି ମୋର ପୋଷ୍ଟିଂ ଅନୁଗୁଳ, ଫୁଲବାଣୀ, କଳାହାଣ୍ଡି, କେନ୍ଦୁଝରେ କିମ୍ବା କୋରାପୁଟ ଜିଲ୍ଲାରେ ହୁଏ ତେବେ ପିଲାଙ୍କ ପାଠ କଥା କ'ଣ ହେବ। ଅନେକ ଅଫିସର ଏଭଳି ଦୁର୍ଦ୍ଦଶାଗ୍ରସ୍ତ ହୋଇଛନ୍ତି। ଆଇପିଏସ୍ ଅଫିସରଙ୍କୁ ଧମକେଇବାପାଇଁ ସରକାରଙ୍କର ଓ ଉପରସ୍ଥ ଅଫିସରଙ୍କର ଏଇଟା ଏକ ଅସ୍ତ୍ର ଥିଲା। ଏହା ଆଇଏଏସ ଅଫିସରଙ୍କୁ କାଟୁ କରେ ନାହିଁ। କାରଣ ଥରେ ଜିଲ୍ଲା କରିଦେବା ପରେ ସେମାନେ କଟକ କିମ୍ବା ଭୁବନେଶ୍ୱର ଯାଆନ୍ତି।

ରାଉରକେଲାରେ ବହୁତ ବନ୍ଧୁ ହୋଇଗଲେ। ଡକ୍ଟର କବି ମିଶ୍ର, ସ୍ୱର୍ଗତ ଡକ୍ଟର ଧୋବେଶ୍ ମିଶ୍ର, ସାମ୍ବାଦିକ ଦୈତାରୀ ଦାଶ, ଗୋଲକ ଦାଶ, ରଜନୀ ଦାଶ, ଶ୍ରୀ ପତି ଓ ଅନେକ କଳା ଓ ସାହିତ୍ୟ ଅନୁଷ୍ଠାନର କର୍ମକର୍ତ୍ତାଙ୍କ ସହିତ ଆନ୍ତରିକତା ବଢ଼ି ଯାଇଥିଲା। ୭୭ ମସିହାରେ ଏମରଜେନ୍ସି ଉଠେଇ ଦିଆଗଲା ଓ ନିର୍ବାଚନ ହେଲା। କେନ୍ଦ୍ରରେ ଜନତା ପାର୍ଟି ଶାସନକୁ ଆସିଲା। କିନ୍ତୁ ରାଜ୍ୟରେ ନିର୍ବାଚନ ହୋଇନଥିଲା ଓ କେନ୍ଦ୍ର ସରକାର ବିଭିନ୍ନ ପ୍ରଦେଶର କଂଗ୍ରେସ ସରକାରମାନଙ୍କୁ ବରଖାସ୍ତ କରି ନିର୍ବାଚନ କଲେ। ଆସେମ୍ବ୍ଲି ନିର୍ବାଚନରେ ଜନତା ପାର୍ଟି ଭୋଟ ପାଇ ଶାସନକୁ ଆସିଲେ। ବିନାୟକ ଆଚାର୍ଯ୍ୟଙ୍କ ସରକାର ବିଦାୟ ନେଲା ଓ ନୀଳମଣି ରାଉତରାୟ ମୁଖ୍ୟମନ୍ତ୍ରୀ ହେଲେ। ମୁଁ ରାଉରକେଲା ପୋଷ୍ଟିଂ ହୋଇଥିଲି ନନ୍ଦିନୀ ଶତପଥିଙ୍କ ସମୟରେ। ଶ୍ରୀମତୀ ଶତପଥୀ ହେଲେ ପୁରୀର, ବିବାହ କରିଥିଲେ ଢେଙ୍କାନାଳରେ। ମୋର ଘର ମଧ୍ୟ ଅବିଭକ୍ତ ଢେଙ୍କାନାଳରେ। ତେଣୁ ୨ରେ ୨ ମିଶାଇ ୨୨ କରାଗଲା ଓ ମୁଁ ନନ୍ଦିନୀ ଦେବୀଙ୍କର ବନ୍ଧୁବାନ୍ଧବ ଓ ଅତ୍ୟନ୍ତ ପ୍ରିୟ ଲୋକ ବୋଲି କୁହାଗଲା।

ଯେଉଁ ଅବସ୍ଥାରେ ନନ୍ଦିନୀ ଦେବୀଙ୍କୁ କଂଗ୍ରେସ ଦଳ ବିଦା କଲା ତାହା ମୁଁ ରାଉରକେଲା ପରିପ୍ରେକ୍ଷୀରେ କହିବା ପାଇଁ ଯାଉଛି। ସେତେବେଳେ ଶ୍ରୀମତୀ ଶତପଥିଙ୍କର ଦଳର ଲୋକ ତାଙ୍କ ବିରୁଦ୍ଧରେ ନାନାଦି ବିବୃତ୍ତି ଦେଉଥାନ୍ତି ଓ ସେସବୁ ଆକାଶବାଣୀରେ ପ୍ରଚାରିତ ହେଉଥିଲା। ତା'ପରେ ଆମକୁ ବାର୍ତ୍ତା ଆସିଲା ଯେ କେନ୍ଦ୍ର ରାଷ୍ଟ୍ରମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ରାଉରକେଲା ଆସି ମିଟିଂ କରିବେ। ତାଙ୍କ ପାଇଁ ସବୁ ପ୍ରକାର ସୁରକ୍ଷା ବନ୍ଦୋବସ୍ତ କରିବା ପାଇଁ ପଡ଼ିବ। ଏଇଟା ଥିଲା ନନ୍ଦିନୀ ଶତପଥିଙ୍କ ବିରୁଦ୍ଧରେ ରାଜନୈତିକ ପଦକ୍ଷେପରେ ଅୟମାରମ୍ଭ। ମୋତେ ଜଣେ ସ୍ପେଶାଲ ବ୍ରାଞ୍ଚର ସିନିୟର ଅଫିସର ଫୋନ୍ କରି କହିଲେ 'ଆମେ ଲେଖିବା କଥା ଲେଖି ଦେଇଛୁ କିନ୍ତୁ ସରକାର ଚାହୁଁଛନ୍ତି ଯେ ଜାନକୀ ବାବୁଙ୍କୁ କୌଣସି ସୁରକ୍ଷା ଦିଆନଯାଉ।' ଡିଆଇଜିଙ୍କୁ କଲେକ୍ଟର ଓ ମୁଁ ପଚାରିଲୁ। ସେ କହିଲେ ଯେ ଆଇଜିଙ୍କୁ ପଚାରନ୍ତୁ ମୋତେ କାହିଁ ପଚାରୁଛନ୍ତି ? ଜିଲ୍ଲାପାଳ ଶ୍ରୀନିବାସ ରଥ ଓ ମୁଁ ନିଷ୍ପତ୍ତି ନେଲୁ ଯେ ନିୟମାନୁସାରେ କାମ

କରିବୁ, ଜାନକୀ ବାବୁଙ୍କୁ ସବୁପ୍ରକାର ସୁରକ୍ଷା ଦିଆଯିବ। ବନ୍ଦୋବସ୍ତ ଭଲ ହେଲା। ସେଦିନ ଏଡ଼ିଏମ୍ ଅଶୋକ ମିଶ୍ରଙ୍କର ଦେହ ଖରାପ ହୋଇଥିଲା ଓ ଡିଆଇଜିଙ୍କର ଅଫିସ ଓ ଘର ଫୋନ୍ ଖରାପ ହୋଇଗଲା। ତରକାରି ଖରାପ ହେଲେ ରୋଷେୟା କହେ ଆଞ୍ଚ ନିଆଁ ଚୁଲି କଥା। ସେମିତି ଏଡ଼ିଏମ୍ ଓ ଡିଆଇଜିଙ୍କର ରୋଗ ବୈରାଗ ଓ ଯନ୍ତ୍ରପାତିର କଥା। ସେମାନେ ଆଉ କ'ଣ କରିଥାନ୍ତେ ? ସେମାନଙ୍କ ସାହାଯ୍ୟ ଓ ଉପଦେଶରୁ ବଞ୍ଚିତ ହୋଇ କଲେକ୍ଟର ଓ ମୁଁ ସବୁ ରକମ ବନ୍ଦୋବସ୍ତ କଲୁ। ମିଟିଂରେ ଜାନକୀ ବାବୁଙ୍କର ଭାଷଣରେ ଶାଳୀନତା ଥିଲା ଓ ସମାଲୋଚନା ପ୍ରତ୍ୟକ୍ଷ ଥିଲା କିନ୍ତୁ ଜଣେ ଦୁଇଜଣ ନେତା ନନ୍ଦିନୀ ଶତପଥିଙ୍କୁ ଅତି କଦର୍ଯ୍ୟ ଭାଷାରେ ଗାଳି ଦେଇଥିଲେ। ସେମାନେ ହାଇକମାଣ୍ଡଙ୍କ ବହପପାଇ ଏସବୁ କରିଥିଲେ।

ଜାନକୀ ବାବୁ ଓ ତାଙ୍କ ଦଳ ଗଲେ ସୁନ୍ଦରଗଡ଼। ତା'ପରେ ସମ୍ବଲପୁର ଓ ଅନ୍ୟାନ୍ୟ ସ୍ଥାନକୁ। ସବୁ ସ୍ଥାନରେ ସୁରକ୍ଷା ଦିଆଯାଉଥିଲା କିନ୍ତୁ ବେସରକାରୀ ତଦନ୍ତ ଚାଲିଲା - ଏସବୁ ହେଲା କେମିତି ? ବିଭାଗରେ ଅନ୍ୟଙ୍କର ଚରିତ୍ର ସଂହାର କରିବାରେ ସିଦ୍ଧହସ୍ତ ଜଣେ ଅଫିସର ସବୁଆଡ଼େ କହିବୁଲିଲେ ଯେ ଏସବୁ ଆରମ୍ଭ କଲା ବିବି ମିଶ୍ର ତେଣୁ ଅନ୍ୟ ଜିଲ୍ଲା ଏସ୍‌ପିମାନେ ଅନୁରୂପ ବନ୍ଦୋବସ୍ତ କରିବା ପାଇଁ ବାଧ ହେଲେ। ତା'ପରେ କଟକରେ ମୁଁ କେମିତି ଖୁବ୍ ଭଲ କାର୍ଯ୍ୟ କରିଥିଲି ସେଇ କଥାକୁ ମନେ ପକାଇ ଜଣେ ଉଚ୍ଚ ଅଫିସର ପ୍ରସ୍ତାବ ଦେଲେ ଯେ, ଯେହେତୁ କଟକ ଏସ୍‌ପି ବିବି ମିଶ୍ରଙ୍କ ଠାରୁ ସିନିୟର ତେଣୁ ବିବି ମିଶ୍ରଙ୍କୁ ରାଉରକେଲା ଏସ୍‌ପି ପଦରୁ ବଦଳି କରି କଟକର ଅତିରିକ୍ତ ଏସ୍‌ପି କରାଯାଉ। ମୁଖ୍ୟମନ୍ତ୍ରୀଙ୍କ ପିଏଙ୍କ ପାଖକୁ ବାରମ୍ବାର ଦୌଡୁଥିବା ଏ ଅଫିସର ଜଣକ ବିରତ ହେଲେ ଯେତେବେଳେ ନନ୍ଦିନୀ ଦେବୀ ଇସ୍ତଫା ଦେଲେ। ମୋର ଦୃଢ଼ ଧାରଣା ଯେ ଏଭଳି ପ୍ରତିଶୋଧମୂଳକ ପ୍ରସ୍ତାବ ନନ୍ଦିନୀ ଦେବୀଙ୍କୁ ଦେଇଥିଲେ ସେ ଗ୍ରହଣ କରିନଥାନ୍ତେ। ତାଙ୍କ ଶାସନ ସମୟରେ ଆମେ ବେଶ୍ ନିରାପଦ ଥିଲୁ ଓ ଆଇନ୍ ଅନୁସାରେ କାର୍ଯ୍ୟ କରୁଥିଲୁ। ୧୯୭୭ ମସିହାରେ ଆଇଜି ପଚାରିଲେ କଟକ ଏସ୍‌ପି ହୋଇଯିବ କି, ମୁଁ ହଁ କରିବାରୁ ସେ ସରକାରଙ୍କୁ ପ୍ରସ୍ତାବ ଦେଲେ କିନ୍ତୁ ସରକାର ତାହାକୁ ଗ୍ରହଣ ନକରି ମୋତେ ଭିଜିଲାନ୍ସ ଏସ୍‌ପି କଟକରେ ଅବସ୍ଥାପିତ କଲେ। ତା'ପରେ କୁହାଗଲା ଏବେ ଆସିନଥାଅ ଅପେକ୍ଷା କର। ତିନି ଚାରି ଦିନ ପରେ ବଦଳି ହେଲା ସମ୍ବଲପୁର ଏସ୍‌ପି ଭାବରେ। ରାଉରକେଲାରେ ବହୁତ ବ୍ୟକ୍ତି ଓ ଅନୁଷ୍ଠାନ ଫେରୱେଲ ପାଇଁ ଡାକିଲେ, ଯେଉଁ ଷ୍ଟିଲ୍ ପ୍ଲାଣ୍ଟ ସାଙ୍ଗେ ଏତେ ଝଗଡ଼ା ତା'ର ସିନିୟର ଅଫିସରମାନେ ଫେରୱେଲ ଦେଲେ। ଅଗଷ୍ଟ ୧୪ରେ ଜିନିଷପତ୍ର ନେଇ ସମ୍ବଲପୁରରେ ପହଞ୍ଚିଲି ଓ ଘର ଖାଲି ଥିବାରୁ ସେଥିରେ ପ୍ରବେଶ କଲି। ୧୬ ତାରିଖରେ ପୂର୍ବର

ଆଡ଼ମିଶନ ହେଲା । ନୂଆ ପୋଷାକ ନୂଆ ବହି ଓ ନୂଆ ସ୍କୁଲ । ଭାବିଥିଲି ଏସ୍‌ପିର ୨୪ ଘଣ୍ଟା ପରିଶ୍ରମରୁ କିଛି ରିହାତି ମିଳିବ ଓ ପିଲାଛୁଆ, ବାପା, ମାଆଙ୍କ କଥା ବୁଝିବି । ୨୩ ତାରିଖରେ ମୋର ବଦଳି ହେଲା ଦିଲ୍ଲୀକୁ । ସେ ଏକ ସମୟ ଥିଲା ଯେ ନନ୍ଦିନୀ ଦେବୀଙ୍କ ବାସ୍ନାକୁ ଫିନାଇଲରେ ଧୂଆ ହେଉଥିଲା ।

## ବହୁ ବାଧାବିଘ୍ନ

ସମ୍ବଲପୁର ଭିଜିଲାନ୍‌ସ ଅଫିସରେ ମୁଁ ଏସ୍‌ପି ହୋଇ ରହିଲି ମାତ୍ର ୯ ଦିନ ପାଇଁ । ମୋତେ ଭାରତ ସରକାରଙ୍କ ଅଧୀନକୁ ପଠେଇ ଦିଆଗଲା, ଟେଲିଫୋନ୍‌ରେ ମୋ' ନାଆଁ ପ୍ରସ୍ତାବ ଦେଇ ଓ ଆଦେଶ ଅଣାଇ । ଆଦେଶ ପାଇ ମୁଁ ସ୍ତମ୍ଭୀଭୂତ ହୋଇଗଲି । ପିଲାଛୁଆଙ୍କୁ ନେଇ ଦିଲ୍ଲୀ ଯିବି ରହିବି କେଉଁଠି, ପିଲାଛୁଆ କେଉଁ ସ୍କୁଲରେ ପାଠ ପଢ଼ିବେ ଇତ୍ୟାଦି ବିଭିନ୍ନ ଚିନ୍ତା ଘାରିଲା । ନୂଆ ଆଇଜି ଶ୍ରୀ ବି.କେ. ରାଏଙ୍କୁ ଫୋନ୍ କଲି । ଶ୍ରୀ ବି.କେ. ରାଏ ବଡ଼ ଦକ୍ଷ ଅଫିସର, ସବୁକଥା ଟିକ୍‌ନିକ୍ କରି ଦେଖନ୍ତି । ସେ ଦାୟିତ୍ୱ ନେଲା ମାତ୍ରେ ରାଉରକେଲା ଆସି ମୋ' ଅଫିସ ପରିଦର୍ଶନ କଲେ ଓ କାମରେ ସନ୍ତୁଷ୍ଟ ହୋଇ କହିଲେ ମୁଁ ତୁମକୁ କଟକ ଏସ୍‌ପି କରିଦେବି । କାହାକୁ ନକହି ସେ ଯଦି ପ୍ରସ୍ତାବ ଦେଇଥାନ୍ତେ ତା'ହେଲେ ମୁଁ କଟକ ଏସ୍‌ପି ହୋଇପାରିଥାନ୍ତି କିନ୍ତୁ ସମସ୍ତଙ୍କ ଆଗରେ ଏକଥା କହିବା ଦ୍ୱାରା ସମ୍ବାଦ ସବୁଆଡ଼େ ଖେଳିଗଲା ଓ ଶେଷରେ ଭିଜିଲାନ୍ସ ଏସ୍‌ପିରେ ପୋଷ୍ଟିଂ ହେଲା । ସେତେବେଳକୁ ନିଷ୍ପତ୍ତି ନିଆସରିଲାଣି ଯେ ନନ୍ଦିନୀ ଶତପଥିଙ୍କ ନାଁରେ ଭିଜିଲାନ୍‌ସ କେସ୍ ହେବ । ଶ୍ରୀମତୀ ଶତପଥିଙ୍କର ଶାଶୂଘର ଢେଙ୍କାନାଳ ଓ ନିର୍ବାଚନ ମଣ୍ଡଳୀ ମଧ୍ୟ ଢେଙ୍କାନାଳ । ଢେଙ୍କାନାଳ ସମ୍ବଲପୁର ଡିଭିଜନ ଅନ୍ତରରେ ଥିଲା ଓ ମୁଁ ତା'ର ଏସ୍‌ପି ହେବା ମାଳିକୁ ଛେଳି ଅଡୁଆ ଭଳି କଥା । ତେଣୁ ଆଉ କୁଆଡ଼େ ଗଲେ କାଳେ କାହାକୁ ସାହାଯ୍ୟ କରିଦେବି, ମୂଳୁ ମାଇଲେ ଯିବ ସରି ନୀତି ଅବଲମ୍ବନ କରି ମୋତେ କେନ୍ଦ୍ର ସରକାରକୁ ପଠେଇ ଦିଆଗଲା । ଗୋଟିଏ ଭଲ ଦିଗ ଥିଲା ଯେ ଶାହା କମିଶନ ମୋତେ ଗ୍ରହଣ କଲା । ମୋତେ କେନ୍ଦ୍ର ସରକାରଙ୍କୁ ପଠେଇ ଦେବା କଥାଟା ଆଇଜି ମଧ୍ୟ ଜାଣିପାରିନଥିଲେ । ମୋ'ପରି ଆଉ କେତେକ ଅଫିସର ମଧ୍ୟ କେନ୍ଦ୍ରକୁ ଚାଲିଗଲେ, ଆଇପିଏସରେ ନୂଆ କରି ମୁଣ୍ଡ ଟେକିଥିବା ଏକ ଦଳ (ଯେଉଁମାନଙ୍କ ବିରୁଦ୍ଧରେ ବିଭିନ୍ନ ଦୁର୍ନୀତି ଅଭିଯୋଗ ଥିଲା)ର ତାଡ଼ନାରେ ।

ମୋ' ପାଇଁ ଜ୍ୟୋତିଷ ବାଣୀ ଆଉ ଥରେ ସତ ହେଲା । ମୋତେ କ୍ଷତି କରିବାକୁ ଗଲେ ମୋର ଲାଭ ହୁଏ ଏକଥା ସବୁବେଳେ ଘଟିଛି । ଜ୍ୟୋତିଷ କହନ୍ତି ଶତ୍ରୁସ୍ଥାନ ଷଷ୍ଠାଧିପତି ଏକାଦଶରେ (ଲାଭ ସ୍ଥାନ), ଗଞ୍ଜାମର ଜଣେ ଜ୍ୟୋତିଷ ତାଙ୍କ ନିଜ

ଭାଷାରେ କହିଥିଲେ - ବୁଝିଲେ କି ଆଜ୍ଞା ! ବହୁତ ଲୋକ ତୁମ ନାଁରେ ଅସାର କଥା କହିବେ, ଜାଲରେ ପକାଇବା ପାଇଁ ଚେଷ୍ଟା କରିବେ ହେଲେ ତମେ ତୁନି ହୋଇ ରହିବ ଦେଖିବ ଶେଷକୁ ତୁମର ଲାଭ ହେବ। ଏକଥା ଅବଶ୍ୟ ସେ ମୁଁ ବର୍ତ୍ତମାନ କହୁଥିବା ଘଟଣାର ବହୁତ ଦିନ ପରେ କହିଥିଲେ। ଚାକିରି ଆରମ୍ଭ ସମୟରେ ଜଣେ ଜ୍ୟୋତିଷ ମୋତେ କ୍ଷତିରୁ ଲାଭ ହେବ ବୋଲି କହିଥିଲେ।

ମୋତେ ଶାହା କମିଶନ ଇନକ୍ୱାରୀ ଏସ୍‌ପି ତଥା ଡ଼େପୁଟି ସେକ୍ରେଟେରୀ ପଦବୀରେ ନେଇ ଦିଲ୍ଲୀରେ ଅବସ୍ଥାପିତ କଲେ। ମୁଁ ପ୍ରାୟ ଦେଢ଼ ମାସ ରହିଲି। ସେଇ ସମୟରେ ଦେଖିଛି ଇମରଜେନ୍‌ସି ସମୟର ବହୁ ଦୁର୍ଦ୍ଧର୍ଷ ନେତା ଓ ସରକାରୀ କର୍ମଚାରୀ ଶାହା କମିଶନ ଆଗରେ ଥତମତ ହେବାର। ମୁଁ ଦିନେ କମିଶନ ଅଫିସରୁ ବାହାରି ବସ୍ ଧରିବା ପାଇଁ ଯାଉଛି ଗୋଟିଏ କାର୍ ଆସି ମୋ' ପାଖରେ ରହିଗଲା। ପଛରେ ବସିଥିବା ଜଣେ ଭଦ୍ରଲୋକ ପଚାରିଲେ ଆପଣ ଶାହା କମିଶନରେ କାମ କରନ୍ତି କି ? ସେ ଅନୁମାନ କରିପାରିଲେ କାରଣ ଶାହା କମିଶନରେ ଦିଆଯାଇଥିବା ସ୍ୱତନ୍ତ୍ର ଧରଣର ଆଟାଚି ମୁଁ ଧରିଥିଲି। ମୁଁ ହଁ କରିବାରୁ ସେ ପଚାରିଲେ କୁଆଡ଼େ ଯାଉଛନ୍ତି। ମୁଁ କହିଲି ବର୍ଦ୍ଧମାନ ହାଉସ୍। ସେ ମୋତେ ବର୍ଦ୍ଧମାନ ହାଉସରେ ଛାଡ଼ିଦେଲେ।

ବର୍ଦ୍ଧମାନ ହାଉସ କେନ୍ଦ୍ର ଗୋଇନ୍ଦା ସଂସ୍ଥାର ଏକ ଅଫିସ ଯେଉଁଠି ମୋ' ବଡ଼ଭାଇ ଡ଼େପୁଟି ଡାଇରେକ୍ଟର ଥିଲେ ଏବଂ ଯିଏ ମୋତେ ଛାଡ଼ିଲେ ସେ ଥିଲେ ଶାହା କମିଶନ ସେକ୍ରେଟେରୀ ପି.ଆର ରାଜଗୋପାଳ। ମୋତେ ପାଖରେ ବସେଇ ପଚାରିଲେ, ପାଟନା ଓ ଭୁବନେଶ୍ୱର ଏ ଦୁଇଟି ସ୍ଥାନରୁ କେଉଁଠିକୁ ଯିବ। ମୁଁ ଭାବିଲି ଭୁବନେଶ୍ୱର କହିଲେ ମଧ ଦେବେନାହିଁ ତେଣୁ କହିଲି ପାଟନା। ସେ ଓଡ଼ିଆରେ ପଚାରିଲେ ଓଡ଼ିଶା କାହିଁକି ନଯିବ ? ମାଡ୍ରାସର ଲୋକ ଶ୍ରୀ ରାଜଗୋପାଳ ଆଇପିଏସରେ ଯୋଗଦାନ ପୂର୍ବରୁ ବାଲେଶ୍ୱର କଲେଜରେ ଦୁଇବର୍ଷ ଅଧ୍ୟାପକ ଥିଲେ। ସେ ଓଡ଼ିଆମାନଙ୍କୁ ବହୁତ ଭଲପାଆନ୍ତି। ତା' ଆରଦିନ ସକାଳେ ମୋତେ ରୁମ୍‌କୁ ଡକେଇ ଭୁବନେଶ୍ୱର ପୋଷ୍ଟିଂ ଅର୍ଡ଼ର ଦେଲେ। ଘରଭଡ଼ା ନାହିଁ, ତିନିଶହ ଟଙ୍କା ସ୍ୱତନ୍ତ୍ର ଆଲାଉନ୍‌ସ, ଭିଜିଲାନ୍‌ସରେ ପାଉଥିବା ୨୦୦ ଟଙ୍କା ଆଲାଉନ୍‌ସ କାଏମ୍ ରହିଲା। ଖବର କାଗଜ କିଣିବା ପାଇଁ ୫୦ ଟଙ୍କା, କାର ଆଲାଉନ୍‌ସ ୨୦୦ ଟଙ୍କା, ୟୁନିଟ୍ - ୮ରେ ସି ଟାଇପ୍ ଘର ଦୁଇଟା ମିଳିଲା। ୫ନଂ ଘରେ ରହିଲି ଓ ୬ ନଂ ଘରେ ହେଲା ଅଫିସ। ଯାହା ଦରମା ପାଉଥିଲି ତହିଁରୁ ଅଧିକା ୭୫୦ ଟଙ୍କା ଦରମା ପାଇଲି। ସେ ସମୟରେ ବହୁତ ଟଙ୍କା। ମୋ' ପ୍ରତି ନିକ୍ଷେପ କରାଯାଇଥିବା ଅସ୍ତ୍ରଟା ବେକରେ ଫୁଲ ମାଳ ପରି ପଡ଼ିଲା, ତା' ସାଙ୍ଗେ ସାଙ୍ଗେ ବହୁତ ଅଫିସର ମୋ' ପାଖକୁ ଧାଇଁଲେ। ସମସ୍ତଙ୍କ ମନରେ ଗୋଟିଏ ଭୟ ଯେ କାଳେ କିଛି କମ୍ପ୍ଲେନ୍ ଥିବ।

ଇମରଜେନ୍‌ସି ସମୟରେ କଲେକ୍ଟର ଏସ୍‌ପିମାନଙ୍କର ମିଟିଂ ବାରମ୍ବାର ଡକାଯାଉଥାଏ। ଚା' ବିରତି ସମୟରେ କଲେକ୍ଟରମାନେ ଗୋଟେ କଣରେ ଓ ଏସ୍‌ପିମାନେ ଆଉ ଗୋଟିଏ କଣରେ ଠିଆ ହୋଇ କଥାବାର୍ତ୍ତା କରନ୍ତି। ଗପସପ ନୁହେଁ ଖାଲି ବାହାସ୍ଫୋଟ। ଅଧିକାଂଶଙ୍କର ଘୋଷଣା ଏଭଳି, ଟୋଟାଲ ତେଇଶି ହେଇସାରିଲାଣି ଏସ୍‌ପି ସାଙ୍ଗେ ମୁଁ କଥା ହୋଇଛି ଫେରିବା ପରେ ତିରିଶ ହେବ। ଚାଲିଛି ଚାଲିଛି ଦେଖାଯାଉ ଆଉ କ'ଣ ହେଉଛି। ୨୩ ଜଣ ବିରୋଧୀ ଦଳ ନେତାଙ୍କୁ ବାନ୍ଧିଥିବାରୁ ସେ ଯେତିକି ଉତ୍‌ଫୁଲ୍ଲିତ ଏବଂ କଥାଗୁଡ଼ାକ ତାଙ୍କର ସେତିକି ମୁଁ ସର୍ବସ୍ୱ। ମୁଁ ବାସୁକି ସମଗ୍ର ପୃଥିବୀକୁ ଟେକି ଧରିଛି, ଟିକିଏ ହଲଚଲ ହେଲେ ଭୂମିକମ୍ପ ହୋଇଯିବ, ଏଭଳି ଘୋଷଣା କରୁଥିବା ଭଦ୍ରଲୋକଙ୍କୁ ଶାହା କମିଶନ ସମୟରେ ତାଙ୍କ ବିରୁଦ୍ଧରେ ବିନା ଦୋଷରେ ମିଶାରେ ଗିରଫ କରିଥିବା ଅଭିଯୋଗ ବିଷୟରେ ପଚାରିବାରୁ ସେ ମୋତେ କହିଲେ - କ'ଣ କରିବି ଭାଇ କହିଲ, ଏସ୍‌ପି ଲେଖିକରି, ଦେଲେ, ଜଣେ ସିନିୟର ଆଇପିଏସ ଅଫିସର ଲେଖି ଦେଉଛନ୍ତି କେମିତି ମନା କରିବି? ତା'ଛଡ଼ା ସିଏମଙ୍କ ଅଫିସରୁ ବହୁତ ପ୍ରେସର ପଡୁଥିଲା। ଉକ୍ତ ଏସ୍‌ପିଙ୍କୁ ପଚାରିବାରେ ସେ ଉତ୍ତର ଦେଲେ କିଓ ମୋ' ପାଖରେ ଯାହା ତଥ୍ୟ ଥିଲା ମୁଁ କଲେକ୍ଟରଙ୍କୁ ଦେଲି ତା' ଉପରେ କଲେକ୍ଟର କ'ଣ ଆକ୍ସନ ନେଲେ ମୁଁ କ'ଣ କରିବି? ଏଇଭଳି ସମସ୍ତଙ୍କ କୈଫିୟତ। ଜଣେ କଲେକ୍ଟର ଜିପ୍ ଚଳେଇ ଯାଉଥିଲେ, ରାସ୍ତା ମଝିରେ ଦଳେ ଛାତ୍ର ଠିଆ ହୋଇ କଥାବାର୍ତ୍ତା କରୁଥିଲେ। କଲେକ୍ଟର ରାଗିଯାଇ ଗାଡ଼ିରୁ ଓହ୍ଲେଇ ଧମକା ଧମକି କରିବାରୁ ତାଙ୍କୁ ନଚିହ୍ନିଥିବା ଛାତ୍ରମାନେ ତୁ ତା ବେ ବା ଶବ୍ଦ ବ୍ୟବହାର କରି ଓଲଟି ଗାଳି ଦେଲେ। ଫଣ ଫଣ ହୋଇ କଲେକ୍ଟର ଫେରିଲେ ଅଫିସକୁ, ଫୋନ୍ କଲେ ଏସ୍‌ପିଙ୍କୁ ଓ ଉଭୟ ଯାଇ ସେ ଛାତ୍ରମାନଙ୍କୁ ଆରେଷ୍ଟ କରି ଆଣିଲେ। ସେମାନଙ୍କ ନାଁରେ ଡକାୟତି କେସ୍ କରାଗଲା। କିନ୍ତୁ କ୍ରୋଧରେ ମଣିଷ ଭୁଲ୍ କରେ, ଏଫଆଇଆର ଲେଖିଲା ବେଳକୁ ପ୍ରଥମ ପୃଷ୍ଠାରେ ଅଭିଯୁକ୍ତ କଲମରେ ତାଙ୍କ ନାଁ ରହିଲା କିନ୍ତୁ ବର୍ଣ୍ଣନା ବେଳେ ବାରମ୍ବାର ଲେଖାଗଲା କେତେକ ଛାତ୍ର। ଏହାକୁ ପଢ଼ି ଏସଡ଼ିଜେଏମ କେସ୍‌କୁ ଡିସ୍‌ମିସ୍ କରିଦେଲେ। ଏଇ କେସ୍‌ରେ ମୁଁ ଲେଖିଥିଲି ଯେ ଉଭୟ କଲେକ୍ଟର ଓ ଏସ୍‌ପିଙ୍କ ନାଁରେ କେସ୍ କରାଯାଉ କିନ୍ତୁ ଶାହା କମିଶନଙ୍କର ସମସ୍ତ ରିପୋର୍ଟ ୧୯୮୦ ମସିହାରେ କଂଗ୍ରେସ ସରକାର ଆସିବା ପରେ ଅଳିଆଗଦାକୁ ଫୋପାଡ଼ି ଦିଆଗଲା। କହିବା ବାହୁଲ୍ୟ ଯେ ଶାହା କମିଶନ ଇନ୍ଦିରାଗାନ୍ଧି ଓ ସଞ୍ଜୟ ଗାନ୍ଧିଙ୍କୁ ଅନେକ ଥର ତଲବ କରିଥିଲେ।

କାମ ବେଶି ନଥିଲା। ସନ୍ଧ୍ୟା ବେଳେ ବୁଲିଯାଏ ଜାତୀୟ ରାଜପଥକୁ।' ସିଆରପି ଛକ ରାସ୍ତାର ବାମ ପଟେ ଦୁଇ ବଖରା ଚାଳଘର, ବାକି ଅଞ୍ଚଳ ଜଙ୍ଗଲ।

କୌତୂହଳବଶତଃ ସେଠିକି ଗଲି। ଠାକୁରଘର ବାରଣ୍ଡାର ଖଟିଆରେ ବସିଥାନ୍ତି ଜଣେ ଗୋରା ଲୋକ, ଗେରୁଆ ବସ୍ତ୍ର ଓ ଲଣ୍ଡା ମୁଣ୍ଡରେ ବିରାଟ ଚୁଟି। ମୋତେ ଦେଖି କହିଲେ ହରେ କ୍ରିଷ୍ଣ। ତା'ପରେ କୁଡ଼ିଆ ଭିତରୁ ଆଉ ଜଣେ ବାହାରି ଆସିଲେ। ସେ ଓଡ଼ିଆ, ମୋତେ ଭିତରକୁ ଡାକିନେଇ ପ୍ରସାଦ (ପୁରି, ତରକାରି ଓ ବୁନ୍ଦିଆ) ଦେଲେ ଓ ଭକ୍ତି ଯୋଗ ବିଷୟରେ କିଛି କହିଲେ। କେବଳ ଜ୍ଞାନ ଯୋଗ ଓ କର୍ମଯୋଗରେ ମଣିଷ ଲକ୍ଷ୍ୟ ସ୍ଥଳରେ ପହଞ୍ଚିପାରେ ନାହିଁ। ଭକ୍ତି ଯୋଗର ନିହାତି ଆବଶ୍ୟକ ବୋଲି କହିଲେ। ଏକଥାକୁ ମୁଁ ଗ୍ରହଣ କରି ପରେ ଭିନ୍ନ ଦୃଷ୍ଟିରୁ ବିଶ୍ଳେଷଣ କଲି। ବର୍ତ୍ତମାନ ସରକାରୀ ବ୍ୟବସ୍ଥାରେ ପରସ୍ପର ମଧ୍ୟରେ ସମ୍ପର୍କ ଦେଖିଥିଲେ ଭଗବାନ ଶ୍ରୀକୃଷ୍ଣ କହିଥାନ୍ତେ ଏ ତିନି ବିଶିଷ୍ଟ ଯୋଗର ସରକାରୀ ଚାକିରି କ୍ଷେତ୍ରରେ ପ୍ରାସଙ୍ଗିକତା ଅଛି। ଏଇ ଦେଖନ୍ତୁ ଜଣେ ଚାକିରିରେ ଯୋଗଦେବା ମାତ୍ରେ ଆଇନ୍ କାନୁନ୍ ନିୟମ ଇତ୍ୟାଦି ଶିଖେ ଅର୍ଥାତ୍ ଜ୍ଞାନଯୋଗ ପ୍ରାପ୍ତ ହେଲା। ତା'ପରେ ପ୍ରାୟ ୩୫ ବର୍ଷ ଖଟେ ସେଇଟା ହେଲା କର୍ମ ଯୋଗ। ଭଗବାନ ଶ୍ରୀକୃଷ୍ଣ କହିଛନ୍ତି କର୍ମ କରିଯାଅ ଫଳକୁ ଅପେକ୍ଷା କରନାହିଁ। ସେ ବିଷୟରେ ପରେ ଆଲୋଚନା କରିବା କିନ୍ତୁ ଏକଥା ଅନେକ ସରକାରୀ କର୍ମଚାରୀ ମାନିବେ ଯେ ଜ୍ଞାନ ଯୋଗ କର୍ମଯୋଗ ପ୍ରାପ୍ତ ହୋଇ ମଧ୍ୟ ଭକ୍ତିଯୋଗ ନଥିଲେ ସବୁ ଜ୍ଞାନ ଓ କର୍ମ ପାଣିରେ ପଡ଼ିବ। ଉପରିସ୍ଥ ହାକିମ, କ୍ଷମତାଶାଳୀ ଲୋକ ଓ ନେତାଙ୍କୁ ଭକ୍ତି ଦେଖାନ୍ତୁ ଫଳପ୍ରାପ୍ତି ହେବ। ଏ ତିନି ମଧ୍ୟରେ ସମତା ଦରକାର। ଯଦି କର୍ମ ଏବଂ ଜ୍ଞାନର ଅଭାବ ହେବ ତେବେ ଭକ୍ତି ବଢ଼େଇ ଦିଅ ସବୁ ପୂରଣ ହୋଇଯିବ। ସେଇଥିପାଇଁ ପାଠକମାନେ ଦେଖିବେ ଯେ ଯେଉଁଗୁଡ଼ା ବେଶି ଖୋସାମତି କରନ୍ତି ସେମାନେ କାମ ଜାଣନ୍ତି ନାହିଁ ଓ କାମ କରନ୍ତି ନାହିଁ। ଭଗବାନ ଶ୍ରୀକୃଷ୍ଣ କହିଛନ୍ତି କର୍ମ କରି ଯାଅ ଫଳକୁ ଅପେକ୍ଷା କରନାହିଁ। କିଏ ମାନୁଛି ? ସରକାରୀ ଚାକିରି ହେଉ, ସାହିତ୍ୟ ହେଉ କଳା ହେଉ, କିମ୍ବା ଖେଳ ହେଉ ଅଧିକାଂଶ ସ୍ଥଳରେ ସମସ୍ତେ ବ୍ୟସ୍ତ ଅଛନ୍ତି ସିଡ଼ି ଚଢ଼ିବାରେ। ଆମ ପ୍ରଦେଶରେ କିଛି କମ୍, ଦିଲ୍ଲୀରେ ଅତି ପ୍ରବଳ।

ସେ ଇସ୍କନ ମନ୍ଦିରର ଦୁଇ ବଖରା ଚାଳ ଘର ଏପର୍ଯ୍ୟନ୍ତ ଅଛି ଓ ଯେହେତୁ ମୁଁ ନୟାପଲ୍ଲୀରେ ରହେ ବେଳେ ବେଳେ ସେ ଚାଳ ଘରକୁ ଦେଖି ଭକ୍ତିଯୋଗ କଥା ମନେ ପକାଏ। ଇମରଜେନ୍ସିର କେତେ ଫାଇଦା ନିଆଯାଇପାରେ ତାହା ମୁଁ ଶାହା କମିଶନରେ ଥିବା ବେଳେ ଜାଣିଲି। ଗଞ୍ଜାମରେ ଜଣେ ୭୮ ବର୍ଷର ବୃଦ୍ଧ, ସେ ଚାରିଟା ସ୍କୁଲ କରିଥିଲେ, ଗୋଟିଏ ସ୍କୁଲର ପ୍ରେସିଡ଼େଣ୍ଟ ଥିଲେ। ସେ ନିଜେ ଜଣେ ଅବସରପ୍ରାପ୍ତ ପ୍ରଧାନଶିକ୍ଷକ, ତେଣୁ ସ୍କୁଲକୁ ଆସି ପାଠପଢ଼ା ବିଷୟ ବୁଝନ୍ତି। ସେଥିରେ ପ୍ରଧାନ ଶିକ୍ଷୟିତ୍ରୀ କ୍ଷୁବ୍ଧ ହୋଇ ସ୍କୁଲ ଇନ୍ସପେକ୍ଟରଙ୍କ ନିକଟରେ ଅଭିଯୋଗ କଲେ। ଅଭିଯୋଗ

ଥିଲା ଅସଦ୍ ବ୍ୟବହାର। ଇନ୍ସପେକ୍ଟର ଓ ତାଙ୍କ ବନ୍ଧୁ ଏସଡ଼ିଓ ଆଇବିରେ ବସି ସେ ଭଦ୍ରବ୍ୟକ୍ତିଙ୍କୁ ଡକେଇଲେ। ଏତେ ରାତିରେ ମୁଁ ଯାଇ ପାରିବିନି କାଲି ସକାଳେ ଯିବି ବୋଲି ସେ ଖବର ଦେଲେ ଓ କ୍ଷୁବ୍ଧ ହୋଇ ଦୁଇ ଅଫିସର ଫେରିଗଲେ। ତିନି ଦିନ ପରେ ସେ ମିଶାରେ ଗିରଫ ହେଲେ। ତାଙ୍କ ବିଷୟରେ ଡକ୍ଟର ମହତାବ ଗାଁ ମଜଲିସ୍‌ରେ ବିସ୍ତୃତ ଭାବେ ଲେଖିଛନ୍ତି। ଉତ୍ତର ଓଡ଼ିଶାରେ ଜଣେ ଏସ୍‌ପିଙ୍କ ଦୌରାମ୍ୟରେ ଲୋକେ ଅତିଷ୍ଠ ହୋଇଥିଲେ। ଦକ୍ଷିଣ ଓଡ଼ିଶାରେ ଜଣେ ଏସ୍‌ପି ସୁନା ଓ ଶାଗୁଆନ କାଠ ସଂଗ୍ରହରେ ବ୍ୟସ୍ତ ରହିଲେ। ଏମାନେ ସବୁ ଖସିଗଲେ ପ୍ରମାଣ ଓ ଅଭିଯୋଗ ଅଭାବରୁ। ଯାହା କୁହାଯାଏ ଯେତେ ଲୋକ ଜେଲ୍‌ରେ ଅଛନ୍ତି ସେମାନେ ସମସ୍ତେ ଦୋଷୀ ନୁହଁନ୍ତି ଓ ଯେତେ ଲୋକ ଜେଲ୍ ବାହାରେ ଅଛନ୍ତି ସେମାନେ ସମସ୍ତେ ନିର୍ଦ୍ଦୋଷ ନୁହଁନ୍ତି।

ମୁଁ ନିଜେ ଅନୁଭବ କରିଥିବା ଗୋଟିଏ ଘଟଣା କହୁଛି। ଷ୍ଟିଲ ପ୍ଲାଣ୍ଟର ଜଣେ ଅଫିସର ଘର ତିଆରି କରିବା ପାଇଁ ଟଙ୍କା ଦରକାର ପଡ଼ିବାରୁ କିଛି ସୁନା ନେଉଥିଲେ ଦୋକାନରେ ବିକିବା ପାଇଁ। ତାଙ୍କର ଭୁଲ୍ ଥିଲା ଯେ ସ୍କୁଟରର କାଗଜପତ୍ର ନଥିଲା ଓ ଟ୍ରାଫିକ୍ ଇନ୍ସପେକ୍ଟର ଧରିଲେ। ସ୍କୁଟରଟିକୁ ଧରିଲେ, ତା'ସଙ୍ଗେ ଗହଣା ବୁଜୁଳିକୁ ଜବତ କଲେ। 'ଜାଣିଛ ଇମରଜେନ୍‌ସିରେ ବେଶି ସୁନା ରଖିବା ମନା। ଆମ ଏସ୍‌ପି ଭାରି କଡ଼ା ଲୋକ, ଖବର ପାଇଲେ ମିଶାରେ ଆରେଷ୍ଟ କରି ପକେଇବେ। ଚାକିରି ଖଣ୍ଡିକ ଯିବ ତା' ସଙ୍ଗେ ଜେଲ୍‌ରେ ରହିବ, ୨୦୦୦ ଟଙ୍କା ଧରି ଆସ ନହେଲେ ମିଶାରେ ଗିରଫ ହେବ।' ସେ କିଛି ଉପାୟ ନପାଇ ୨ ଦିନ ପରେ ମୋ' ଘର ଆଗରେ ଠିଆ ହେଲେ ଓ ମୁଁ ଯେହେତୁ ଅଫିସକୁ ଚାଲି ଚାଲି ଯାଏ ମୋତେ ହାତ ଯୋଡ଼ି କହିଲେ 'ସାର୍ ସୁନା ରଖି ବଡ଼ ଭୁଲ୍ କରିଛି ମୋତେ ଆପଣ ମିଶାରେ ଗିରଫ କଲେ ମୋ' ପରିବାରଟି ଭାସିଯିବ।' ପ୍ରଥମେ ମୁଁ ଅବାକ୍ ହେଲି କିନ୍ତୁ ତାଙ୍କୁ ଆଶ୍ୱାସନା ଦେଇ ପଚାରିବାରୁ ସତକଥା ଜଣା ପଡ଼ିଲା। ଅଫିସ ଯାଇ ଟ୍ରାଫିକ୍ ଇନ୍ସପେକ୍ଟରର ରୁମ୍ ଖାନତଲାସ କଲି ଓ ଆଲମାରୀରୁ ସୁନା ଜବତ କଲି। ବିଚରା ଲୋକଟି ମିଶା ଭୟରୁ ରକ୍ଷା ପାଇଲେ ଓ ସୁନାତକ ଫେରିପାଇଲେ। ମୁଁ ଥାନାକୁ ଫୋନ୍ କରି ଇନ୍ସପେକ୍ଟରକୁ ଡକେଇଲି ହାତକଡ଼ି ଧରି ଆସିବା ପାଇଁ। ଇଚ୍ଛା ଥିଲା ଟ୍ରାଫିକ୍ ଇନ୍ସପେକ୍ଟରଙ୍କୁ ହାତକଡ଼ି ପକେଇ ଚଲେଇ ଚଲେଇ ନେବା ପାଇଁ। ଏସବୁ ବନ୍ଦୋବସ୍ତ ଦେଖି ଟ୍ରାଫିକ୍ ଇନ୍ସପେକ୍ଟର ଭୋ ଭୋ ରଡ଼ି ପକେଇଲା ଓ ସାରା ଅଫିସ ଠୁଳ ହୋଇଗଲା ଓ କ୍ଷତିଗ୍ରସ୍ତ ହୋଇଥିବା ଲୋକଟି ଦୟାରେ ତରଳି ଯାଇ ଅଭିଯୋଗ ଲେଖି ଦେବାପାଇଁ ମନାକଲା। ଆରେଷ୍ଟ କରିପାରିଲି ନାହିଁ ସିନା କିନ୍ତୁ ସସ୍‌ପେଣ୍ଡ କଲି, ସେ ଇନ୍ସପେକ୍ଟରରୁ ତଳପାହ୍ୟାକୁ ଖସିଲେ ଓ ସବ୍‌ଇନ୍ସପେକ୍ଟର ପାହ୍ୟାରେ ଅବସର ନେଲେ।

ଇମରଜେନ୍‌ସିରେ ମାତ୍ରାଧିକ କାର୍ଯ୍ୟ ହୋଇଥିବାରୁ ଇମରଜେନ୍‌ସି ପରେ ମାତ୍ରାଧିକ ବିଶୃଙ୍ଖଳା ହେଲା। ଜନତା ପାର୍ଟି କ୍ଷମତାକୁ ଆସିଲା ଓ ସମସ୍ତେ ଭାବିଲେ କଂଗ୍ରେସ ପାର୍ଟି ନିଶ୍ଚିହ୍ନ ହୋଇଯିବ। କଂଗ୍ରେସ ଦଳ ବିରୁଦ୍ଧରେ ବିଭିନ୍ନ ତଦନ୍ତ କମିଶନ ହରିୟାଣାର ପୂର୍ବତନ ମୁଖ୍ୟମନ୍ତ୍ରୀ ବଂଶୀଲାଲଙ୍କୁ ହାତକଡ଼ି ପକେଇ ବୁଲେଇବା, ଇନ୍ଦିରାଗାନ୍ଧି ଓ ସଞ୍ଜୟ ଗାନ୍ଧିଙ୍କୁ ଗିରଫ କରିବା ଇତ୍ୟାଦି ସବୁ ଦିନିଆ ଖବର ହେଲା। ଶାହା କମିଶନର ଥିବା ସମୟରେ ମୁଁ ଜଣେ ସିନିୟର (ଆର୍.ସି. ଶର୍ମା, ପରେ ସିବିଆଇ ଡାଇରେକ୍ଟର ହେଲେ)ଙ୍କ ଠାରୁ ଟ୍ରେନିଂ ପାଉଥିଲି। ଥରେ ଜଣେ କଂଗ୍ରେସ ନେତା (ଧାବନ) ତାଙ୍କ ପାଖକୁ ଆସିଥିଲେ ଓ କହୁ କହୁ କହିଲେ ଯେ ଆମେ ଭାବିଥିଲୁ ଦଶବର୍ଷ ପାଇଁ କ୍ଷମତାକୁ ଆସିପାରିବୁ ନାହିଁ କିନ୍ତୁ କ'ଣ କରିବୁ ଜନତା ପାର୍ଟି ଆମକୁ ଫେରେଇ ଆଣୁଛି। ଅତିଶୀଘ୍ର, ଏଇ ଧରି ନିଅନ୍ତୁ ଦୁଇ ତିନି ବର୍ଷ ମଧ୍ୟରେ। କେତେ ନିଛକ ସତ୍ୟ।

ଥରେ ମୋତେ ସିଏମ୍ ଡକେଇଲେ। ନୀଳମଣି ରାଉତରାୟ ଅତି ଶାନ୍ତଶିଷ୍ଟ ବିଜ୍ଞ ଓ ଦକ୍ଷ। ପଚାରିଲେ କେମିତି 'କ'ଣ ରିପୋର୍ଟ ଲେଖୁଛ। ରିପୋର୍ଟର କପି ଆମ ସରକାରଙ୍କୁ ଦେବାର ବନ୍ଦୋବସ୍ତ ଅଛି କି? ମୁଁ ମନା କରିବାରୁ ସେ ବିଷୟରେ କିଛି କହିଲେ ନାହିଁ। ଶ୍ରୀ ରାଉତରାୟ କେତେ ଭଦ୍ରଲୋକ ସେ ବିଷୟରେ ଉଦାହରଣ ଦେଉଛି। ମୁଁ ଯେଉଁଦିନ ଯାଜପୁରରେ ବିଶିଷ୍ଟ ନେତା ଅଶୋକ ଦାସଙ୍କୁ ଗିରଫ କଲି ତା' ଆରଦିନ ସକାଳେ ନୀଳମଣି ରାଉତରାୟଙ୍କ ନେତୃତ୍ୱରେ ପ୍ରାୟ ୨୦,୦୦୦ ଲୋକ ଶୋଭାଯାତ୍ରା କରି ମିଟିଂ କରିବାର ଯୋଜନା ଥିଲା। ସକାଳେ ସମସ୍ତେ ବିରଜା ମନ୍ଦିର ପାଖେ ଠୁଳ ହେଲେ। ଡିଏସ୍‌ପିଙ୍କୁ ଧରି ମୁଁ ବିରଜା ମନ୍ଦିର ଚାଲିଗଲି। ସାଙ୍ଗରେ ଦୁଇ ଜଣ ଗୁର୍ଖା ଅଫିସରଙ୍କୁ ନେଇଥିଲି। ଉଦ୍ଦେଶ୍ୟ ଥିଲା ଯଦି ଲାଠି ଚାର୍ଜ ହେବ ଏ ଦୁଇ ଅଫିସର, ଜଣେ ନୀଳମଣି ରାଉତରାୟ ଓ ଜଣେ ପ୍ରତାପ ମହାନ୍ତିଙ୍କୁ ଜାବୁଡ଼ି ଧରିବେ। ତା'ହେଲେ ସେମାନେ ଲାଠି ଚାର୍ଜରୁ ବର୍ତ୍ତି ଯିବେ। ତା'ସହିତ ଆମେ ଓ ସରକାର।

ଡିଏସ୍‌ପି ଗାଡ଼ି ଚଲଉଥାନ୍ତି, ବିରଜା ମନ୍ଦିର ପାଖେ ଜନ ସମୁଦ୍ର। ନୀଳମଣି ରାଉତରାୟ ଗୋଟିଏ ସ୍ଥାନରେ ଠିଆ ହୋଇଥିବା ଦେଖି ମୁଁ ଗଲି ଓ ସାଲ୍ୟୁଟ୍ କଲି ଓ ମୋ' ନାଁ କହିବା ପୂର୍ବରୁ ନିଜେ କହିଲେ ମୁଁ ଜାଣିଛି, ତମେ ବଡ଼ବିଲ୍ ଏଏସ୍‌ପି ଥିଲ। କାଲି ଅଶୋକକୁ ଗିରଫ କଲ କିନ୍ତୁ କୌଣସି ଖରାପ ବ୍ୟବହାର କେହି ଦେଖାଇନାହିଁ। ଏବେ କୁଆଡ଼େ ଆସିଲ, ମୋତେ ଗିରଫ କରିବ? ମୁଁ କହିଲି ନାହିଁ ସାର୍ ଆପଣ ହିଁ କେବଳ ଆମର ସାହା। ଆପଣ ଯେପର୍ଯ୍ୟନ୍ତ ଥିବେ ଗଣ୍ଡଗୋଳ ହେବନାହିଁ, କେବଳ ମୁଁ ଜାଣିବା ପାଇଁ ଚାହୁଁଛି ଆପଣଙ୍କର ପ୍ରୋଗ୍ରାମ କ'ଣ? ଏଇ ସମୟରେ ଜଣେ କିଏ ଚା'

ଧରି ଆସିବାରୁ ମୋତେ ଏକ ଗ୍ଲାସ୍ ଚ' ଧରେଇଦେଲେ ଓ କହିଲେ 'ନିଶ୍ଚିତ ରୁହ କିଛି ଗଣ୍ଡଗୋଳ ହେବନାହିଁ।' ସ୍ଥାନେ ସ୍ଥାନେ ପୋଲିସ ରଖିଛ ସେସବୁର ଆବଶ୍ୟକତା ନାହିଁ, ସଂଖ୍ୟା କମେଇ ଦିଅ। ତାଙ୍କ ସାଙ୍ଗେ କଥା ହୋଇ ଫେରିଲା ବେଳକୁ ଆଉ ଗାଡ଼ି ଫେରିପାରିଲା ନାହିଁ। ସବୁଆଡ଼େ ଲୋକ ଓ ନୀଳମଣି ରାଉତରାୟ ଜିନ୍ଦାବାଦର ସ୍ଲୋଗାନ। ଏ ଅବସ୍ଥା ଦେଖି ସେ ଜିପ୍ ଆଗରୁ ଲୋକଙ୍କୁ ଆଡ଼େଇ ଦେଲେ ଓ ଆମେ ସୁରୁଖୁରୁରେ ଫେରିପାରିଲୁ।' କିଛି ଗଣ୍ଡଗୋଳ ହେଲାନାହିଁ।

କେତେକ ନେତା ଅଛନ୍ତି ଯାହାଙ୍କୁ ଦେଖିଲେ ରାଜନୀତି ପ୍ରତି ଶ୍ରଦ୍ଧା ବଢ଼େ ତହିଁ ମଧ୍ୟରୁ ନୀଳମଣି ରାଉତରାୟ ଜଣେ। ତାଙ୍କୁ ସାଲ୍ୟୁଟ ମାରିବା ଉଚିତ ହେଲାନାହିଁ ବୋଲି ମୋତେ କେହି କେହି କହିଥିଲେ। ଶାହା କମିଶନ ରିପୋର୍ଟ ବିଷୟରେ ସେ ମୋତେ କିଛି ବାଧ କରି ନାହାଁନ୍ତି ଓ ରିପୋର୍ଟ ଦେଖାଇବା ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିବା ଦ୍ୱାରା କ୍ଷୁବ୍ଧ ବି ହୋଇନାହାଁନ୍ତି।

ଶାହା କମିଶନ ତରଫରୁ ମୋତେ ଯେତିକି କେସ୍ ତଦନ୍ତ ପାଇଁ ଦିଆଯାଇଥିଲା ତାହା ମୁଁ ଓ ମୋ' ଟିମ୍ ନିର୍ଦ୍ଧାରିତ ସମୟ ପୂର୍ବରୁ ସମାପ୍ତ କରିଦେଲୁ। ଶାହା କମିଶନ ଭାରତ ସରକାରଙ୍କୁ ଲେଖିଲେ ମୋତେ ଉପଯୁକ୍ତ ସଂସ୍ଥାରେ ଅବସ୍ଥାପିତ କରିବା ପାଇଁ। ତା' ସାଙ୍ଗେ ସାଙ୍ଗେ ମୋତେ ଏକ ପ୍ରଶଂସା ପତ୍ର ଦେଲେ। ସେଇ ସମୟରେ ତ୍ରିପୁରାରେ ଏକ ଡିଆଇଜି ପୋଷ୍ଟ ଖାଲି ହେଲା ଓ ତ୍ରିପୁରା ସରକାର ଚାହିଁଲେ ମୋତେ ଡିଆଇଜି କରି ନେବା ପାଇଁ। ୧୧ ବର୍ଷ ଚାକିରିରେ ଡିଆଇଜି ହୋଇଥିଲେ ସାରା ଦେଶରେ ଚହଳ ପଡ଼ିଯାଇଥାନ୍ତା ଓ ୫ ବର୍ଷ ଡେ଼ପୁଟେସନ ସାରି ଓଡ଼ିଶାକୁ ଫେରିଥାନ୍ତି ଏସ୍‌ପି ଭାବେ। ମଞ୍ଚାରେ ଚଢ଼ି ବ୍ରହ୍ମ କଚଡ଼ା ଖାଇଲା ଭଳି କଥା। ତା'ଛଡ଼ା ତ୍ରିପୁରାରେ ସରକାରୀ କର୍ମଚାରୀ ଓ ପୋଲିସ ବାହିନୀରେ ବିଶୃଙ୍ଖଳା ବହୁତ। କନେଷ୍ଟବଳ ମୁକରିର ସରକାର କରୁଥିଲେ ସିପିଏମ ପାର୍ଟି ନିର୍ଦ୍ଦେଶରେ। ଯେଉଁ ପଦବୀରେ ସମ୍ମାନ ନାହିଁ, ଇନ୍ଦ୍ର ପଦ ହେଲେ ମଧ୍ୟ ଲାଭ କ'ଣ? ମନା କରିଦେଲି। ତା'ପରେ ଭାରତ ସରକାର ଚାହିଁଲେ କେନ୍ଦ୍ର ଗୁଇନ୍ଦା ବିଭାଗର ଆସିଷ୍ଟାଣ୍ଟ ଡାଇରେକ୍ଟର ତଥା ପ୍ରଧାନମନ୍ତ୍ରୀଙ୍କର ସହକାରୀ ସିକ୍ୟୁରିଟି ଅଫିସର ପଦବୀରେ ଅବସ୍ଥାପିତ କରିବା ପାଇଁ। ଓଡ଼ିଶା ସରକାରଙ୍କର ସମ୍ମତି ମାଗିବା ମାତ୍ରେ ଏଠାରୁ ଚିଠି ଗଲା ଯେ ତାଙ୍କୁ ଏକ ଗୁରୁତ୍ୱପୂର୍ଣ୍ଣ ପଦବୀ ଦେବା ପାଇଁ ବିଚାର କରୁଛୁ। ତେଣୁ ତାଙ୍କୁ ତୁରନ୍ତ ଫେରାଇ ଦିଆଯାଉ।

ମୁଖ୍ୟମନ୍ତ୍ରୀ ସିନା କ୍ଷୁବ୍ଧ ହେଲେ ନାହିଁ କିନ୍ତୁ ଶାହା କମିଶନ ତଦନ୍ତ କରିଥିବାରୁ ନିଜ ଅଜାଣତରେ ବହୁତ ଶତ୍ରୁ ସୃଷ୍ଟି କରିଥିଲି। ସେହି ସମୟରେ ପୂର୍ବତନ ଆଇଜି ଶ୍ରୀ ନରସିଂହ ସ୍ୱାଇଁ କଲିକତାରେ ସିଆରପିଏଫ ଆଇଜି ଥିଲେ। ସେ କେତେବେଳେ

କେମିତି ଗସ୍ତରେ ଆସିଲେ ସିଆରପି ଗେଷ୍ଟ ହାଉସରେ ରୁହନ୍ତି। ଭୟରେ କେହି ଦେଖା କରିବା ପାଇଁ ଯାଆନ୍ତି ନାହିଁ। କାରଣ ଜଣାପଡ଼ିଲେ ନବ ଗଠିତ ଶକ୍ତିଶାଳୀ ଦଳର କୋପ ଦୃଷ୍ଟିରେ ପଡ଼ିବେ। କିନ୍ତୁ ସେ ମୋତେ ଡକାନ୍ତି ଓ ମୁଁ ଯାଏ। ସେଇଥିପାଇଁ କେହି କେହି ବୋଧେ କ୍ଷୁବ୍ଧ ହୋଇଥିଲେ। ଶ୍ରୀ ସ୍ୱାଇଁଙ୍କ ନାଁରେ ଭିଜିଲାନ୍ସ ଇନକ୍ୱାରୀ ହେଲା, ଓଡ଼ିଶା ସରକାରଙ୍କ ଦ୍ୱାରା ଗଠିତ ପଣ୍ଡା କମିଶନ ଆଗରେ ଅଭିଯୋଗ କରାଗଲା । ପଣ୍ଡା କମିଶନ ତାଙ୍କୁ ବାରମ୍ବାର ଡକେଇଲା, ଯଦିବା କମିଶନଙ୍କ ନିଜର ତଦନ୍ତକାରୀ ସଂସ୍ଥା ଥିଲା, ଭିଜିଲାନ୍ସ ବାଲା ପରୋକ୍ଷରେ କମିଶନଙ୍କୁ ସାହାଯ୍ୟ କରିବା ଓ କେତେଜଣ ପୋଲିସ ଅଫିସର (ଶ୍ରୀ ସ୍ୱାଇଁ ସମେତ)ଙ୍କୁ ଜାଲରେ ପକେଇବା ପାଇଁ ଚେଷ୍ଟା କଲେ। ଜଣେ ଭିଜିଲାନ୍ସ ଅଫିସରଙ୍କୁ ରାଉରକେଲା ପଠାଗଲା ମୋ' ବିରୁଦ୍ଧରେ ଅଭିଯୋଗ ଖୋଜି ବାହାର କରିବା ପାଇଁ। ସେ ଫେରିଆସି କିଛି ନାହିଁ ବୋଲି ରିପୋର୍ଟ ଦେବାରୁ ଜଣେ ଉପର ଅଫିସର, ତମେ ଏକା ଜାତିର ସେଥିପାଇଁ ଏଭଳି ରିପୋର୍ଟ ଦେଇଛ ବୋଲି ବିରକ୍ତ ହେଲେ। ଆଉ ଜଣେ ଅଫିସରଙ୍କୁ ପଠାଗଲା ଓ ସେ ପ୍ଲାଣ୍ଟ ସାଇଟ୍ ଥାନାର ଇନ୍ସପେକ୍ଟର ଚୌଧୁରୀ ଆର୍.କେ. ନନ୍ଦଙ୍କୁ ପ୍ରବର୍ତ୍ତେଇଲେ ମୋ' ବିରୁଦ୍ଧରେ ଏକ ଅଭିଯୋଗ ଦେବା ପାଇଁ। ସବୁ ଶୁଣି ଇନ୍ସପେକ୍ଟର ସନ୍ଧ୍ୟା ବେଳେ ଦେବି ବୋଲି କହିଲେ। ବାକି ସବୁ ସ୍ଥାନରୁ ରିକ୍ତ ହସ୍ତରେ ଫେରିଥିବାରୁ ଭିଜିଲାନ୍ସ ଅଫିସର ଉତ୍ଫୁଲ୍ଲିତ ହୋଇ ସନ୍ଧ୍ୟା ବେଳେ ଗଲେ ଷ୍ଟେଟ୍‌ମେଣ୍ଟ ଆଣିବା ପାଇଁ। ବିଚରାଙ୍କ ଆଣ୍ଟି କ୍ଲାଇମାକ୍ସ ହୋଇଗଲା କାରଣ ପୂର୍ବତନ ଏସ୍‌ପି ବିବି ମିଶ୍ରଙ୍କ ବିରୁଦ୍ଧରେ ଏକ ମିଛ ଅଭିଯୋଗ ଆଣିବା ପାଇଁ ଭିଜିଲାନ୍ସ ଅଫିସର ମୋତେ ଧମକେଇଲେ ବୋଲି ଷ୍ଟେସନ ଡାଏରୀରେ ଲେଖିଥିଲେ। ସେ ଷ୍ଟେସନ ଡାଏରୀ କୋର୍ଟର ବିନା ଅନୁମତିରେ ବଦଳାଯାଇପାରିବ ନାହିଁ। ତେଣୁ ବିରୁଡ଼ି ମାଡ଼ ଖାଇଲା ପରି ଭିଜିଲାନ୍ସ ଡିଏସ୍‌ପି ଡିଆଁ ମାରିଲେ। ଅଳ୍ପଦିନ ପରେ ତାଙ୍କର ବଦଳି ହେଲା ଭୁବନେଶ୍ୱର ଜିଲ୍ଲାକୁ। ସେ ମୋତେ ଦେଖାକରି ହସି ହସି କହିଲେ - ସାର୍, ଭିଜିଲାନ୍ସ ବାଲାଙ୍କୁ ରଗେଇଲେ ଘର ପାଖକୁ ପୋଷ୍ଟିଂ ହୁଏ ବୋଲି ମୁଁ ଜାଣିନଥିଲି।

ସେ ସମୟରେ ନନ୍ଦିନୀ ଦେବୀଙ୍କ ବିରୋଧରେ ଜୋର ସୋର ତଦନ୍ତ ଚାଲିଥାଏ। ପଟେଲ୍ ଓ ଦାନୀ ବୋଲି ଦୁଇଜଣ ଡିଏସ୍‌ପି ତଦନ୍ତ କରୁଥାନ୍ତି। ଶ୍ରୀମତୀ ଶତପଥୀଙ୍କୁ ଥାନାକୁ ଡକାଗଲା, ତା' ବିରୋଧରେ ସେ ସୁପ୍ରିମ୍‌କୋର୍ଟ ଗଲେ ଓ ସୁପ୍ରିମ୍‌କୋର୍ଟ ଆଦେଶ ଦେଲେ ଯେ କୌଣସି ମହିଳାଙ୍କୁ ସନ୍ଧ୍ୟା ପରେ ଥାନାକୁ ଡକାଯିବ ନାହିଁ। ଆମମାନଙ୍କ ବିରୁଦ୍ଧରେ ବିଶେଷ କରି ଶ୍ରୀ ସ୍ୱାଇଁଙ୍କ ବିରୁଦ୍ଧରେ ଭିଜିଲାନ୍ସ ତଦନ୍ତ କରାଉଥିବା ସିନିୟର ଭିଜିଲାନ୍ସ ଅଫିସରଙ୍କ ଭାବମୂର୍ତ୍ତି ଏତେ ଖରାପ ଯେ ଭିଜିଲାନ୍ସ

ତଦନ୍ତ ହେଉଥିବା ଯୋଗୁ ଆମର କିଛି ବଦନାମ୍ ହୋଇନାହିଁ। ଶ୍ରୀ ସ୍ୱାଇଁଙ୍କର ଅଫିସ ଆଟାଚି ଅନୁଧ୍ୟାନ କରିଥିଲେ ଉକ୍ତ ଭିଜିଲାନ୍ସ ଅଫିସରଙ୍କର ଟିପ ଚିହ୍ନ ବାରମ୍ବାର ମିଳିଥାନ୍ତା। କାରଣ ସମୟ ଥିଲା, ଯେତେବେଳେ ଶ୍ରୀ ସ୍ୱାଇଁ ଆଇଜି ଥିଲେ, ଏ ଭଦ୍ରଲୋକ ତାଙ୍କୁ ଅଫିସ ପୋର୍ଟିକୋରେ ଅପେକ୍ଷା କରୁଥିଲେ ଓ ହାତରୁ ଆଟାଚିଟା ଛଡ଼େଇ ନେଇ ଚପରାଶି ପରି ପଛେ ପଛେ ଧାଉଁଥିଲେ। ଏସବୁ କଥା ପାଠକମାନଙ୍କୁ ବ୍ୟକ୍ତିଗତ ପରି ଲାଗିପାରେ। କିନ୍ତୁ ମୋ' ଲେଖିବାର ଉଦ୍ଦେଶ୍ୟ ଯେ ପାଠକମାନେ ଜାଣନ୍ତୁ ଯେ ଆମ ଚାକିରିଟା ସୁନାର ପଲଙ୍କ ନୁହେଁ, କେତେବେଳେ ଯେ ଦେହରେ କଣ୍ଟା ଫୋଡ଼ି ହୋଇଯିବ ଜାଣି ହେବନାହିଁ। ଅନେକ ପୋଲିସ ଅଫିସର ହୃଦ୍‌ରୋଗରେ ମରିଛନ୍ତି କାରଣ ସବୁବେଳେ ମାନସିକ ଦୁଃଶ୍ଚିନ୍ତା ଓ ଭୟ।

ମୋତେ କେନ୍ଦ୍ର ସରକାର ଓଡ଼ିଶାକୁ ଫେରେଇ ଦେଲେ ଓ ମୁଁ ଅପେକ୍ଷା କଲି ଯେ କ'ଣ 'ଗୁରୁତ୍ୱପୂର୍ଣ୍ଣ ପଦବୀ' ମୋତେ ମିଳିବ। ମୋତେ ପୋଷ୍ଟିଂ ଦିଆଗଲା ଅନୁଗୁଳ ପୋଲିସ ଟ୍ରେନିଂ କଲେଜର ଭାଇସ୍‌ପ୍ରିନ୍ସପାଲ ଭାବେ। ପ୍ରିନ୍ସପାଲ ଥିଲେ ଏସ୍‌ପି ପାହ୍ୟାର ଯଦିବା ମୋ'ଠାରୁ ସିନିୟର। ଭାଇସ୍‌ପ୍ରିନ୍ସପାଲ ପୋଷ୍ଟଟା ଅତିରିକ୍ତ ଏସ୍‌ପି ପୋଷ୍ଟ ସାଙ୍ଗେ ସମାନ, ମୁଁ ତିନିଥର ଏସ୍‌ପି ହେବା ପରେ ମୋତେ ସରକାର ଏଇ 'ଗୁରୁତ୍ୱପୂର୍ଣ୍ଣ ପଦବୀ'ରେ ଅବସ୍ଥାପିତ କଲେ। ସେଥିରେ ପୁଣି ସମସ୍ୟା ଥିଲା ଯେ ଅନୁଗୁଳରେ କ୍ୱାର୍ଟର ନାହିଁ, ଇଂଲିସ ମିଡ଼ିୟମ ସ୍କୁଲ ନାହିଁ। ତେଣୁ ରହିବି କେଉଁଠି ଓ ପିଲାମାନେ ପଢ଼ିବେ କେଉଁଠି ? ଏକଥା କହିବାରୁ ଆଇଜିଙ୍କର ଜଣେ ଷ୍ଟାଫ୍ ଅଫିସର ଏକ ସରଳ ସମାଧାନ ବତେଇ ଦେଲେ - ଘରଟେ ଭଡ଼ା ନେଇଯାଅ ଓ ପିଲାଙ୍କୁ ଘରେ ପଢ଼ାଅ। କ'ଣ ବା କହିବି ? ମୋ' ପିଲେ ତ ରବିନ୍ଦ୍ର ଟାଗୋର ନୁହଁନ୍ତି ଯେ ଘରେ ପଢ଼ି ମଣିଷ ହେବେ । ପୁଣି ଅର୍ଡ଼ର ପାଇଲା ବେଳକୁ ଦୁଇ ପିଲାଙ୍କୁ ଟାଇଫଏଡ୍ ଓ ଆଇଜି ଲେଖିଲେ ଜଏନିଂ ଟାଇମ୍ ନନେଇ ତୁମେ ଜଏନ୍ କର। ମୁଁ ବହୁତ ଚିନ୍ତିତ ଥିଲି ପିଲାଙ୍କ ଚିକିତ୍ସା ବିଷୟରେ କିନ୍ତୁ ସାହସ ପାଇଲି ସ୍ତ୍ରୀଙ୍କ ଠାରୁ - ଯାଅ ଜଏନ୍ କର, ପିଲାଙ୍କୁ ମୁଁ ଘରେ ପଢ଼େଇବି। କାହା ଆଗରେ ଗୋଡ଼ ଭାଙ୍ଗି ଠିଆ ହେବା ଦରକାର ନାହିଁ। ନିହାତି ଦରକାର ହେଲେ ମୁଁ ଭୁବନେଶ୍ୱରରେ ବାପାଙ୍କ ଘରେ ରହିଯିବି। ପିଲେ ପାଠ ପଢ଼ିବେ ଓ ତୁମେ ଅନୁଗୁଳରେ ଏକୁଟିଆ ରହିବ। ଅନୁଗୁଳ ଯିବାର ମାସେ ମଧ୍ୟରେ ମୋତେ ପଠାଗଲା ଦିଲ୍ଲୀକୁ ୩୫ ଦିନିଆ ଟ୍ରେନିଂରେ ତା' ପୁଣି ଶେଷ ମୁହୂର୍ତ୍ତରେ। ଆଉ ଜଣେ ଅଫିସର ଯିବାର ଥିଲା, ଶେଷ ମୁହୂର୍ତ୍ତରେ ସେ ମନା କରିବାରୁ ମୋତେ ପଠେଇ ଦିଆଗଲା। ବାଧ୍ୟ ହୋଇ ଗଲି। ମୋର ଟ୍ରେନିଂ ଦାତା ଓ ଗୁରୁ ଏନ୍.କେ. ସିଂହ ସାରଙ୍କ ସାଙ୍ଗେ ଦେଖାହେଲା। ସେତେବେଳେ ସେ ଇନ୍ଦିରାଗାନ୍ଧି ଓ ସଞ୍ଜୟଗାନ୍ଧିଙ୍କ କେସ୍ ତଦନ୍ତ କରୁଥାନ୍ତି ଓ ତାଙ୍କର

ଖାତିର ବହୁତ ଥିଲା। ଅନ୍ୟ ଜଣେ ଏସ୍‌ପି ଅମୀୟ ଭୂଷଣ ତ୍ରିପାଠୀ ବହୁତ ମନଦୁଃଖ କଲେ। ସର୍ବଭାରତୀୟ ସାଧାରଣ ସେବାରେ ଟ୍ରେନିଂ ପାଇଲି, ସେ ସମୟରେ ହୋମ୍ ସେକ୍ରେଟେରୀ ଓ ଶାହା କମିଶନ ସେକ୍ରେଟେରୀ ପିଆର ରାଜଗୋପାଳ ଆସିଥିଲେ। ଲଞ୍ଚ ସମୟରେ ମିଃ ରାଜଗୋପାଳ ମୋ' ପୋଷ୍ଟିଂ ବିଷୟରେ ପଚାରିଲେ ଓ ଭୀଷଣ ରାଗିଗଲେ। ଯେତେବେଳେ ଶୁଣିଲେ ଯେ ମୋତେ ଭାଇସପ୍ରିନ୍‌ସିପାଲ କରାଯାଇଛି ମୋତେ ହୋମ୍ ସେକ୍ରେଟେରୀଙ୍କ ପାଖକୁ ନେଇ କହିଲେ - ଅଫିସରମାନଙ୍କୁ ଶାହା କମିଶନଙ୍କୁ ଅଣାଯାଏ ନିରପେକ୍ଷ ଭାବରେ ଓ ସୁଚାରୁ ରୂପେ କାର୍ଯ୍ୟ କରିବେ ବୋଲି। ନିଜ ପ୍ରଦେଶକୁ ଫେରିଲା ପରେ ସେମାନେ ଯଦି ଅପମାନିତ ହୁଅନ୍ତି ଏବଂ ଯେଉଁମାନେ ଅଛନ୍ତି ସେମାନେ କାମ କେମିତି କରିବେ ? ହୋମ୍ ସେକ୍ରେଟେରୀ ମୋ'ଠାରୁ ସବୁ କଥା ଶୁଣି ଚୁପ୍ ରହିଲେ। କିଛି ପ୍ରତିଶ୍ରୁତି ନଦେଇ ଲଞ୍ଚ ପରେ ସେ ଫେରି ଗଲେ ଓ ତିନି ଦିନ ପରେ ମୋର ବଦଳି ମୟୂରଭଞ୍ଜ ଜିଲ୍ଲା ଏସ୍‌ପି ଭାବରେ ହେଲା। ମୟୂରଭଞ୍ଜରେ କ୍ୱାର୍ଟର ଓ ଇଂରାଜୀ ମିଡ଼ିୟମ ସ୍କୁଲ ଥିଲା, ତେଣୁ ମୋ' ସମସ୍ୟାର ସମାଧାନ ହୋଇଗଲା। ରାଜଗୋପାଳ ହସ୍ତକ୍ଷେପ କରିନଥିଲେ ମୁଁ ଦୁଇ ତିନି ବର୍ଷ ପିଟିସିରେ ରହିଥାନ୍ତି ଓ ପିଲା ଦୁଇଟି ମୂର୍ଖ ହୋଇଥାନ୍ତେ। ମୋତେ ଟ୍ରେନିଂ ପାଇଁ ପଠାଯାଇଥିଲା ହଇରାଣ ହେବା ପାଇଁ କିନ୍ତୁ ମୋର କ୍ଷତି ନହୋଇ ଲାଭ ହେଲା।

୧୯୭୭ ରୁ ୧୯୮୦ରେ ଯାହାସବୁ ଘଟଣା ଘଟିଯାଇଛି ତାହା ମନେ ପକେଇଲେ ଦୁଃଖ ଲାଗେ ଓ ବେଳେ ବେଳେ ମନମଧ୍ୟରେ ପ୍ରଶ୍ନ ଉଠେ ଯେ ସରକାରୀ କଳ ଏପର୍ଯ୍ୟନ୍ତ ଚାଲିଛି କେମିତି ? ରାଜ୍ୟର ଉନ୍ନତି କରିବା, କେନ୍ଦ୍ରରୁ ଅଧିକ ଅନୁଦାନ ଆଣିବା ଏ ସମସ୍ତରେ ଧ୍ୟାନ ନଦେଇ ସରକାର ମାତିଲେ ପଣ୍ଡା କମିଶନ ଓ ଭିଜିଲାନ୍ସ ଇନକ୍ୱାରୀ ମାଧ୍ୟମରେ କେତେ ଜଣଙ୍କୁ ଶିକାର କରିବା। ବେଶି ଶରବ୍ୟ ହେଲେ ନନ୍ଦିନୀ ଶତପଥି, ନରସିଂହ ସ୍ୱାଇଁ ଓ କେତେକ ଆଇପିଏସ୍ ଅଫିସର। ଯେଉଁମାନେ କୋଣ ଠେସା ହୋଇଥିଲେ ତାଙ୍କୁ ଅଣାଯାଇ ଗୁରୁତ୍ୱପୂର୍ଣ୍ଣ ପଦବୀରେ ରଖାଗଲା, ଜଣେ ଡିସ୍‌ମିସ୍ ହୋଇଥିବା ଆଇପିଏସ୍ ଅଫିସରଙ୍କୁ ଚାକିରିକୁ ଫେରେଇ ଅଣାଗଲା। ଆଇଏଏସ ଅଫିସରମାନଙ୍କ ମଧ୍ୟରେ ନନ୍ଦିନୀ ଶତପଥିଙ୍କର ସେକ୍ରେଟେରୀ ରମାକାନ୍ତ ରଥଙ୍କ ଘର ଖାନତଲାସ କରାଗଲା। କିଛି ମିଳିଲା ନାହିଁ, ଜଣାଥିଲା ଯେ ମିଳିବ ନାହିଁ କାରଣ ସେ ସଚ୍ଚୋଟ। କିନ୍ତୁ ସେ ଅପମାନିତ ହେଲେ। ବାକି ଆଇଏଏସ୍ ଅଫିସରମାନେ ଖସିଗଲେ। ଯେଉଁମାନେ ନନ୍ଦିନୀ ଶତପଥିଙ୍କର ପ୍ରିୟ ଥିଲେ ସେମାନେ ନୀଳମଣି ରାଉତରାୟଙ୍କର ମଧ୍ୟ ପ୍ରିୟ ହୋଇଗଲେ। ଆଇପିଏସ୍ ଅଫିସରଙ୍କ ମଧ୍ୟରେ ଜଣେ ଦୁଇଜଣଙ୍କୁ ଛାଡ଼ି ଦେଲେ ବାକି ସବୁ ଉଭୟ ପଟ ସାଙ୍ଗେ ସମ୍ପର୍କ ରଖିବାର କଳା ଏଯାଏଁ

ଶିଖିନାହାଁନ୍ତି। ସେଇଥିପାଇଁ ସରକାର ବଦଳି ଗଲେ ସେମାନେ ବେଶି ହଇରାଣ ହୁଅନ୍ତି । ପୋଲିସର କାମ ହେଉଛି ଲକ୍ଷ୍ୟ କିମ୍ବା ଅଲକ୍ଷ୍ୟରେ କ୍ଷତି କରିବା। ସେଥିପାଇଁ ତାଙ୍କ ପ୍ରତି କ୍ଷମତାକୁ ଆସିଥିବା ନୂଆ ଦଳର କ୍ରୋଧ ହୁଏ। ଏଇ ଦେଖନ୍ତୁ ସ୍ୱାଧୀନତା ପୂର୍ବ କଥା। ଜିଲ୍ଲାପାଳ ଓ ମାଜିଷ୍ଟ୍ରେଟମାନଙ୍କ ଅଶେଷ କ୍ଷମତା। ଜିଲ୍ଲାରୁ ଆରମ୍ଭ କରି ଗଭର୍ଣ୍ଣର ପର୍ଯ୍ୟନ୍ତ ସମସ୍ତେ ଆଇସିଏସ। ଏସ୍‌ପିଙ୍କର ଭୂମିକା ଥିଲା ନଗଣ୍ୟ। ମାଜିଷ୍ଟ୍ରେଟଙ୍କ ଆଦେଶ ହେଲେ ପୋଲିସ ଲାଠିଚାର୍ଜ କିମ୍ବା ଗୁଳି ଚାଳନା କରିବ। ଜିଲ୍ଲାପାଳଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ୧୪୪ ଧାରା କରିବା ଓ ଗିରଫ କରାଯିବା ହେଉଥିଲା। ମାଜିଷ୍ଟ୍ରେଟ୍ ଆଦେଶ ଦେଲେ, ଆଦେଶ ପାଇ କନେଷ୍ଟବଲ ଲାଠିଚାର୍ଜ କଲା। ମାଡ଼ ବାଜିଲା ଲାଜପତ୍‌ରାୟ, ପଣ୍ଡିତ ନେହେରୁ, ଗୋବିନ୍ଦ ବଲ୍ଲଭ ପନ୍ଥ ନେତାଙ୍କ ସମେତ ଅନେକଙ୍କ ଉପରେ। ଯନ୍ତ୍ର ଚାଳିତ ପୋଲିସ କାମ କଲା ଅଥଚ ସ୍ୱାଧୀନତା ପରେ ଆଇସିଏସ ବାବୁମାନେ ଭଦ୍ରଲୋକ ହୋଇଗଲେ, ସରକାରଙ୍କ ପ୍ରିୟପାତ୍ର ହେଲେ ଓ ପୋଲିସ ବଦନାମ୍ ହେଲା। ଲକ୍ଷ୍ମଣ ନାୟକଙ୍କ ଫାଶୀ ଅର୍ଡ଼ର ଆଇସିଏସ ରାମନାଥନ ଦେଇଥିଲେ, ରଣପୁରର ରଘୁ ରାଉତ ଇତ୍ୟାଦିଙ୍କର ପ୍ରାଥମିକ ବିଚାର ଆଇସିଏସ୍ ଶିବରମଣ କରିଥିଲେ। ଏ ଦୁଇଟି କେସ୍ ପାଇଁ ପୋଲିସ୍‌କୁ ଦାୟୀ କରାଯାଏ କିନ୍ତୁ ଶିବରମଣ ଓ ରାମନାଥନ ସରକାରଙ୍କ ପ୍ରିୟ ଥିଲେ।

ପୋଲିସ ଟ୍ରେନିଂ କଲେଜ ଛାଡ଼ିବା ପୂର୍ବରୁ ମୁଁ ସବୁବେଳେ ଆଶା କରୁଥାଏ ଯେ ଦିନେ ନା ଦିନେ ସରକାର ଭଲ ଟ୍ରେନିଂ କଲେଜଟିଏ କରିବେ। ଅନୁଗୁଳ ବ୍ୟତୀତ ନୟାଗଡ଼ରେ ମଧ୍ୟ ଏକ ଟ୍ରେନିଂ ସ୍କୁଲ ଥିଲା ଓ ସେଇଠାରେ କେବଳ କନେଷ୍ଟବଲମାନେ ଟ୍ରେନିଂ ପାଉଥିଲେ। କିନ୍ତୁ ଅନୁଗୁଳରେ କନେଷ୍ଟବଲ, ଏଏସଆଇ, ସବ୍‌ଇନ୍‌ସପେକ୍ଟର, ଡିଏସ୍‌ପି ଓ ଏଏସ୍‌ପି (ଆଇପିଏସ) ଅଫିସରମାନେ ଟ୍ରେନିଂ ପାଆନ୍ତି। ତା'ଛଡ଼ା ଚାକିରିରେ ଥିବା ଅଫିସରମାନେ ଟ୍ରେନିଂ ପାଆନ୍ତି (ପୋଲିସ ଅଫିସର, ମାଜିଷ୍ଟ୍ରେଟ)। ଘର ବହୁତ ପୁରୁଣା। ଅନୁଗୁଳ ଯେତେବେଳେ ଜିଲ୍ଲା ଥିଲା ସେତେବେଳେ ଏସ୍‌ପି ଅଫିସଟା ପରେ ପିଟିସି ଅଫିସ ହେଲା ଓ ଏସ୍‌ପିଙ୍କ କ୍ୱାର୍ଟରଟା ପ୍ରିନ୍‌ସପାଲଙ୍କ କ୍ୱାର୍ଟର ହେଲା। ଆଇପିଏସ୍ ଅଫିସର ଓ ଡିଏସ୍‌ପିଙ୍କ ପାଇଁ ଗେଷ୍ଟ ହାଉସ ଥିଲା, ମିଶନ ବଙ୍ଗଳା ଯେଉଁଠାରେ ସେପ୍‌ଟିକ୍ ଲାଟ୍ରିନ୍ ନଥିଲା। କାଠର ଷ୍ଟାଣ୍ଡ ଉପରେ ଗୋଟେ ବଡ଼ ଟାଟିଆ ରଖାଯାଉଥିଲା ଓ ତହିଁରେ ଝାଡ଼ା ଫେରି ଘୋଡ଼େଇ ଦେଲେ ପରେ ମେହେନ୍ତର ଆସି ନେଇଯିବ। ଏଇଭଳି ବ୍ୟବସ୍ଥା ମସୋରୀ ଓ ମାଉଣ୍ଟଆବୁରେ ମଧ୍ୟ ଥିଲା। ଆଜିକାଲି ଏଭଳି ବ୍ୟବସ୍ଥା କଲେ ମାନବିକ ଅଧିକାର କମିଶନ ସରକାରଙ୍କୁ ବହୁତ କୈଫିୟତ ମାଗିବ। ମୁଁ ଭାଇସ୍‌ପ୍ରିନ୍‌ସପାଲ ଥିଲାବେଳେ ମିଶନ ବଙ୍ଗଳାକୁ ପ୍ରିନ୍‌ସପାଲ କ୍ୱାର୍ଟରରେ

ପରିଣତ କରି ଜଣେ ଡିଏସ୍‌ପିଙ୍କୁ ଦେଇଦେଲେ, ଭାଇସ୍‌ପ୍ରିନ୍‌ସପାଲ କ୍ୱାର୍ଟରରେ ଆଉଜଣେ ଡିଏସ୍‌ପି ରହୁଥିଲେ। ମୋ' ପୂର୍ବରୁ ଭାଇସ୍‌ପ୍ରିନ୍‌ସପାଲ ମୋ'ଠାରୁ ସିନିୟର ଓ ଆଇପିଏସ ଅଫିସର କିନ୍ତୁ ଅବିବାହିତ ଥିଲେ। ସେ ପିଟିସି ଭିତରେ ତିଆରି ହୋଇଥିବା ଦୁଇ ବଖରା ଘଳ ଘରେ ରହୁଥିଲେ। ସମସ୍ତେ ବୋଧହୁଏ ଭାବିଲେ ଏହାପରେ ଆଇପିଏସ୍ ଅଫିସର ଆସିବେ ନାହିଁ କିମ୍ବା ଅବିବାହିତ ଆଇପିଏସ୍ ଅଫିସର ଆସିବେ। ତେଣୁ କ୍ୱାର୍ଟର ନଥିଲା। ଅଫିସ୍ ରୁମ୍‌ରେ ପାଣି ଗଳୁଥିଲା। କନେଷ୍ଟବଲଙ୍କ ବ୍ୟାରେକ୍‌ରେ ଶୋଇଲେ ତାରା ଗଣାଯାଇ ପାରୁଥିଲା। ବିଭିନ୍ନ ଜିଲ୍ଲାରେ ଯଦି କୌଣସି ଅଫିସର ବିରୁଦ୍ଧରେ ଗୁରୁତର ଅଭିଯୋଗ ହେଲା ତେବେ ଆଇଜିଙ୍କୁ ମୌଖିକ ପ୍ରସ୍ତାବ ଦିଆଯାଉଥିଲା 'ସାର୍ ଏ ଲୋକ କୋରାପୁଟ୍ କିମ୍ବା ପିଟିସି ଯାଉ।' ତେଣୁ ପିଟିସିରେ ଟ୍ରେନିଂ ଦେବାକୁ ଆସୁଥିବା ଅଫିସରମାନେ ଏକ ଅସନ୍ତୁଷ୍ଟିଆ ଗୋଷ୍ଠୀ ଗଠନ କରିଥିଲେ। ପାଟିରୁ କଥା ବାହାରିଲେ ତାହା କେବଳ ଡିପାର୍ଟମେଣ୍ଟ ଓ ସରକାରଙ୍କ ବିରୁଦ୍ଧରେ ଯାଉଥିଲା। ଟ୍ରେନିଂ ପାଉଥିବା ଅଫିସରଙ୍କୁ କୁହାଯାଏ ଥାନାରେ କେମିତି ଦୁର୍ନୀତି ହୁଏ, ସେ ନିଜେ ସଚ୍ଚୋଟ ହୋଇଥିବାରୁ କିପରି ଚଳି ପାରିଲେ ନାହିଁ, କାମ ନକରି କେବଳ ଉପର ଅଫିସରଙ୍କୁ ପଇସା ଦେଇ ସନ୍ତୁଷ୍ଟ କଲେ ପଦୋନ୍ନତି ପରେ ପଦୋନ୍ନତି ହେବ, ଅନ୍ୟମାନେ କେମିତି ଲାଞ୍ଚ ନିଅନ୍ତି ଓ ସେମାନେ ସଚ୍ଚୋଟତା ଓ ନିରପେକ୍ଷତା ଦେଖାଇଥିବାରୁ ଦଣ୍ଡିତ ହୋଇ ପିଟିସିକୁ ଆସିଛନ୍ତି। ଏଭଳି ନକରାତ୍ମକ ବାଣୀ ଓ 'ମନବୋଧ ଚଉତିଶା' ଶୁଣେଇଲେ ପିଲାମାନଙ୍କ ଉପରେ କ'ଣ ପ୍ରଭାବ ପଡୁଥିବ ତାହା ବୁଝିବା ପାଇଁ ସେମାନେ ଅକ୍ଷମ। ତେଣୁ ପିଟିସିରେ 'ଆଶ୍ଚର୍ଯ୍ୟ ବକ୍ତା, କୁଶଳସ୍ୟ ଲବ୍ଧାଃ' (ଉତ୍ତମ ଶିକ୍ଷକ ଓ ଲାଭାନ୍ୱିତ ହେଉଥିବା ଛାତ୍ର) କେମିତି ହୋଇପାରିବ ? ଡ୍ରିଲ୍ ପ୍ୟାରେଡ୍ କରନ୍ତି ହାବିଲଦାରମାନେ ଓ ପିଟିସି ବାହାରକୁ ଯିବାକୁ ହେଲେ ପାସ୍ ଦିଅନ୍ତି ଜଣେ ଇନ୍‌ସପେକ୍ଟର। ହାବିଲ୍‌ଦାରମାନେ ବେଶି ରଗଡ଼େଇବା ପାଇଁ ଧମକ ଦିଅନ୍ତି ଓ କନେଷ୍ଟବଲମାନଙ୍କ ଠାରୁ ପଇସା ଅସୁଲ କରନ୍ତି। ପରୀକ୍ଷାରେ ପାସ୍ କରିବା ପାଇଁ ମଧ୍ୟ କେହି କେହି ପଇସା ନିଅନ୍ତି।

ପିଟିସି ପୋଷ୍ଟିଂରେ ମାନସିକ ଦୁଃଶ୍ଚିନ୍ତା ନାହିଁ, ଅଧିକାଂଶ ଅଫିସରଙ୍କୁ କ୍ୱାର୍ଟରେ ମିଳେ। କାମ କମ୍ ଓ ପଢ଼ିବା ଓ ପଢ଼େଇବାର ସୁଯୋଗ ଏସବୁର ବନ୍ଦୋବସ୍ତ ଥାଇ ମଧ୍ୟ ଆସିଥିବା ଅଫିସରମାନେ ଇଲାକା, ଜିପ୍, ଆଧିପତ୍ୟ ଓ କ୍ଷମତା (କ୍ଷମତାର ଯେତେ ଆନୁସଙ୍ଗିକ ଲାଭ) ହରାଇଥିବାରୁ ଜନ୍ତାରେ ପଡ଼ିଥିବା ବନ୍ୟଜନ୍ତୁ ପରି ସଁ ସଁ ହୁଅନ୍ତି ଓ ଯତ୍ କିଞ୍ଚିତ ଆଦାୟ କରାଯାଇପାରେ କରନ୍ତି। ସବୁବର୍ଷ ବାହାରୁ ଜଣେ ବଡ଼ ଡାକ୍ତର ଆସନ୍ତି ସବ୍‌ଇନ୍‌ସପେକ୍ଟରମାନଙ୍କର ମେଡ଼ିକାଲ ଜ୍ଞାନ ପରୀକ୍ଷା କରିବା ପାଇଁ ଓ ଶିକ୍ଷାର୍ଥୀ ପିଛା ୧୫ ଟଙ୍କା ନେଉଥିଲେ। ତା'ଛଡ଼ା ସର୍କିଟ୍ ହାଉସ୍ ଦେୟ ଓ ଖାଇବା ପିଇବା

ପିଲାମାନେ ଦେବେ। ଥରେ ଢେଙ୍କାନାଳର ସିଭିଲ ସର୍ଜନ ଆସିଲେ। ପିଟିସି ଡାକ୍ତର ସବ୍‌ଇନ୍ସପେକ୍ଟରଙ୍କ ମନିଟରଙ୍କ ସହିତ ଟଙ୍କା ଧରି ପହଞ୍ଚିଲେ ଓ ସିଭିଲ୍ ସର୍ଜନଙ୍କୁ ବଡ଼ ନମ୍ର ହୋଇ କହିଲେ 'ସାର୍ ପିଲାମାନେ ସାମାନ୍ୟ ଉପହାର ଆଣିଛନ୍ତି'। ପଇସା ଦେଖି ସିଭିଲ୍ ସର୍ଜନ ରାଗରେ ଅଗ୍ନିବାଣ - 'ମୋତେ ଲାଞ୍ଚ ଦେଉଛ ? ଜାଣିନ ମୁଁ କେମିତି ଲୋକ ? ପ୍ରିନ୍ସପାଲଙ୍କୁ କହି ତୁମମାନଙ୍କୁ ଚାକିରିରୁ ବାହାର କରେଇଦେବି।' କିନ୍ତୁ ଟୋକା ଡାକ୍ତର ଅଳିଆରୁ ଗଜା। ସେ ବିନୀତ ହୋଇ କହିଲା 'ସାର୍ ପିଲାମାନେ ଆପଣଙ୍କ ପୁଅ ଭଳିଆ, ସେମାନେ ସ୍ନେହରେ କିଛି ଆଣିଛନ୍ତି, ଆପଣ ରଖିଲେ ଖୁସି ହେବେ ।' ସାଙ୍ଗେ ସାଙ୍ଗେ ତରଳି ଯାଇ ସିଭିଲ୍ ସର୍ଜନ (ଏବେ ସିଡ଼ିଏମ୍‌ଓ) କହିଲେ 'ଆଛା ସେ କଥା କହୁନ। ମୋତେ ଓ ତମମାନଙ୍କର ମାଉସୀ ଓ ଦୁଇ ଭାଇଙ୍କ ପାଇଁ ଯଦି ସୁଟ୍ ପିସ୍‌ଟିଏ, ଭଲ ପାଟ, ଭାଇମାନଙ୍କ ପାଇଁ ସାର୍ଟ ଓ ପ୍ୟାଣ୍ଟ କନା ଗୋଟିଏ ଆଟାଚିରେ ସଜେଇ ଆଣି ଦେଲେ ସୁନ୍ଦର ଦିଶିବ। ଟଙ୍କା କ'ଣ ଦେଉଛ ? ମୁଁ ପିଲାଙ୍କଠାରୁ ଟଙ୍କା ନିଏନାହିଁ।' ଡାକ୍ତର ଓ ସେ ପିଲା ଧାଇଁଲେ ବଜାରକୁ। ଆଟାଚି, ସୁଟ୍‌ପିସ୍, ବରହମପୁରି ପାଟ, ସାର୍ଟ କନା, ପ୍ୟାଣ୍ଟ କନା କିଣିବାରୁ ମୁଣ୍ଡ ପିଛା ୧୫ ଟଙ୍କା ବଦଳରେ ୨୦ ଟଙ୍କା ପଡ଼ିଲା। ସଚ୍ଚୋଟ ସିଭିଲ ସର୍ଜନ ସମସ୍ତଙ୍କୁ ଭଲ ମାର୍କ ଦେଇ ଫେରିଗଲେ। ଏକଥା ମୋର ଥିବାର କିଛି ବର୍ଷ ପୂର୍ବରୁ ହୋଇଥିଲା। ଲାଇବ୍ରେରୀରେ ବହି କିଣା ହୋଇନି ଅଥଚ ଲାଇବ୍ରେରିଆନ୍ ମିଛ ଷ୍ଟେଟ୍‌ମେଣ୍ଟ ଦେଇ ବହୁ ଟଙ୍କା ବିଲ୍ ଆକାରରେ ନେଇଗଲେ। ଜଣେ ଡିଏସ୍‌ପି ଇନକ୍ୱାରୀ କରି କଥାଟା ସତ ବୋଲି ଲେଖିଲେ ଓ ପୋଲିସରେ କେସ୍ କରିବା ପାଇଁ ପ୍ରସ୍ତାବ ଦେଲେ। ପ୍ରିନ୍ସପାଲ ଶ୍ରୀ ଶରତ ଚନ୍ଦ୍ର ଶତପଥି ପ୍ରସ୍ତାବଟା ୬ ମାସ ପର୍ଯ୍ୟନ୍ତ ପକେଇ ରଖିଲେ। ଶ୍ରୀ ଶତପଥି ମୁଁ ସମ୍ବଲପୁରରେ ପଢୁଥିଲା ବେଳେ ଡିଏସ୍‌ପି ଥିଲେ ଓ ଆମର ପଡ଼ୋଶୀ ଥିଲେ। ସେ କାହିଁକି ରିପୋର୍ଟ ପଠଉନାହାଁନ୍ତି ଜାଣିବାକୁ ଚାହିଁବାରୁ ସମସ୍ତେ ନୀରବ। ପ୍ରିନ୍ସପାଲ ଛୁଟିରେ ଗଲେ ଏ ରିପୋର୍ଟ ମୁଁ ପୋଲିସ ପାଖକୁ ପଠେଇ ଦେବି କହିଦେବାରୁ ମୋର ଦୁଇଜଣ ଶୁଭେଚ୍ଛୁ ଡିଏସ୍‌ପି ସନ୍ଧ୍ୟା ବେଳେ ମୋ ରୁମ୍‌କୁ ଆସିଲେ ଓ ଅନାହୂତ ଉପଦେଶ ଦେଲେ। 'ସାର୍ ସେ ଲାଇବ୍ରେରିଆନ୍ ସାଙ୍ଗେ ଲାଗନ୍ତୁନି ସେ କାଳୀ ପୂଜା କରେ। ତା' ସାଙ୍ଗେ ତନ୍ତ୍ର ବିଦ୍ୟା ବି ଜାଣିଛି। ଯଦି ଆପଣଙ୍କୁ ବୀର ପେଶି ଦେବ ତେବେ ଆପଣ ରକ୍ଷା ପାଇବେନି, ତା' ବିରୁଦ୍ଧରେ ରିପୋର୍ଟ ଦେଇଥିବା ଡିଏସ୍‌ପି ଜଣେ କହିଲେ 'ତା' ନାଁରେ ରିପୋର୍ଟ ଦେବା ପରଠାରୁ ମୋ' ପିଲାର ଦେହଟା ଖରାପ ରହୁଛି।' ବଡ଼ ଧୀର ସ୍ୱରରେ ମୁଁ ସେମାନଙ୍କୁ କହିଲି ମା'-କାଳୀ କ'ଣ ଏଡ଼େ ଅବିବେକି ଯେ ମୁଁ ଉଚିତ କାମଟେ କଲେ ମୋତେ ଦଣ୍ଡ ଦେବେ ? ମୋର ଧାରଣା ଦେବଦେବୀ ଧର୍ମ ଓ ନ୍ୟାୟ ପଥରେ ଯାଉଥିବା ଲୋକମାନଙ୍କୁ ରକ୍ଷା କରନ୍ତି।

କାହା କଥା ନଶୁଣି ମୁଁ କେସ୍‌ଟାକୁ ପୋଲିସ୍‌କୁ ଦେଇଦେଲି। ପିଟିସିରୁ ଗଲି ମୟୂରଭଞ୍ଜ। ଯିବା ପୂର୍ବରୁ କଟକରେ ଆଇଜିଙ୍କୁ ଦେଖା କଲି, ସେ ଅଳ୍ପ କଥାବାର୍ତ୍ତା କରି ବିଦା କରିଦେଲେ। ତାଙ୍କର ଷ୍ଟାଫ୍ ଅଫିସର ତାଙ୍କ ରୁମ୍‌କୁ ଡାକିନେଇ ମୋତେ କହିଲେ 'ତୁମେ କ'ଣ ଭାରତ ସରକାରଙ୍କ ଆଗରେ ଆମ ନାଁରେ କମ୍ପ୍ଲେନ୍ କଲ' ବୋଲି ପ୍ରଶ୍ନ କଲେ। ଏଇ ଭଦ୍ରଲୋକ ରାଉରକେଲା ଗଲେ, ୧ନଂରେ ରହିବା ପାଇଁ ଜିଦ୍ କରୁଥିଲେ ଓ କିପରି ବିଗୁଡ଼ି ମାଡ଼ ଖାଇ ପଳେଇଲେ ସେ କଥା ମୁଁ ଆଗରୁ ଲେଖିଛି। ଡିଆଇଜିଙ୍କୁ ଦେଖା କଲି, ସେ ତାଙ୍କର ଅତୀତ ବିଷୟରେ ଗୁଡ଼ାଏ କଥା କହି ଏତିକି ମାତ୍ର ଉପଦେଶ ଦେଲେ - ସେ କଲେକ୍ଟର ମାଜିଷ୍ଟ୍ରେଟ୍‌ଗୁଡ଼ାକଠାରୁ ଦୂରରେ ରହିବ। ଏସ୍‌ପି ବିନା କଲେକ୍ଟର ଓ କଲେକ୍ଟର ବିନା ଏସ୍‌ପି ଆଇନ୍ ଶୃଙ୍ଖଳା ରକ୍ଷା କରିପାରିବେ ନାହିଁ, ଦାୟିତ୍ୱ ଉଭୟଙ୍କର ଅଥଚ ଦଳେ କଲେକ୍ଟର ଥିଲେ, ତାଙ୍କ କଥାବାର୍ତ୍ତା ଶୁଣିଲେ ଯିଏ ଭାବିବ ଯେ ଏସ୍‌ପି ତାଙ୍କ ଅଧସ୍ତନ କର୍ମଚାରୀ। ସେଇଭଳି ଅନେକ ଏସ୍‌ପି ଥିଲେ ଯେଉଁମାନେ ସୁଯୋଗ ପାଇଥିଲେ ପୋଲିସ ମାନୁଆଲ ଓ ପୋଲିସ ଆଇନ୍‌ରୁ କଲେକ୍ଟର ନାଁଟାକୁ ବ୍ଲେଡ଼ରେ କାଟି ଉଡ଼େଇ ଦେଇଥାନ୍ତେ। ଆଇନ ଓ ନିୟମ କାନୁନ୍ ବଦଳେଇବା ପାଇଁ ଚେଷ୍ଟା କରିବା ଗୋଟିଏ କଥା କିନ୍ତୁ ନିୟମକୁ ଉଲ୍ଲଂଘନ କରିବା ଆଉ ଗୋଟିଏ କଥା। ଅନେକ ଆଇପିଏସ୍ ଅଫିସର ନିୟମକୁ ବଦଳେଇବା ପରିବର୍ତ୍ତେ ଉଲ୍ଲଂଘନ କରିବା ପାଇଁ ଚେଷ୍ଟା କରନ୍ତି ଓ ଯେତିକି ଚେଷ୍ଟା କରନ୍ତି କଲେକ୍ଟରମାନେ ତାକୁ ସେତିକି ଜାବୁଡ଼ି ଧରନ୍ତି। ହାତରୁ ପୋଲିସଟା ଚାଲିଗଲେ ଜିଲ୍ଲାରେ ତାଙ୍କୁ ବାସି ମୁହଁରେ କେହି ପଚାରିବେନି ବୋଲି ଅନେକ ଆଇଏଏସ୍ ଅଫିସରଙ୍କ ଭୟ।

ସେତେବେଳର ସମୟରେ ବଦଳି ରେ ଅନେକ ସମସ୍ୟା। ପ୍ରଥମ ହେଲା କିଛି ଦିନ ଆଇବି କିମ୍ବା ସର୍କିଟ୍ ହାଉସ୍‌ରେ ରହି ଅପେକ୍ଷା କରିବାକୁ ପଡ଼ିବ, ପୂର୍ବ ପଦାଧିକାରୀ କେବେ ଘର ଛାଡ଼ିବେ। ବେଳେ ବେଳେ ବର୍ଷ ମଝିରେ ବଦଳି ହେଉଥିବାରୁ ପିଲାଙ୍କ ପାଠ ପଢ଼ା, ପରୀକ୍ଷା ହୋଇନଥିବା କାରଣରୁ ସେମାନେ ଘର ଛାଡ଼ିବା ପାଇଁ ଅକ୍ଷମ ହୁଅନ୍ତି। ଦ୍ୱିତୀୟ ସମସ୍ୟା ହେଲା ଘରକୁ ସଫା ସୁତୁରା କରିବା, ରଙ୍ଗ ମାରିବା ଓ ସେଥିପାଇଁ ପିଡ଼ବ୍ଲ୍ୟୁଡ଼ି ବିଭାଗର ସହଯୋଗ ଦରକାର। ତା'ପରେ ହେଲା ସ୍କୁଲରେ ପିଲାଙ୍କୁ ଭର୍ତ୍ତି କରିବା ଓ ତାଙ୍କ ପାଇଁ ନୂଆ ବହି ପୋଷାକ କିଣିବା। ପୁଣି ପୂର୍ବ ସ୍ଥାନରୁ ଘର ଛାଡ଼ିବା ବେଳେ ବିଜୁଳି ପାଣି ବିଲ୍ ଦେଇ ଟ୍ରକ୍‌ରେ ଜିନିଷ ଲୋଡ଼୍ କରି ଆଣିବା। ସରକାରଙ୍କ 'ଚମତ୍କାର' ବ୍ୟବସ୍ଥା, ବସ୍‌ରେ ଲଗେଜ୍ ହିସାବରେ ନେଲେ ଯେତିକି ପଇସା ପଡ଼ିବ ସେତିକି ସେ ଦେବେ। ସରକାର ବୋଧେ ଭାବନ୍ତି ଯେ ସମସ୍ତଙ୍କର ଜିନିଷ ବସ୍‌ରେ ନେଇପାରିଲା ଭଳିଆ। କିନ୍ତୁ ଜିନିଷ ଆସେ ଟ୍ରକ୍‌ରେ ଓ ପ୍ରତି ବଦଳିରେ

ପ୍ୟାକିଂ, କୁଲି ଖର୍ଚ୍ଚ ଓ ଟ୍ରକ୍ ଭଡ଼ା ଇତ୍ୟାଦିରୁ ଟି.ଏ. କାଟି ଦେଲେ ୫୦୦ ରୁ ୬୦୦ ଟଙ୍କା ହାତରୁ ଯାଏ। ଆଡ଼ଭାନ୍ସ ଦରମାରୁ ସେତକି ଗଲେ ଚଳିବା ପାଇଁ ପଇସା ନଥାଏ କାରଣ ଦରମା ସାଙ୍ଗେ ସାଙ୍ଗେ ମିଳେ ନାହିଁ। ଦରମା ମିଳିବ ଯେବେ ଟ୍ରେଜେରି ଦେବ ଏ.ଜି.କୁ ଲାଷ୍ଟ ପେ ସାର୍ଟିଫିକେଟ୍ ଓ ଏଜି ଅଫିସରେ ତାହା ପଡ଼ିରହେ। ଏସବୁ ବିଶେଷତଃ କଲେକ୍ଟର, ଏସ୍‌ପି ଆଉ ବଡ଼ ବଡ଼ ଅଫିସରଙ୍କ ସଂକ୍ରାନ୍ତରେ ହୁଏ। ମାନ ଅଭିମାନ ନକରି ଥରେ ଏଜି ଅଫିସକୁ ନିଶ୍ଚୟ ଯିବାକୁ ପଡ଼ିବ, ସେଇଠାରେ କିରାଣି କିମ୍ବା ଅଡ଼ିଟରରୁ ଉଠି ଉଠି ଏକାଉଣ୍ଟସ୍ ଅଫିସର ହୋଇଥିବା ବାବୁଙ୍କୁ କହିଲେ ସେ ଭାଗ୍ୟ ନିୟନ୍ତା ସ୍ୱରରେ କହିବେ 'ହଁ ଏମିତି ବହୁତ କେସ୍ ପଡ଼ିଛି ଆପଣଙ୍କ କେସ୍‌ଟା ପଠେଇ ଦେବା ପାଇଁ ଚେଷ୍ଟା କରିବା।' ଏଲ.ପି.ସି. ଡ଼େ଼ରି ହେବାକୁ ଥରେ ଜଣେ କଲେକ୍ଟର ଏଜିକୁ ଟେଲିଗ୍ରାମ କରିଦେଇଥିଲେ ଓ ଏଜି ଏଲପିସି ପଠେଇଲେ କିନ୍ତୁ ଟେଲିଗ୍ରାମ୍ ବାବଦରେ ଦରମାରୁ ୧୬ ଟଙ୍କା କାଟି ଦେଲେ।

ଦୁର୍ଦଶା ଏତିକିରେ ସରେନାହିଁ, ପହଞ୍ଚିବା ମାତ୍ରେ ଜଣ ପରେ ଜଣେ ଲୋକଙ୍କର ସୁଅ ଛୁଟେ। ସେମାନେ କଥା କୁହନ୍ତି ଇଂଲଣ୍ଡରୁ ଭାରତ ଆସିବା ସୁଏଜ୍ କେନାଲ ବାଟେ ନୁହେଁ, ଘୂରି ଘୂରି ଉତ୍ତମାଶା ଅନ୍ତରୀପ ବାଟେ। ଗୋଟିଏ ଉଦାହରଣ - କାଲି ଭୁବନେଶ୍ୱରରୁ ଫେରୁଛି। ଆପଣଙ୍କ କଥା ଆଲୋଚନା ହେଉଥିଲା ବେଳେ ମୁଁ ନୀଳମଣି ବାବୁଙ୍କ ପାଖେ ବସିଥିଲି। କିଏ ଜଣେ କହୁଥିଲା ସେ କଂଗ୍ରେସ ଲୋକ, ମୁଁ କହିଲି 'ହଉ ହେଲା। ଯଦି କଂଗ୍ରେସ ବାଲାଙ୍କ କଥା ମାନି ଚଳୁଥିଲେ ଏବେ ଆମ କଥା ମାନି ଚଳିବେ।' ବେତନଟୀରୁ ଆସିଥିବା ଏଇ ଲୋକଟିକୁ ପଚାରିଲି 'ଆପଣଙ୍କ ନାଁ କ'ଣ' ଓ ଉତ୍ତର ମିଳିଲା 'ମୋତେ ସମସ୍ତେ ନବକୃଷ୍ଣ ରାଉତ କହନ୍ତି।' ମୋର ଦ୍ୱିତୀୟ ପ୍ରଶ୍ନ ଥିଲା 'ଅନ୍ୟମାନେ କହନ୍ତି କିନ୍ତୁ ଆପଣ କ'ଣ କହନ୍ତି?' ସେ ନୀରବ ରହିଲେ। ମୋର ତୃତୀୟ ପ୍ରଶ୍ନ 'ଭଦ୍ରଲୋକ ଓ ଟାଉଟରଙ୍କ ମଧ୍ୟରେ ପ୍ରଭେଦ କ'ଣ?' ଶୁଣିବା ମାତ୍ରେ ଉଠିପଡ଼ି କହିଲେ 'ହଉ ଯଥେଷ୍ଟ ହେଲା ମୁଁ ଯାଉଛି। ନୀଳମଣି ବାବୁ ଯଦି ପଚାରିବେ ତୁମ ଜିଲ୍ଲାରେ ପୋଲିସ ଶାସନ କିମିତି ଚାଲିଛି ସେତେବେଳେ ମୁଁ ଯାହା କହିବା କଥା କହିବି। ଆଉ ମୋତେ ଆପଣ ଦାୟୀ କରିବେ ନାହିଁ।' 'ଆପଣ ଚିଫ୍ ମିନିଷ୍ଟର କିମ୍ବା ବିଜୁ ବାବୁଙ୍କୁ ଯାହା କହିବା କଥା କହିବେ ଏଥିପାଇଁ ମୁଁ ଆଦୌ ଚିନ୍ତିତ ନୁହେଁ' ବୋଲି କହି ଖବରକାଗଜ ଆଡ଼େଇଲି। ଏମିତି ଅନେକ ଆସନ୍ତି ନିଜର ଗୁରୁତ୍ୱ ଓ ପ୍ରତିପତ୍ତି ସ୍ଥାପନ କରିବା ପାଇଁ। ମୂଳରୁ ବିଦା କରିଦେଲେ ଗଲା, ତା'ନହେଲେ ଏସ୍‌ପି ସାଙ୍ଗେ ଘଣ୍ଟେ ଅଧ ଘଣ୍ଟେ ବସି ଜଳବାୟୁ ଠାରୁ ଆରମ୍ଭ କରି ରାମାୟଣ ପର୍ଯ୍ୟନ୍ତ ଗପିବେ ଓ ଫେରିଯାଇ ସ୍ଥାନୀୟ ପୋଲିସ୍ ଅଫିସରଙ୍କୁ କହିବେ 'ଏସ୍‌ପି ଡାକିଥିଲେ ଓ ଆପଣଙ୍କ

ବିଷୟରେ ପଚରା ଉଚୁରା କରୁଥିଲେ ଇତ୍ୟାଦି ଇତ୍ୟାଦି।' ବଞ୍ଚିବା ପାଇଁ ଅନେକ ଉପାୟ ଅଛି ତା'ମଧ୍ୟରୁ ଏଇଟା ଗୋଟିଏ।

ଦାୟିତ୍ୱ ନେବା ମାତ୍ରେ ଅଫିସରମାନଙ୍କର ମିଟିଂ ଡକେଇଲି ଓ ତାଙ୍କ ଇଲାକାର ବିଭିନ୍ନ ସମସ୍ୟା ବିଷୟରେ ଆଲୋଚନା କଲି। ସଦର ଓ ବେତନଟୀ ଇନ୍‌ସପେକ୍ଟରଙ୍କ ମୁଖ୍ୟ ସମସ୍ୟା ଥିଲା ଲୋଧାଙ୍କ ଦ୍ୱାରା ଡକାୟତି ଓ ହତ୍ୟା। କୁଳିଅଣା ଥାନାରେ ଆଦିବାସୀ ମହିଳାମାନଙ୍କୁ ଧର୍ଷଣ ଅଭିଯୋଗ ଆସିଥିଲା, ତିରିଙ୍ଗ ଓ ବହଳଦା ପୋଲିସ ଷ୍ଟେସନରେ ବିହାରରୁ ଚୋର ଖଣ୍ଡ ଆସି ବିଭିନ୍ନ ଅପରାଧ କରୁଥିଲେ। ବାରିପଦା ସହରରେ କଲେଜ ପିଲା ବେଳେ ବେଳେ ଗଣ୍ଡଗୋଳ କରୁଥିଲେ। ଗୋଟିଏ ଚାଞ୍ଚଲ୍ୟକର କେସ୍ ତଦନ୍ତାଧୀନ ଥିଲା, ଯାହା ହେଉଛି ଜଣେ ସ୍କୁଲ ମାଷ୍ଟର ପାଠ ପଢ଼େଇ ସାରି ଗାଁକୁ ଫେରୁଥିଲେ ଓ ବାଟରେ କେହି ଜଣେ ଅଜ୍ଞାତ ହତ୍ୟାକାରୀ ତାଙ୍କୁ ରିଭଲଭରରେ ଗୁଳି କରି ମାରିଲା। ଏସବୁ ସାଙ୍ଗକୁ ମାଜିଷ୍ଟ୍ରେଟ୍‌ଙ୍କ ସାଙ୍ଗରେ ପୋଲିସର ସମନ୍ୱୟର ଅଭାବ, ବେଶି ହେଉଥିଲା କରଞ୍ଜିଆ ସବ୍‌ଡ଼ିଭିଜନ୍‌ରେ। ଏସଡ଼ିଓ ଓ ଇନ୍‌ସପେକ୍ଟର ପରସ୍ପର ବିରୁଦ୍ଧରେ ଲମ୍ବା ଲମ୍ବା ଅଭିଯୋଗ ପତ୍ର ପଠାଉଥିଲେ। ଅନେକ କନେଷ୍ଟବଲ ମେଳିଆ, ସୁବିଧା ପାଇଲେ କିଛି ନା କିଛି ଗଣ୍ଡଗୋଳ କରିବେ। ବଡ଼ସାଇ ବୋଲି ଏକ ଥାନା ଅଛି, ସେ ଅଞ୍ଚଳର ବହୁତ ପିଲା ପାଠ ପଢ଼ି ଇଂଲଣ୍ଡ, ଆମେରିକାରେ ଚାକିରି କରୁଥାନ୍ତି। ତା' ସାଙ୍ଗରେ ମାମଲତକାର ବହୁତ। ଥରେ ମୋ' ନାଁରେ ଟେଲିଗ୍ରାମ୍ ଆସିଲା 'କାଲି, ମୋ ଘରେ ପୋଲିସ ପୋଷାକ ପିନ୍ଧି କିଛି ଚୋର ଡକାୟତି କଲେ ଓ ଥାନାରେ କେସ୍ ରୁଜୁ ହୋଇପାରୁନାହିଁ, ତୁରନ୍ତ ହସ୍ତକ୍ଷେପ କରନ୍ତୁ।' ଟେଲିଗ୍ରାମ୍ ପାଇ ଭୀଷଣ ବିଗିଡ଼ିଲି ଓ କାହାକୁ ନକହି ସେ ଥାନାକୁ ଗଲି। ମୋତେ ହଠାତ୍ ଆସିବା ଦେଖି ଥାନା ବାବୁ ଅବାକ୍ ଓ ବ୍ୟସ୍ତ, କାରଣ ପଚାରିବା ପାଇଁ ସାହସ ନାହିଁ। ଜଣେ ଥାନା ବାବୁ କିମିତି ବା ଏସ୍‌ପିଙ୍କୁ ପଚାରିବେ କାହିଁକି ଆପଣ ଆସିଛନ୍ତି? ତାଙ୍କୁ ଧରି ଟେଲିଗ୍ରାମ କରିଥିବା ଲୋକ ଘରେ ପହଞ୍ଚିଲି। ଘର ଦେଖିବା ମାତ୍ରେ ଥାନା ବାବୁ କହିଲେ 'ସାର୍, ଏ ଲୋକଟା ଚୋରି ମାଲ୍ ରଖିବାରେ ଓସ୍ତାଦ। ପଅରଦିନ ରାତିରେ ତା' ଘର ସର୍ଚ୍ଚ ହୋଇଥିଲା ଓ ବହୁତ ଗହଣା ବାହାରିଲା ଓ ସେ କହିପାରୁନି ଗହଣା କୁଆଡୁ ଆସିଲା।' ଥାନା ବାବୁ ଏମିତି କହୁଛନ୍ତି ଅଥଚ ସେ ଲୋକ ଆକାଶରୁ ଖସି ପଡ଼ିଲା ଭଳି କହୁଛି - ଆଜ୍ଞା ଆପଣ ଆସିଥିଲେ ସାଙ୍ଗରେ ପୋଲିସ ଧରି? ଆମେ କେମିତି ଜାଣିବୁ? ନିଜର ପରିଚୟ ନଦେଇ ଘରେ ଭୁସ୍‌ଭାସ୍ ପଶିଗଲେ ଗହଣା ଇତ୍ୟାଦି ନେଇଗଲେ ଆମେ କେମିତି ଜାଣିବୁ ଆପଣ ପୋଲିସ ବୋଲି? ବିରକ୍ତ ହୋଇ ମୁଁ ଜିପ୍‌ରେ ବସିଲି ଓ ମୋ' ପଛରେ ଫେରୁଥିବା ବେଳେ ଥାନା ବାବୁ ତାକୁ କହିଲେ 'ରହ ଚୋରି କରିଥିବା ଲୋକ

ଧରାପଡ଼ନ୍ତୁ। ତା'ପରେ ତୋର ହାଇକୋର୍ଟିଆ କଥା ବନ୍ଦ ହେବ।' ଜିପ୍‌ରେ ବସିଥିବା ଅବସ୍ଥାରେ ମୁଁ ସେ ଲୋକଟାକୁ ଅନେଇଲି ତା' ମୁହଁରେ ଲେଶ ମାତ୍ର ଭୟର ସୂଚନା ନାହିଁ। କାହିଁକି ହେବ ? ପାଞ୍ଚ ଛଅ ମାସ ପରେ କେସ୍ ଯିବ କୋର୍ଟକୁ, ବିଚାର ଚାଲିବ ବର୍ଷେ ଉପରେ (କାରଣ ଓକିଲ ତାରିଖ ଗଡ଼େଇବେ)। ଏଣେ ଚେଷ୍ଟା ଚାଲିବ ସାକ୍ଷୀମାନଙ୍କୁ ପଇସା ଦେଇ ପ୍ରଭାବିତ କରିବା ପାଇଁ ଏବଂ ସାକ୍ଷୀ କହିବେ 'ହଜୁର ଗହଣା ଜବତ ହୋଇଥିଲା ଓ ଆମେ ସବୁ ଦେଖି ଦସ୍ତଖତ କରିଛୁ। ତା'ପରେ ଆସାମୀର ଓକିଲ ପଚାରିବେ 'ଏଗୁଡ଼ିକ ସେ ଗହଣା ? ' ସାକ୍ଷୀ ବିସ୍ମିତ ହୋଇ କହିବ 'ସାର୍ କେଉଁ କାଳ କଥା ଆଉ କ'ଣ ମନେ ଅଛି ? ଏମିତି ଏମିତି ଦିଶୁଥିଲା। କିନ୍ତୁ ଏଇଟା କି ନାହିଁ କହିପାରିବି ନାହିଁ।' ବାସ୍ ଆସାମୀ ସନ୍ଦେହରେ ଖଲାସ୍।

ପ୍ରଥମ ମିଟିଂରେ ପୋଲିସ ଅଫିସରଙ୍କୁ କେତେଗୁଡ଼ିଏ କଥା କହିଥିଲି। ପ୍ରଥମ ହେଲା ଯେତେ ଗରିବ ହେଉ ପଛେ କାହାକୁ କେବେ ତୁ କହିବ ନାହଁ। ବିଶେଷତଃ ଆଦିବାସୀମାନଙ୍କୁ ତୁ କହିବ ନାହିଁ ଓ ତାଙ୍କ ଘରକୁ ପଶିଲେ ଯୋତା ଖୋଲି ପଶିବ। ଯଦି ସମ୍ଭବ ଖାକି ପ୍ୟାଣ୍ଟ ଟିକେ ମଇଳା ହେଉ ପଛେ ତାଙ୍କ ପିଣ୍ଡାରେ ବସି କଥାବାର୍ତ୍ତା କରିବ । ଗାଁରେ ଚୋରି ହେଲେ କ୍ଷତିଗ୍ରସ୍ତ ଲୋକଙ୍କୁ ସାନ୍ତ୍ୱନା ଦେବ ଓ ଅନ୍ୟ କାହାକୁ ହଇରାଣ କରିବ ନାହିଁ। କଦାଚିତ୍ ସେ ଗାଁରେ ସ୍କୁଲ ଘରେ କିମ୍ବା ଖୋଲା ଘରେ ବସି ଖାଇବ ନାହିଁ କାରଣ ଲୋକଙ୍କ ଧାରଣା ହେବ ଯେ ଜଣଙ୍କର ସର୍ବସ୍ୱ ଲୁଟି ହୋଇଗଲା ଓ ପୋଲିସ ବାଲା ମଉଜ କରୁଛନ୍ତି। ତାଙ୍କୁ କଟକ ଜିଲ୍ଲାର ଜଣେ ଅଫିସରଙ୍କ ଉଦାହରଣ ଦେଲି। ସେ ଅଫିସରଟା ଅତ୍ୟନ୍ତ ନିକୃଷ୍ଟ ଧରଣର, ସେ ଯୁଆଡ଼େ ଯିବ ସେ ଥାନାର କେସ୍ ଅଧାଅଧି କମିଯିବ କାରଣ ସେ କେସ୍ ରୁଜୁ କରନ୍ତି ନାହିଁ। ଅଥଚ ତାଙ୍କର ବଦଳି କରିବାରୁ ଦୁଇ ହଜାର ପରିକି ଲୋକ ବାଲିକୁଦା ଥାନା ଆଗରେ ଧାରଣା ଦେଲେ। ଏକମାତ୍ର ଦାବି ଯେ ଆମ ବାବୁ ବଦଳି ହେବେ ନାହିଁ। ତାଙ୍କ କାର୍ଯ୍ୟଶୈଳୀ ହେଉଛି ଯେ, ସେ କାହାକୁ ତୁମେ ମଧ୍ୟ କହିବ ନାହିଁ। ସମସ୍ତଙ୍କୁ ଆପଣ। ବୟସ୍କ ଲୋକଙ୍କୁ ଚୌକିରୁ ଉଠିପଡ଼ି ନମସ୍କାର କରିବେ ଓ ମଉସା ବୋଲି ଡାକିବେ। ଅଭିଯୋଗ ପତ୍ରଟି ଡ଼େସ୍କରେ ରଖି ମଟରସାଇକେଲରେ ବସି ତାଙ୍କ ଗାଁକୁ ଯିବେ, ତୁମ୍ଭି ତୋଫାନ କରିବେ (ଯଥା ସେ ଚୋରକୁ ଠିଆ ଫାଳ ଚିରିଦେବି) ଇତ୍ୟାଦି। ଥାନାକୁ ଆସୁଥିବା ଲୋକଙ୍କୁ କେତେବେଳେ ଚା' ଓ ପାନ ଯାଚନ୍ତି ଓ ତାଙ୍କ ସାଙ୍ଗେ ଦୁଃଖ ସୁଖ ହୁଅନ୍ତି। ପ୍ରକୃତରେ ଅମାୟିକ ହେଲେ ବହୁତ ଲୋକ ଅଯୋଗ୍ୟତା ଓ ଅକ୍ଷମତାକୁ କ୍ଷମା କରିଦିଅନ୍ତି (ବାବୁଟା ଭଲ ଲୋକ, ପାରୁପର୍ଯ୍ୟନ୍ତ ଚେଷ୍ଟା କଲା, ଆମ ଭାଗ୍ୟ ଖରାପ, କେସ୍ ଧରା ପଡ଼ିଲା ନାହିଁ)। ପୋଲିସର ବେଶି ସମସ୍ୟା ଉପୁଜେ ରୁକ୍ଷ ବ୍ୟବହାର ପାଇଁ, ଭଦ୍ରଲୋକ

ପୋଲିସରେ ପଶିଲେ ମଧ୍ୟ ରୁକ୍ଷ ବ୍ୟବହାର କରିବେ କାରଣ ଅତ୍ୟଧିକ ପରିଶ୍ରମ, ଉତ୍କଣ୍ଠା ଓ ଉଦ୍‌ବିଗ୍ନ ତାଙ୍କ ଉପରେ ପ୍ରବଳ ମାନସିକ ଚାପ ପକାଏ। ପୋଲିସ ସଂଖ୍ୟା ବଢ଼ାଇ ଓ ସେମାନଙ୍କୁ ଅଧିକ ସୁରକ୍ଷା ଦେଲେ ଏ ସମସ୍ୟା ଅନେକ ପରିମାଣରେ ସମାଧାନ ହେବ। ସେଥିପାଇଁ ମୋ' ଅବସର ଦିନ ଟିଭି ମାଧ୍ୟମରେ କହିଥିଲି 'ମୋ' ସ୍ୱପ୍ନର ପୋଲିସ ହେବାର ଦିନର ସମୟ ହେଉଛି ଯେଉଁ ଦିନ ଦୀନ, ହୀନ ଲୋକଟିଏ ନିର୍ଭୟରେ ଥାନାକୁ ପଶିବ ଓ ହସ ହସ ମୁହଁରେ ଫେରି ଆସିବ।' ଥରେ ପାଠକମାନେ ବିଚାର କରନ୍ତୁ ଏମିତି କେଉଁ ଅଫିସ ଅଛି। (ତହସିଲ, ଆରଟିଓ, ସପ୍ଲାଇ, ଜଳ ଯୋଗାଣ ଇତ୍ୟାଦି) ଯେଉଁଠାରେ ଆପଣ ଉଚିତ୍ ଓ ଭଦ୍ର ବ୍ୟବହାର ପାଇଛନ୍ତି ଓ ବିନା ପଇସାରେ ଆପଣଙ୍କ କାର୍ଯ୍ୟ ତୁରନ୍ତ ହୋଇଯାଇଛି ? ବହୁତ କମ୍ କର୍ମଚାରୀ ନିଜକୁ ସେବକ ମନେ କରନ୍ତି ଓ ବାକି ସମସ୍ତେ ଶାସକ ଭଳିଆ ବ୍ୟବହାର କରନ୍ତି। ଶାସକ ବର୍ତ୍ତମାନ ଶୋଷକ ହୋଇଛନ୍ତି। ଚାକିରିଆ ଜ୍ୱାଇଁଟିଏ ପାଇଲେ ବନ୍ଧୁବାନ୍ଧବ ପଚାରନ୍ତି ଉପୁରି କେତେ କୁହ, ଦରମା କେତେ ଆମେ ଜାଣୁ।

ଯଦି ଏସ୍‌ପିଙ୍କ ଉପଦେଶରେ ପୋଲିସ ଅଫିସରଙ୍କର ହୃଦୟ ପରିବର୍ତ୍ତନ ହୋଇଯାଆନ୍ତା ତେବେ ଆମେ ସୁଧାର ପୋଲିସଟିଏ କେବେଠୁ ପାଇସାରନ୍ତୁଣି। ସର୍ବସାଧାରଣଙ୍କର ଶ୍ରଦ୍ଧା ଭାଜନ ହୋଇପାରୁନଥିବା ଶାସନ କଳର ଅନ୍ୟ ବିଭାଗ (ରାଜସ୍ୱ ଇତ୍ୟାଦି) ଠାରୁ ସର୍ବସାଧାରଣଙ୍କର ନ୍ୟାଯ୍ୟ ପ୍ରାପ୍ୟ ମିଳୁନାହିଁ। ଶାସନର ଯେତିକି ରାଜନୀତିକରଣ ହେଉଥିବ ତାହା ସର୍ବସାଧାରଣଙ୍କ ଠାରୁ ସେତିକି ଦୂରେଇଯିବ।

ଏଇ କଥା କହିବାରୁ ମୟୂରଭଞ୍ଜ ଗସ୍ତରେ ଆସିଥିବା ଜଣେ ମନ୍ତ୍ରୀ କଲେକ୍ଟରଙ୍କୁ ପଚାରିଲେ 'ଆଛା ଏସ୍‌ପି ଆମ ସରକାର, ମାନେ ଆମ ପାର୍ଟି ବିରୁଦ୍ଧରେ ତାଙ୍କ ଅଫିସରମାନଙ୍କୁ କହୁଛନ୍ତି କି ?' ପାଠକ ବନ୍ଧୁମାନେ 'ଆମ ସରକାର ଅର୍ଥାତ୍ ଆମ ପାର୍ଟି'ର ମାନେ ବୁଝନ୍ତୁ। କ୍ଷମତାରେ ଥିବା ରାଜନୈତିକ ଦଳର ଗଣିତ କଷା ହେଉଛି - ଆମେ ରହିଲୁ କ୍ଷମତାରେ, ତେଣୁ ସରକାର ଆମର। ଯେହେତୁ ପୋଲିସ ସରକାରଙ୍କର ଏକ ଅଂଶ ତେଣୁ ପୋଲିସ ଆମର। ଆଉ ପୋଲିସ ଯଦି ଆମ କଥା ନମାନିଲା ତେବେ ଆମେ କାହିଁକି ଅଛୁ।' ମୁଁ କେତେଥର ଏଇ ପଲଟିସିଆନଙ୍କ ତୁଣ୍ଡରୁ ଶୁଣିଛି - 'ମୁଁ ସେ ପ୍ରଧାନକୁ (ଛଦ୍ମନାମ) ମୋ' ଇନ୍‌ସପେକ୍ଟର କରିନେଇଥିଲି; ପାଞ୍ଚ ମାସ ଭଲ କାମ କଲା ତା'ପରେ ଆମ ବିରୋଧୀ ଦଳ ପାଲରେ ପଡ଼ିଗଲା, ତେଣୁ ତାକୁ ବଦଳି କଲି। ଆଉ କ'ଣ କରିଥାନ୍ତି ?' କ୍ଷମତା ଜନିତ ମଉଗର୍ବ ଲାଗି ରହିଥାଏ ଓ ବୃଦ୍ଧି ପାଏ ପୁଣିଥରେ ଯଦି ସେ ନିର୍ବାଚିତ ହୁଅନ୍ତି। ନିର୍ବାଚନରେ ଯଦି ବ୍ରହ୍ମ କଚଡ଼ା ଖାଆନ୍ତି ତେବେ ବ୍ୟକ୍ତିତ୍ୱ ଓ ବ୍ୟବହାରରେ ସମ୍ପୂର୍ଣ୍ଣ ପରିବର୍ତ୍ତନ ଆସିଯାଏ। କଥାକଥାକେ ଦାବି କରନ୍ତି 'ସାର୍,

ସମସ୍ତଙ୍କୁ ସୁରକ୍ଷା ମିଳିବା କଥା। ଆମେ କ'ଣ ନାଗରିକ ନୋହୁଁ? ସରକାରୀ କଳଟା କ'ଣ କେବଳ ଶାସକ ଦଳ ପାଇଁ ଅଛି?' ଯେଉଁ ମୁହଁରେ ଅରୁଆ ସେଇ ମୁହଁରେ ଉଷୁନା ଶୁଣିବା ପାଇଁ ଭଗବାନ ବୋଧେ ଦୁଇଟି କାନ ଦେଇଛନ୍ତି।

ଶୁଳିଆପଦା, ବେତନଟୀ ଓ ଖୁଣ୍ଟା ଥାନା ଅଞ୍ଚଳରେ ଲୋଧାମାନେ ବାରମ୍ବାର ଉପଦ୍ରବ କଲେ। ଲୋଧାମାନେ ମୂଳତଃ ରାଜସ୍ଥାନର ଆଦିବାସୀ ଲୋକ ଓ ସେମାନଙ୍କୁ ନୟାଗ୍ରାମର ଜମିଦାର (ବର୍ତ୍ତମାନ ବେଙ୍ଗଲ) ପ୍ରଜାମାନଙ୍କ ଠାରୁ ଜବରଦସ୍ତ ଖଜଣା ଆଦାୟ କରିବା ପାଇଁ ଆଣିଥିଲେ। ଅତିଶୀଘ୍ର ସେମାନେ ଜମିଦାରଙ୍କ ଖଜଣା ସଙ୍ଗେ ନିଜ ପାଇଁ ଖଜଣା ମଧ୍ୟ ଆଦାୟ କଲେ ଓ ଅଳ୍ପ କେତେ ଜଣ ଚୋରି ମଧ୍ୟ କଲେ। ଜମିଦାରୀ ଉଚ୍ଛେଦ ହେବା ପରେ ସେମାନେ ବେରୋଜଗାରୀ ହୋଇଗଲେ ଓ ଅଧିକାଂଶ ଚୋରି ଓ ଡକାୟତି କଲେ। ଲୋଧାମାନେ ରାତିରେ ଆସନ୍ତି ଡକାୟତି ପାଇଁ। ଧରିଥାନ୍ତି ତୀର, ଧନୁ, କାତି ଓ ମଶାଲ। ଗାଁ ପାଖେଇ ଆସିଲା ମାତ୍ରେ କିଳିକିଳା ରଡ଼ି ଛାଡ଼ନ୍ତି। ବେଶି ରଡ଼ି ପକାନ୍ତି ଛୋଟ ଛୋଟ ପିଲାମାନେ, ଯେଉଁମାନେ ଟ୍ରେନିଂ ପାଇଁ ଆସନ୍ତି। ସମ୍ମିଳିତ ରଡ଼ି ଶୁଣି ସାନ୍ତାଳମାନଙ୍କର ଛାତି ଭୟରେ ଥରେ। ଲୋଧାଙ୍କ ମଧ୍ୟରୁ ଜଣେ କୁହାଟ ମାରେ 'ଶଳା ମାଝି ପଳେଇଲେ।' ତା'ପରେ ଗାଁରେ ଚଢ଼ଉ କରି ଆଲୁମିନିୟମ ଥାଳି, ଲୋଟା, ଗାମୁଛା, ଛେଳି, କୁକୁଡ଼ାକୁ ଧରି ଚାଲିଲେ। କୁକୁଡ଼ାଙ୍କ ବେକ ମୋଡ଼ି ଦେବେ, ଛେଳିଙ୍କୁ ବୋହିନେବେ ଓ ହାଟରେ ବିକି ଦେବେ। ବେତନଟୀ ଅଞ୍ଚଳର ଏମ୍‌ଏଲ୍‌ଏ ଥିଲେ ପ୍ରସନ୍ନ ଦାସ (ପରେ ବାଚସ୍ପତି ହେଲେ)। ଥରେ ମୋତେ ନେଇ ଶୁଳିଆପଦା ଅଞ୍ଚଳର ସାନ୍ତାଳମାନଙ୍କୁ ଏକତ୍ରୀତ କଲେ। ଆମେ ବୁଝେଇଲୁ 'ତମେ ଏତେ ଭଲ ତୀର ମାରିପାର, ଦୂରରୁ ଦେଖୁଛ ମଶାଲ ଧରି ଲୋକ ଆସୁଛନ୍ତି ଅନ୍ଧାଧୁନିଆ ତୀର ମାରିଲେ ଚାରି ପାଞ୍ଚଟା ଖସିପଡ଼ିବେ ଓ ବାକି ପଳେଇବେ।' ସମସ୍ତେ ମୁଣ୍ଡ ଟୁଙ୍ଗାରିଲେ କିନ୍ତୁ ପରେ ସେଇ ପୂର୍ବାବସ୍ଥା। ଲୋଧାଙ୍କ ରଡ଼ି ଶୁଣିଲେ ସାନ୍ତାଳ ପଳେଇବେ। ସେମାନଙ୍କ ଧାରଣା ଯେ ଲୋଧାଙ୍କ ପାଖରେ ଏକ ମନ୍ତ୍ର ଅଛି ଯେ ତାଙ୍କ ଦେହରେ ତୀର ବାଜିବ ନାହିଁ। ସେମାନଙ୍କ କାହାଣୀରୁ ଶୁଣାଯାଏ ଯେ ପଇସା ଅଦାୟ କରିବା ପାଇଁ ଲୋଧାମାନେ ପାଟି ଭିତରେ ନିଆଁ ହୁଳା ପୁରାଇ ଦିଅନ୍ତି ଓ ଦେହରେ ଗରମ ସୋରିଷ ତେଲ ଢାଳି ଦିଅନ୍ତି। ଥରେ ଖବର ଆସିଲା ଯେ ଗୋଟିଏ ନିର୍ଦ୍ଦିଷ୍ଟ ଗାଁ ଉପରେ ଲୋଧାମାନେ ଚଢ଼ଉ କରିବେ। ଖବରପାଇ ମୁଁ ଶୁଳିଆପଦା ଥାନା ଗଲି ଓ ଥାନା ଇନ୍‌ଚାର୍ଜ ପଣ୍ଡାଙ୍କୁ କହିଲି ଗାଁ ପାଖରେ ଲୁଚି କରି ରୁହ। ଲୋଧାଙ୍କୁ ଦେଖିଲା ମାତ୍ରେ ଫାଇରିଙ୍ଗ କରିବ, କାଳେ ପାଖ ଗାଁକୁ ଯିବେ, ସେଇ ଗାଁରେ ଜଣେ ହାବିଲଦାର ଓ ଚାରୋଟି କନେଷ୍ଟବଲଙ୍କୁ ରାଇଫଲ୍ ଦେଇ ରଖ। ଲୋଧା ଡକାୟତଙ୍କୁ ଦେବା ମାତ୍ରେ ସେମାନେ ଫାଇରିଙ୍ଗ କରିବେ। କାଲି ମୁଁ ଦେଖିବା ପାଇଁ ଚାହୁଁଛି ଅତି କମ୍‌ରେ ଚାରି ପାଞ୍ଚଜଣ ଲୋଧା ଜୀବିତ କିମ୍ବା ମୃତ।

ରାତିରେ ଲୋଧାମାନେ ଥାନା ବାବୁ ଥିବା ଗାଁକୁ ନଆସି ଆର ଗାଁକୁ ଗଲେ। ଗାଁ ପାଖ ଏକ ଖାଲରେ ହାବିଲଦାର ଓ କନେଷ୍ଟବଲ ରାଇଫଲ ପ୍ରସ୍ତୁତ କରି ରହିଥିଲେ। ଅନ୍ଧାର ହେବା ମାତ୍ରେ ଲୋଧାମାନେ ନିଆଁ ହୁଳା ଧରି ଆସିଲେ। ହାବିଲ୍‌ଦାର ବାବୁ ମୟୂରଭଞ୍ଜ ପୋଷ୍ଟିଂ ପୂର୍ବରୁ ପୋଲିସ୍ ଟ୍ରେନିଂ କଲେଜରେ ଥିଲେ ଓ ବିଶୃଙ୍ଖଳାକାରୀଙ୍କୁ ପ୍ରଥମେ ସତର୍କ କରିବା ତା'ପରେ ଲୁହବୁହା ଗ୍ୟାସ ଛାଡ଼ିବା ଓ ତା'ପରେ ଲାଠି ଚାର୍ଜ କରିବା ଶିଖାଉଥିଲେ। ଲୋଧାଙ୍କୁ ଦେଖିବା ମାତ୍ରେ ସେ ଖାଲ ଭିତରୁ ବାହାରକୁ ଉଠି ଆସି ଉଚ୍ଚ ସ୍ୱରରେ କହିଲେ - 'ଆରେ, ଆରେ ଗଣ୍ଡଗୋଳ ସୃଷ୍ଟିକାରୀମାନେ ତୁମେମାନେ ଗଣ୍ଡଗୋଳ କଲେ ଆମେ ଆକ୍‌ସନ୍ ନେବୁ। ତୀର ଧନୁ ଥୋଇଦେଇ ଆତ୍ମସମର୍ପଣ କର କିମ୍ବା ଫେରିଯାଅ।' ଉତ୍ତରରେ ଆସିଲା ପାଞ୍ଚ ଛଅଟା ତୀର। ଗୋଟିଏ ବାଜିଲା ହାବିଲ୍‌ଦାରଙ୍କ ଜଙ୍ଘରେ। ମାଲୋ ମଲି କହି ପଡ଼ିଗଲେ। ବାକି ଚାରି ଜଣ ସିପାହୀ ବନ୍ଧୁକ ଥୋଇ ମାର୍ ଚମ୍ପଟ। ତା'ପରଦିନ ମୁଁ ପାଞ୍ଚଜଣଙ୍କୁ ସସ୍‌ପେଣ୍ଡ କଲି ଓ ରିଜର୍ଭ ଇନ୍‌ସପେକ୍ଟର ଚୁଡ଼ି ଉପହାର ଦେଲେ। ଏ ବିଷୟରେ ରିପୋର୍ଟ ପାଇଲା ମାତ୍ରେ ଡିଆଇଜି ମୋତେ କଡ଼ା ଭାଷାରେ ଚିଠି ଲେଖିଲେ 'ସମ୍ଭବତଃ ତୁମେ ଲୋଧାମାନଙ୍କ ବିରୁଦ୍ଧରେ ଠିକ୍ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିପାରୁନାହଁ। ଏ ସମସ୍ୟାର ସମାଧାନ ମୋତେ କରିବାକୁ ପଡ଼ିବ। ମୁଁ ଅତିଶୀଘ୍ର ଆସୁଛି। ଡକାଅ ସେ ଲୋଧାଙ୍କୁ, ମୁଁ ତାଙ୍କୁ ଶେଷ ସତର୍କ ବାଣୀ ଶୁଣେଇବି।'

ଡ଼ିଆଇଜି ଆସିଲେ ଶୁଳିଆପଦାକୁ। ଖେର ଡକାୟତ କାହିଁକି ବା ଆସନ୍ତେ? ଯେତେକ ବୃଦ୍ଧ, ଅକର୍ମଣ୍ୟ, ଜଙ୍ଗଲରୁ ଫଳ ଗୋଟେଇ ଚଳୁଥିବା ଲୋକେ ୩୦ ରୁ ୪୦ ଜଣ ଆସିଲେ। ତାଙ୍କୁ ଡିଆଇଜି ବୁଝେଇଲେ ଅପରାଧ କ'ଣ, ଦଣ୍ଡ କେମିତି ମିଳେ। ପୋଲିସ୍‌କୁ କୁହାହୋଇଛି ଦେଖିବା ମାତ୍ରେ ଗୁଳି କର, ଆମ ପାଖରେ ଯଥେଷ୍ଟ ଗୋଳାବାରୁଦ ଓ ବନ୍ଧୁକ ଅଛି ତୁମ୍ଭମାନଙ୍କୁ ମୁକାବିଲା କରିବା ପାଇଁ, ପାଞ୍ଚ ପାଞ୍ଚଟା ଜାଲିଓ୍ୱାନାବାଗ୍ ହେଲେମଧ୍ୟ ସରକାର କିଛି କହିବେ ନାହିଁ। ଡିଆଇଜି କହୁଥାନ୍ତି ସେମାନେ ଜୁଲୁ ଜୁଲୁ ଅନଉଥାନ୍ତି। ପଛରେ ଠିଆ ହୋଇଥାନ୍ତି ଇନ୍‌ସପେକ୍ଟର ଓ ସବ୍‌ଇନ୍‌ସପେକ୍ଟର। ଡିଆଇଜିଙ୍କର ଲୋଧାଙ୍କର ଇତିହାସ ଜ୍ଞାନରେ ବିଶ୍ୱାସ ଦେଖି ମୋର ଏକମାତ୍ର କାର୍ଯ୍ୟ ଥିଲା କେମିତି ହସକୁ ରୋକିବି। ଲୋଧାଙ୍କୁ ଡକାୟତିର ସଂଜ୍ଞା, ଜେନେରାଲ ଡାୟରର ଜାଲିଓ୍ୱାନାବାଗ୍ ଗୁଳି ବର୍ଷଣ କହିବା ଗଧିଆ ଆଗରେ ଭାଗବତ ପୁରାଣ ପଢ଼ିବା କଥା। ନିଜ ଭାଷଣରେ ସନ୍ତୁଷ୍ଟ ହୋଇ ଡିଆଇଜି ମୋତେ କହିଲେ ତୁମେ କିଛି କହିବ? ମୁଁ କହିଲି ସେମାନେ ଯଥେଷ୍ଟ ଡରିଗଲେଣି। ଆମେ ଫେରିଲା ପରେ ଲୋଧା ସର୍ଦ୍ଦାର ଥାନା ବାବୁଙ୍କୁ କେତୋଟି ପ୍ରଶ୍ନ ପଚାରିଲେ ଯଥା ସେ ବାବୁମାନେ

କିଏ ? ପ୍ରଶ୍ନର ଉତ୍ତର ଡିଆଇଜି ଓ ଏସ୍‌ପି ବୋଲି ଦେବାରୁ ଦ୍ୱିତୀୟ ପ୍ରଶ୍ନ ଥିଲା ସେମାନେ ତୋଠୁ ବଡ଼ କି ? ଆଉ ଜଣେ ପଚାରିଲେ ସେ ମୋଟା ବାବୁଟା କିସ କଥା କହୁଥିଲା ? ଡିଆଇଜିଙ୍କ ବର୍ଦ୍ଧିତ ପେଟକୁ ବୋଧେ ସେ ଲକ୍ଷ୍ୟ କରିଥିଲା। ଡିଆଇଜିଙ୍କର 'ଚରମ ବାଣୀ' ସତ୍ତ୍ୱେ ଉପଦ୍ରବ ଲାଗିରହିଲା। ଲୋଧାମାନେ ମୟୂରଭଞ୍ଜ ଓ ମେଦିନ୍‌ପୁରରେ ସେମାନଙ୍କ ଉତ୍ପାତ ଜାରି ରଖିଲେ। କିନ୍ତୁ ସହିବାର ସୀମାଥାଏ। ଦିନେ କେତୋଟି ସାନ୍ତାଳୀ ଝିଅ ହାଟରୁ ଫେରୁଥିଲେ। ଲୋଧାମାନେ ଗୋଡ଼େଇବାରୁ କେତେଜଣ ପଳେଇଲେ ଓ ତିନିଜଣଙ୍କୁ ସେମାନେ ଧରିନେଲେ। ଏ ଘଟଣା ଘଟିଲା ଆମ ସୀମା ବାହାରେ କିନ୍ତୁ ଧରିନେଇଥିବା ଝିଅଗୁଡ଼ିକ ହେଲେ ଶୁଳିଆପଦାର ଶସାଷୋଳ ଗାଁର। ବାରମ୍ବାର ଧର୍ଷିତା ହୋଇ ସେ ତିନି ଜଣ ଫେରିଲେ ଗାଁକୁ। ଧନ ସମ୍ପତ୍ତି ଲୁଟ୍ ହେଲେ ସାନ୍ତାଳମାନେ ସହିବେ କିନ୍ତୁ ନାରୀ ଜାତି ପ୍ରତି ଅପମାନ କେବେ ଗ୍ରହଣ କରିପାରିବେ ନାହିଁ। ସେ ଦୃଷ୍ଟିରୁ ସେମାନଙ୍କର ମାନସିକତା ଆମ ଠାରୁ ଉନ୍ନତ। ସାଙ୍ଗେ ସାଙ୍ଗେ କେତେ ଖଣ୍ଡ ହଳଦୀରେ ଗଣ୍ଠି ପକେଇ ସବୁ ଗାଁକୁ ଖେଳେଇ ଦିଆଗଲା ଓ ଦିନ ସ୍ଥିର ହେଲା ଲୋଧା ଶିକାର କରାଯିବ। ଅର୍ଥାତ୍ ଲୋଧାଙ୍କୁ ଦେଖିଲା ମାତ୍ରେ ହତ୍ୟା କରାଯିବ। ଏଇ ଯୋଜନା ଅତ୍ୟନ୍ତ ଗୁପ୍ତ ଭାବେ କରାଯାଇଥିଲେ ମଧ୍ୟ ସତର୍କ; ଥାନାବାବୁ ଖବର ପାଇଗଲେ ଓ ସାଙ୍ଗେ ସାଙ୍ଗେ ସେ ମୋତେ ଦେଖାକରି ଏହାର ଗୁରୁତର ପରିଣାମ ବିଷୟରେ କହିଲେ। ମୁଁ ଅଫିସରଙ୍କୁ ଧରି ସାଙ୍ଗେ ସାଙ୍ଗେ ଶୁଳିଆପଦା ଗଲି ଓ ବିଭିନ୍ନ ସ୍ଥାନରେ ସ୍ୱତନ୍ତ୍ର ଶସ୍ତ୍ରଧାରୀ ପୋଲିସ ମୁତୟନ କରାଗଲା। ତାଙ୍କୁ କୁହାଗଲା ଯଦି ଗୋଟିଏ ବି ମର୍ଡ଼ର ହେବ ତୁମେ ଦାୟୀ ହେବ। ମେଦିନପୁର ଏସ୍‌ପିଙ୍କୁ ତାର ବାର୍ତ୍ତାରେ ତାଙ୍କ ଅଞ୍ଚଳରେ ଯଥେଷ୍ଟ ପ୍ରତିଷେଧକ ବ୍ୟବସ୍ଥା ନେବା ପାଇଁ ପରାମର୍ଶ ଦେଲି। ବାର୍ତ୍ତା ପାଇ ସେ ନୟାଗ୍ରାମ୍ ଅଫିସର ଇନ୍‌ଚାର୍ଜଙ୍କୁ ପଚାରିଲେ। ଅଫିସର ଇନ୍‌ଚାର୍ଜ କ'ଣ କହିବା ପୂର୍ବରୁ ତାଙ୍କ ବିଷୟରେ ପଦେ କହେ। ଥରେ ଶୁଳିଆ ପଦା ଅଫିସର ଇନ୍‌ଚାର୍ଜ ଆମ ଅଞ୍ଚଳରେ ଚୋରି କରିଥିବା ଦୁଇଜଣ ଚୋରଙ୍କୁ ଧରିବା ପାଇଁ ନୟାଗ୍ରାମ୍ ଥାନାରେ ପହଞ୍ଚିଲେ। କନେଷ୍ଟବଳ ଜଣକ ବସାଇ ସେମାନଙ୍କୁ ଚା' ଦେଲା ଓ ବାବୁ ଅର୍ଜେଣ୍ଟ କାମରେ ଯାଇଛନ୍ତି ଫେରୁଥିବେ ବୋଲି କହିଲେ। କିଛି ସମୟରେ ବାବୁ ଫେରିଲେ। ଗୋଟିଏ ହାତରେ ଧରିଥାନ୍ତି ବନ୍‌ଶୀକଣ୍ଟା ଓ ଆର ହାତରେ କିଛି ମାଛ। ମାଛତକ ଘରକୁ ପଠେଇ ଦେଇ ପଣ୍ଡା ବାବୁଙ୍କ ଠାରୁ ଆସିବାର ଉଦ୍ଦେଶ୍ୟ ଜାଣି କହିଲେ – 'ମୁଁ ଦେଖେ, ଏମ୍‌ଏଲ୍‌ଏ କ'ଣ କହୁଛନ୍ତି। ତାଙ୍କଠାରୁ ଅନୁମୋଦନ ନପାଇ ମୁଁ ଗିରଫ କରିପାରିବି ନାହିଁ। କେଜାଣେ ସେମାନେ ସିପିଏମ୍ କ୍ୟାଡ଼ରର ଲୋକ ହୋଇଥିବେ ?' ସେମାନେ ସିପିଏମ୍ ସମର୍ଥକ ହୋଇନଥିବାରୁ ବନ୍ଧାହୋଇ ଆସିଲେ। ସେଇ ବାବୁ ଏସ୍‌ପିଙ୍କୁ

ବୁଝେଇ ଦେଲେ ଯେ କିଛି ଗଣ୍ଡଗୋଳ ହେବାର ନାହିଁ। ପରିଣତି ହେଲା ଏଇଆ ଯେ ହଜାର ହଜାର ଓଡ଼ିଶା ଓ ବେଙ୍ଗଲର ସାନ୍ତାଳ ଲୋକେ ଲୋଧାମାନଙ୍କୁ ଘେରିଗଲେ। ପାତିନା ବୋଲି ଏକ ଗାଁରେ ଠିଆ କରି ତୀର ମାରିଲେ ଓ ୨୦୦ରୁ ଊର୍ଦ୍ଧ୍ୱ ଲୋଧା (ଛୋଟ ଛୁଆ ସମେତ)କୁ ପୋଡ଼ି ଦେଲେ। ଏ ଘଟଣା ସାରା ଦେଶରେ ଚାଞ୍ଚଲ୍ୟ ସୃଷ୍ଟି କଲା। ବେଙ୍ଗଲର ଆଇଜି ଓଡ଼ିଶା ଆଇଜି ଓ ହୋମ୍ ସେକ୍ରେଟେରୀଙ୍କୁ ନିମନ୍ତ୍ରଣ କଲେ ମିଟିଂକୁ। ଆଇଜି ମୋତେ ସାଙ୍ଗରେ ନେଲେ। ଶ୍ରୀ ନିଗମ୍, ପରେ ସେ ବେଙ୍ଗଲର ଡିଜି ହେଲେ ଓ ଏସ୍‌ପି ମେଦିନାପୁର ତାଙ୍କ ସଚ୍ଚୋଟତା ଓ ସ୍ପଷ୍ଟବାଦିତା ପାଇଁ ସେ ଧନ୍ୟବାଦର ପାତ୍ର କାରଣ ମିଟିଂରେ ସେ ସିଧାସଳଖ କହିଲେ ଯେ ବିବି ମିଶ୍ର ମୋତେ ଯଥେଷ୍ଟ ସତର୍କ କରିଥିଲେ କିନ୍ତୁ ମୋତେ ନୟାଗ୍ରାମ୍ ସବ୍‌ଇନ୍ସପେକ୍ଟର, ଇନ୍ସପେକ୍ଟର, ଏଏସ୍‌ପି ଲିଖିତ ପ୍ରତିଶ୍ରୁତି ଦେଲେ ଯେ କିଛି ହେବନାହିଁ। ସେମାନେ ସିପିଏମ୍ ବାଲାର ଆଶ୍ୱାସନାକୁ ବିଶ୍ୱାସ କରିବାରୁ ଏ ଘଟଣା ହେଲା। ମିଟିଂ ସ୍ଥାନରୁ ଆଇଜି, ଏସ୍‌ପି ଗଲେ ସିଏମ୍‌ଙ୍କ ରୁମ୍‌କୁ। ସିଏମ୍ ଜ୍ୟୋତି ବସୁ କେତେକ ଲୋକଙ୍କ ସଙ୍ଗେ ଫୋନ୍‌ରେ କଥାବାର୍ତ୍ତା କଲେ ଓ ଆଦେଶ ଦେଲେ ଯେ ଇନ୍ସପେକ୍ଟର, ସବ୍‌ଇନ୍ସପେକ୍ଟରଙ୍କୁ ସସ୍‌ପେଣ୍ଡ କର। ମୁଁ ଓଡ଼ିଶା ସରକାରଙ୍କଠାରୁ ଏକ ପ୍ରଶଂସା ପତ୍ର ପାଇଲି ଓ ମୋର ଅଫିସରମାନଙ୍କୁ ମୁଁ ପ୍ରଶଂସା କଲି। ପ୍ରଶଂସା ଜ୍ଞାନ ପରି ବାଣ୍ଟିଲେ ବଢ଼େ ସିନା କମେ ନାହିଁ। ଏ ଘଟଣା ମୋ' ଗଳ୍ପ ବହି 'ଶପଥ ସାନ୍ତାଳର'ରେ ସ୍ଥାନିତ ହୋଇଛି।

ବାରିପଦାରେ ମୋର ପରିଚୟ ହେଲା ଜଣେ ବିଚକ୍ଷଣ ଲୋକ, ଡକ୍ଟର ସତ୍ୟବାଦୀ ମିଶ୍ରଙ୍କ ସହିତ। ତାଙ୍କ ସହିତ ପୂର୍ବରୁ ଗୋଟିଏ ମିଟିଂରେ ଦେଖାହୋଇଥିଲା, କିନ୍ତୁ ଏକ ଘଟଣା ପରେ ତାଙ୍କ ପ୍ରତି ମୋର ସମ୍ମାନ ବଢ଼ିଗଲା। ଦିନେ ମୁଁ ସଦର ଥାନାରେ ବସି ବହୁଦିନ ପଡ଼ିରହିଥିବା କେସ୍‌ଗୁଡ଼ିକୁ ତନଖି କରୁଥିଲି ଓ ସେ ସମୟରେ ରାସ୍ତା ସେ ପାଖ କଲେଜରୁ ପିଲାମାନଙ୍କର ପ୍ରବଳ ହୋ ହା ଶବ୍ଦ ଶୁଭୁଥାଏ। ହଠାତ୍ ହୋ ହା ବନ୍ଦ ହୋଇଗଲା, ମୁଁ ବିସ୍ମିତ ହୋଇ କଲେଜ ଆଡ଼କୁ ଅନେଇଲି। କ'ଣ ହେଲା? ମୋର ଭୃକୁଞ୍ଚନ ଦେଖି ଇନ୍ସପେକ୍ଟର କହିଲେ 'ସାର୍ ପ୍ରିନ୍ସପାଲ ବୋଧହୁଏ ଆସିଗଲେ। ତାଙ୍କୁ ପିଲାଙ୍କର ମହା ଭୟ।' ଏମିତି କଥାବାର୍ତ୍ତା ହେଉଛି କିଛି ସମୟ ପରେ ଜଣେ ପିଲା ଆସିଲା ଓ ଅଫିସର ଇନ୍‌ଚାର୍ଜଙ୍କୁ କହିଲା 'ମୁଁ କେସ୍ କରିବି।' ମୁଁ ଡାକି ପଚାରିଲି 'କି କେସ୍ କିହୋ' ଓ ସେ ଉତ୍ତେଜିତ ସ୍ୱରରେ ଉତ୍ତର ଦେଲା 'ସାର୍ ଏଇଟା କ'ଣ ସ୍କୁଲ? ବାରଣ୍ଡାରେ ଟିକେ ବୁଲିଲେ ପ୍ରିନ୍ସପାଲ କାହିଁକି ଲାଇବ୍ରେରୀରେ ନପଢ଼ି ବୁଲୁଛ କହି ଚପୁଡ଼ା ମାରୁଛନ୍ତି? ଆଜି ମୋତେ ଚପୁଡ଼ାଏ ପକେଇଲେ ତାଙ୍କ ନାଁରେ କେସ୍ କରାଯାଉ।' ମୁଁ ସେ ପିଲାର ବାପାକୁ ଡକେଇଲି ଓ ସେ ସବୁକଥା ଶୁଣି ନିଆଁବାଣ।

ପୁଅର କାନକୁ ଧରି କହିଲେ 'କଲେଜରେ ପଶୁ ପଶୁ ନେତାଗିରି ?' ପ୍ରିନ୍ସପାଲ ତ ମାରିଲେ, କ'ଣ ତୋ' ଶତ୍ରୁ ମାରିଲା ? ସେଦିନ ସନ୍ଧ୍ୟା ବେଳେ ପ୍ରିନ୍ସପାଲଙ୍କ ଘରକୁ ଗଲି। ବାରଣ୍ଡାରେ ବସି ସେ ଉପନିଷଦ ଉପରେ ଲେଖୁଥିଲେ। ଉଚ୍ଚତା କମ୍, ଗୋରା ତକ୍ ତକ୍ ଚେହେରା। ସବୁ ବେଳେ ପିନ୍ଧନ୍ତି ଧୋବ ଫର ଫର ଧୋତି ଓ ପଞ୍ଜାବୀ ଓ ପାନ ଖଣ୍ଡିଏ ଖଣ୍ଡିଏ ଖାଆନ୍ତି। କାନକୁ ଭଲ ଶୁଭେ ନାହିଁ ବୋଲି କାନରେ ଶୁଭିବା ଯନ୍ତ୍ରଟିଏ ଲଗାନ୍ତି। ବେଟେରୀଟି ଥାଏ ଛାତି ପକେଟ୍‌ରେ। ମନ୍ତ୍ରୀ ଇତ୍ୟାଦି ମିଟିଂକୁ ଡକେଇଲେ ଆସନ୍ତି ଓ ବେଟେରୀଟି ଅଫ୍ କରିଦେଇ ବସିଥାନ୍ତି। ସେ ମୋତେ ବାରମ୍ବାର କଲେଜରେ ଉତ୍ସବକୁ ମୁଖ୍ୟଅତିଥି ଭାବେ ଡାକନ୍ତି। ଥରେ କଟକରେ ଜଣେ ଛାତ୍ର ଗିରଫ ହେବାର ପ୍ରତିବାଦରେ ସାରା ଓଡ଼ିଶାରେ ଛାତ୍ରମାନେ ଏକ ଦିନିଆ ପ୍ରତିବାଦ ଧର୍ମଘଟ କରିଥାନ୍ତି ଓ ସେଇଦିନ କଲେଜର ମଧ ବାର୍ଷିକ ଉତ୍ସବ ଓ ମୁଁ ମୁଖ୍ୟଅତିଥି। ସକାଳେ ଛାତ୍ରମାନେ କଲେକ୍ଟରେଟ୍ ସାମନାରେ ରୁଣ୍ଡ ହୋଇ 'ବିଚାର ବିଭାଗ ତଦନ୍ତ ହେଉ', 'ପୋଲିସ ଜୁଲମ ବନ୍ଦ ହେଉ' 'ପୋଲିସ ଅଫିସର ସସ୍‌ପେଣ୍ଡ ହୁଅନ୍ତୁ' ଇତ୍ୟାଦି ସ୍ଲୋଗାନ ବହୁତ ସମୟ ପର୍ଯ୍ୟନ୍ତ ଦେଲେ। ଖାଇବା ସମୟ ହେବାରୁ ଯେଝା ବାଟରେ ଗଲେ। ପୋଲିସ ସାଙ୍ଗେ ମୁହାଁମୁହିଁ ହେଲେ ସିନା କିନ୍ତୁ ଲଢ଼େଇ ହୋଇନାହିଁ। ମୋତେ ସ୍ପେଶାଲ ବ୍ରାଞ୍ଚ ଅଫିସର ଆସି କହିଲେ ଯେ ଏ ପରିସ୍ଥିତିରେ ବାର୍ଷିକ ଉତ୍ସବ ତ ହେବନାହିଁ, ଯଦି ହେବ ଆପଣ ଗଲେ ଆପଣଙ୍କ ଉପରେ ଆକ୍ରମଣ ହେବ। ନିଷ୍ପତ୍ତି ନେବା ପୂର୍ବରୁ ପ୍ରିନ୍ସପାଲଙ୍କୁ ଫୋନ୍ କରିବାକୁ ଉଚିତ୍ ମନେକଲି। ତାଙ୍କର ପ୍ରତ୍ୟେକ ଶବ୍ଦ ମନେଅଛି। 'ସକାଳେ ପିଲାମାନେ ଯାହା କଲେ ସେଇଟା ହେଲା ରାଜନୀତି। ସନ୍ଧ୍ୟା ବେଳେ ସାଂସ୍କୃତିକ କାର୍ଯ୍ୟକ୍ରମ। ରାଜନୀତି ସାଙ୍ଗେ ସଂସ୍କୃତିର ସମ୍ବନ୍ଧ କ'ଣ ? ଆପଣ ଆସିବେ ପୋଲିସ ନନେଇ।' ସନ୍ଧ୍ୟା ବେଳେ ପ୍ରିନ୍ସପାଲ ଓ ମୁଁ ଏକା ସଙ୍ଗରେ ଗଲୁ। ଛାତ୍ରମାନେ ପୁରାପୁରି ଶୃଙ୍ଖଳିତ, ରାତି ୧୦.୩୦ ପର୍ଯ୍ୟନ୍ତ କାର୍ଯ୍ୟକ୍ରମ ଚାଲୁରହିଲା। ଡକ୍ଟର ମିଶ୍ରଙ୍କର ଆଉ ଏକ ଅବଦାନ କହୁଛି। ୧୯୭୯ରେ ସାରା ଭାରତରେ ପୋଲିସ ଧର୍ମଘଟ ହେଲା। ଓଡ଼ିଶାରେ ଧର୍ମଘଟ କରାଗଲା ଠିକ୍ ରଥଯାତ୍ରା ସମୟକୁ ଦେଖି। କଲେକ୍ଟର ଓ ମୁଁ ମୁଣ୍ଡରେ ହାତ ଦେଇ ବସିଲୁ। ଯେତେ ସମ୍ଭବ ଫରେଷ୍ଟଗାର୍ଡ଼ ଓ ଏକ୍ସାଇଜ୍ କନେଷ୍ଟବଲ ଓ ହୋମଗାର୍ଡ଼ଙ୍କୁ ଅଣାଗଲା। ଅନେକ ସ୍ୱେଚ୍ଛାସେବୀ ଆସିଲେ କିନ୍ତୁ ମୁଖ୍ୟ ଭୂମିକା ଗ୍ରହଣ କଲେ ଡକ୍ଟର ମିଶ୍ର। ସବୁ ଏନ୍‌ସିସି ଛାତ୍ରଙ୍କୁ ଡକେଇ ନିର୍ଦ୍ଦେଶ ଦେଲେ ଯାଅ ଏସ୍‌ପି ସାହେବଙ୍କ ନିର୍ଦ୍ଦେଶରେ କାମ କରିବ। ପାଠକମାନେ ଜାଣିଥିବେ ଯେ ବାରିପଦାରେ ରଥଯାତ୍ରା ୩ ଦିନ ହୁଏ ଓ ଗୁରୁତ୍ୱ ଦୃଷ୍ଟିରୁ ଏହା ସବୁଠାରୁ ଉଚ୍ଚରେ, କେବଳ ପୁରୀ ରଥଯାତ୍ରାକୁ ଛାଡ଼ି। ହୋମ୍‌ଗାର୍ଡ଼, ଫାୟାରମ୍ୟାନ୍, ଏନ୍‌ସିସି, ଏକ୍‌ସାଇଜ କନେଷ୍ଟବଲ, ଫରେଷ୍ଟଗାର୍ଡ଼ ଓ

ସ୍ୱେଚ୍ଛାସେବୀଙ୍କୁ ନେଇ ଆମେ ରଥ ଯାତ୍ରା କଲୁ। ଜ୍ଞାନୀ ଗୁଣୀ ସୁବକ୍ତା ଓ ଦୃଢ଼ ପ୍ରଶାସକ ଡକ୍ଟର ସତ୍ୟବାଦୀ ମିଶ୍ର (ଆଉ ନାହାଁନ୍ତି)ଙ୍କ ପ୍ରତି ମୋର ସବୁଦିନେ ସମ୍ମାନ। ରଥଯାତ୍ରା ଠିକ୍ ଭାବେ ଚଳେଇଥିବାରୁ ଓ ପୋଲିସ ଧର୍ମଘଟ ଯୋଗୁ ହୋଇଥିବା ସମସ୍ୟାକୁ ସାମନା କରିଥିବାରୁ ସରକାରଙ୍କ ଠାରୁ ପ୍ରଶଂସା ପତ୍ର ମିଳିଥିଲା। ମୁଁ ଥିବା ସମୟରେ କଲେକ୍ଟର ଥିଲେ ଅମୀୟ ଶଙ୍କର ରାୟ ଓ ତା'ପରେ ପ୍ରଫୁଲ୍ଲ ପଣ୍ଡା। ଉଭୟ ମୂଳତଃ ଡେ଼ପୁଟି କଲେକ୍ଟର, ପରେ ପଦୋନ୍ନତି ପାଇ ଆଇଏଏସ ହେଲେ। ତେଣୁ ଅଭିଜ୍ଞ ଓ ଧୀରସ୍ଥିର। ଟୋକାଙ୍କ ପରି ହୁଙ୍କା ପିଟା ଅବଲମ୍ୱନ କରନ୍ତି ନାହିଁ।

ମୁଁ ଥିବା ସମୟରେ ବିଜୁ ବାବୁ ଦୁଇ ଥର ଆସିଥିଲେ। ତାଙ୍କର ବଡ଼ିଭୋରରୁ ଶରୀର ମର୍ଦ୍ଦନ ଦରକାର। ପୋଲିସ ଭଣ୍ଡାରୀକୁ ଡକେଇ ପଠେଇଲେ ଓ ଗଳାବେଳକୁ ପଞ୍ଜାବୀର ବାଁ ପକେଟ୍‌ରେ ହାତ ପୁରେଇ ପୁଳାଏ ନୋଟ୍ ବାହାର କରି ଧରେଇ ଦେଲେ। ତାଙ୍କ ଗାଡ଼ି କେତେବେଳୁ ଗଲାଣି ଓ ଭଣ୍ଡାରୀ ଟଙ୍କା ଗଣି ଚାଲିଥାଏ। ଟଙ୍କା ମିଳିଲା ୭ ଶହ ଉପରେ କିନ୍ତୁ ବିଜୁ ବାବୁଙ୍କ ଲୁହା ଭଳିଆ ଦେହକୁ ମର୍ଦ୍ଦନ କରି ତା' ଆଙ୍ଗୁଠି ଏପରି ପରାଶ ହେଲା ଯେ ସେ ଦୁଇଦିନ ଛୁଟିରେ ରହିଲା।

ବିଜୁ ବାବୁ ଓ ନୀଳମଣି ରାଉତରାୟ ଆସିଲେ ଯଶୀପୁର ପାଖରେ ଶିମିଳିପାଳ ଉନ୍ନୟନ ପରିଷଦ ଅଫିସ ଉଦ୍‌ଘାଟନ ପାଇଁ। ନୀଳମଣି ବାବୁ କାର୍ଯ୍ୟକ୍ରମ ମୁତାବକ ଆସିଲେ ହେଲିକପ୍ଟରରେ ଓ ରାଇରଙ୍ଗପୁରରେ ଓହ୍ଲାଇଲେ। ବିଜୁ ବାବୁଙ୍କ କାର୍ଯ୍ୟକ୍ରମର କିଛି ଠିକଣା ନାହିଁ। ଥରେ ଖବର ଆସିଲା ଯେ କେଉଁଝର, କରଞ୍ଜିଆ ଦେଇ ଆସିବେ ପୁଣି ଥରେ ଖବର ଆସିଲା ଉଦଳା ଦେଇ ମଧ୍ୟ ଆସିପାରନ୍ତି। ଶେଷରେ ସେ ଉଦଳା ଦେଇଆସିଲେ ଓ ଉଦଳା ପୂର୍ତ୍ତ ବିଭାଗ ବଙ୍ଗଳା ବାରଣ୍ଡାରେ ବସି ଖାଇଲେ। ଖାଉଛନ୍ତି ରିକ୍‌ସାରେ ୨ ରୁ ୩ ଜଣ କଂଗ୍ରେସ ବାଲା ମାଇକ୍ ଖଞ୍ଜି କିଛି ଦୂରରେ ଇନ୍ଦିରାଗାନ୍ଧୀ ଜିନ୍ଦାବାଦ୍ ବିଜୁ ପଟ୍ଟନାୟକ ଡାଉନ୍ ଡାଉନ୍ ସ୍ଲୋଗାନ୍ ଦେଲେ। ଖାଇବା ଜାଗାରୁ ଉଠିପଡ଼ି ବିଜୁ ବାବୁ ଅରଣା ମଇଁଷି ପରି ଚାଲିଲେ ସେମାନଙ୍କ ଆଡ଼କୁ ଓ ତାଙ୍କୁ ପଚାରିଲେ 'ତମେ କଂଗ୍ରେସ ବାଲା ଯାହାର ଜିନ୍ଦାବାଦ କରୁଛ ସେ କଂଗ୍ରେସରେ ପଶିବାର ବହୁ ପୂର୍ବରୁ ମୁଁ କଂଗ୍ରେସରେ ଥିଲି। ଯିବ କି ନାହିଁ?' ଏତିକିରେ ସେ ଲୋକମାନେ ରିକ୍‌ସାରୁ ଖପ୍‌ଖାପ୍ ଡେଇଁ ଛୁ। ଏଣେ ଯଶିପୁରରେ ଓକିଲ କାଳିପ୍ରସାଦ ମିଶ୍ରଙ୍କ ନେତୃତ୍ୱରେ କଂଗ୍ରେସବାଲା ଜଗିଛନ୍ତି ବିଜୁବାବୁଙ୍କୁ ମିଟିଂ ସ୍ଥଳକୁ ଯିବାରେ ବାଧା ଦେବେ। ଯଶୀପୁର ବଙ୍ଗଳାରୁ ଓହ୍ଲାଇପଡ଼ି ବିଜୁବାବୁ ବହୁସଂଖ୍ୟାରେ ପୋଲିସ ଦେଖି ମୋତେ ଓ କଲେକ୍ଟରଙ୍କୁ କହିଲେ ୫ ମିନିଟ୍ ମଧ୍ୟରେ ସବୁ ପୋଲିସ ଫେରେଇ ନିଅ। ଆମେ ଦୁଇଜଣ ନୀଳମଣି ରାଉରାୟଙ୍କୁ ପଚାରିଲୁ ଓ ସେ ହଁ କି ନା ନ କହି ମୁରୁକି ହସାଟେ

ଦେଲେ ଓ ଆମକୁ ଉପଦେଶ ଦେଲେ 'ଓଃ ବିଜୁବାବୁଙ୍କ ସାମନାକୁ ନଗଲେ ହେଲା, ଆଉ କ'ଣ ? ' ମିଟିଂ ସ୍ଥାନକୁ ଯିବା ବେଳକୁ ବାଟରେ ପୁଣି କେତେକ କଂଗ୍ରେସ ବାଲା ବିଜୁ ପଟ୍ଟନାୟକ ମୁର୍ଦ୍ଦାବାଦ ସ୍ଲୋଗାନ ଦେଲେ। ଆମ କଥା ନମାନି ବିଜୁ ବାବୁ ସେମାନଙ୍କ ପାଖକୁ ଯାଇ ଯୁକ୍ତିତର୍କ କରିବାରୁ ସେମାନେ ତାଙ୍କ ପଞ୍ଜାବୀ ଚିରିଦେଲେ କିନ୍ତୁ ବିଜୁ ବାବୁ ହାତ ଛିଞ୍ଚାଡ଼ି ଦେବାରୁ ଯିଏ ଯୁଆଡ଼େ ପଳେଇଲେ। ଗାଡ଼ିରୁ ଫେରିଆସି ଗେଷ୍ଟ ହାଉସକୁ ଚାଲିଲେ ଓ ପଞ୍ଜାବୀ ବଦଳେଇ ମିଟିଂ ଜାଗାକୁ ଗଲେ। ସେ ହେଲିକପ୍ଟରରେ ଚଢ଼ିବା ପୂର୍ବରୁ ମୁଁ ମୁଖ୍ୟମନ୍ତ୍ରୀଙ୍କୁ ପଚାରିଲି 'ସାର୍ କେସ୍ ହେବ କି ?' ଏକଥା ଶୁଣିପାରି ବିଜୁ ବାବୁ ମୋତେ ପଚାରିଲେ 'ହ୍ୱାଟ୍ କେସ୍ ?' ସେ ଟୋକାଗୁଡ଼ାଙ୍କ ଉପରେ କିଛି ଆକ୍ସନ ନେବନି।' ବିଜୁ ବାବୁ ସବୁଦିନେ ଇମିତି।

୧୯୮୦ ମସିହା ସଂସଦ ନିର୍ବାଚନ ପରେ ମୋର ବଦଳି ହେଲା ମୟୂରଭଞ୍ଜରୁ କୋରାପୁଟ। ଏତେ ଶୀଘ୍ର ବଦଳି ହେବା କଥା ନୁହେଁ କିନ୍ତୁ ବଦଳିର ସ୍ୱତନ୍ତ୍ର କାରଣ ଥିଲା। ଚରଣ ସିଂହ ସରକାରଙ୍କ ପତନ ପରେ ସଂସଦ ପାଇଁ ନିର୍ବାଚନ ହେଲା ଓ ନିର୍ବାଚନ ପ୍ରଚାର ପାଇଁ କାମଚଳା ପ୍ରଧାନମନ୍ତ୍ରୀ ଚରଣ ସିଂହ ବାରିପଦା ଆସିବାର କାର୍ଯ୍ୟକ୍ରମ ଥିଲା। ଜଣେ ମନ୍ତ୍ରୀ ମୋତେ ସର୍କିଟ୍ ହାଉସ୍କୁ ଡକେଇଲେ। ତାଙ୍କ ସାଙ୍ଗରେ ଥିଲେ ଆଉ ଜଣେ ମନ୍ତ୍ରୀ, ଜଣେ ଏମ୍‌ପି ଓ ଚାରି ପାଞ୍ଚ ଜଣ ଏମ୍‌ଏଲ୍‌ଏ। ପହଞ୍ଚିବା ମାତ୍ରେ ମନ୍ତ୍ରୀ ଆରମ୍ଭ କଲେ 'ପ୍ରଧାନମନ୍ତ୍ରୀ ଆସିବା କଥା ତ ଆପଣ ଜାଣିଥିବେ, ଆମେ ଚାହୁଁଛୁ ପୋଲିସ ପ୍ୟାରେଡ଼ ଗ୍ରାଉଣ୍ଡରେ ସଭା ହେଉ।' ମୁଁ କହିଲି ଯେ ସରକାରୀ ସ୍ଥାନରେ ନିର୍ବାଚନ ପ୍ରଚାର ହୋଇପାରିବ ନାହିଁ ବୋଲି ସରକାରୀ ଆଦେଶ ଅଛି, ସଭା ପାଇଁ ସର୍କିଟ୍ ହାଉସର କିଛି ଦୂରରେ ମିଟିଂ ସ୍ଥାନ ଅଛି ସେଇଠି ମିଟିଂ କରନ୍ତୁ। ଏତିକିରେ ଉତ୍‌କ୍ଷିପ୍ତ ହୋଇ ଏମ୍‌ପି କହିଲେ 'ଏସ୍‌ପି ସାହେବ, ଆପଣ ଏମିତି କଥାବାର୍ତ୍ତା କରୁଛନ୍ତି, ଯିଏ ଶୁଣିବ ଭାବିବ ଯେ ପୋଲିସ ପ୍ୟାରେଡ଼ ଗ୍ରାଉଣ୍ଡଟା ଆପଣଙ୍କର।' ମୁଁ ଧୀରସ୍ଥିର ଭାବେ କହିଲି 'ମୋର ଯଦି ଆବଶ୍ୟକତା ନାହିଁ ତା'ହେଲେ ମୋ' ସଙ୍ଗେ କାହିଁକି ଆଲୋଚନା କରୁଛନ୍ତି ?' ସମସ୍ତଙ୍କୁ ଶାନ୍ତ କରି ମନ୍ତ୍ରୀ କହିଲେ 'ଆମକୁ କିଛି ଆଇଡିଆ ଦିଅନ୍ତୁ' ଓ ମୁଁ ପ୍ରସ୍ତାବ ଦେଲି ଆପଣ ହୋମ୍ ଡିପାର୍ଟମେଣ୍ଟରୁ ଅନୁମୋଦନ ଆଣନ୍ତୁ। ଦୁଇ ଦିନ ମଧ୍ୟରେ ହୋମ୍ ଡିପାର୍ଟମେଣ୍ଟରୁ ଇଂରେଜୀରେ ବେତାର ବାର୍ତ୍ତା ଆସିଲା ଯାହାର ଓଡ଼ିଆ ଅର୍ଥ ହେଉଛି ଏପରି 'ସମସ୍ତ ପ୍ରଚଳିତ ଆଦେଶକୁ ଦୃଷ୍ଟିରେ ରଖି ଜନତା ଦଳର ଅନୁରୋଧପତ୍ରରୁ ସକରାତ୍ମକ ଭାବରେ ବିଚାର କରନ୍ତୁ।' ସେତେବେଳେ ହୋମ୍ ସେକ୍ରେଟେରୀ ଥିଲେ କବି ସୀତାକାନ୍ତ ମହାପାତ୍ର ଓ ଏଭଳି ସୁନ୍ଦର ଶବ୍ଦ ଯୋଜନାରେ ତାଙ୍କର ହାତନଥିବ ବୋଲି ମୋର ବିଶ୍ୱାସ । ଇଆଡ଼େ ମନ୍ତ୍ରୀଙ୍କୁ ହୋମ୍ ଡିପାର୍ଟମେଣ୍ଟ

ବାଲା କହିଦେଲେ ଯେ ଆମେ ଏସ୍‌ପିଙ୍କୁ ଆଦେଶ ଦେଇଦେଇଛୁ। ମନ୍ତ୍ରୀ ପୁଣି ଡକେଇଲେ ଓ ମୁଁ ତାଙ୍କୁ ଟେଲିଗ୍ରାମ୍ ଦେଖେଇ କହିଲି ଇଏ ଆଦେଶ ନୁହେଁ ବରଂ ଲୁଚକାଳି ଖେଳ। ମୁଁ ପୋଲିସ ପ୍ୟାରେଡ଼ ଗ୍ରାଉଣ୍ଡ ଦେଇ ପାରିବି ନାହିଁ। ଯଦି ଦେବି ତେବେ ପଛକୁ ପଛ ଆସୁଥିବା ଇନ୍ଦିରାଗାନ୍ଧି ଓ ମୋରାରାଜୀ ଦେଶାଇଙ୍କୁ ମଧ ଦେବାକୁ ପଡ଼ିବ।

ନିର୍ବାଚନରେ ଜନତା ଦଳ ଶୋଚନୀୟ ଭାବେ ହାରିଲା ଓ ମୟୂରଭଞ୍ଜ ହାରିବାର ଏକ ମୁଖ୍ୟକାରଣ ମୁଁ ବୋଲି ଜିଲ୍ଲା ଜନତା ଦଳ ମୁଖ୍ୟମନ୍ତ୍ରୀଙ୍କ ନିକଟରେ ଫେରାଦ ହେଲେ ଓ ମୋର ବଦଳି ହେଲା କୋରାପୁଟ୍। ଆଦେଶ ପାଇ ଜିନିଷପତ୍ର ସଙ୍ଗେ ସଙ୍ଗେ ବନ୍ଧାବନ୍ଧି କଲୁ। ଦାୟିତ୍ୱ ହସ୍ତାନ୍ତର କରିଦେଇ ଜିନିଷ ପଠେଇଲି ଓ କାର୍‌ରେ ଚାଲିଲି କୋରାପୁଟ। ବାଟରେ ଭୁବନେଶ୍ୱର ରସୁଲଗଡ଼ ଛକରେ ଜଣେ ସବ୍‌ଇନ୍‌ସପେକ୍ଟର ମୋ' ଗାଡ଼ି ଅଟକେଇ ମୋତେ କହିଲେ 'ସାର୍ ମୁଖ୍ୟମନ୍ତ୍ରୀଙ୍କ ଅଫିସରୁ ଖବର ଆସିଛି ଯେ ଆପଣ ମୟୂରଭଞ୍ଜରେ ପୁଣି ରହିବେ।' ଭାବିଲି ମଣିଷ କି ହରଡ଼ ଘଣାରେ ପଡ଼ିଲା। ଜିନିଷ ପଠେଇ ସାରିଲିଣି ତାକୁ ଫେରେଇ ଆଣିବାକୁ ପଡ଼ିବ । ମୟୂରଭଞ୍ଜରେ ବିରାଟ ବିଦାୟ ସମ୍ବର୍ଦ୍ଧନା ପାଇ ଆସିଲି ଓ ପ୍ରୋସେସନରେ ବହୁତ ନାଗରିକ ଥିଲେ। ପୁଣି ଯଦି ଫେରିଯିବି, ସମସ୍ତେ ଭାବିବେ ମୁଁ ଧରାଧରି କରି ଆଦେଶକୁ ନେଇ ଆସିଛି। ଥରେ ନାକ କଟିଗଲେ ସୂର୍ପଣଖା ପରି ସବୁଦିନେ ହାସ୍ୟର ପାତ୍ର ହେବି। ସେ ସବ୍‌ଇନ୍‌ସପେକ୍ଟରକୁ କହିଲି - 'ମୋ' ପାଇଁ ଗୋଟେ କାମ କରିବ? ଖବର ଦେଇଦେବ ଯେ ମୋ' ଗାଡ଼ିକୁ ତୁମେ ଦେଖିପାରିଲ ନାହିଁ।' ମୁଁ ବରହମ୍‌ପୁର ସର୍କିଟ୍ ହାଉସରେ ରହିବା ପରିବର୍ତ୍ତେ ଜଣେ ଆତ୍ମୀୟଙ୍କ ଘରେ ରହିଲି ଓ ତା' ଆରଦିନ ବଡ଼ିଭୋରରୁ କୋରାପୁଟ ଅଭିମୁଖେ ଯାତ୍ରା କଲି। ବାଟସାରା ପିଲାମାନେ ପଚାରୁଥାନ୍ତି - କୋରାପୁଟ କ'ଣ ଭଲ? ବାରିପଦା ପରି ହବ କି? ସେ ସମୟର କୋରାପୁଟ ବିଷୟରେ ମୁଁ କ'ଣ ବା କହିଥାନ୍ତି?

୧୯୬୩ ମସିହାରେ କୋରାପୁଟ୍ ଯାଇଥିଲୁ, ସେତେବେଳେ ଜୁନ୍ ମାସରେ ମଧ କମ୍ବଳ ଘୋଡ଼େଇ ହେବାକୁ ପଡୁଥିଲା, ସହରର ଚାରିପଟେ ଗଛରେ ଭରା ପାହାଡ଼, ଆଡ଼ିସନାଲ ଏସ୍‌ପିଙ୍କ କ୍ୱାଟରର ବୁଦା ଓ ଝାଟି ସଫା କଲା ବେଳକୁ ପେଣ୍ଡରା ବାଘଟେ ଦୌଡ଼ି ପଳାଇଲା। ସନ୍ଧ୍ୟା ବେଳେ ଶୋଇବା ଘରେ ନିଆଁ ଲଗେଇ ଶେକି ହେବା କଥା। ୭୩ ମସିହାରେ ଯାଇଥିଲି, କୋରାପୁଟ। ସେତେବେଳକୁ ପାହାଡ଼ଗୁଡ଼ିକ ବୁଦ୍ଧ ଭିକ୍ଷୁଙ୍କ ପରି ଲଣ୍ଡିତ, ରୁମ୍‌ରେ ପଙ୍ଖା ଓ ରାତ୍ରିରେ ବାରଣ୍ଡାରେ ବସିବା ସମ୍ପୂର୍ଣ୍ଣ ନିରାପଦ ଥିଲା। ଏବେ ଯାଉଛି ୧୯୮୦ ମସିହାରେ। ଅବସ୍ଥା କ'ଣ ହୋଇଥିବ କେଜାଣେ। ପଣ୍ଡିତ

ଜବାହାର ଲାଲ୍ ନେହେରୁ ୧୯୫୪ରେ ଚୀନ୍ ଦେଶରୁ ଫେରିବା ସମୟରେ ମନ୍ତବ୍ୟ ଦେଇଥିଲେ ' ମୋ' ହୃଦୟର ଏକ ଅଂଶ ମୁଁ ଛାଡ଼ିଦେଇ ଯାଉଛି।' ମୁଁ ତାଙ୍କର ଉଦାହରଣ ନଦେଇ ଯଦି ସେମିତି କହିଥାନ୍ତି ଯେ ମୋ' ହୃଦୟର ଏକ ଅଂଶ ମୁଁ ମୟୂରଭଞ୍ଜ ଜିଲ୍ଲାରେ ଛାଡ଼ିଦେଇ ଆସିଛି ତେବେ (କ୍ଷମା କରିବେ)। ଅଧିକାଂଶ ପାଠକେ ମୋ' ଚୋରିକୁ ଧରିପାରିନଥାନ୍ତେ। ସାହିତ୍ୟରେ ସବୁଦିନେ ଚୋରି ହେଉଛି, ଅଳ୍ପ କେତେ ଜଣ ଚୋରି ଜାଣିପାରିଲେ ମଧ୍ୟ ଭଦ୍ରତା ଖାତିରିରେ ଚୁପ୍ ରହୁଛନ୍ତି। ହଁ, ପ୍ରକୃତରେ ମୋ' ହୃଦୟର କିଛି ଅଂଶ ଛାଡ଼ିଦେଇ ଆସିଲି। ମୟୂରଭଞ୍ଜ ହେଉଛି ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ପରମାନନ୍ଦ ଆଚାର୍ଯ୍ୟ, ସାହିତ୍ୟିକ ବସନ୍ତ ଶତପଥି ଓ ସାତକଡ଼ି ହୋତା, ସଙ୍ଗୀତଜ୍ଞ ରାଧାକୃଷ୍ଣ ଭଞ୍ଜ, ପୃଥିବୀ ପ୍ରସିଦ୍ଧ କଳାକାର ଯତୀନ ଦାସଙ୍କ ଜିଲ୍ଲା। ତାଙ୍କ ଝିଅ ବିଶିଷ୍ଟ କଳାକାର ନନ୍ଦିତା ଦାସ ସେତେବେଳେ ଜନ୍ମ ହୋଇଥିଲେ କି ନାହିଁ ମୁଁ ଜାଣିନାହିଁ। ମୟୂରଭଞ୍ଜର ରାଜ ପରିବାର ବଂଶାନୁକ୍ରମେ ଓଡ଼ିଶାକୁ ଯାହା ଦେଇଛନ୍ତି ତା'ର ପ୍ରତିଦାନରେ ତିଳାଂଶେ ବି ପାଇନାହାଁନ୍ତି। ରେଭେନ୍‌ସା କଲେଜ କୁହନ୍ତୁ କଟକ ମେଡ଼ିକାଲ କଲେଜ, କଟକରେ ସାଂସ୍କୃତିକ ହଲ୍ ସବୁଠି ମୟୂରଭଞ୍ଜ ରାଜ ପରିବାରର ମୁହଁ ଦେଖିବାକୁ ମିଳେ। ବିଖ୍ୟାତ ଜୁବୁଲି ଲାଇବ୍ରେରୀର ଖାତାରେ ମହାରାଜା ବହିନେଲା ବେଳେ ଇସୁ ରେଜିଷ୍ଟରରେ ଦସ୍ତଖତ କରିନେଉଥିଲେ। ରାଜ୍ୟରେ ହାଇକୋର୍ଟ କରିଥିଲେ ଅଡ଼ିଟ୍ ପାଇଁ ଜଣେ ଏ.ଜି ରଖିଥିଲେ। ବ୍ୟକ୍ତିଗତ କାର୍ଯ୍ୟରେ ଗଲେ ଟ୍ରେନ୍‌ରେ ପ୍ରଥମ ଶ୍ରେଣୀରେ ଯାଉଥିଲେ କିନ୍ତୁ ସରକାରୀ କାର୍ଯ୍ୟରେ ଗଲେ ତୃତୀୟ ଶ୍ରେଣୀ। ସେଇଥିପାଇଁ ୧୯୩୬ ମସିହାରେ କଂଗ୍ରେସ ଦଳ ଗଠନ କରିଥିବା ସାରଙ୍ଗଧର ଦାସ କମିଟି ବିଭିନ୍ନ ଗଡ଼ଜାତର ଶାସନ ବିଷୟରେ ନାନାଦି କଟୁ ମନ୍ତବ୍ୟ ଦେଇଛନ୍ତି, ବଲାଙ୍ଗୀର ରାଜ୍ୟକୁ ମୃଦୁ ଭର୍ତ୍ସନା କରିଛନ୍ତି। କିନ୍ତୁ ମୟୂରଭଞ୍ଜ ବିଷୟରେ ପଦେବି ଲେଖିନାହାଁନ୍ତି। ଅନେକ କହନ୍ତି ଯେମିତି ପ୍ରଜା ସେମିତି ରଜା କିନ୍ତୁ ଆଉ କେତେକ କହନ୍ତି (ଯାହାକି ଅଧିକ ଗ୍ରହଣୀୟ) ଯେମିତି ରାଜା ସେମିତି ପ୍ରଜା। ମୟୂରଭଞ୍ଜରେ ରାଜାମାନଙ୍କର ମହାନୁଭବତାର ଛାପ ପଡ଼ିଛି ପ୍ରଜାଙ୍କ ଉପରେ। ଯୁଆଡ଼େ ଯାଇଛି ଦେଖିଛି ବନ୍ଧୁତାର ହସ ଓ୍ ସଂସ୍କୃତିର ଛାୟା। ଏହା ଏପରି ଏକ ଜିଲ୍ଲା ଯେଉଁ ସ୍ଥାନକୁ ବାରମ୍ବାର ଯିବା ପାଇଁ ଇଚ୍ଛା ହୁଏ। ମୋର ମୟୂରଭଞ୍ଜରୁ ବଦଳି ହେଲା କୋରାପୁଟ, ଓଡ଼ିଶାର ଉତ୍ତର ସୀମାରୁ ଦକ୍ଷିଣ ସୀମାକୁ। ମୋତେ ଦିଆଯାଇଥିବା ବିଦାୟ ସମ୍ବର୍ଦ୍ଧନାରେ କଲେକ୍ଟର ଜିଲ୍ଲା ଜଜ୍ ମୋ' ସଙ୍ଗେ ତାଙ୍କର ଉତ୍ତମ ସମ୍ପର୍କ ଓ ପୋଲିସ ଶାସନ କିଭଳି ସୁରୁଖୁରୁରେ ଚାଲିଥିଲା ସେସବୁ କହିଲେ। କିନ୍ତୁ ଡକ୍ଟର ସତ୍ୟବାଦୀ ମିଶ୍ର ଆବେଗପୂର୍ଣ୍ଣ ଭାଷାରେ କହୁ କହୁ ଭାବପ୍ରବଣ ହୋଇଗଲେ ଓ ମନ୍ତବ୍ୟ ଦେଲେ 'ଇଏ କି ବଦଳି ? '

ଯାହା ଜଣାଯାଉଛି ଶାସନ ଭୁଲ୍ ହାତରେ ଅଛି, ମାଙ୍କଡ଼ ହାତରେ ଶାଳଗ୍ରାମ ପଡ଼ିଛି।' ଆଉ କିଛି କହିଥାନ୍ତେ ମୁଁ ଇସାରା କରିବାରୁ କ୍ଷାନ୍ତ ହେଲେ। ଡକ୍ଟର ମିଶ୍ର ସ୍ପଷ୍ଟବାଦୀ ଯାହା ଉଚିତ୍ ମନେ କରନ୍ତି ତାହା କହନ୍ତି କିନ୍ତୁ କଲେକ୍ଟର, ଏସ୍‌ପି, ଜିଲ୍ଲାଜଜ୍ ଓ ବହୁତ ପୋଲିସ ଅଫିସର ମାଜିଷ୍ଟ୍ରେଟ୍‌ଙ୍କର ଉପସ୍ଥିତିରେ ସରକାରଙ୍କୁ ସମାଲୋଚନା କରିବା ସମୟ ଓ ସ୍ଥାନ ଦୃଷ୍ଟିରୁ ସମୀଚୀନ ନୁହେଁ। ବୋଧହୁଏ କହୁ କହୁ କହି ପକେଇଲେ ତାଙ୍କର ମୋ' ପ୍ରତି ଶ୍ରଦ୍ଧା ହେତୁ। ସ୍ମୃତି ଏଇଭଳି, ଭୁଲି ହୁଏନି। ଭୁଲିଗଲେ ମଧ ଫେରିଆସେ ସ୍ୱପ୍ନ କିମ୍ବା ଭାବନା ମାଧ୍ୟମରେ। କହିବାକୁ ମନେହୁଏ 'ମୟୂରଭଞ୍ଜ ଫେରୁଥିବି ତୋ' ପାଖକୁ ବାରମ୍ବାର, ମୋତେ ଯେଉଁ ସ୍ନେହ ରଜ୍ଜୁରେ ବାନ୍ଧି ରଖିଛୁ ତାକୁ ସମସ୍ତ ଚେଷ୍ଟା କଲେ ମଧ ଛିଣ୍ଡାଇ ପାରିବିନି।'

କାଳେ ମୋତେ ଆଦେଶ ମିଳିବ ଫେରିଯିବା ପାଇଁ ସେଇ ଭୟରେ ବଡ଼ିଭୋରୁ ବରହମ୍ପୁର ସହର ଛାଡ଼ି ଦେଲୁ। ବାରିପଦା ଛାଡ଼ିବାର କିଛିଦିନ ପୂର୍ବରୁ ଆମେ ଯାଇଥିଲୁ ରେଙ୍ଗାଲି ଓ ସାଙ୍ଗରେ ବୋଉକୁ ନେଇଆସିଲୁ। ବାରିପଦାରେ କିଛିଦିନ ରହିଥାନ୍ତା କିନ୍ତୁ ହଠାତ୍ ବଦଳି ଆଦେଶ ଆସିଲା ସେଇଟା ପୁଣି କୋରାପୁଟକୁ। ମୋ' ପୂର୍ବ ଅଧିକାରୀ ଯେହେତୁ ଟ୍ରେନିଂ ପାଇଁ ହାଇଦ୍ରାବାଦ୍ ଗଲେ ଘରଟା ତାଙ୍କ ଦଖଲରେ ରହିଲା। ତେଣୁ ବୋଉକୁ ରେଙ୍ଗାଲି ପଠାଇବା ପାଇଁ ବାଧ୍ୟ ହେଲି। ଯଦିବା ସେ କେତେଥର ଇଚ୍ଛା ପ୍ରକାଶ କରିଛି ପୁଣି ଆସିବା ପାଇଁ କେତେକ କାରଣରୁ ତାକୁ ଆଣିପାରିଲି ନାହିଁ। ୧୯୮୪ ମସିହାରେ ବଲାଙ୍ଗୀରରେ ତା'ର ପ୍ରୟାଣ ହେଲା ହସ୍‌ପିଟାଲରେ। ରାତିସାରା ମୁଁ ଓ ମୋ' ସ୍ତ୍ରୀ ଜଗିଥିଲୁ, ରାତି ୪ଟା ବେଳକୁ ଡାକ୍ତର ଆଉ କିଛି ମେଡ଼ିସିନ୍ ଆଣିବା ପାଇଁ କହିଲେ। ରିକ୍‌ସାରେ ବସି ଗଲି ଓ ଜଣେ ଔଷଧ ଦୋକାନୀ ମାଲିକଙ୍କୁ ଘରୁ ଉଠେଇ ମେଡ଼ିସିନ୍ ନେଇ ଆସିଲା ବେଳକୁ ଦେଖିଲି ସେ ଶୋଇଛି ମୁହଁ ଆଁ କରି ଓ ସେତେବେଳେ ଯୁବ ଡାକ୍ତର ମୋ' ସ୍ତ୍ରୀଙ୍କୁ କହୁଥାନ୍ତି 'ମ୍ୟାଡ଼ାମ୍ ଭଲ ହେଲା ଆପଣ ଗଙ୍ଗାପାଣି ନପାଇ ଅନ୍ୟ ପାଣି ଦେଲେ ଏହା ଆପଣଙ୍କ ଭାଗ୍ୟରେ ଥିଲା।' ପ୍ରାଣ ଛାଡ଼ିଲା ବେଳକୁ ପାଣି ଦେବା ହିନ୍ଦୁ ଧର୍ମରେ ପ୍ରଚଳିତ ପ୍ରଥା ବୋଲି ଏଇ ଯୁବ ମୁସଲମାନ ଡାକ୍ତର ଜାଣିଥିଲେ।

କେ.ଭି. ଲାଇନ୍ ରାସ୍ତାରେ ଗୁମୁଡ଼ା ପଡ଼େ, ସେଇଠି ବଂଶଧାରା ନଦୀ ଉପରେ ପୋଲ ପାର ହେବାକୁ ହୁଏ। ଏଇ ପୋଲ ବାରମ୍ବାର ତିଆରି ହେଉଛି ଓ ଭାଙ୍ଗୁଛି। ଜଣେ ଅଭିଜ୍ଞ ଇଞ୍ଜିନିୟର ମୋତେ କହୁଥିଲେ ଯେ ସେ ସ୍ଥାନର ମାଟିଟା ଏମିତି। ବଢ଼ି ସମୟରେ ପାଣି ଏତେ ବେଗରେ ଆସେ ଯେ ପୋଲର ଖମ୍ବର ତଳ ଧୋଇ ହୋଇ ଭାଙ୍ଗିଯାଏ।

ଗୁମୁଡ଼ାର କିଛି ଦୂର ପରେ ଘାଟି ରାସ୍ତା ଆରମ୍ଭ ହୁଏ। ଘାଟି ପାର ହୋଇ ଓହ୍ଲେଇବାର କିଛି ଦୂରରେ ବଡ଼ଗାଁ କୋଲନାରା ପଡ଼େ। ତା'ପରେ ରାୟଗଡ଼ା। ରାୟଗଡ଼ା ଆଇ.ବିରେ ଚ଼' ଜଳଖିଆ ଖାଇ ଅଧ ଘଣ୍ଟା ପରେ ପୁଣି ବାହାରିଲୁ। ବିରାଟ ଘାଟି ରାସ୍ତା ଦେଖି ବିଚରା ମୟୂରଭଞ୍ଜର ଡ୍ରାଇଭର ତଟସ୍ଥ। ଏଇ ଘାଟି ଏଭଳି ଉଚ୍ଚ। ଭାରତର ପୂର୍ବଘାଟ ଓ ଲମ୍ବିଛି ତାମିଲନାଡୁରୁ ଓଡ଼ିଶାର କଳାହାଣ୍ଡି ପର୍ଯ୍ୟନ୍ତ। ବାଟରେ ବାଘଟେ ଦେଖିଲୁ ରାସ୍ତା ପାର ହୋଇଗଲା ଓ ଗାଡ଼ି ପ୍ରତି ଏକ ନଜର ପକେଇ ଅଦୃଶ୍ୟ ହୋଇଗଲା। ଡ୍ରାଇଭର କହିଲା ସାର୍ ଆକ୍ରମଣ କରିବ, ଗାଡ଼ି କିଛି ସମୟ ରଖିଦେବା କି ? ମୁଁ କହିଲି କେଉଁଝରରେ ଥିଲାବେଳେ ୨ ରୁ ୩ ଥର ବାଘ ଦେଖିଛି, ସେମାନେ କେବେ ଚଳନ୍ତା ଗାଡ଼ିକୁ ଆକ୍ରମଣ କରିନାହାଁନ୍ତି। ଗାଡ଼ି ରଖିଲେ ବରଂ ବିପଦ। ତା'ପରେ ଡ୍ରାଇଭର ସତର୍କତାର ସହ ଗାଡ଼ି ଚଲେଇଲା। ବାଟରେ ପଡ଼ିଲା ଲକ୍ଷ୍ମୀପୁର ଓ ସେଠାରେ ଥାନାବାବୁ ଫୁଲଗୁଚ୍ଛଟିଏ ଧରି ଠିଆ ହୋଇଥାନ୍ତି। ଉପେକ୍ଷା କରିବା ଅଭଦ୍ରାମି ବୋଲି ଗାଡ଼ିକୁ ରଖିଲି ଓ ଥାନା ବାବୁ ଗୁଡ଼ିଆ ଦୋକାନରୁ ଛୋଟ ଗ୍ଲାସରେ ଚ଼' ଧରି ଆସିଲେ। ଦୂରରେ କେତେଜଣ ଲୋକ ଠିଆ ହୋଇ ଦେଖୁଥାନ୍ତି। ଆମ ପାଇଁ ଥାନା ବାବୁ ଜଣେ ତଳ ପାହ୍ୟାର ଲୋକ ହୋଇପାରନ୍ତି କିନ୍ତୁ ନିଜ ଅଞ୍ଚଳରେ ସେ ହେଲେ ବଡ଼ ହାକିମ। ଆମେମାନେ ଏସ୍‌ପି ଡିଆଇଜି ହୋଇ ଯଦି ତାଙ୍କର ସମ୍ମାନ ହାନି କରିବୁ ତାଙ୍କର ମନୋବଳ ଭାଙ୍ଗିଯିବ, କାମ ପ୍ରତି ଆଗ୍ରହ କମିଯିବ ଓ ସେ ଅଞ୍ଚଳରେ ପୋଲିସର କାର୍ଯ୍ୟ ଦକ୍ଷତା ହ୍ରାସ ପାଇବ। ଶେଷରେ କ୍ଷତିଗ୍ରସ୍ତ ଏସ୍‌ପି ନିଜେ ହେବେ। ମୁଁ ସବୁବେଳେ ଏଇ ମତ ଆଦରିଛି। ତେଣୁ କେବେ କୌଣସି ଅଫିସରଙ୍କୁ ଅପମାନ ଦେବା କିମ୍ବା ଅଧସ୍ତନଙ୍କ ସାମନାରେ ତାଙ୍କୁ ଗାଳି ଦେବା କରିନାହିଁ। ରୁମ୍‌କୁ ଡାକି ବେଶୀ ଗୁଡ଼େ ଗାଳିଗୁଲଜ ନକରି ଅଳ୍ପକେ ତାଙ୍କର ଭୁଲ୍ ଦର୍ଶାଇ ଦିଏ। ପ୍ରଶଂସା ତୁରନ୍ତ ଦେବା କଥା, ନିନ୍ଦା ଭାବିଚିନ୍ତି କରିବା କଥା ଓ ପ୍ରଶଂସା ହେଉ କିମ୍ବା ନିନ୍ଦା ହେଉ ତା' ରୁମ୍‌କରେ କରିବା କଥା। ଉପର ଅଫିସର ଭାବିବା କଥା ଯେ ଆମେ ଉଚ୍ଚ କାନ୍ଥ ଉପରେ ବସିଛୁ, ଆମେ ରହୁଥିବା ଦୁର୍ଗ ସୁରକ୍ଷିତ। ଅଧସ୍ତନ କର୍ମଚାରୀ ତଳେ ଠିଆ ହୋଇଛନ୍ତି ସେ ପଥରଟେ ମାରିଲେ ଆମ ଦେହରେ ବାଜିନପାରେ, ବାଜିଲେ ମଧ୍ୟ ବିଶେଷ କ୍ଷତି ହେବନାହିଁ। କିନ୍ତୁ ଆମେ ଉପରୁ ପଥରଟିଏ ପକେଇ ଦେଲେ ସେମାନଙ୍କ ମୁଣ୍ଡ ଛତୁ ହୋଇଯିବ। ଅନେକ ଉପର ଅଫିସରଙ୍କର ଅହମିକା ଭାବ ଓ କେତେକଙ୍କର ଶୋଷଣ ମନୋବୃତ୍ତି ପାଇଁ ବହୁତ ତଳିଆ କର୍ମଚାରୀଙ୍କର ଭବିଷ୍ୟତ ନଷ୍ଟ ହୋଇଯାଇଛି। କେବଳ ପୋଲିସରେ ନୁହେଁ ସବୁ ବିଭାଗରେ।

ଚା’ ପିଉଥିଲା ବେଳେ ଉଚ୍ଚା କାନ୍ଥ ମନେ ପଡ଼ିଲା ଗାଡ଼ି ମଧ୍ୟରୁ ସାମ୍ନାରେ ଥିବା ଉଚ୍ଚ ପାହାଡ଼କୁ ଦେଖି। ଏଇ ପାହାଡ଼କୁ ଅତିକ୍ରମ କରିବାକୁ ପଡ଼ିବ। ଡ୍ରାଇଭର ବେଙ୍କ୍ ସକାଳୁ ଗାଡ଼ି ଚଲଉଛି, ତାକୁ ବିଶ୍ରାମ ଦେବା ପାଇଁ ଭାବି କହିଲି ‘ତୁମେ ପଛରେ ପିଲାଙ୍କ ପାଖରେ ବସ ମୁଁ ଗାଡ଼ି ଚଲେଇବି।’ ସେ ଉତ୍ତର ଦେଲା ମୁରବି ସ୍ୱରରେ - ଏତେ ଉଚ୍ଚ ଘାଟି ମୁଁ ସାହେବଙ୍କୁ ଗାଡ଼ି ଚଲେଇବାକୁ ଦେବିନି। ସାହେବ ତ ଗାଡ଼ି ଚଲେଇବେ ଆମେ କାହିଁକି ଅଛୁ? ’ ବିଶ୍ୱସ୍ତ ଡ୍ରାଇଭର ଓ ପିଏ ବେଳେ ବେଳେ ନିଷ୍ପତ୍ତି ବଦଳେଇବା ପାଇଁ ବାଧ୍ୟ କରନ୍ତି। ଅଗତ୍ୟା ଚୁପ୍ ରହିଲି। ଗାଡ଼ି ଠିକ୍ ସମୟରେ ପହଞ୍ଚିଲା କୋରାପୁଟ୍ ସର୍କିଟ୍ ହାଉସରେ। ସେତେବେଳକୁ ପ୍ରାୟ ରାତି ସାତଟା, ସାରା ସହର ଶୋଇ ପଡ଼ିଲାଣି। ସହରର ସ୍ଥିତି ଜଣଉଥାନ୍ତି ଅଳ୍ପ କେତୋଟି ମିଞ୍ଜି ମିଞ୍ଜି ଆଲୁଅ। ସର୍କିଟ୍ ହାଉସରେ ଅଫିସରମାନେ ଅପେକ୍ଷା କରିଥାନ୍ତି। ପୂର୍ବରୁ ପଠେଇଥିବା ଟ୍ରକ୍ ଥୁଆ ହୋଇଥାଏ। ଗାଡ଼ିରୁ ଓହ୍ଲାଇ ଡ୍ରାଇଭର, ଟ୍ରକ୍‌ରେ ଆସିଥିବା ମୟୂରଭଞ୍ଜର ଜଣେ କନେଷ୍ଟବଳକୁ କହିଲା - ‘ଦେଖିଲ ଭାଇ କୁଆଡ଼େ ଆମ ସାହେବଙ୍କୁ ପଠେଇଦେଲେ। ଶିମଳିପାଳ ଭଳି ଜଙ୍ଗଲ ଜାଗାକୁ। ରାସ୍ତାରେ ବାଘ ଦିଶୁଛନ୍ତି।’ କନେଷ୍ଟବଳ ଜଣକ କହିଲା, ‘ନିଶ୍ୱାସ ପଡ଼ିବ, ମରିବ ଏ ସରକାର।’ କି ଆଶ୍ଚର୍ଯ୍ୟ, ତା’ ଆରଦିନ ସକାଳେ ମୁଁ ରେଡ଼ିଓ ଖୋଲି ଶୁଣିଲା ବେଳକୁ ଓଡ଼ିଶା ସରକାର ସମେତ ସବୁ ଅଣ କଂଗ୍ରେସ ସରକାରଙ୍କୁ କେନ୍ଦ୍ର ସରକାର ବରଖାସ୍ତ କରିଥାନ୍ତି। ୧୯୭୭ ମସିହାରେ କଂଗ୍ରେସ ସରକାରଗୁଡ଼ିକୁ ଜନତା ସରକାର ଏଇଭଳି ବରଖାସ୍ତ କରିଥିଲେ। ବରଖାସ୍ତ ଓ ପ୍ରତି ବରଖାସ୍ତ ଚାଲିଥାନ୍ତା ଯଦି ସୁପ୍ରିମ୍‌କୋର୍ଟ ହସ୍ତକ୍ଷେପ ନକରିଥାନ୍ତେ।

ପହଞ୍ଚିବା ଦିନ ଚାର୍ଜ ନେଇଗଲି ଓ ପାଞ୍ଜିର ହିସାବ ଅନୁସାରେ ସଂକ୍ରାନ୍ତି ଓ ମାସାନ୍ତ ଯୋଗୁ ଆସନ୍ତା ଦୁଇଦିନ ଚାର୍ଜ ନେଇପାରିନଥାନ୍ତି। ଅନ୍ଧ ବିଶ୍ୱାସ ହେଉ କିମ୍ବା ଶାସ୍ତ୍ରାନୁମୋଦିତ ହେଉ ବହୁ ବଡ଼ ବଡ଼ ଲୋକ ପାଞ୍ଜି ଅନୁସାରେ ନିଜର କାର୍ଯ୍ୟକ୍ରମ ନିଷ୍ପତ୍ତି କରନ୍ତି।

ସକାଳୁ ଡ୍ରାଇଭର ବେଙ୍କ୍ ପିଲାଙ୍କୁ ନେଇଗଲା ପାହାଡ଼ ଉପରେ ଥିବା ଜଗନ୍ନାଥ ମନ୍ଦିରକୁ। ସର୍କିଟ୍ ହାଉସରେ ବୁଲୁଥିଲା ବେଳେ ଦେଖୁଥିଲି ମନ୍ଦିର ଓ ମନ୍ଦିର ପଛ ପଟେ ଅନ୍ୟ ଏକ ବିରାଟ ପାହାଡ଼ର ଦୃଶ୍ୟ। ପାହାଡ଼ର ସ୍ଥାନେ ସ୍ଥାନେ ଧୂଆଁ ବାହାରିବା ଦିଶୁଥାଏ । ପୋଲିସ ଅଫିସର ଜଣେ ବୁଝାଇଦେଲେ ଯେ ଆଦିବାସୀମାନେ ସକାଳୁ ରୋଷେଇ କରୁଛନ୍ତି। କୋରାପୁଟରେ ହାଡ଼ଭଙ୍ଗା ଶୀତ, ସେଥିରେ ପୁଣି ପାହାଡ଼ରେ କୁଡ଼ିଆ କରି ରହିବା ବୋଧହୁଏ ଗରିବ ଆଦିବାସୀଙ୍କର ଅଭ୍ୟାସ ହୋଇଗଲାଣି। ତା’ ସାଙ୍ଗକୁ ପ୍ରତିଦିନର ଅନିଶ୍ଚିତତା। କାଠ ଗୋଟେଇ ବିକିଲେ ସେଦିନର ରୋଜଗାର ହେବ,

ଚାଉଳ ଗଣ୍ଡେ, ଲଙ୍କା ମରିଚ, ଲୁଣ, ପିକା ଧରି ସେମାନେ ଫେରିବେ। 'କର୍ମ କଷଣ ଦେହ ସହେ, ଅରଣ୍ୟେ ଅଜଗର ପ୍ରାୟେ' ଜୀବନ ଏମାନଙ୍କର। କିନ୍ତୁ ଦୁଃଖର କଥା; ଏତେ ଅଫିସର ଆସିଛନ୍ତି ଓ ଯାଇଛନ୍ତି କିନ୍ତୁ କେବଳ ଗୋପିନାଥ ମହାନ୍ତିଙ୍କ ହୃଦୟ ଏମାନଙ୍କ ପାଇଁ ତରଳିଲା। ଆଦିବାସୀଙ୍କୁ ଦୟା ଦେଖାଇବା ପରିବର୍ତ୍ତେ ସେ ଶ୍ରଦ୍ଧା କଲେ।

ସହରଟି ଛୋଟ, ଭାଗ୍ୟକୁ ଅତିରିକ୍ତ ଏସ୍‌ପି କ୍ୱାଟର ଖାଲି ଥିଲା। ବହୁତ ପୁରୁଣା କ୍ୱାଟର, କୌଣସିମତେ ରହିଗଲୁ। ଦୁଇମାସ ପରେ ପୂର୍ବ ଅଧିକାରୀ ଫେରିଆସି ଘର ଖାଲି କରିବାରୁ ଏସ୍‌ପି କ୍ୱାଟରକୁ ଗଲୁ। ଚମତ୍କାର ଘର, ପ୍ରଶସ୍ତ ବାରଣ୍ଡା, ବାରଣ୍ଡାରେ କାଚ ଲାଗିଛି। ତେଣୁ ସକାଳେ ଖରାରେ ବସି ଚ' ପିଇହେବ। ଅଥଚ ଥଣ୍ଡା ପବନ ବାଜିବ ନାହିଁ। ପ୍ରତ୍ୟେକ ରୁମ୍‌ରେ ଦୁଇଟା କବାଟ। ଯିଏ ଘର ଝାଟେଇବ ସେ ବାହାର ପଟ କବାଟରେ ପଶିବ। ମାଟି ଭଲ ତେଣୁ ପନିପରିବା ଚାଷ କରିହେବ। ଏଇ ସୁନ୍ଦର ଘରଟି ୧୯୪୦ ମସିହାରେ ଏଫ.ଏଫ. ପିଗିଲ୍ ବୋଲି ଜଣେ ଏସ୍‌ପି ତିଆରି କରିଥିଲେ। ପୁରୁଣା କନେଷ୍ଟବଳ କହନ୍ତି ଯେ ୨୫ ବର୍ଷ ତଳେ ଅର୍ଥାତ୍ ୧୯୫୫ ମସିହା ବେଳକୁ ଘରର ଭିତର ବାରଣ୍ଡାରେ ବସିହେଉଥିଲା। କିନ୍ତୁ ଦାଣ୍ଡ ବାରଣ୍ଡାରେ ବିପଦ ଥିଲା। ପେଣ୍ଡରା ବାଘ କିମ୍ବା ଭାଲୁ ଆକ୍ରମଣର ସମ୍ଭାବନା ଥିଲା। ୧୯୫୪ ମସିହାରେ ଧର୍ମରାଜ ବୋଲି ଜଣେ ଏସ୍‌ପି ଥିଲେ। ତାଙ୍କ ଡ୍ରଇଁ ରୁମ୍‌ର ବାହାର ପଟ କବାଟ ବନ୍ଦ ନହୋଇ ଆଉଜା ହୋଇଥିଲା। ସକାଳେ ଜଣେ କନେଷ୍ଟବଳ ସେ ରୁମ୍‌କୁ ପଶିବା ମାତ୍ରେ ବିକଟ ଚିତ୍କାର କଲା ଓ ଏସ୍‌ପି ଦୌଡ଼ିଯାଇ ଦେଖିଲେ ଯେ ବାହାର କବାଟଟା ଠିଆ ମେଲା ଓ ଗାଲିଚାରେ ଶୋଇଥିବା ମହାବଳ ବାଘ ଉଠି ଝାଡ଼ିଝୁଡ଼ି ହେଲା, ଏସ୍‌ପିଙ୍କୁ ଅନେଇ ବାହାରକୁ ଚାଲିଗଲା। ଚାହିଁଥିଲେ ଏସ୍‌ପି ଓ କନେଷ୍ଟବଳଙ୍କୁ ମାରି ଦେଇପାରିଥାନ୍ତା। ଜୀବଜନ୍ତୁଙ୍କର ମାନବିକତା ତୁଳନାରେ ମଣିଷର ପଶୁତ୍ୱ ଢ଼େର ବେଶି।

ଆଉ ଗୋଟିଏ ମଜା କଥା ଶୁଣିଲି। ସେତେବେଳେ କଲେକ୍ଟର, ଏସ୍‌ପି, ସିଭିଲ ସର୍ଜନଙ୍କୁ ଛାଡ଼ିଦେଲେ କାହାର କାର୍ ନଥିଲା। ତେଣୁ ସନ୍ଧ୍ୟାବେଳେ କେହି କାହା ଘରକୁ ଗଲେ ଲଣ୍ଠନ ଧରିବେ ଓ ବଡ଼ ଠେଙ୍ଗା ଧରି ଦୁଇ ଜଣ ସାଙ୍ଗରେ ନେଇ ଯିବେ। ସେଇଦିନ ସନ୍ଧ୍ୟାବେଳେ ଗଲି ଜୟପୁର ସହର - କୋରାପୁଟର ପ୍ରଧାନ ସହର। ବହୁତ ଦୋକାନ ଓ ମହାରାଜାଙ୍କ ପ୍ୟାଲେସ୍। ଅନେକ ସମୟରେ କିଣାକିଣି କରିବା ପାଇଁ ଜୟପୁର ଯିବାକୁ ପଡ଼େ। କୋରାପୁଟ ସହରରେ ପ୍ରାୟ କିଛି ମିଳେନାହିଁ। କିଏ ବିକିବ? ଅଧିକାଂଶ ଲୋକ ହେଲେ ଦଣ୍ଡକାରଣ୍ୟ ପ୍ରୋଜେକ୍ଟର ଓ ଓଡ଼ିଶା ସରକାରଙ୍କ କର୍ମଚାରୀ ଓ

ଅବସରପ୍ରାପ୍ତ ପୋଲିସବାଲା। ତେଣୁ ପେନ୍‌ଟିଏ କିଣିବା ପାଇଁ ହେଲେ ଜୟପୁର ସହର ଯାଇଲା। ୧୯୬୩ ମସିହାରେ କୋରାପୁଟରୁ ଜୟପୁର ଗଲାବେଳେ ଦେଖୁଥିଲି ଅସଂଖ୍ୟ ଚନ୍ଦନ ଗଛ। ୧୯୮୦ ମସିହାକୁ ସବୁ ନିଶ୍ଚିହ୍ନ। ମଣିଷର ଲୋଭ ଓ ଟାଙ୍ଗିଆ ଆଗରେ ସେମାନେ ବଳି ପଡ଼ିଛନ୍ତି। ୬୦ ଦଶକରେ ଜଣେ କଲେକ୍ଟର ଚନ୍ଦନ ଓ ଶାଗୁଆନ କାଠ ଚୋରି କରିବା ଅପରାଧରେ ଜଙ୍ଗଲ ବିଭାଗ ଦ୍ୱାରା ରୁଜୁ କରାଯାଇଥିବା କେସ୍‌ରେ କାଠଗଡ଼ାରେ ଠିଆ ହୋଇଥିଲେ। ଯେହେତୁ ତାଙ୍କ ସହିତ ବହୁ ଉଚ୍ଚ ଅଫିସରଙ୍କର ଭଲ ସମ୍ପର୍କ ଥିଲା ସେ ଖଲାସ ହୋଇଗଲେ ବୋଲି ଅନେକ ଅଭିଯୋଗ କରନ୍ତି। ଅଭିଯୋଗଟା ସତ କି ମିଛ ବୋଲି ମୁଁ କହୁନାହିଁ। କିନ୍ତୁ ଯେଉଁ ରାଜ୍ୟରେ ଜଣେ ଜିଲ୍ଲାପାଳ କାଠ ଚୋରି କେସ୍‌ରେ ଅଭିଯୁକ୍ତ ହୋଇପାରନ୍ତି ସେ ରାଜ୍ୟର ଲୋକମାନଙ୍କର ଶାସନ ପ୍ରତି କି ସମ୍ମାନ ରହିବ ?

କୋରାପୁଟରେ ଦେଖାହେଲା ଜିଲ୍ଲାପାଳ ସଞ୍ଜୀବ ଚନ୍ଦ୍ର ହୋତାଙ୍କ ସହିତ। ମୋ'ଠାରୁ କଲେଜରେ ବର୍ଷେ ସିନିୟର। ଅର୍ଥନୀତିରେ ଏମ୍.ଏ.ରେ ଫାଷ୍ଟ ହୋଇ ସ୍ୱର୍ଣ୍ଣ ପଦକ ପାଇଥିଲେ। ବାଲେଶ୍ୱରରେ ଜିଲ୍ଲାପାଳ ଭାବେ ଭଲ ଖ୍ୟାତି ଅର୍ଜି ଥିଲେ। ସାହିତ୍ୟ, କଳା ଓ ସଂସ୍କୃତି ପ୍ରତି ବେଶ୍ ଆଦର ଓ କାର୍ଯ୍ୟରେ ପ୍ରବଳ ନିଷ୍ଠା ତା' ସହିତ ଖୋଲା ମନ। ହଁ କହିଲେ ହଁ, ନାହିଁ କହିଲେ ନାହିଁ। ଦେଖିବା ବୁଝିବା ଶବ୍ଦମାନଙ୍କର (ଯେଉଁ ରୋଗ ବହୁ ସରକାରୀ କର୍ମଚାରୀଙ୍କୁ ସଂକ୍ରମିତ କରିଛି) ବ୍ୟବହାର ସେ କେବେ କରିନାହାଁନ୍ତି। ତାଙ୍କ ମନୋବୃତ୍ତି ଓ ମୋ' ମନୋବୃତ୍ତି ଏକା ହୋଇଥିବାରୁ କଲେଜ ଜୀବନରେ ସାମାନ୍ୟ ପରିଚୟ ରୂପାନ୍ତରିତ ହେଲା ଦୃଢ଼ ବନ୍ଧୁତା ଓ ଆନ୍ତରିକତାରେ। ଦୁଇ ପରିବାର ମଧ୍ୟରେ ଘନିଷ୍ଠତା ଏତେ ଯେ ଅନେକ ଭାବନ୍ତି ଆମେ ନିକଟ ସମ୍ପର୍କୀୟ। ନିକଟ ସମ୍ପର୍କୀୟ ନହେଲେ ମଧ୍ୟ ଆମେ ସେମାନଙ୍କ ଠାରୁ ନିକଟତର । କଲେକ୍ଟର ଏସ୍‌ପିଙ୍କ ମଧ୍ୟରେ କି ସମ୍ପର୍କ ରହିବ ତାହା ଉଭୟ ଜାଣିଲେ କେବେ ସଂଘର୍ଷ ହେବନାହିଁ। ସରକାର ଉଭୟଙ୍କ ପାଇଁ ସୀମା ନିର୍ଦ୍ଧାରିତ କରିଦେଇଛନ୍ତି । ସୀମା ଲଙ୍ଘନ ହେଲେ ଅସୁବିଧା।

ସେ ସମୟରେ ପ୍ୟାରୀମୋହନ ମହାପାତ୍ର ଥିଲେ ଦଣ୍ଡକାରଣ୍ୟ ପ୍ରୋଜେକ୍ଟର ଡେପୁଟି ଚିଫ୍ ଆଡ୍‌ମିନିଷ୍ଟ୍ରେଟର। ଚିଫ୍ ଆଡ୍‌ମିନିଷ୍ଟ୍ରେଟର ଥିଲେ ଭେଙ୍କଟ ରମଣ ବୋଲି ଜଣେ ବରିଷ୍ଠ ଆଇଏଏସ୍ ଅଫିସର। ସେ ଭଦ୍ରଲୋକଙ୍କୁ ଦେଖା କରିବା ପାଇଁ ଫୋନ୍ କରିବାରୁ ତାଙ୍କ ଠାରୁ ବୁଝି ତାଙ୍କ ପ୍ରାଇଭେଟ୍ ସେକ୍ରେଟେରୀ କହିଲେ ସେ ବର୍ତ୍ତମାନ ବ୍ୟସ୍ତ ଅଛନ୍ତି, ଆପଣ କେବେ ଆସି ଦେଖା କରିବେ ଆମେ କହିବୁ। ସେ ପ୍ରାଇଭେଟ୍ ସେକ୍ରେଟେରୀଙ୍କୁ କହିଲି 'ଅଧିକ ବିବ୍ରତ ହୁଅନ୍ତୁ ନାହିଁ, ମୁଁ ଭବିଷ୍ୟତରେ ଦେଖା କରିବା

ପାଇଁ କୌଣସି ଯୋଜନା ରଖିବି ନାହିଁ।' ତାଙ୍କ ଘରଟା ମୋ' ଘରକୁ ଲାଗିଛି ତଥାପି ତାଙ୍କ ସହିତ କେବେ ଦେଖା ହୋଇପାରିନି। ସରକାରୀ ଚାକିରି କରି ଆମେମାନେ କେବେ ଆତ୍ମସମୀକ୍ଷା କରୁନାହିଁ ଯେ ଲୋକଙ୍କର ଉପକାର କ'ଣ କଲୁ, ବେଶୀ ସମୟ ଯାଏ ନିଜର ଲାଞ୍ଚ କେତେ ମୋଟା ତାହା ମାପିବାରେ।

ସହରରେ ସିନେମା ହଲ୍‌ଟେ ନାହିଁ, ପୋଲିସର ୧୬ ଏମ୍‌ଏମ୍ ପ୍ରୋଜେକ୍ଟରଟିଏ ଥିଲା। ସପ୍ତାହରେ ଥରେ ଦେଖିବାର ବନ୍ଦୋବସ୍ତ କଲି, ତା' ମଧ୍ୟ ନିର୍ଦ୍ଦିଷ୍ଟ ଦିନରେ ନୁହେଁ। ଏହାର କାରଣ ଥିଲା ଯେ ଅନେକ କନେଷ୍ଟବଳ ଓ ତଳ ଅଫିସର ସନ୍ଧ୍ୟା ହେଲେ ଡିଆଁ ମାରନ୍ତି ଜୟପୁରକୁ ସିନେମା ଦେଖିବା ପାଇଁ। ଶହେ, ୧୫୦ ଟଙ୍କା ଦେଲେ ପୁରୁଣା ରଙ୍ଗୀନ ସିନେମାର ରିଲ ମିଳୁଥିଲା। ଏସ୍‌ପି ଅଫିସ ପ୍ରାଙ୍ଗଣରେ ସମସ୍ତେ ବସିବା ପାଇଁ ଯଥେଷ୍ଟ ଜାଗା ଥିଲା ଏବଂ ଆଦେଶ ଦେଲି ଯେ ପବ୍ଲିକ୍ ମଧ୍ୟ ଆସି ଦେଖିପାରିବେ। ସିନେମା ଆରମ୍ଭ ହେବ ସାଢ଼େ ଛଅଟା ବେଳେ। ପାଞ୍ଚଟା ବେଳେ ଏକ ସ୍ୱତନ୍ତ୍ର ବିଗୁଲ ବଜାଯାଏ। ଲୋକେ ଜାଣିଲେ ସିନେମା ହେବ। ସାଙ୍ଗେ ସାଙ୍ଗେ ରୋଷେଇ ଆରମ୍ଭ ହେବ ଓ ଧାଡ଼ି ବାନ୍ଧି ସମସ୍ତେ ଆସିବେ ସିନେମା ଦେଖିବା ପାଇଁ। ଅନେକ ଅଫିସର ଓ ପିଲାଛୁଆ ମଧ୍ୟ ଆସନ୍ତି। ସିନେମା ଖର୍ଚ୍ଚଟା ଦିଆଯାଏ ୱେଲଫେୟାର ଫଣ୍ଡରୁ।

କଲେକ୍ଟର ଓ ମୋ' ପରିବାର ବହୁତ ସମୟ ଗସ୍ତରେ ଯାଉ। ଥରେ ରହିଲୁ ମୋଟୁରେ ଯେଉଁଠି ଓଡ଼ିଶା ସରିଛି। ପୁରୁଣା ଥାନା ବିଲ୍ଡିଂ। ବାରଣ୍ଡାର ଅଳ୍ପ ଦୂରରେ ଗୋଦାବରୀ ନଦୀ (ଚିନ୍ନା ଗୋଦାବରୀ ଅର୍ଥ ସାନ ଗୋଦାବରୀ)। ତମସା ନଦୀ, ଶାବେରୀ ନଦୀ ଗୋଦାବରୀରେ ପଡ଼ିଛନ୍ତି। ମୋଟୁ ମହା ଅସାଧ ସ୍ଥାନ। ପାଇପ୍ ନାହିଁ ଓ ଦୀପ ଭଳି ଦିଶୁଥିବା ମିଞ୍ଜି ମିଞ୍ଜି ବତି, ଆଲୁଅ ଜଳିଲା ମାତ୍ରେ ଅସଂଖ୍ୟ ପୋକ ରୁମ୍‌କୁ ଆକ୍ରମଣ କରନ୍ତି। ଭାତ, ଆଳୁ, ସାରୁ ଛଡ଼ା ଆଉ କିଛି ମିଳେନି। ମୋଟୁକୁ ଯିବା ବାଟରେ ପଡ଼େ କାଳିମେଳା। ତା' ପୂର୍ବରୁ ବାମ ପଟେ ରାସ୍ତାରେ ଗଲେ ପଡ଼ିବ ବାଲିମେଳା। ସେ ଅଞ୍ଚଳରେ କେତେକ ଲୋକଙ୍କ ଧାରଣା ଯେ ଏଇଠିକି ରାମଚନ୍ଦ୍ର ଲକ୍ଷ୍ମଣ ସୀତା ଆସିଥିଲେ ଓ ବାଳି ସୁଗ୍ରୀବଙ୍କ ଲଢ଼େଇ ହୋଇଥିଲା। ପ୍ରମାଣ କରିବାକୁ ଯାଇ ଥରେ ମୋତେ ଜଣେ ଅବସରପ୍ରାପ୍ତ ଶିକ୍ଷକ କହିଲେ ଯେ 'ମାଲକାନାଗିରିରେ ବହୁତ ଶାଳଗଛ, ସେସବୁ ରାମାୟଣରେ କୁହାଯାଇଛି। ପ୍ରଭୁ ରାମଚନ୍ଦ୍ର ସାତୋଟି ଶାଳ ଗଛକୁ ଶର ମାରି ଭେଦ କରିପାରିଥିଲେ, ତା'ପରେ ବାଲିମେଳା ଓ କାଳିମେଳା ଶବ୍ଦର ତାତ୍ପର୍ଯ୍ୟ ବୁଝାଇଲେ। 'ବୁଝିଲେ କି ସାର୍, ଲଢ଼େଇରେ ବାଳି ମଲା, ତା' ପରଦିନ ଯେତେବେଳେ ଲୋକମାନେ ଆସି ପଚାରିଲେ କିସ ହେଲା ଓ ଉତ୍ତର ପାଇଲେ ବାଳି

ମଲା । ପୁଣି ପଚାରିଲେ କେବେ ମଲା ଓ ଉତ୍ତର ମିଳିଲା କାଲି ମଲା । ଏଇ ଦୁଇ ଉତ୍ତରରୁ ବାଲିମେଳା ଓ କାଲିମେଳା ନାଁ ବାହାରିଲା ।' ପୁଣି କହିଲେ ପଞ୍ଚବଟୀରେ ଥିଲା ତମସାନଦୀ ଓ ଏଠି ବି ଅଛି ତମସା ନଦୀ । ତାଙ୍କ ସାଙ୍ଗେ ଯୁକ୍ତିତର୍କ ନକରି ତାଙ୍କ 'ଗଭୀର ଜ୍ଞାନ'କୁ ସମ୍ମାନ ଦେଖାଇ ବିଦାୟ ଦେଲି । ଏଇ ବିଶ୍ଳେଷଣକୁ ସଞ୍ଜୀବ ବାବୁ ଓ ମୁଁ କଥା ହୋଇ ହସାହସି ହେଉଥିଲୁ, ହଠାତ୍ ମୋ' ମନକୁ ଆସିଲା ଏଠି ଜଗନ୍ନାଥ ମନ୍ଦିର କଲେ କେମିତି ହୁଅନ୍ତା ? ସେ କହିଲେ ଖାଲି ଏଠି କାହିଁକି ଆନ୍ଧ୍ରରୁ ଓଡ଼ିଶାକୁ ଆସିଥିବା ଯେତେ ରାସ୍ତା ତା'ର ସୀମାନ୍ତରେ ଗୋଟିଏ ଗୋଟିଏ ଜଗନ୍ନାଥ ମନ୍ଦିର କରିବା । ମୋଟୁରେ ବଡ଼ ହାକିମ ହେଲେ ତହସିଲଦାର ଓ ଥାନା ବାବୁ । ଦୁଇଜଣଙ୍କୁ ଡାକି କହିବାରୁ ସେମାନେ ବେଶ୍ ଖୁସି । ମନ୍ଦିର କଲେ ଆଦିବାସୀମାନେ ଆକର୍ଷିତ ହେବେ, ନଦୀ ସେପଟ ଅଞ୍ଚଳର ଓଡ଼ିଆ ଓ ତେଲଗୁମାନେ ମଧ୍ୟ ଆସିବେ ଓ ସାଂସ୍କୃତିକ ମିଳନ ହେବ । ସାଙ୍ଗେ ସାଙ୍ଗେ କମିଟି କରାଗଲା ଓ ବିଭିନ୍ନ ସ୍ଥାନରେ ତିନୋଟି ଜଗନ୍ନାଥ ମନ୍ଦିର ହେଲା । କିନ୍ତୁ ସେସବୁ ସମାପ୍ତ ହେଲା ବେଳକୁ ସଞ୍ଜୀବ ବାବୁ ଓ ମୁଁ କୋରାପୁଟରେ ନଥିଲୁ ।

କୋରାପୁଟରେ ପହଞ୍ଚୁ ପହଞ୍ଚୁ ନିର୍ବାଚନର ରଣଭେରୀ ବାଜିଲା, ଓଡ଼ିଶା ସରକାର ବରଖାସ୍ତ ହେବାରୁ ପୁଣିଥରେ ନିର୍ବାଚନର ପ୍ରୟୋଜନ ହେଲା । କେନ୍ଦ୍ର ମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଆସିଲେ କର୍ମୀମାନଙ୍କର ସମ୍ମିଳନୀ, ସାଧାରଣ ସଭା ଓ ଦଳର ସ୍ଥିତି ନିରୀକ୍ଷଣ କରିବା ପାଇଁ । ଏସବୁରେ ସମ୍ପୃକ୍ତ ହେବା ପାଇଁ ଇଚ୍ଛା ନଥିଲେ ମଧ୍ୟ କେନ୍ଦ୍ର ମନ୍ତ୍ରୀଙ୍କ ନିରାପତ୍ତା ପାଇଁ ମୋତେ ଓ କଲେକ୍ଟରଙ୍କୁ ଯିବାକୁ ପଡ଼ିଲା । ରାଉରକେଲାରେ ୧୯୭୭ ମସିହାରେ ସେ କରିବାକୁ ଯାଉଥିବା ମିଟିଂ ଭଣ୍ଡୁର କରିବା ପାଇଁ କେତେଜଣ ଲୋକ ପ୍ରୟାସ କରୁଥିଲେ ଓ ମୁଁ ସମ୍ପୂର୍ଣ୍ଣ ନିରାପତ୍ତା ଯୋଗାଇ ଥିବାରୁ ଜାନକୀ ବାବୁ ବ୍ୟକ୍ତିଗତ ଭାବେ ମୋତେ ଡକେଇ ଧନ୍ୟବାଦ ଦେଇଥିଲେ । କିନ୍ତୁ କୋରାପୁଟରେ ଚିହ୍ନି ନଥିବା ଭଳି ଭାବବ୍ୟକ୍ତ କଲେ । କାହାର ସ୍ମରଣଶକ୍ତି ସ୍ଥାନ କାଳ ପାତ୍ର ଦେଖି କେଉଁ ଦିଗରେ ଯାଏ ତାହା କହିବା କଷ୍ଟ । କଲେକ୍ଟର ଓ ମୁଁ ବିସ୍ମିତ ହେଲୁ ଯେ ଭୁବନେଶ୍ୱରରୁ ଜଣେ ସିନିୟର ଆଇଏଏସ୍ ଅଫିସର ଯାହାଙ୍କର କାର୍ଯ୍ୟ ସହିତ ଭି.ଆଇ.ପିଙ୍କ ନିରାପତ୍ତାର କିଛି ସମ୍ପର୍କ ନାହିଁ, ସେ ବାରମ୍ବାର ଫୋନ କରି 'ସବୁ ଠିକ୍ ଠାକ୍ ଚାଲିଛି ତ, ମିଟିଂରେ କେତେ ଲୋକ ହୋଇଥିଲେ ଇତ୍ୟାଦି ପ୍ରଶ୍ନ ବାରମ୍ବାର ପଚାରୁଥିଲେ । ଏଇ ଭଦ୍ରଲୋକ ନନ୍ଦିନୀ ଦେବୀଙ୍କ ପ୍ରିୟ ଥିଲେ ତା'ପରେ ନୀଳମଣି ରାଉତରାୟଙ୍କର ଓ ଏବେ ଜାନକୀ ବାବୁଙ୍କର । କୁହାଯାଏ ଯେ ନୂଆ ପାର୍ଟି କ୍ଷମତାକୁ ଆସିଲେ ଏ ଅଫିସରଙ୍କର ଯଦି ୧୫ ମିନିଟ୍ ମଧ୍ୟରେ ବଦଳି ନହୁଏ ତେବେ ସେ ରହିଯିବେ ।

ଇମରଜେନ୍‌ସି ସମୟରେ ନଇଁବାକୁ କହିଲେ ସରକାରୀ କର୍ମଚାରୀମାନେ ଗୁରୁଣ୍ଡୁ ଥିଲେ। ଏବେ ଇମରଜେନ୍‌ସିର ଭୟ ନଥିଲେ ମଧ୍ଯ ସେଇ ଅବସ୍ଥା।

୧୯୬୭ ମସିହାରେ ମୁଁ ଯେତେବେଳେ ଚାକିରିରେ ଯୋଗଦେଲି ଆମ୍ଭମାନଙ୍କ ଧାରଣା ଥିଲା ଯେ, ଆମେ ଏକ ସୁଦୃଢ଼ ଦୁର୍ଗ ମଧ୍ୟରେ ନିରାପଦ ହୋଇରହିଛୁ। ଆଇନ୍ ଓ ବିବେକ ନିର୍ଦ୍ଦେଶରେ କର୍ତ୍ତବ୍ୟ କଲେ କିଛି କ୍ଷତି ହେବନାହିଁ। ୧୯୭୫ ମସିହାରେ (ଇମରଜେନ୍‌ସି ଆରମ୍ଭ ସମୟ) ଦୁର୍ଗର ପତନ ହେଲା ଓ ଦୁଃଖର ବିଷୟ ଯେ ଦୁର୍ଗର ପ୍ରାଚୀର ଭାଙ୍ଗିବାରେ ବାହାରୁ ଏବଂ ଭିତରୁ ଚେଷ୍ଟା କରାଗଲା। ଏବେ ଖୋଲା ପଡ଼ିଆ ଓ ସବୁଦିନେ ସରକାରୀ କର୍ମଚାରୀମାନେ ଆତ୍ମସମର୍ପଣ କରୁଛନ୍ତି କ୍ଷମତା ଲୋଭରେ। ଟଙ୍କା ଆଉ କ୍ଷମତା କଥା କହିଲେ ବିବେକ ଚୁପ୍ ରହେ ଓ ଆଇନ୍ ଛାଟିପିଟି ହୋଇ ପଳାଏ। ଯେଉଁ ଅଳ୍ପ କେତେ ଜଣ ଆଇନ୍‌କୁ ସମ୍ମାନ ଦେଇ ବିବେକ ଅନୁସାରେ କାମ କରୁଛନ୍ତି ସେମାନଙ୍କୁ ଅଣଦେଖା କରାହୁଏ। ମୋର ଜଣେ କଲେଜ ବେଳର ବନ୍ଧୁ ଓ ପରେ ମନ୍ତ୍ରୀ, ମୋତେ କହିଲେ 'ହଇହୋ ମିଶ୍ରେ, ଏତେ ଉତ୍ତେଜିତ କାହିଁକି ହେଉଛ? ଆମେ ସଚ୍ଚୋଟ ଅଫିସରଙ୍କୁ ସମ୍ମାନ କରୁ କିନ୍ତୁ ଆବଶ୍ୟକ କରୁନାହିଁ। କାଲି ମୋର ଦରକାର ପଡ଼ିବ ୧୦ଟା ଗାଡ଼ି। ତମେ ଦବ? ତୁମ ସଚ୍ଚୋଟତାକୁ ନେଇ କ'ଣ ଆମେ ଚାଟିବୁ?' ନେତାଙ୍କ ଆଭିମୁଖ୍ୟ ବୁଝିଗଲି, ଦଳମତ ନିର୍ବିଶେଷରେ ସମସ୍ତେ ସେଇପରି ।

ସରକାରୀ କର୍ମଚାରୀଙ୍କ ଆଭିମୁଖ୍ୟ ବିଷୟରେ ଏବେ କିଛି କହେ। କଲେକ୍ଟର କାରର ପଛ ଆଡ଼େ ବସିଲେ ଓ ଆଗରେ ଏସଡ଼ିଓ ଓ ଜଣେ ଟ୍ରେନିଂ ପାଉଥିବା ଡ଼େପୁଟି କଲେକ୍ଟର। ଜଙ୍ଗଲ ରାସ୍ତାରେ ଗାଡ଼ି ଯାଉଥିବା ବେଳେ ରାସ୍ତା କଡ଼ରେ ପଥର ଉପରେ ଭାଲୁଟେ ବସିଥିବାର ଦିଶିଲା। ଗାଡ଼ି ରଖି ଗାଡ଼ି ଭିତରୁ କଲେକ୍ଟର ଗୁଳି ମାଡ଼ କଲେ। କିନ୍ତୁ ଭାଲୁ ଦେହରେ ବାଜିଲା ନାହିଁ ଓ ସେ ପଥର ତଳକୁ ଡ଼େଇଁ ପଡ଼ିଲା। ନିଜକୁ ଜଣେ ସିଦ୍ଧ ବାଣୁଆ ଭାବୁଥିବା କଲେକ୍ଟର ଦାବି କଲେ ଯେ ମରିଗଲା, ତାଙ୍କ ସାଙ୍ଗେ ସ୍ୱର ମିଳେଇ ଏସଡ଼ିଓ କହିଲେ 'ସାର୍ କାନ ମୁଣ୍ଡା ତଳେ ଗୁଳି ବାଜିଲା, ବଞ୍ଚିବ? କିନ୍ତୁ ସଦ୍ୟ କଲେଜରୁ ଆସିଥିବା ଡ଼େପୁଟି କଲେକ୍ଟର କହିଲେ 'ନାଇଁ ତ ସାର୍ ବାଜିନି।' ବିଚରା ଟୋକାଟା ଆଉକିଛି କହିଥାନ୍ତା କିନ୍ତୁ ଏସଡ଼ିଓଙ୍କର କଙ୍କାଡ଼ୁଆ ଚିମୁଟା ଖାଇ ଚୁପ୍ ରହିଲା। ପରେ ଏସଡ଼ିଓ ତାକୁ ଏକୁଟିଆ ଡାକି ଗାଳି ଦେଲେ 'କାହିଁକି ବକର ବକର ହେଉଥିଲ? କାହା ଅଣ୍ଡରରେ ଚାକିରି କରୁଛ? କଲେକ୍ଟର ନା ଭାଲୁ?'

'ସଚ୍ଚୋଟ ଅଫିସର ଆବଶ୍ୟକ କରୁନାହୁଁ' ମନୋବୃତ୍ତି ରଖୁଥିବା ନେତା ଓ 'ଭାଲୁ ଥିଓରୀ'ରେ ବିଶ୍ୱାସ କରୁଥିବା ସରକାରୀ କର୍ମଚାରୀଙ୍କ ମଣିକାଞ୍ଚନ ଯୋଡ଼ି ଶାସନ ପ୍ରକ୍ରିୟାର ବହୁତ କ୍ଷତି କରିସାରିଲାଣି। ସମୟ ଆସିବ ଲୋକମାନେ ବିଦ୍ରୋହ କରିବେ ଓ ଏମାନଙ୍କ ବିବାହ ବିଚ୍ଛେଦ ହେବ।

ନେତା ଓ ନେତ୍ରୀମାନଙ୍କର ନିର୍ଦ୍ଦେଶରେ କାର୍ଯ୍ୟ କରେ। ସେମାନଙ୍କର ଆଦର୍ଶ, ନିର୍ଦ୍ଦେଶ, ଦିଗ୍‌ଦର୍ଶନ ସବୁଦିନେ ମୋ ଶିରା ପରିଶ୍ରାରେ ପ୍ରବାହିତ ହୁଏ।' ପାଖରେ ବସିଥିବା ଏସଡ଼ିଓ ପରିଶ୍ରାଟାକୁ ସଂଶୋଧନ କରିବାକୁ ଯାଇ ଧମକାଟେ ଖାଇଲେ। ରାଜନୀତି ବିଷୟରେ ଆଲୋଚନା ଏତିକିରେ ଥାଉ। ଏତିକି କେବଳ କହିବି ଯେ କହିଥିବା ସେ ମନ୍ତ୍ରୀ ମହାଶୟ ବହୁତ ଜନପ୍ରିୟ। ଗାଁ ଗାଁ ବୁଲନ୍ତି ଓ ଗାଁରେ ଖଟିଆ ପକେଇ ଶୋଇପଡ଼ନ୍ତି । ଗୁଣୁପୁର ବଢ଼ି ସମୟରେ ଆମେ ଦେଖିଲୁ ପ୍ରତ୍ୟେକ ଗାଁର ପ୍ରାୟ ପାଞ୍ଚ ଦଶ ଲୋକଙ୍କୁ ବ୍ୟକ୍ତିଗତ ଭାବେ ସେ ଜାଣିଛନ୍ତି। ଶିରା ପରିଶ୍ରାଟା ସିନା ପାଟିରୁ ବାହାରିଗଲା କିନ୍ତୁ ସେ ନିଦା ମଣିଷ।

କୋରାପୁଟରେ ଜଗନ୍ନାଥ ମନ୍ଦିର ସ୍ଥାନୀୟ ବିଖ୍ୟାତ ଲୋକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ପ୍ରଚେଷ୍ଟାରେ ହୋଇଛି। ମନ୍ଦିରରେ ରହନ୍ତି ମହାରଣା, ଅନବରତ କାମରେ ଲାଗିଥାନ୍ତି, ଖାଇ ପିଇ ଦିନକୁ ୫୦ ଟଙ୍କା ନିଅନ୍ତି। ହାରାମଣୀ ବୋଲି ଧୋବଣୀଟିଏ ଗୋଟିଏ ବଖରାରେ ରହେ। ଲୁଗା କାଚି ଯେଉଁ ପଇସା କମେଇଥିଲା ତହିଁରୁ କିଛି କିଛି ସଞ୍ଚୟ ରଖି ସାରା ଜୀବନର ସଞ୍ଚୟ ଜଗନ୍ନାଥ ମନ୍ଦିରକୁ ଦାନ କରିଦେଲା । ପ୍ରକୃତ ସଂଖ୍ୟାଟା ମୋର ମନେ ପଡୁନି - ୧୧ ହଜାର କିମ୍ବା ୧୪ ହଜାର ହୋଇଥିବ। କିନ୍ତୁ ସେତେବେଳେ ଛିଣ୍ଡା ଶାଢ଼ି ପିନ୍ଧିଥିବା ଧୋବଣୀଟିଏ ୧୧ ହଜାର ଟଙ୍କା ଦେବା ବର୍ତ୍ତମାନ ଅମ୍ବାନୀ ୫୦୦ କୋଟି ଦେବା ସଙ୍ଗେ ସମାନ। ବହୁତ ଗରିବ ଲୋକ ମଧ ମନ୍ଦିର ଦାନବାକ୍ସରେ ପଇସା ଦେଇଛନ୍ତି। ଗରିବଙ୍କ ହୃଦୟ ବଡ଼ ନା ଧନୀଙ୍କ ହୃଦୟ ବଡ଼ ତାହା କହିବା କଷ୍ଟ।

ଜଗନ୍ନାଥ ମନ୍ଦିରରେ ସଞ୍ଜୀବ ବାବୁ ଓ ମୁଁ ସ୍ଥାୟୀ ସଦସ୍ୟ ହୋଇଗଲୁ। ନାଁ ଦିଆ ହୋଇଛି ଶାବର ଶ୍ରୀକ୍ଷେତ୍ର। ପ୍ରଭୁ ଜଗନ୍ନାଥ ଶବରମାନଙ୍କର ଦେବତା ଓ ଗାଁମାନଙ୍କରେ କିତୁଙ୍ଗ ଭାବେ ସେ ପୂଜା ପାଆନ୍ତି। ମୋର ଓ ସଞ୍ଜୀବ ବାବୁଙ୍କର ଦୃଢ଼ ବିଶ୍ବାସ ଯେ ଉପାନ୍ତ ଅଞ୍ଚଳରେ ଜଗନ୍ନାଥ ମନ୍ଦିର କଲେ ଓଡ଼ିଆ ସଂସ୍କୃତି ପ୍ରସାର କରିବ। ଜଗନ୍ନାଥ ମନ୍ଦିର ଯେବେ ସ୍ଥାପନା ହେଲା ସେତେବେଳେ ଗଜପତି ମହାରାଜା ଆସିଥିଲେ ଓ ସେ ଯେଉଁ ଜାଗାରୁ ଚାଲି ଚାଲି ଗଲେ ଆଦିବାସୀ ମହିଳାମାନେ ସେ ଧୂଳି ସଂଗ୍ରହ କରିଥିଲେ। ସଦାଶିବ ରଥଶର୍ମା ଅନେକ ଥର ଆସିଛନ୍ତି। ଥରେ ଏହି ବିଶିଷ୍ଟ ପଣ୍ଡିତ ଡିଏଭି କଲେଜ ହଲ୍‌ରେ ଜଗନ୍ନାଥଙ୍କ ମୂର୍ତ୍ତି ଥୁଆ ହୋଇଥିବା ସମୟରେ ଜଣେ ଆଦିବାସୀ ବୃଦ୍ଧା ଜଗନ୍ନାଥଙ୍କ ପାଖକୁ ଚାଲିଗଲେ, କୁଣ୍ଢେଇ ପକେଇଲେ ଓ କାନିରୁ ଖୋଲି କେନ୍ଦୁ ଫଳଟିଏ ପ୍ରଭୁ ଜଗନ୍ନାଥଙ୍କ ମୁହଁରେ ଘସିଲେ। ଆୟୋଜକମାନେ ବାରଣ କରୁଥିଲେ; କିନ୍ତୁ ରଥଶର୍ମା କହିଲେ 'କାହିଁକି ମନା କରୁଛ ? ଶବରୀ ବୁଢ଼ୀ ରାମଚନ୍ଦ୍ରଙ୍କୁ

ଫଳ ଖୋଉଛି। ଅନ୍ଧାର ଆସିବାରୁ ବୁଢ଼ୀ ଫେରିଗଲେ ଆଖି ଛଳ ଛଳ କରି। ମୁହଁ ଫେରେଇଥିଲେ ଦେଖିଥାନ୍ତେ ଯେ ଜଗନ୍ନାଥ ପୂର୍ବଭଳି ହସୁଛନ୍ତି। ଏଇ ଘଟଣା ଉପରେ ମୁଁ 'ଜଗାର ହସ' ବୋଲି ଏକ ଗଳ୍ପ ଲେଖିଛି ଯାହା ମୋର ପ୍ରଥମ ଗଳ୍ପ ବହି 'ଶପଥ ସାନ୍ତାଳ'ରେ ସ୍ଥାନୀତ ହୋଇଛି।

ରାୟଗଡ଼ାରେ ବେଳେ ବେଳେ ଗଣ୍ଡଗୋଳ ହୁଏ, କାଗଜ କଳର ମାଲିକ ଓ ଶ୍ରମିକଙ୍କ ମଧ୍ୟରେ ବୁଝାମଣାର ଅଭାବ ହେତୁ। ରାୟଗଡ଼ା ସହରର ବସ୍ତି ଅଞ୍ଚଳରେ ଅନେକ ରାଲି ଜାତିର ଲୋକେ ରହୁଥିଲେ। ଦକ୍ଷୀଣ ଭାରତରୁ ଆସିଥିବା ରାଲିମାନେ ଯାଯାବର। ଅଳ୍ପ କେତେଜଣଙ୍କୁ ଛାଡ଼ି ଦେଲେ ବାକି ସମସ୍ତେ ଚୋରି, ପକେଟ୍ ମାର୍ ବସଷ୍ଟାଣ୍ଡରୁ ଆଟାଚି ଚୋରି ରାହାଜାନୀ, ମାରପିଟ୍‌ରେ ଲିପ୍ତ ଓ ଅନେକ ମହିଳା ଦେହ ବେପାର କରନ୍ତି। ଦୁଇ ତିନି ଜଣ ଓକିଲ ତାଙ୍କର ଗ୍ରାହକ ଓ କେସ୍ ଲଢ଼ନ୍ତି ମାଗଣାରେ। ତଳସ୍ତରର ଜଣେ ଦୁଇଜଣ ପୋଲିସ ମଧ୍ୟ ତାଙ୍କୁ ସାହାଯ୍ୟ କରନ୍ତି। ତ୍ରିପାଠୀ ବୋଲି ଜଣେ ଡିଏସ୍‌ପି କଡ଼ା ପଦକ୍ଷେପ ନେବାରୁ ସେମାନେ ନିୟନ୍ତ୍ରିତ ହେଲେ । ହେଲେ କ'ଣ ହେଲା ? ପଙ୍ଗପାଳଙ୍କୁ ଗୋଟିଏ ସ୍ଥାନରୁ ଘଉଡ଼େଇ ଦେଲେ ସେମାନେ ଅନ୍ୟ ସ୍ଥାନକୁ ଯିବା ପରି ରାଲିମାନେ ଗୁଣୁପୁରୁ ଓ ଅନ୍ୟ ସ୍ଥାନକୁ ଗଲେ।

ଥାନାମାନଙ୍କରେ ଦେଖିଲି ଗୋଟିଏ ଅବ୍ୟବସ୍ଥା। ୧୯୭୯ ମସିହାରେ ସରକାର ଏକ ଆଦେଶ ଦେଲେ ଯେ ପ୍ରତ୍ୟେକ ଥାନାରେ ହେଡ୍ କନେଷ୍ଟବଲ ପୋଷ୍ଟ ରହିବ ଏବଂ ତତ୍କାଳୀନ ଆଇ.ଜି ଶ୍ୟାମସୁନ୍ଦର ପାଢ଼ୀ ଏକ ତ୍ରୁଟିପୂର୍ଣ୍ଣ ଆଦେଶ ଦେଲେ ଯାହାଦ୍ୱାରା ଥାନାରେ ଯେ ସବୁଠାରୁ ସିନିୟର ସେ ହେଡ୍ କନେଷ୍ଟବଳ ହେଲା। ଏହାଦ୍ୱାରା ଗୋଟିଏ ସ୍ଥାନରେ ଜଣେ ହେଡ୍ କନେଷ୍ଟବଳ ହେଲେ ଅଥଚ ତାଙ୍କ ଠାରୁ ପାଞ୍ଚ'ବର୍ଷ ସିନିୟର ଜଣେ କର୍ମଚାରୀ ପାଖ ପୋଲିସ ଷ୍ଟେସନରେ କନେଷ୍ଟବଳ ହୋଇ ରହିଲେ। ଏଥିପାଇଁ ଆପତ୍ତି ଅଭିଯୋଗ ବହୁତ ହେଲା ଓ ମୁଁ କନେଷ୍ଟବଳମାନଙ୍କର ଏକ ସିନିୟରଟି ଲିଷ୍ଟ କରି ବିଭିନ୍ନ ଥାନାକୁ ବାଣ୍ଟିଦେବାରୁ ସମସ୍ୟା ଦୂର ହେଲା। ଅନ୍ୟ ଏକ ସମସ୍ୟା ଥିଲା ଯେ ଗୋଟିଏ ଥାନା (ଛୋଟ ଥାନା)ର ଅଫିସର ଇନ୍‌ଚାର୍ଜଙ୍କ ସିନିୟରମାନେ ଅନ୍ୟ ଥାନାମାନଙ୍କରେ ସେକେଣ୍ଡ ଅଫିସର ଭାବେ ଥିଲେ। ଅନେକ ଏସ୍‌ପି ବୁଝିବା ପାଇଁ ଅକ୍ଷମ ଯେ ଥାନାର ବଡ଼ ବାବୁଙ୍କ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଅଛି, ଥାନା ଛୋଟ ହେଲେ ମଧ୍ୟ ଚଳିବ। ତେଣୁ ସିନିୟରଟି ତାଲିକା ତିଆରି କରି ସେଇ ଅନୁସାରେ ଅଫିସର ଇନ୍‌ଚାର୍ଜ ପୋଷ୍ଟିଂ କରିଦେଲି। ସେଇ ସମୟରେ ଆଉ ତିନୋଟି ଆଦେଶ ଦେଲି। ପ୍ରଥମ ହେଲା ଯେଉଁମାନେ ୨ ବର୍ଷରୁ ଅଧିକ ଗୋଟିଏ ସ୍ଥାନରେ ରହିଛନ୍ତି ସେମାନଙ୍କ ପାଖକୁ ଚିଠି ଗଲା ସେ ତାଙ୍କର ବଦଳି ପାଇଁ ବିଚାର କରାଯାଉଛି ଓ

ସେ ଲେଖିକରି କାରଣ ଦର୍ଶେଇ ୫ଟି ସ୍ଥାନର ନାଁ ଦିଅନ୍ତୁ, ତନ୍ମଧ୍ୟରୁ ଗୋଟିଏ ସ୍ଥାନରେ ତାଙ୍କର ପୋଷ୍ଟିଂ ହେବ। ଅଫିସରମାନେ ସମସ୍ତେ ଲେଖି ଜଣେଇଲେ। ଏଇ ଦେଖନ୍ତୁ ଗୁଡ଼ାରୀ ଥାନାରେ ଜଣେ ଅଫିସର ଅଛି କିନ୍ତୁ ସେଠାରେ କଲେଜ ନାହିଁ ଓ ତାଙ୍କ ପୁଅ ମାଟ୍ରିକ୍ ପାସ୍ କରି କଲେଜରେ ପଢ଼ିବ। ସେ ଯଦି ଲେଖି ଜଣେଇଲେ ଯେ କଲେଜ ଥିବା ସ୍ଥାନକୁ ମୋତେ ଟ୍ରାନ୍ସଫର କରାଯାଉ, ତେବେ କ'ଣ ନାକରା ହେଲା ? ଆମେ ସରକାରୀ କର୍ମଚାରୀ ପଲ୍ଲିକାଲ ପ୍ରେସର ବୋଲି ପାଟି କରୁ କିନ୍ତୁ ଆମେ ପଲ୍ଲିସିଆନଙ୍କ ଉପରେ ପ୍ରେସର ପକାଉ ଓ ସେମାନେ ଉପର ହାକିମଙ୍କ ଉପରେ ପ୍ରେସର ପକାନ୍ତି। ଏକଥା ଶତକଡ଼ା ୧୦୦ ରୁ ୨୦୦ ସତ ନହେଲେ ମଧ୍ୟ ଅନେକ ପରିମାଣରେ ସତ। ଅଫିସର ଓ କନେଷ୍ଟବଳମାନଙ୍କର ଆବଶ୍ୟକତା ଅନୁସାରେ ବଦଳି କରିବାରୁ ମୋ' ଉପରେ କୌଣସି ରାଜନୈତିକ ଚାପ ପଡ଼ିନାହିଁ। କେବଳ ଜଣେ ଏଏସଆଇଙ୍କର ମନ୍ତ୍ରୀଙ୍କ ସାଙ୍ଗେ ସୁସମ୍ପର୍କ ଥିବାରୁ ତାଙ୍କର ବଦଳି ଅର୍ଡ଼ରକୁ ସେ ଗ୍ରହଣ ନକରି ଅନ୍ୟ ଅଫିସରମାନଙ୍କୁ କହିଲେ 'ମୁଁ ବଦଳି ହେବି କି ଏସ୍‌ପି ବଦଳି ହେବେ ଦେଖ।' ପ୍ରକୃତରେ ମୋର ବଦଳି ହେଲା। ମୁଁ ବଦଳି ଆଦେଶ ଦେଉଥିଲି, ଆଡ଼ିସନାଲ ଏସ୍‌ପି ଓ ଡିଏସ୍‌ପିମାନଙ୍କୁ ବସେଇ ଓ ଆଲୋଚନା କରି। ଏକଥା ମୁଁ ରାଉରକେଲା ଏସ୍‌ପି ଓ ମୟୂରଭଞ୍ଜ ଏସ୍‌ପି ଥିଲା ବେଳେ କରିଥିଲି ଓ କୋରାପୁଟରେ ମଧ୍ୟ କଲି। ସମ୍ପୂର୍ଣ୍ଣ ସ୍ୱଚ୍ଛତା ହେତୁ ବଦଳି ବିଷୟରେ ଅପପ୍ରଚାର କରିବା ପାଇଁ କେହି ସୁଯୋଗ ପାଇଲେ ନାହିଁ। ଆଉ ଗୋଟିଏ ଆଦେଶ ଦେଲି ଗୁପ୍ତ ଚରିତ୍ର ପଞ୍ଜିକା ଲେଖିବା ବିଷୟରେ। ପୋଲିସରେ ବିଚିତ୍ର ନିୟମ ଥିଲା ଯେ ଏସ୍‌ପି ସିଧାସଳଖ ଭାବେ ସମସ୍ତଙ୍କ ଏସିଆର ଲେଖିବେ। ୪୫ଟି ଥାନା ଓ ୪୦ଟିରୁ ଉର୍ଦ୍ଧ୍ୱ ଫାଣ୍ଡିର ଅଫିସରଙ୍କ ଦକ୍ଷତା ଓ ସଚ୍ଚୋଟତା ବିଷୟରେ ଏସ୍‌ପି କିମିତି ଜାଣିବେ ? ତେଣୁ ସବୁ ଅଫିସରଙ୍କୁ ଚିଠି ଗଲା ତୁମେ କେଉଁ କେଉଁ ଭଲ କାମ କରିଛ ଓ କେଉଁ କେଉଁ କାମ କରିପାରିନାହଁ ସେ ବିଷୟରେ ତୁମ ଇନ୍‌ସପେକ୍ଟର ଓ ଡିଏସ୍‌ପିଙ୍କ ମାଧ୍ୟମରେ ଲେଖି ଜଣାଅ। ଇନ୍‌ସପେକ୍ଟର ଓ ଡିଏସ୍‌ପିଙ୍କୁ କୁହାଗଲା ତାଙ୍କର ମତ ଦେବା ପାଇଁ। ତେଣୁ ଏସିଆର ଲେଖିବାରେ କୌଣସି ଅସୁବିଧା ହେଲାନାହିଁ। ଆଉ ଏକ ଆଦେଶ ଦେଲି ଯେ ଏପ୍ରିଲ ପହିଲା ପ୍ୟାରେଡ଼ରେ (ପୁଲିସ ପ୍ରତିଷ୍ଠା ଦିବସ) ଜିଲ୍ଲାର ଶ୍ରେଷ୍ଠ ଥାନା ବାବୁ, ଶ୍ରେଷ୍ଠ ସବ୍‌ଇନ୍‌ସପେକ୍ଟର, ଶ୍ରେଷ୍ଠ ଏଏସ୍‌ଆଇ, କନେଷ୍ଟବଳ ଓ ହାବିଲଦାରଙ୍କୁ ପ୍ୟାରେଡ଼ରେ ପ୍ରାଇଜ୍ ଦିଆଯିବ। ଏହା ଓଡ଼ିଶାରେ ପ୍ରଥମ ଥର ପାଇଁ ହେଲା ବୋଲି ଖବରକାଗଜରେ ପ୍ରଶଂସିତ ହେଲା ଓ ଜୟପୁର ରେଡ଼ିଓ ଷ୍ଟେସନର ନିର୍ଦ୍ଦେଶକ ବୀଣାଦେବୀ କୋରାପୁଟ ଆସି ରେଡ଼ିଓ ମାଧ୍ୟମରେ ସିଧାସଳଖ ପ୍ରସାରଣ କଲେ। ପୋଲିସ କର୍ମଚାରୀଙ୍କ ମନରେ ଉତ୍ସାହ ସୃଷ୍ଟି ହେଲା, ପରେ ଏହା ରାଜ୍ୟରେ

କାର୍ଯ୍ୟକାରୀ କରାଗଲା। ଏସବୁ ସତ୍ତ୍ୱେ ବଦଳି ହେଲା ଜଣେ ଏଏସ୍ଆଇଙ୍କ ଜିଦ୍ ପାଇଁ । ସେ ଜଣେ ମନ୍ତ୍ରୀଙ୍କର ପୁଅଙ୍କର ଅନ୍ତରଙ୍ଗ ବନ୍ଧୁ ଓ ଉଭୟ ଏକା ସଙ୍ଗେ ପିଆପିଇ କରନ୍ତି। ପୁଣି ମନ୍ତ୍ରୀ ମହାଶୟ ୫୦୦ ବ୍ୟାଗ୍ ଧଳା ସିମେଣ୍ଟ ଆଣି ଜଣେ ବନ୍ଧୁଙ୍କ ଘରେ ରଖିଥିଲେ, ଖବରପାଇ ମୁଁ ତାଙ୍କୁ ଜବତ କଲି ଓ ମନ୍ତ୍ରୀଙ୍କ ବନ୍ଧୁଙ୍କ ନାଁରେ କେସ୍ ରୁଜୁ ହେଲା। ପୋଲିସ କେସ୍ ହୋଇ ଜିନିଷ ଜବତ ହେଲା ଅଥଚ ସିଭିଲ ସପ୍ଲାଇ ବିଭାଗ ଭୁବନେଶ୍ୱରରୁ ଏକ ତାରବାର୍ତ୍ତା ଆସିଲା ଯେ ଯାହାଙ୍କ ଠାରୁ ଜବତ ହୋଇଛି ସିମେଣ୍ଟ ତାଙ୍କ ଜିମାରେ ଦିଆଯାଉ। ବ୍ୟାଗ୍‌ରେ ଲେଖାଯାଇଛି ଯେ ସିମେଣ୍ଟ (କୋରିଆର) ନଦୀବନ୍ଧ ପାଇଁ, ବିକ୍ରୟ ପାଇଁ ନୁହେଁ। ସିଭିଲ ସପ୍ଲାଇ ବିଭାଗର ଆଦେଶକୁ ଭ୍ରୂକ୍ଷେପ ନକରି ମୁଁ ଥାନା ଅଫିସରଙ୍କୁ କହିଲି କୋର୍ଟରୁ ଆଦେଶ ନେଇ ବଜାର ଦରରେ ଜଗନ୍ନାଥ ମନ୍ଦିର କମିଟି, ମସ୍‌ଜିଦ୍ କମିଟି ଓ କଲେଜ କମିଟିକୁ ବିକିଦେଇ ପଇସା ଟ୍ରେଜେରୀରେ ଜମା କରିଦିଅ। ଏହାପରେ ବଦଳି ହୋଇଗଲା ଗଞ୍ଜାମ ଜିଲ୍ଲାକୁ। ଆଉ ଦୁଇଟି ଘଟଣା ଲେଖିବା ଉଚିତ୍ ମନେ କରୁଛି। ୧୯୮୦ ମସିହା ସେପ୍ଟେମ୍ବର ୧୭ ତାରିଖ, ସକାଳୁ ଡିଏସ୍‌ପି ଏଲ୍.କେ. ପାତ୍ର ଫୋନ୍ କରି କହିଲେ 'ସାର୍ ଭୟଙ୍କର ସମ୍ବାଦ। ବଂଶଧାରା ନଦୀରେ ପ୍ରବଳ ବନ୍ୟା। ଗୁଣୁପୁର ସହର ବୁଡ଼ିବା ଉପରେ।' ସମ୍ବାଦଟା ଯେକୌଣସି ଲୋକଙ୍କୁ ବିବ୍ରତ କରିଦେବ। ରିଲିଫ୍ କାର୍ଯ୍ୟ କଲେକ୍ଟରଙ୍କର ହେଲେ ମଧ୍ୟ ଏସ୍‌ପିଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଅଛି। ରିଲିଫ ପାର୍ଟିକୁ ନିରାପତ୍ତା ଯୋଗାଇବା ନିହାତି ଦରକାର। ସେଦିନ ରବିବାର ଓ କଲେକ୍ଟର ଯାଇଥାନ୍ତି କୋଟପାଡ଼୍। କୋଟପାଡ଼୍‌କୁ ୱାରଲେସ୍ ମାଧ୍ୟମରେ ଖବର ଦେଲି। ସଙ୍ଗେ ସଙ୍ଗେ କ୍ୟାସରୁ ୬୫ ହଜାର ଟଙ୍କା ବାହାର କରି ଏଡିଏମ୍‌ଙ୍କୁ ଦେଇ ରସିଦ୍ ରଖିଲି। ତା'ପରେ ଉଭୟ ଗଲୁ ଗୁଣୁପୁରକୁ। ବାଟରେ ରାମନାଗୁଡ଼ା ଓ ତା'ପରେ ପଡ଼ିଲା ପୁଟ୍ଟେନ୍ଦ୍ରି। ପୁଟ୍ଟେନ୍ଦ୍ରିରୁ ଗୁଣୁପୁର ଏପାଖେ ଥିବା ଗାଁ ବିକ୍ରମପୁର ସାତ କିଲୋମିଟରର ବାଟ। ସାତ କିଲୋମିଟର ରାସ୍ତା ଧୋଇ ହୋଇଯାଇ ଆଣ୍ଠୁଏ ଆଣ୍ଠୁଏ କାଦୁଅ, ଯୋତା ଖୋଲିଲୁ। ଝିପି ଝିପି ବର୍ଷା ଯୋଗୁ ଛତା ମେଲେଇ ସାତ କି.ମି. ଚାଲି ଚାଲି ବିକ୍ରମପୁରରେ ପହଞ୍ଚିଲୁ ଓ ସେଇଠୁ ଗୁଣୁପୁର ସହର ଅନେଇବା ପାଇଁ ଚେଷ୍ଟା କଲୁ। ଖାଲି ପାଣି ଓ ପାଣି। ଦୁଇ ତିନି ଜଣ ଲୋକ କହିଲେ ଯେ ଅଧଘଣ୍ଟା ପୂର୍ବରୁ ୬ଟି ହାତୀ ଭାସିଗଲେ। ଏଇ କଥା ହେଉ ହେଉ ଆମ ସାମନାରେ ଗୋଟିଏ ପେଣ୍ଡରା ବାଘ ଭାସିଗଲା। ସବୁଆଡ଼ ଗାଈ, ବଳଦ, ଛେଳି, ମେଣ୍ଢାଙ୍କ ଶବ, କୁଢ଼ କୁଢ଼। ବିକ୍ରମପୁରରେ ୧୦୦ ବର୍ଷ ତଳେ କୌଣସି ଓଭରସିୟରଙ୍କ ଦ୍ୱାରା ତିଆରି ହୋଇଥିବା ଦୁଇ ବଖରିଆ ଆଇ.ବିଟି ଠିକ୍ ଥିଲା କିନ୍ତୁ ଇଞ୍ଜିନିୟରଙ୍କ ଦ୍ୱାରା ଛଅ ସାତ ବର୍ଷ ତଳେ ତିଆରି ହୋଇଥିବା ବିରାଟ ଗେଷ୍ଟ ହାଉସର ପତ୍ତା ନଥିଲା। ବଂଶଧାରା ଉପରେ

ହୋଇଥିବା ଲମ୍ବା ପୋଲ ମଧ ନିଶ୍ଚିହ୍ନ। ସବୁଡ଼ଙ୍ଗା ଭାସି ଯାଇଥିଲା, ଯିବୁ କେମିତି ? ଗୁଣୁପୁର ବାସିନ୍ଦା ମରିଛନ୍ତି କି ବଞ୍ଚିଛନ୍ତି ତାହା ଜାଣିବୁ ବା କେମିତି ? ବିକ୍ରମପୁର ବଙ୍ଗଳାରେ ରହୁଥିବା ଦୁଇ ଜଣ ଅଡ଼ିଟର ଯଦି ମରିଗଲେ ତେବେ ଗୁଣୁପୁରରେ କ'ଣ ନହୋଇଥିବ ! ଜଣେ ବୁଦ୍ଧିମାନ ଲୋକ ମାଇକ୍ ଓ ବ୍ୟାଟେରୀଟେ ଆଣିଲା ଓ ମାଇକ୍‌ରେ ଆମେ ପାଟି କଲୁ ଯେ ଗୁଣୁପୁରରେ ଯଦି କେହି ଏକଥା ଶୁଣିପାରୁଛନ୍ତି ତେବେ ଏସଡ଼ିଓଙ୍କୁ ଜଣାନ୍ତୁ ଓ ସେ ଆମ୍ଭମାନଙ୍କ ସାଙ୍ଗେ କଥାବାର୍ତ୍ତା କରନ୍ତୁ । କିଛି କ୍ଷଣ ତା'ପରେ ଏସଡ଼ିଓ ଚିନ୍ମୟ ବସୁ ମାଇକ୍ ମାଧ୍ୟମରେ ଜଣେଇଲେ ଅନେକ ଲୋକ ଭାସି ଯାଇଛନ୍ତି; କିନ୍ତୁ ବାକି ସମସ୍ତେ ନିରାପଦ ସ୍ଥାନରେ ଅଛନ୍ତି। ରିଲିଫ ନିହାତି ଦରକାର କିନ୍ତୁ ପହଞ୍ଚିବା ଭାରି କଷ୍ଟ କାରଣ ଗୁଣୁପୁର ସହର ପାଣି ଘେରରେ। ସମସ୍ତ ଘଟଣା ଖଣ୍ଡେ କାଗଜରେ ଲେଖି ଜଣକୁ ପଠେଇଲୁ ସୁଦୂର ରାୟଗଡ଼ା ଓ ସେଇଠୁ କଲେକ୍ଟର ଏସ୍‌ପିଙ୍କ ଜଏଣ୍ଟ ରିପୋଟ୍ ଗଲା ସରକାରଙ୍କୁ। ଆନ୍ଧ୍ର ମଧ ବନ୍ୟା ବିପର୍ଯ୍ୟସ୍ତ ହୋଇଥିଲା କିନ୍ତୁ ସେଠିକାର ସରକାର ଯେତେ ତତ୍ପରତା ଦେଖାଇଲେ ଆମ ସରକାର ସେତେ ଦେଖାଇଲେ ନାହିଁ। ରିଲିଫ୍ ପହଞ୍ଚାଇବାରେ ଡେରିକଲେ। ଆମେ କହିବା ମୁତାବକ ଚିତ୍ରକୋଣ୍ଡାରୁ ଆସିଲା ୨ଟି ଡଙ୍ଗା। ରିଲିଫ୍ ପାର୍ଟି (କଲେକ୍ଟର, ଏସ୍‌ପି, ଅଫିସର ଷ୍ଟାଫ୍, ମେଜର ଚୌଧୁରୀଙ୍କର ଏନ୍‌ସିସି ଛାତ୍ର ଓ ଓଏସଏପି) ସେ ଡଙ୍ଗାକୁ ବୋହି ବୋହି ଆଣିଲେ। ୧ ନଂ ଡଙ୍ଗାରେ ଆମେ ବସିବା ପାଇଁ ଯାଉଛୁ ଜଣେ ଇନ୍‌ସପେକ୍ଟର ମୋ' ହାତଟା ଧରି ପକେଇ କହିଲେ 'ସାର୍ ମୋତେ କାହିଁକି ଅଡୁଆ ଅଡୁଆ ଲାଗୁଛି ଦୟାକରି ଆପଣ ଯାଆନ୍ତୁ ନାହିଁ।' ତାଙ୍କ କଥା ମାନି ଆମେ ରହିଲୁ, ଡଙ୍ଗାରେ କିଛି ଚାଉଳ ଓ ପହଁରା ଜାଣିଥିବା ତିନିଜଣ କନେଷ୍ଟବଳ ଟିୟୁବ୍ ଧରି ପ୍ରଥମେ ଗଲେ। ଦଶ ମିନିଟ୍ ମଧ୍ୟରେ ଡଙ୍ଗାଟା ବୁଡ଼ିଗଲା କିନ୍ତୁ ନାଉରୀ ଓ କନେଷ୍ଟବଳମାନେ ପହଁରି ପଳେଇ ଆସିଲେ। ତା'ସତ୍ତ୍ୱେ କଲେକ୍ଟର, ମୁଁ ଓ ଏଏସ୍‌ପି ରାଜେନ୍ଦ୍ର ଖାନ୍ନା କିଛି ଚାଉଳ ବସ୍ତା ନେଇ ଗଲୁ ଭଗବାନଙ୍କୁ ସ୍ମରଣ କରି। ମଝି ନଈରେ ସୁଅରେ ଡଙ୍ଗାଟା ତଡ଼ି ହୋଇଗଲା ଓ ଗୁଣୁପୁର ସହରର ଗୋଟିଏ କି.ମି. ତଳେ ଯାଇ ଆମେ ଲାଗିଲୁ। ମୋତେ ଭଗବାନ ରକ୍ଷା କଲେ କହି ଡଙ୍ଗାରୁ ଓହ୍ଲାଇଲି ଓ ଆମେ ଚାଲିଲୁ ଥାନାକୁ। ଗୋଡ଼ ପଡୁଥାଏ କେତେବେଳେ ପଚା ଚାଉଳ ବସ୍ତା ଉପରେ କିମ୍ବା ମରିପଡ଼ିଥିବା ଗାଈ, ବଳଦଙ୍କ ପିଠି କିମ୍ବା ଗୋଡ଼ ଉପରେ। ଥାନାରେ ପହଞ୍ଚିଲା ବେଳକୁ ରୁଣ୍ଡ ହୋଇଥିବା ବହୁତ ଲୋକ ଆମକୁ ଦେଖି ପଳେଇଲେ। ଥାନା ପଡ଼ିଆରେ ଥୁଆ ହୋଇଥାଏ ହେଲିକପ୍ଟରଟା ତା'ର ଉପର ଅଂଶ ଭାଙ୍ଗିଯାଇଥାଏ। ଜଣେ ଲୋକ କହିଲେ ଯେ ଚିଫ୍ ମିନିଷ୍ଟର ଆସିଥିଲେ ଜଣେ ଏମ୍‌ଏଲ୍‌ଏଙ୍କୁ ଧରି। ଏସ୍‌ଡିଓ ନାଲିପତକା ହଲେଇଲେ ନଓହ୍ଲେଇବା ପାଇଁ କାରଣ ଲୋକମାନେ ଉତ୍ୟକ୍ତ ଥିଲେ।

କିନ୍ତୁ ଏମଏଲଏ କହିଲେ ସାର୍ ମୁଁ ଅଛି କିଛି ଅସୁବିଧା ନାହିଁ। ଓହ୍ଲେଇବା ମାତ୍ରେ ଲୋକ ଆକ୍ରମଣ କଲେ, ଏମଏଲଏ କୁଆଡ଼େ ଗଲେ କେଜାଣି? କିନ୍ତୁ ଦୁଇ ପାଇଲଟଙ୍କୁ ହସ୍ପିଟାଲର ଏକ ରୁମ୍‌ରେ ଥିବା ଅବସ୍ଥାରେ ଉଦ୍ଧାର କରାଗଲା। ଥାନା ଭିତରେ ଚିଫ୍ ମିନିଷ୍ଟରଙ୍କୁ ଦେଖିଲୁ। ଲୋକମାନେ ଧକ୍‌କା ମାରି ତାଙ୍କ ପଞ୍ଜାବୀ ଚିରି ଦେଇଥିଲେ। ତା'ସତ୍ତ୍ୱେ ସେ ଧୀରସ୍ଥିର ଓ ପିରିସ୍ଥିତି ବିଷୟରେ ବୁଝିଲେ ଓ ଫେରିଯାଇ ରିଲିଫର ବନ୍ଦୋବସ୍ତ କଲେ। ରିଲିଫ କାର୍ଯ୍ୟରେ ପ୍ରଶାସନକୁ ବହୁତ ବେଶି ସାହାଯ୍ୟ କରିଥିଲା ଆରଏସଏସ। ସେଇମାନେ ସବୁ ମୃତ ଗାଈ, ବଳଦ, ଛେଳିକୁ ପୋଡ଼ିଥିଲେ। ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ଚାଉଳ ବାଣ୍ଟି ଥିଲେ । ଅଥଚ ଆସିଥିବା ଅଳ୍ପ କେତେକ ଖ୍ରୀଷ୍ଟିୟାନ ସଂସ୍ଥା ମଧ୍ୟରୁ ଗୋଟିଏ ଖ୍ରୀଷ୍ଟିୟାନ ମାନଙ୍କୁ ୫ କେଜି ଓ ଅନ୍ୟମାନଙ୍କୁ ୨ କେଜି ଦେବାରୁ ମାଡ଼ ଖାଇଲେ। ସେଇ ସମୟରେ ସଞ୍ଜୀବ ବାବୁ ଓ ମୁଁ ଖାଲି ପାଦରେ ବନ୍ୟାଗ୍ରସ୍ତ ସବୁ ଗାଁକୁ ଯାଇଛୁ। ଖାଇବା ପିଇବାର ଠିକଣା ନାହିଁ। କୋରାପୁଟ ଫେରିବା ବେଳକୁ ଆମର ଓଜନ ବହୁତ କମିଯାଇଥିଲା। ଏହା ସତ୍ତ୍ୱେ କିଛି ସିନିୟର ଆଇଏଏସ୍ ଓ ଆଇପିଏସ୍ ଅଫିସର ଚିଫ୍ ମିନିଷ୍ଟରଙ୍କୁ କାହିଁକି ଆକ୍ରମଣ ହେଲା ବୋଲି ଅପପ୍ରଚାର କରି ସେଥିପାଇଁ ଆମକୁ ସସ୍‌ପେଣ୍ଡ କରିବା ପାଇଁ ଚେଷ୍ଟା କଲେ। କିନ୍ତୁ ସରକାରଙ୍କ ଠାରୁ ଆଦେଶ ଆସିଲା ଆମ୍ଭମାନଙ୍କ କାର୍ଯ୍ୟର ଉଚ୍ଚ ପ୍ରଶଂସା କରାଯାଉ। ସେ ସମୟର ବିଭୀଷିକା ମନେପଡ଼ିଲେ ଏବେବି ଦେହ ଶିହରୀ ଉଠେ। ଲେଖିଲେ ବହିଟେ ହେବ।

କୋରାପୁଟରେ ଓଏସ୍ଏପିର ଏକ ବ୍ୟାଟାଲିୟନ। ଦିନେ ରାତି ୪ଟା ବେଳେ କମାଣ୍ଡାଣ୍ଟ ବଡ଼ ବ୍ୟସ୍ତ ହୋଇ ଫୋନ୍ କରି କହିଲେ ଯେ 'କନେଷ୍ଟବଳମାନେ ଦଳବଦ୍ଧ ହୋଇ ଆସୁଛନ୍ତି ମୋତେ ଆକ୍ରମଣ କରିବା ପାଇଁ, ଜଲ୍‌ଦି ଆସନ୍ତୁ।' ମୁଁ ସାଙ୍ଗେ ସାଙ୍ଗେ ଦାନ୍ତ ଘସିଦେଇ ପୋଷାକ ପିନ୍ଧିଲି ଓ ଡ୍ରାଇଭର ଆସିବାରେ କାଳେ ଡ଼େରି ହେବ ବୋଲି ନିଜେ ଜିପ୍ ଚଲେଇ ଗଲି। ସେତେବେଳକୁ ଓଏସଏପି ବାଲା ଦୁଇଦିନ ଧର୍ମଘଟ କଲେଣି ଓ ଖବରକାଗଜରେ ବାହାରିଥିଲା ଯେ ମଧ୍ୟପ୍ରଦେଶର କନେଷ୍ଟବଳମାନେ ଜଣେ ଏସ୍‌ପିଙ୍କୁ ଗୋଟିଏ ଗଛରେ ବାନ୍ଧି ଦେଇଥିଲେ। ଖବର ପଢ଼ି ଉଦ୍‌ବୁଦ୍ଧ ହୋଇ କନେଷ୍ଟବଳମାନେ ଚାଲିଲେ କମାଣ୍ଡାଣ୍ଟଙ୍କୁ ବାନ୍ଧିବା ପାଇଁ। ସେମାନଙ୍କୁ ବାଟରେ ଅଟକେଇଲି। ସେମାନେ ଚାହିଁଥିଲେ ମୋ' ହାତ ଗୋଡ଼ ଭାଙ୍ଗି ପାରିଥାନ୍ତେ। କିନ୍ତୁ ନାଁ ନଜାଣିଥିଲେ ମଧ୍ୟ ସେମାନଙ୍କ ମଧ୍ୟରୁ ଅନେକଙ୍କୁ ମୁଁ ବ୍ୟକ୍ତିଗତ ଭାବେ ଜାଣିଥିଲି କାରଣ ଗୁଣୁପୁର ବନ୍ୟା ସମୟରେ ଏଇମାନେ ଥିଲେ। ସେମାନଙ୍କୁ ପଢ଼ିଆକୁ ନେଇ କଥାବାର୍ତ୍ତା କରୁଥାଏ, କଲେକ୍ଟର ସଞ୍ଜୀବ ହୋତା ଆସି ପହଞ୍ଚିଲେ। ସେମାନଙ୍କ ଅଭିଯୋଗ ଥିଲା

ଯଦିବା କମାଣ୍ଡାଣ୍ଟ ସଚ୍ଚୋଟ କିନ୍ତୁ ତାଙ୍କ ବ୍ୟବହାର ବହୁତ ଖରାପ। ଆମେ କଥାବାର୍ତ୍ତା କରୁଛୁ, ଡିଆଇଜି ଓଏସ୍‌ଏପି ମଧ୍ୟ ଆସିଲେ। ସେ ବୋଧହୁଏ ରାତିସାରା ଗାଡ଼ିରେ ଆସିଛନ୍ତି। ଡିଆଇଜି ବିଶ୍ୱକେଶ ତ୍ରିପାଠି ସେମାନଙ୍କୁ ବୁଝେଇଲେ ଓ ଷ୍ଟ୍ରାଇକ୍ ପ୍ରତ୍ୟାହୃତ ହେଲା। ଏଥିପାଇଁ ଆଇଜିଙ୍କ ଠାରୁ ପ୍ରଶଂସା ପତ୍ର ମିଳିଥିଲା। କୋରାପୁଟରୁ ବଦଳି ହେଲା ଗଞ୍ଜାମ। ସର୍ବସାଧାରଣ ବାଜା ବଜେଇ ଘରକୁ ଆସିଲେ ଓ ମନ୍ଦିରକୁ ନେଇ ବିଦାୟ ସମ୍ବର୍ଦ୍ଧନା ଦେଲେ। ଡକ୍ଟର ହରେକୃଷ୍ଣ ମହତାବ ସମ୍ପାଦକୀୟରେ ମୋ' ବଦଳି କିଭଳି ଅନ୍ୟାୟ ଭାବେ କରାଯାଇଛି ସେ ବିଷୟରେ ଲେଖିଲେ। ତା'ପରଦିନ ପୋଲିସ ଓ ପବ୍ଲିକ ଶୋଭାଯାତ୍ରାରେ ମୋତେ ସହର ବାହାର ପର୍ଯ୍ୟନ୍ତ ନିଆଗଲା ବାଟରେ ଓ ଏସ.ଏ.ପି., ସୁନାବେଡ଼ା ଥାନା, ଶିମିଳିଗୁଡ଼ା ଓ ପଟାଙ୍ଗୀ ଥାନାରେ ଅଫିସର ଓ କନେଷ୍ଟବଲମାନେ ବିଦାୟ ଦେଲେ । ଅଣନକ ବଦଳି ପାଇଁ କିଛି ଅବଶୋଷ ନଥିଲା । ସର୍ବସାଧାରଣ ଓ ପୋଲିସ ବାହିନୀର ଶ୍ରଦ୍ଧାଭାଜନ ହୋଇପାରିଲି ଓ ଡକ୍ଟର ମହତାବଙ୍କ ପ୍ରଶଂସା ପାଇଲି। ଏହାଠାରୁ ବଳି ଆଉ କ'ଣ ଆଶ୍ୱାସନା ହୋଇପାରେ ?

## ସାହିତ୍ୟ ସାଧନାର ଅଯମାରମ୍ଭ

ପ୍ରସେସନରେ ସହର ପାର ହେବା ଓ ରାସ୍ତାରେ ବିଭିନ୍ନ ସ୍ଥାନରେ ସମ୍ବର୍ଦ୍ଧନା ପାଇବା ହେତୁ ବିଳମ୍ବ ହେବା ସ୍ୱାଭାବିକ। ତେଣୁ ଶୁନ୍‌କି ଘାଟି ଡାକବଙ୍ଗଳାରେ ୧୦ ରୁ ୧୫ ମିନିଟ୍ ବିଶ୍ରାମ ନେଲୁ। ୧୯୭୩ ମସିହାରେ କଟକରୁ ଆସିଥିଲି କୋରାପୁଟ, ବାଟରେ ଶୁନକି ଘାଟିରେ ଲଞ୍ଚ ଖାଇ ବିଶ୍ରାମ ନେଲି। ଡ୍ରାଇଭର ଓ ଷ୍ଟେନୋ ପଛ ବାରଣ୍ଡାରେ ବସି ଖାଉଥିଲେ। ମୁଁ କବାଟ ମେଲେଇ ବାରଣ୍ଡାକୁ ଆସିବା ମାତ୍ରେ ବାରଣ୍ଡା ତଳେ ଠିଆ ହୋଇଥିବା ଦଳେ ହରିଣ ଛାଟି ପିଟି ହୋଇ ପଳେଇଲେ। ଏବେ ୧୯୮୧ରେ ହରିଣ କଥା ଛାଡ଼ ଠେକୁଆ କି ବିଲୁଆଟେ ବି ନାହିଁ। ସମୟ ଆସିବ ଧରାପୃଷ୍ଠରେ କେବଳ ମଣିଷ ରହିବେ ଓ ପଶୁଙ୍କ ଭଳି ବ୍ୟବହାର କରିବେ।

ଏଇ ଶୁନ୍‌କି ବଙ୍ଗଳାରେ ଥରେ ସଞ୍ଜୀବ ବାବୁ ଓ ମୋ' ପରିବାର ଗୋଟିଏ ରାତି କଟେଇଥିଲୁ, ସ୍ଥାନୀୟ ଅଫିସରଙ୍କର ସମସ୍ତ ବାରଣ ସତ୍ତ୍ୱେ। ସମସ୍ତଙ୍କ ଧାରଣା ଭୂତ ଅଛି। ଶୁନ୍‌କି ଘାଟି ତିଆରି କରିଥିବା ଇଞ୍ଜିନିୟର ଶଙ୍କି ଆତ୍ମହତ୍ୟା ଏଇଠି କରିଥିଲେ ଓ ତାଙ୍କ ଭୂତ ଏଇଠି କାଳେ ବୁଲେ। ସେହିଭଳି ମାଛକୁଣ୍ଡରେ ଗୋଟିଏ ବଙ୍ଗଳା ଅଛି ଓ ସମସ୍ତଙ୍କ ଧାରଣା ସେଠି କଟା ମୁଣ୍ଡ ଥିବା ସ୍ତ୍ରୀ ଲୋକଟିଏ ରହୁଛି। ଇନ୍‌ସପେକ୍ଟର ମନା କରିବା ସତ୍ତ୍ୱେ ଜିଦ୍ କରି ରହିଲି। ଭୂତକୁ 'ଘଉଡ଼େଇବା' ପାଇଁ ଇନ୍‌ସପେକ୍ଟର ୨ ଜଣ କନେଷ୍ଟବଲ ଦେଲେ ବାରଣ୍ଡାରେ ଶୋଇବା ପାଇଁ। ଶୋଇବାର ଉପକ୍ରମ କରି ଲାଇଟ୍ ଲିଭାଇବାର

୧୦ ମିନିଟ୍ ପରେ ବାଥରୁମ୍‌ରୁ ଠକ୍ ଠକ୍ ଶୁଭିଲା, ଲାଇଟ୍ ଅନ୍ କରିବା ମାତ୍ରେ ବନ୍ଦ ହୋଇଗଲା। ତେଣୁ କବାଟ ଖୋଲି ବାହାରକୁ ଆସିଲି। ମୋତେ ଜଗିଥିବା କନେଷ୍ଟବଳ ଗଲେ କୁଆଡ଼େ ? ଆପେ ବଞ୍ଚିଲେ ବାପର ନାଁ। ପୁଣି ଲାଇଟ୍ ଲିଭେଇଲି ଓ ପୁଣି ଠକ୍ ଠକ୍। କିଛି ସମୟ ପରେ ବାହାର କବାଟ ଧଡ଼୍ ଧଡ଼୍। ପିସ୍ତଲଟା ଧରି କବାଟ ଖୋଲିଲି, ଦେଖିଲି ଛିଣ୍ଡା କଳା କୋର୍ଟଟେ ପିନ୍ଧି ହାତରେ ଲଣ୍ଠନ ଧରି ଆଦିବାସୀ ଚୌକିଦାରଟିଏ ଠିଆ ହୋଇଛି। 'ବାବୁ, ପୁଲିସ ଦୁଇଟି ପଳେଇଲେ ମୁଁ ଆସିଲି ଦେଖିବା ପାଇଁ ତୁ ଠିକ୍ ଅଛୁ କି ନାହିଁ। ତୁ ଯାଆ ଶୋଇପଡ଼ ମୁଁ ଜଗିବି।' ଅନେଇଲି ସେ ଆଦିବାସୀଟିକୁ। ସେ ମୋର କେହି ନୁହେଁ କିନ୍ତୁ ବ୍ୟବହାର କରୁଛି ସତେ ଯେମିତି ସେ ମୋର ସବୁକିଛି। ଛୋଟ ଚାକିରିରେ ଥିବା ସେ ବଡ଼ ମଣିଷଟିକୁ କେମିତି ଭୁଲିବି ?

ଏମିତି ଭାବୁଥାଏ ସ୍ତ୍ରୀ କହିଲେ 'ଚାଲ ଯିବା ଡ଼େରି ହେବ।' ଲମ୍ବା ଜିଲେପି ପରି ଘୂରି ଘୂରି ଯାଇଥିବା ଘାଟିକୁ ପାରହୋଇ ଓହ୍ଲେଇଲୁ ସାଲୁର ସହରରେ ଓ ସେଇଠି ପାଛୋଟି ନେଲେ ବିଜୟନଗରମ୍‌ର ଡିଏସ୍‌ପି ନରସିଂହମ୍। ସେ ତାଙ୍କ ସୀମା ପର୍ଯ୍ୟନ୍ତ ଛାଡ଼ିବା ପାଇଁ ଗଲେ ଓ ଯିବା ପୂର୍ବରୁ ଆମକୁ ଫ୍ଲାସ୍‌ରୁ କାଢ଼ି କଫି ପିଆଇଲେ। ଶ୍ରୀକାକୁଲମ୍‌ରେ ପୋଲିସ ଗେଷ୍ଟ ହାଉସ୍‌ର ଲଞ୍ଚ ଖାଇଲୁ ଯଦିବା ବିଳମ୍ବ ହୋଇଥାଏ। ସ୍ଥାନୀୟ ଏସ୍‌ପି ଯେହେତୁ ମୋଠୁ ଜୁନିୟର ତାଙ୍କ ସ୍ତ୍ରୀଙ୍କ ସହ ଦେଖା କରିବା ପାଇଁ ଆସିଥିଲେ। ସେ କହିଲେ ଯେ ଗେଷ୍ଟହାଉସ୍ ସରକାରଙ୍କ ଅନୁଦାନରେ ତିଆରି ହୋଇଛି । ଏଇ ଗେଷ୍ଟ ହାଉସ କଟକରେ ଥିବା ଆଇପିଏସ୍ ମେସ୍ ଠାରୁ ବହୁ ଗୁଣରେ ବଡ଼ ଓ ଭଲ। ମାନୁଛି ଆମ ରାଜ୍ୟ ଦରିଦ୍ର କିନ୍ତୁ ମାନସିକ ସ୍ତରରେ ଏତେ ଦାରିଦ୍ର୍ୟ କାହିଁକି ? ଛତ୍ରପୁରରେ ସୁରୁଖୁରୁରେ ପହଞ୍ଚିଲୁ।

ଗଞ୍ଜାମ ବାଟରେ କେଉଁଠି ଅଟକିବା ପ୍ରଶ୍ନ ଉଠୁନାହିଁ କାରଣ ୨ ଜଣ ପୋଲିସ ଅଫିସର ମୋଟରସାଇକେଲରେ ଆଗେ ଆଗେ ଯାଉଥିଲେ। ସନ୍ଧ୍ୟା ହୋଇଗଲାଣି। ଗାଡ଼ିରେ ବସି ବସି ଗୋଡ଼ ହାତ ବଙ୍କା। ସ୍ତ୍ରୀ ଓ ଦୁଇ ପିଲେ ଖଟରେ ଶୋଇଲେ। ମୋ' ପାଇଁ ସାନ ଖଟଟେ ଅଣାଗଲା ଓ ଝରକାକୁ ଲାଗି ମୁଁ ଶୋଇଲି। ଝରକା ବନ୍ଦ ଓ ସେଇ ପାଖେ ବାରଣ୍ଡାରେ ଶୋଇଲା ଡ୍ରାଇଭର ବଳରାମ୍। ରାତିରେ ନିଦ ଭାଙ୍ଗିଗଲା ବଳରାମ ସାଙ୍ଗରେ କାହାର କଥୋପକଥନରୁ। ବହୁ ପ୍ରଶ୍ନ ସେ ପଚାରୁଥାନ୍ତି ଯଥା କେତେବେଳେ ବାହାରିଲ, କେଉଁଠି ରହିଲ, ସାହେବ କେମିତି ଲୋକ, ଦଣ୍ଡ ଦିଅନ୍ତି କି ନାହିଁ, ମଝିରେ ମଝିରେ ପିଆପିଇ ଟିକେ ଚଳେ କି ନାହିଁ, ବଦଳି ପାଇଁ ମେମ୍‌ସାହେବଙ୍କୁ କହିଲେ ଚଳିବ କି, ପଲିସିଆନଙ୍କ କଥା ଶୁଣନ୍ତି କି ଇତ୍ୟାଦି ଇତ୍ୟାଦି। ବିଚରା ବଳରାମ ସାଧମତେ ଉତ୍ତର ଦେଉଥିଲା ଓ ମୁଁ ଏପଟେ ମୁରୁକି ମୁରୁକି ହସୁଥିଲି। ଜାଣିକରି ଖାସି

ଦେଲି 'ହେ ସାହେବ ଉଠି ପଡ଼ିବେ' କହି ବାବୁ ଜଣକ ମୋଟରସାଇକେଲରେ ଫେରିଗଲେ। ନୂଆ କରି ଆସିଥିବା ହାକିମଙ୍କର ଜନ୍ମ କୁଣ୍ଡଳୀ ଜାଣିବା ପାଇଁ ତଳିଆ କର୍ମଚାରୀ ସବୁବେଳେ ବ୍ୟଗ୍ର।

ମୋ' ପ୍ରଥମ ଗସ୍ତ ହେଲା ଭଞ୍ଜନଗର। ଖାଇବା ଟେବୁଲକୁ ଯାଇ ଦେଖିଲି ସଂସାରରେ ଯେତେ ରକମ ଖାଦ୍ୟ ହୋଇପାରେ ସବୁ ଅଛି, ଯଥା ଭାତ, ତା' ସାଙ୍ଗକୁ ପଲଉ, ପରଟା, ମାଂସ, କଲିଜା କସା, ମାଛ, ବିହନଭଜା, ଚିଙ୍ଗୁଡ଼ି, ଡାଲି, ସାଧାତରକାରୀ, ନଡ଼ିଆ ପାଚେଡ଼ି ଆଉ କେତେ କ'ଣ। ଖାଦ୍ୟ ଜଗତର ଲାଟ୍ ସାହେବ ଠାରୁ ଆରମ୍ଭ କରି ପିଅନ ପର୍ଯ୍ୟନ୍ତ । ଏସବୁ ଦେଖି ମୋ' ବ୍ରହ୍ମ ଜଳିଲାଣି, ରାଗକୁ ସମ୍ଭାଳି ତାଛଲ୍ୟରେ କହିଲି 'କିଓ କଙ୍କଡ଼ା କାହିଁ ? ' 'ସାର୍ ଭୁଲ୍ ହୋଇଗଲା' କହି ଇନ୍ସପେକ୍ଟର ବାରଣ୍ଡାକୁ ପଳେଇଲେ ଓ ସବ୍‌ଇନ୍ସପେକ୍ଟରଙ୍କୁ ସେ ତାଗିଦା କରୁଥିବା ମୋ' କାନରେ ପଡ଼ିଲା 'ହଇରେ ସତ୍ୟାନାଶ କରିଦେଲୁ, ସବୁ କଲୁ କଙ୍କଡ଼ା ଟିକେ କରିପାରିଲୁନି ? କିରେ ରମ୍ଭାକୁ କହିଥିଲେ ପଠେଇଦେଇଥାନ୍ତା। ଫାଷ୍ଟ ଭିଜିଟ୍ ଲାଷ୍ଟ ଇମ୍ପ୍ରେସନ, ଏବେ ସମ୍ଭାଳ ।' ଏହା କହି ଇନ୍ସପେକ୍ଟର ଭିତରକୁ ଆସି ମୋତେ କହିଲେ 'ସାର୍ ମୁଁ କହିଥିଲି ସେ କଲାନି।' ଏହା କହି ମୋଟର ସାଇକେଲ ମାରି ସେ କୁଆଡ଼େ ପଳେଇଲେ, ବୋଧହୁଏ କଙ୍କଡ଼ା ତରକାରି ଖୋଜି। ତାଙ୍କର ଅନୁପସ୍ଥିତିର ସୁଯୋଗ ନେଇ ସବ୍‌ଇନ୍ସପେକ୍ଟର ପଶି ଆସିଲେ ଓ ସଫେଇ ଦେଲେ 'ସାର୍ ଇନ୍ସପେକ୍ଟର ମୋତେ କିଛି କହିନାହାଁନ୍ତି' ଓ ମୁଁ ତାଙ୍କୁ ବୁଝେଇଲି 'ଦେଖ ତୁମେ କୋରାପୁଟ ମୟୂରଭଞ୍ଜ ଇତ୍ୟାଦିରେ କାମ କରୁଥିବା ଅଫିସରଙ୍କୁ ପଚାରିପାର। ମୁଁ ଟୁର୍‌ରେ ଭାତ, ଡାଲି, ସନ୍ତୁଳା ଓ ଦହି ଛଡ଼ା କିଛି ଖାଏ ନାହିଁ। ଯଦି ହୋଟେଲ୍ ଅଛି ହୋଟେଲ୍‌ରୁ ମଗେଇ ଦେବ। ରନ୍ଧାବଢ଼ା କରି ଗୁଡ଼ାଏ ଖର୍ଚ୍ଚ କରିବ ନାହିଁ। ମୁଁ ମୋ' ଡ୍ରାଇଭରର ଖାଇବା ଖର୍ଚ୍ଚ ମୁଁ ଦେଇଦେବି।'

ଗଞ୍ଜାମର ଜଣେ ମନ୍ତ୍ରୀ, ସ୍ପିକର ଓ ଡ଼େପୁଟି ସ୍ପିକର। କେନ୍ଦ୍ର ରସାୟନ ଓ ସାର ରାଷ୍ଟ୍ରମନ୍ତ୍ରୀ ରାମଚନ୍ଦ୍ର ରଥ ମଧ୍ୟ ଗଞ୍ଜାମର। ଭାରତ ସରକାରଙ୍କର ରାଷ୍ଟ୍ରମନ୍ତ୍ରୀଙ୍କର ଓଡ଼ିଶା ରାଜ୍ୟର ଏକ ଜିଲ୍ଲାରେ କି କାମ ଥାଏ କେଜାଣି ସେ ବାରମ୍ବାର ଆସନ୍ତି ଓ ଆଇନ୍ ଶୃଙ୍ଖଳାଠୁ ଆରମ୍ଭ କରି ବିକାଶମୂଳକ କାର୍ଯ୍ୟ ବିଷୟରେ ଅଫିସରମାନଙ୍କ ସାଥିରେ ଚର୍ଚ୍ଚା କରନ୍ତି। ତାଙ୍କର ପିଏ କି ଷ୍ଟେନୋ କିଏ ଜଣେ ହେବେ ସେ ମୋତେ ଫୋନ୍ କରି ଥରେ ଦୁଇ ଥର କହିଲେ ଗଞ୍ଜାମ ଜିଲ୍ଲା ସୀମାନ୍ତରୁ ଆପଣଙ୍କ ପୋଲିସ ପାଇଲଟ୍ ପ୍ରୋଟେକ୍‌ସନରେ ଆସିବେ। ସେମିତି କୌଣସି ସରକାରୀ ଆଦେଶ ନାହିଁ ବୋଲି ମନା କରିଦେଲି। କିନ୍ତୁ ଆମ ଡିଆଇଜି ବାରମ୍ବାର ଯାଆନ୍ତି। ଥରେ ଡିଆଇଜି ମୋତେ ୱାରଲେସ୍ କଲେ ଯେ ମାନ୍ୟବର ରାଷ୍ଟ୍ରମନ୍ତ୍ରୀ ବରହମ୍ପୁରରେ ୫ଟା ବେଳେ ପହଞ୍ଚିବେ।

ଆପଣ ସେ ସମୟରେ ଉପସ୍ଥିତ ଥିବେ। ଆଁଦେଶଟା ବେଶ୍ ବିରକ୍ତିକର। କାରଣ ଜଣେ ରାଷ୍ଟ୍ରମନ୍ତ୍ରୀଙ୍କୁ ଏସ୍‌ପି ଅପେକ୍ଷା କରିବା ପଦ୍ଧତି ନାହିଁ। କିନ୍ତୁ କ'ଣ କରିବା ? ଡିଆଇଜିଙ୍କ ଆଦେଶ। ତେଣୁ ବରହମ୍‌ପୁରରେ ରହିଲି ଅଥଚ ସର୍କିଟ୍ ହାଉସ ଗଲିନାହିଁ। ପରେ ଡିଆଇଜି କୈଫିୟତ୍ ମାଗିବାରୁ କହିଲି ଆପଣଙ୍କ ଆଦେଶ ମୁତାବକ ବରହମପୁରରେ ଥିଲି। ଆପଣ, ଯଦି ଚାହୁଁଛନ୍ତି ଯେ ମୁଁ ରାଷ୍ଟ୍ରମନ୍ତ୍ରୀଙ୍କୁ ରିସିଭ୍ କରିବି ତେବେ ସରକାରଙ୍କ ଠାରୁ ଆଦେଶ ଆଣନ୍ତୁ। ସେ ମୋ' ବିଷୟରେ ଲେଖିଥିଲେ ଯେ ବୁଦ୍ଧିମାନ ଦକ୍ଷ ହେଲେ କ'ଣ ହେବ ଭଏ ଆଇନ୍‌କାନୁନ୍‌ର ରୁଲ୍‌କୁ ଢ଼ାଲ କରି ଦାୟିତ୍ୱ ଏଡ଼େଇ ଦିଅନ୍ତି।

ଗଞ୍ଜାମରେ ବିଶେଷତଃ ବରହମ୍‌ପୁର ଛତ୍ରପୁର ଅଞ୍ଚଳରେ ଦୁଇ ଅସାମାଜିକ ଗୋଷ୍ଠୀ ମଧ୍ୟରେ ପିଟାପିଟି, ମରାମରି, ବୋମା ଫିଙ୍ଗାଫିଙ୍ଗି ବାରମ୍ବାର ହେଉଥିଲା। ରବି ମହାପାତ୍ର ବୋଲି ଜଣେ ଯୁବନେତାଙ୍କୁ ଦିନବେଳେ ଫାର୍ଶାରେ ହାଣି ଦିଆଯାଇଥିଲା। କିଛି ନୀତିଗତ କି ଆଦର୍ଶଗତ ମତଭେଦ ନଥିଲେ ସୁଦ୍ଧା ଗଣ୍ଡଗୋଳ ହେଉଥିଲା ଦୋକାନୀବାଲାଙ୍କ ଠୁ ମାସିକିଆ ଆଦାୟ ଓ ସୀମା ନିର୍ଦ୍ଧାରଣରେ। ସେତେବେଳେ ସମସ୍ତେ ଜାଣିଥିଲେ ବରହମ୍‌ପୁରର କେଉଁ ଅଞ୍ଚଳ କମ୍ୟୁନିଷ୍ଟ ବାଲାଙ୍କର ଓ କେଉଁ ଅଞ୍ଚଳ ପ୍ରତାପ ସ୍ୱାଇଁର। ପ୍ରତାପ ସ୍ୱାଇଁ ବହୁତ ଗୁଡ଼ିଏ କେସ୍‌ରେ ସମ୍ପୃକ୍ତ ଥାଇ ମଧ ହାଇକୋର୍ଟରେ ବେଲ୍ ପାଇଗଲେ। ଭଞ୍ଜନଗରରୁ ଫେରୁଥିବା ସମୟରେ ନରେନ୍ଦ୍ରପୁରରେ କମ୍ୟୁନିଷ୍ଟମାନେ ଆକ୍ରମଣ କରି ତାଙ୍କୁ ଖଣ୍ଡ ଖଣ୍ଡ କରିଦେଲେ। ଗଣେଶ ରେଡ୍ଡୀ ବୋଲି ଜଣେ ସମର୍ଥକଙ୍କ ବେକଟା କାଟିଦେଲେ କିନ୍ତୁ ସେ ବଞ୍ଚିଗଲେ। ଗାଁରୁ କେହି ଜଣେ ଫୋନ୍ କରିଥିବାରୁ ମୁଁ ସାଙ୍ଗେ ସାଙ୍ଗେ କାହାକୁ ଅପେକ୍ଷା ନକରି ଗାଡ଼ି ଡ୍ରାଇଭ କରି ପହଞ୍ଚି ଗଲି, ପରେ ଡିଏସ୍‌ପି ଆସିଲେ। ପ୍ରମାଣ ଥିବାରୁ ପୂର୍ବତନ ଏସ୍‌ପି ଲକ୍ଷ୍ମଣ ମହାପାତ୍ରଙ୍କୁ ଆରେଷ୍ଟ କରାଗଲା। ଏମ୍‌ଏଲ୍‌ଏ ବିଶ୍ୱନାଥ ସାହୁଙ୍କୁ ଖୋଜାଗଲା ଓ ଅନ୍ୟ କେତେଜଣ ଗିରଫ ହେଲେ। ଲକ୍ଷ୍ମଣ ମହାପାତ୍ର ଜାମିନ୍‌ରେ ଖଲାସ ହେବା ମାତ୍ରେ ମୁଁ ଜାଣିଲି ଯେ ତାଙ୍କ ଉପରେ ଆକ୍ରମଣ ହେବ। ତେଣୁ ତାଙ୍କୁ ଚିଠି ଲେଖିଲି ଯେ ଆମେ ତୁମକୁ ପୋଲିସ ସୁରକ୍ଷା ଦେବୁ ଓ ସେ ଉତ୍ତରରେ ଲେଖିଲେ ଦରକାର ନାହିଁ। ଜନସାଧାରଣ ମୋ' ସୁରକ୍ଷା କରିବେ। ଅତିଶୀଘ୍ର ସେ ଫଳ ପାଇଲେ। ଏକ ଛୋଟିଆ ଶୋଭାଯାତ୍ରାରେ ଖଲିକୋଟ କଲେଜ ସାମନାରେ ଯାଉଥିବା ସମୟରେ ଖଣ୍ଡାଧରି ପ୍ରତାପ ସ୍ୱାଇଁଙ୍କ ଲୋକ ଆକ୍ରମଣ କଲେ ଓ ତଥାକଥିତ ସମର୍ଥକମାନେ କୁଆଡ଼େ ଉଭେଇଗଲେ। ବିଚରା ଲକ୍ଷ୍ମଣ ମହାପାତ୍ର ଅନେକ ଚୋଟ ଖାଇ ମରିଗଲେ। କଥାଟାକୁ କମ୍ୟୁନିଷ୍ଟ ଦଳବାଲା ଗୁରୁତର ଭାବେ ଧରିଲେ ଓ ପୋଲିସର ଚରମ ବିଫଳତା ବୋଲି କହିଲେ। ଆସେମ୍ବ୍ଲି ଉଠିଲା ଓ ପଡ଼ିଲା। କିନ୍ତୁ ମୁଖ୍ୟମନ୍ତ୍ରୀ ସଠିକ୍ ଜବାବ୍ ଦେଲେ। ପୂର୍ବରୁ

ଆମେ ବାରମ୍ବାର ଲେଖୁଥିଲୁ ଯେ ବରହମ୍ପୁର ପାଇଁ ଏକ ସ୍ୱତନ୍ତ୍ର ଡିଏସ୍‌ପି ଦରକାର, ତାହା ଘରୋଇ ବିଭାଗ ମନା କରିଦେଉଥିଲା। ଏକ ରାତାରାତି ଏସ୍‌ପି ପୋଷ୍ଟ ମଞ୍ଜୁରୀ ହୋଇଗଲା। ଏକ୍ ସଲାମ୍ ନହିଁ ଶୋ ସଲାମ୍ ଭଳି କଥା ହଏ। କୋରାପୁଟରେ ଗୁଣୁପୁର ବଢ଼ି କଥା ମୁଁ ଆଗରୁ ଲେଖିଛି। କଲେକ୍ଟର, ମୁଁ ଓ ସିଡ଼ିଏମ୍‌ଓ ଡକ୍ଟର ଶାନ୍ତି ରଥ ବୁଲି ବୁଲି ରିଲିଫ୍ ବଣ୍ଟା, ଆଇନ୍ ଶୃଙ୍ଖଳା ଓ ଚିକିତ୍ସାର ବନ୍ଦୋବସ୍ତ କରୁଥିଲୁ। ଦିନକୁ ପ୍ରାୟ ଅଠର ଘଣ୍ଟା କାମ କିନ୍ତୁ ଆନନ୍ଦର ବିଷୟ ଯେ ସବୁ ଗାଁରେ ରିଲିଫ ଜିନିଷ ପହଞ୍ଚିଲା, କିଛି ଗଣ୍ଡଗୋଳ ହୋଇନାହିଁ ଓ କେହି ବେମାରରେ ପଡ଼ି ନାହାଁନ୍ତି। ୨ଟି ଗାଁର ଲୋକ ସଞ୍ଜୀବ ବାବୁ ଓ ମୋ' ଉପରେ ଏତେ ଖୁସି ଥିଲେ ଯେ ତାଙ୍କ ଗାଁର ନାଁ ଆମ ନାଁରେ ରଖିବା ପାଇଁ ଚାହିଁଥିଲେ କିନ୍ତୁ ଆମେ କହିଲୁ ଜଗନ୍ନାଥପୁର ଓ ବଳଭଦ୍ରପୁର ରଖନ୍ତୁ। ଆମେ ଥିଲୁ ଗଜା ବୟସର, ମନୋବଳ ଦୃଢ଼ ଥିଲା ଓ ଶରୀର ପରିଶ୍ରମ କରିପାରୁଥିଲା। କିନ୍ତୁ ସିଡ଼ିଏମଓଙ୍କ ଶରୀର କଷ୍ଟ ସମ୍ଭାଳି ପାରିଲା ନାହିଁ। ଅତ୍ୟଧିକ ପରିଶ୍ରମ ହେତୁ ତାଙ୍କ ମସ୍ତିଷ୍କରେ ରକ୍ତ ସ୍ରାବ ହେଲା ଓ ଗୁଣୁପୁର ହସ୍ପିଟାଲ୍‌ରେ ହିଁ ସେ ଚାଲିଗଲେ। ପଇସାଟିଏ ଅନୁଦାନ ଦେବା ତ ଦୂରର କଥା ସରକାର ଶୋକବାର୍ତ୍ତାଟିଏ ମଧ୍ୟ ପଠାଇଲେ ନାହିଁ। ବ୍ୟଥିତ ହୋଇ ତାଙ୍କ ଦ୍ୱାଦଶ ଉପଲକ୍ଷେ ସମାଜରେ ଗୋଟିଏ ଗଳ୍ପ ଲେଖିଲି। 'ବଂଶଧାରାର ସହିଦ' ଓ ଏଇଟା ଥିଲା ମୋର ସାହିତ୍ୟ ଜୀବନକୁ ଲମ୍ଫ ପ୍ରଦାନ। ତାହା ମଧ୍ୟ ସାଫଲ୍ୟ ସହକାରେ। ବହୁତ ବଡ଼ ବଡ଼ ସାହିତ୍ୟିକଙ୍କ ଠାରୁ ପ୍ରଶଂସା ପତ୍ର ପାଇଲି। ଉତ୍ସାହିତ ହେଲି ଓ ଗଞ୍ଜାମରେ ନିୟମିତ ଲେଖା ଲେଖିଲି। ସେ ସମୟରେ ବହୁତ ବ୍ୟଙ୍ଗ ଲେଖା 'ସାଲିସ୍ ମାଲିସ୍ ନାଲିସ୍ ଓ ସୁପାରିସ୍' 'ଭେଜିକି ଓ ଭକୁଆ' 'ଯୁଧିଷ୍ଠିରଙ୍କ ମହାଯାତ୍ରା' ଇତ୍ୟାଦି ସମାଜରେ ପ୍ରକାଶିତ ହେଲା। କେହି ଜଣେ ଏହା ସରକାର ବିରୋଧି ବୋଲି କହି ଘରୋଇ ବିଭାଗକୁ ଜଣେଇଲା ଓ ଘରୋଇ ବିଭାଗ ଡିଜିଙ୍କ ମତ ପଚାରିବାରୁ ଡିଜି ନରସିଂହ ସ୍ୱାଇଁ ଚମତ୍କାର ଲେଖା, ଲେଖକଙ୍କୁ ମୋର ଅଭିନନ୍ଦନ ଜଣେଇବ ବୋଲି ଫାଇଲରେ ଲେଖିଲେ ଓ ଡିଜି ଅଫିସ୍‌ର ଜଣେ ଡିଆଇଜିଙ୍କର ଦସ୍ତଖତ ହୋଇ ଚିଠି ମୋ' ପାଖକୁ ଆସିଲା। ଦୈନିକ ଆଶା ଓ ଡଗରରେ ମଧ୍ୟ ନିୟମିତ ବ୍ୟଙ୍ଗ ଲେଖା ପ୍ରକାଶିତ ହେଲା। ଭାରତ ସରକାରଙ୍କର ଜଣେ ରାଷ୍ଟ୍ରମନ୍ତ୍ରୀ ସ୍ୱରାଷ୍ଟ୍ର ମନ୍ତ୍ରୀ ଜ୍ଞାନୀ ଜୈଲ୍ ସିଂହ ମହାଶୟଙ୍କୁ ଚିଠି ଲେଖିଲେ ମୁଁ ରାଜନୀତି ଉଦ୍ଦେଶ୍ୟ ପ୍ରଣୋଦିତ ହୋଇ ଲେଖା ଲେଖୁଛି ବୋଲି ଅଭିଯୋଗ କଲେ। ଦକ୍ଷିଣାଞ୍ଚଳ କମିଶନର ଶ୍ରୀ ନୃସିଂହ ଚରଣ ବେହୁରିଆଙ୍କୁ ଦିଆଗଲା ତଦନ୍ତ ପାଇଁ। ସେ ଫୋନ୍ କରି କହିଲେ 'ଏ ବିପିନ ବାବୁ ଆପଣ ଏମିତି ଭାଷାରେ ଲେଖୁଛନ୍ତି ଚେଷ୍ଟା କଲେ ମଧ୍ୟ କେହି ଆପଣଙ୍କୁ ଧରିପାରିବେନି । କିନ୍ତୁ ଯେଉଁ ଭଦ୍ରଲୋକ ଚିଠି ଲେଖିଛନ୍ତି ସେ ଯଦି କାଲି ମୁଖ୍ୟମନ୍ତ୍ରୀ

ହେବେ ତେବେ ଅବସ୍ଥା କ'ଣ ହେବ? ସାମାନ୍ୟ ହସି କହିଲି "ସେଥିପାଇଁ ଆପଣ ଅଛନ୍ତି।" ହସି ହସି ସେ କହିଲେ ହଁ ଟେକା ମାରିବ ତମେ କୈଫିୟତ ଦେବି ମୁଁ। କଥା ଏତିକିରେ ସରିଲା।

ଛତ୍ରପୁରରେ ଏକ ସାହିତ୍ୟ ସଂସଦ ଥିଲା, ମରିଯାଇଥିଲା। ଜୀବନ୍ୟାସ ଦେଲେ ଲେଖକ ଓ ଡ଼େପୁଟି କଲେକ୍ଟର ଗୋପାଳକୃଷ୍ଣ ଶ୍ରୀଚନ୍ଦନ। ବଡ଼ ଗୁଣୀ ଲୋକ କିନ୍ତୁ ହଜାରେ ବ୍ୟକ୍ତିଗତ ସମସ୍ୟା। ତା' ସତ୍ତ୍ୱେ ସାହିତ୍ୟ ସେବାରୁ କେବେ ବିରତ ହୋଇନାହାଁନ୍ତି। ତାଙ୍କ ସାଙ୍ଗେ ଜୁଟିଲା ପିଲାଟିଏ ଅଜୟ ଦାଶ । ନିୟମିତ ମିଟିଂ କଲୁ। ବର୍ଷରେ ଚାରିଥର ନୀଳବିଚି ବୋଲି ଏକ ମାଗାଜିନ୍ ପ୍ରସ୍ତୁତ କଲୁ ଓ ଉପାନ୍ତ ଅଞ୍ଚଳର ଯେତେ ଲାଇବ୍ରେରୀ ସବୁକୁ ମାଗଣା ପଠେଇଲୁ। ଯେହେତୁ ବିଜ୍ଞାପନରେ ଛପେଇବା ଖର୍ଚ୍ଚ ଉଠିଯାଉଥିଲା, ମାଗାଜିନ୍ ବିକିବା ଦରକାର ପଡ଼ିଲା ନାହିଁ। ଖଣ୍ଡିଏ ମାଗାଜିନ୍ ଡକ୍ଟର ମହତାବ୍‌ଙ୍କ ପାଖକୁ ପଠେଇ ଥିଲି ଓ ସେ ଝଙ୍କାରରେ ସେ ବିଷୟରେ ଉଚ୍ଚ ପ୍ରଶଂସା କରି ଲେଖିଥିଲେ। ଅନେକ ବଡ଼ ବଡ଼ ସାହିତ୍ୟିକଙ୍କ ଲେଖା ମଧ୍ୟ ପ୍ରକାଶିତ କରୁଥିଲୁ। ସେଇ ସମୟରେ ମୋର ବହି ତାର୍ଯ୍ୟକ୍ ଦୃଷ୍ଟି (ବ୍ୟଙ୍ଗ ରଚନା), ଶପଥ ସାନ୍ତାଳର (ଆଦିବାସୀ ସଂସ୍କୃତିକୁ ନେଇ ୧୭ଟି ଗଳ୍ପ) ଓ ଦାରୋଗା ସାହିତ୍ୟିକ (ବ୍ୟଙ୍ଗ ଗଳ୍ପ) ପ୍ରକାଶିତ ହୋଇଥିଲା। ମୁଁ ବିଧିବଦ୍ଧ ଭାବେ ଜଣେ ଲେଖକ ହୋଇଗଲି। ପୋଲିସ ଚାକିରି ହେଉଛି ସାମୟିକ, ଲେଖକ ଯେଉଁ ଶ୍ରେଣୀର ହେଉ ମଧ୍ୟ ସବୁଦିନ ପାଇଁ ତା'ର ପାଦ ଚିହ୍ନ ଛାଡ଼ିଯିବ। ମୋତେ ଆଉ କେହି କହିବେ ନାହିଁ 'ଆନ ବୋଲେ ମୁହିଁ ଅଟଇ ପୋଲିସ।'

ସେଇ ସମୟରେ ଥରେ ଚିଫ୍ ସେକ୍ରେଟେରୀ ସୁଧାଂଶୁ ମୋହନ ପଟ୍ଟନାୟକ ଆସିଲେ। ସେ କଳାହାଣ୍ଡିରୁ ଫେରୁଥିଲେ ଓ ବରହମ୍ପୁର ଆଇବିରେ ମିଟିଂ କଲେ। କଲେକ୍ଟର ଅଫିସରୁ ଚିଠି ଆସିଲା ତାଙ୍କୁ ଗାର୍ଡ଼ ଦେବା ପାଇଁ କିନ୍ତୁ ପୋଲିସ ମାନ୍ୟୁଆଲ୍‌ରେ ଚିଫ୍ ସେକ୍ରେଟେରୀଙ୍କୁ ଗାର୍ଡ଼ ଦେବା ପାଇଁ କେଉଁଠି ଲେଖା ହୋଇନାହିଁ। ଡିଆଇଜି ରାଜେନ୍ଦ୍ର ମୋହନ ପଟ୍ଟନାୟକଙ୍କୁ ପଚାରିବାରୁ ସାର୍ କହିଲେ 'ଚିଫ୍ ସେକ୍ରେଟେରୀଙ୍କ ଠାରୁ ନିୟମଟା ବଡ଼, ତେଣୁ ନିୟମ ଅନୁସାରେ କାମ କର।' ଚିଫ୍ ସେକ୍ରେଟେରୀ ଗାଡ଼ିରୁ ଓହ୍ଲେଇଲେ, ଦୁଇ କଡ଼କୁ ଅନେଇ ରୁମ୍ ଭିତରକୁ ପଶିଗଲେ। ପୋଲିସ ବିଷୟରେ କିଛି କହିଲେ ନାହିଁ। ସନ୍ଧ୍ୟା ବେଳେ ଚିଫ୍ ସେକ୍ରେଟେରୀ ମୋତେ ଡକେଇଲେ, ବିଭିନ୍ନ ବିଷୟରେ କଥା ହେଲେ ଓ ଏ ବିଷୟରେ ପଚାରିଲେ ନାହିଁ ବରଂ କିଛି ବ୍ୟକ୍ତିଗତ ସମସ୍ୟା ଅଛି ବୋଲି ପଚାରିବାରୁ ମୁଁ କହିଲି 'ସାର୍ ମୁଁ ବହୁତ ଜିଲ୍ଲାରେ ଏସ୍‌ପି ହେଲିଣି, ମୋତେ ଜିଲ୍ଲା ଏସ୍‌ପି ନକରି ଆଉ ଯେକୌଣସି ସ୍ଥାନରେ ରଖାଯାଉ।'

ସେ ମୋତେ ବୁଝେଇଲେ 'ଦେଖ ମୁଁ କେବେ ବଦଳି ଚାହେଁନି କି ବଦଳି ବନ୍ଦ କରିବା ଚାହେଁନି। ସବୁବେଳେ ସରକାରଙ୍କୁ କହେ ମୋତେ ଛଅ ଘଣ୍ଟା ସମୟ ଦିଅନ୍ତୁ ମୁଁ ଚାର୍ଜ ଦେଇ ଚାଲିଯିବି।' ତାଙ୍କ ଉପଦେଶରେ ଆପ୍ୟାୟିତ ହେବା ନିଶ୍ଚିତ କିନ୍ତୁ ଏତିକି ମାତ୍ର ମନରେ ପ୍ରଶ୍ନ ଉଠେ ଯେ ଜଣେ ଆଇଏଏସ ଅଫିସର କଲେକ୍ଟର ହେବା ପରେ କଟକ କିମ୍ବା ଭୁବନେଶ୍ୱରେ ରହେ। ତେଣୁ ବଦଳି ହେବା ବା ନହେବା ପାଇଁ ଚେଷ୍ଟା କରିବା କ'ଣ ଦରକାର ?

ଜଣେ ଅଫିସର ଇନ୍‌ଚାର୍ଜ ତାଙ୍କ ଘରେ ରହୁଥିବା ଗୋଟେ ପିଲାକୁ ନିଆଁରେ ଚେଙ୍କ ଦେଇ ଅତ୍ୟାଚାର କଲେ ବୋଲି ଅଭିଯୋଗ ହେଲା। ଯେଉଁ ତାରିଖ ଓ ସମୟ ଦିଆଯାଇଥିଲା ସେଇ ସମୟରେ ସେ ମୋ' ଅଫିସରେ ମିଟିଂରେ ଥିଲେ ଓ ମିଟିଂ ଯେହେତୁ ରାତି ୯ଟା ପର୍ଯ୍ୟନ୍ତ ଚାଲିଲା ସେ ରାତିରେ ରହିଲେ ଓ ତା' ଆରଦିନ କୋର୍ଟରେ ସାକ୍ଷ୍ୟ ଦେଇ ନିଜ ଥାନାକୁ ଫେରିଗଲେ। କିନ୍ତୁ କାହା ଠାରୁ ଶୁଣି ସ୍ଥାନୀୟ ଏମଏଲଏ ତଥା ଉପବାଚସ୍ପତି ଏହାକୁ ନିନ୍ଦା କରି ଏକ ବିବୃତ୍ତି ଦେଲେ। ତା' ସାଙ୍ଗେ ସାଙ୍ଗେ ମୋ' ବିବୃତ୍ତି ବାହାରିଲା ଯେ ଅଭିଯୋଗ ସମ୍ପୂର୍ଣ୍ଣ ମିଥ୍ୟା। ମୋ' ଖଣ୍ଡନକୁ ଆଧାର କରି ଡକ୍ଟର ମହତାବ ପ୍ରଜାତନ୍ତ୍ରରେ ଲେଖିଲେ 'ମୁଁ ଜାଣିବାରେ ବର୍ତ୍ତମାନର ଗଞ୍ଜାମ ଏସ୍‌ପି ବିଚାରବନ୍ତ ଓ ନିରପେକ୍ଷ, ସେ ଯଦି ତଦନ୍ତ କରି କହୁଛନ୍ତି ମିଥ୍ୟା ତେବେ ଅଭିଯୋଗ ମିଥ୍ୟା ହୋଇଥିବ । ରାଜନୀତିରେ ଥିବା ଅନେକ ଲୋକ ମିଥ୍ୟା ଅଭିଯୋଗ ଆଣନ୍ତି କାରଣ ସେମାନେ ଚାହାଁନ୍ତି ଯେ ସରକାରୀ କର୍ମଚାରୀ ତାଙ୍କ କଥାରେ ଉଠ୍ ବସ୍ ହୁଅନ୍ତୁ।' କାଗଜ ଖଣ୍ଡେ ଧରି ଦ୍ୟାନ ସାମନ୍ତରାୟ ମୋ' ପାଖକୁ ଆସିଲେ ଓ କହିଲେ 'ଦେଖନ୍ତୁ ମୋ' ପାଇଁ କେତେ ବଡ଼ ଅପମାନର କଥା।' ଦ୍ୟାନ ସାମନ୍ତରାୟ ଚିକିଟି ସ୍କୁଲରେ ମୋ'ଠାରୁ ୨ କ୍ଲାସ୍ ଉପରେ ପଢୁଥିଲେ। ତାଙ୍କୁ ବୁଝେଇଲି ଯେ 'ଡ଼କ୍ଟର ମହତାବ କାହାଠାରୁ କ'ଣ ଶୁଣି ଆପଣଙ୍କ ବିଷୟରେ ପଦେ ଲେଖି ଦେଇଛନ୍ତି ଆପଣ ଦେଖାକରି କହିଦେଲେ ସେ ସ୍ପଷ୍ଟୀକରଣ ଦେଇଦେବେ।' କିନ୍ତୁ କିଏ ତାହାଙ୍କୁ ପ୍ରବର୍ତ୍ତେଇଲା କେଜାଣି ସେ ମୋ' ନାଁରେ ସ୍ୱାଧୀକାର ଭଙ୍ଗ ଅଭିଯୋଗ ଆସେମ୍ବ୍ଲିରେ ଆଣିଲେ। ପୂର୍ବରୁ ଥରେ ବିଜୁ ବାବୁ ଆଣିଥିଲେ (ଅଶୋକ ଦାସଙ୍କୁ ଗିରଫ କରିବାରୁ) ଓ ଏବେ ଉପବାଚସ୍ପତି। ମୋ' ପାଇଁ ଗୌରବର କଥା ଭିନ୍ନ ଦୃଷ୍ଟିକୋଣରୁ। ସ୍ୱାଧୀକାର ଭଙ୍ଗ ଅଭିଯୋଗ ସେମିତି ପଡ଼ିରହିଲା କାରଣ ଆସେମ୍ବ୍ଲି ବାହାରେ ସେ ଦେଇଥିଲେ ବିବୃତ୍ତି ଓ ମୋ' ବିବୃତ୍ତିରେ ମୁଁ ତାଙ୍କ ବିଷୟରେ କିଛି କହିନାହିଁ। ତେଣୁ ବିଧାନସଭାର ମାନହାନି ହେଲା କେମିତି ? ପରେ ତାଙ୍କ ସାଙ୍ଗେ ଖୁବ୍ ବନ୍ଧୁତା ହେଲା, ସେ ବିଧାନସଭାର ମାନ୍ୟବର ବାଚସ୍ପତି ଥିବା ସମୟରେ ମୁଁ ଆଇଜି ପ୍ରଶାସନ ଭାବେ

ଅନେକ ଥର ତାଙ୍କ ପାଖକୁ ଯାଇଛି ଓ ସେ ମୋ' ସହିତ ଅନେକ ଥର ଫୋନ୍‌ରେ କଥାବାର୍ତ୍ତା ହୋଇଛନ୍ତି। ମୋ' ଝିଅ ବାହାଘରକୁ ଆସିନପାରିବାରୁ ତାଙ୍କ ପୁଅଙ୍କୁ ପଠେଇଥିଲେ ଉପହାର ସହିତ। ରାଜନୀତି ବେଳେ ବେଳେ ପଥଭ୍ରଷ୍ଟ କରି ଦିଏ କିନ୍ତୁ ରାଜନୀତିରେ ଥାଇ ମଣିଷ ଯଦି ମଣିଷତ୍ୱ ହରେଇଲା ତେବେ ସବୁ ସରିଲା। ଦ୍ୟାନ ସାମନ୍ତରାୟ ମହାଶୟ କେବେ ମଣିଷତ୍ୱ ହରେଇ ନାହାଁନ୍ତି।

ଗଞ୍ଜାମରେ ମୁଁ ନିଷ୍ପତି କଲି, ଢ଼େର ହେଲା। ଖାଲି ଜିଲ୍ଲାମାନଙ୍କରେ ଏସ୍‌ପି ହେବି ସତେ ଯେମିତି ପୋଲିସମାନଙ୍କର କିଛି କାମ ନାହିଁ ଯଦିବା ବହୁତ ଆତ୍ମ ସନ୍ତୋଷ ପାଇଛି। କୋରାପୁଟ୍‌ରେ ଯାହା ଯାହା ପରିବର୍ତ୍ତନ କରିଥିଲି ଗଞ୍ଜାମରେ ମଧ୍ୟ କରେଇଲି। ବହୁତ ଥାନାର ବିଲ୍ଡିଂକୁ ମରାମତି କରେଇଲି, ବ୍ୟାରାକ୍‌ରେ ଟ୍ୟୁବ୍‌ୱେଲ ଲଗେଇଲି ଓ ଟିଭି ଦେଲି। ଯୁଆଡ଼େ ଗଲି ଗାଁ ଲୋକଙ୍କୁ ଡାକି ଦୁଃଖ ସୁଖ ହେଲି ଓ ଯଥେଷ୍ଟ ସମର୍ଥନ ପାଇଲି। କିନ୍ତୁ କେତେ ଭାର ସମ୍ଭାଳିବି? ପିଲାମାନଙ୍କ ପାଠ କୌଣସି ଭଲ ସ୍କୁଲରେ ହୋଇପାରିଲା ନାହିଁ। ଘର ଖଣ୍ଡେ କରିପାରିଲି ନାହିଁ। ସମ୍ପତ୍ତି ବୋଇଲେ କାର୍ ଗୋଟିଏ, ଫ୍ରିଜ୍ ଓ ସ୍ତ୍ରୀ ଆଣିଥିବା ଗହଣା। ଏଣିକି ଟିକିଏ ସ୍ୱାର୍ଥପର ହେବାକୁ ପଡ଼ିବ। ବେଶୀ ଭାର ବହନ କଲେ ଓଟ ପିଠି ଛାଡ଼ ହାତୀ ପିଠି ମଧ୍ୟ ଭାଙ୍ଗି ଯିବ। ଡିଜିଙ୍କୁ ଚିଠି ଲେଖିଲି ଯେ ରାଉରକେଲା, ମୟୂରଭଞ୍ଜ, କୋରାପୁଟ ଓ ଗଞ୍ଜାମ ଏସ୍‌ପି ହେଲି ଆଉ କେତେ ଥର ଏସ୍‌ପି ହେବି? ଡିଜିଙ୍କ ପ୍ରସ୍ତାବ ଅନୁସାରେ ମୁଁ ଏଆଇଜି ଭାବେ କଟକରେ ଅବସ୍ଥାପିତ ହେଲି। ଖୁବ୍ ଖୁସି ହେଲି କିନ୍ତୁ ମୁଁ ଜାଣିନଥିଲି ଯେ ମୋ' ଦରଖାସ୍ତ ଟା 'ଆ ବଳଦ ମୋତେ ବିନ୍ଧ ପରି ହେବ।' ସେ କଥା ପରେ କହିବି। ଅନେକ ବିଦାୟ ସମ୍ବର୍ଦ୍ଧନା ମିଳିଲା। ଗୋଟିଏ ସମ୍ବର୍ଦ୍ଧନା ଏ.ଡି.ଏମ୍‌ଙ୍କ ନେତୃତ୍ୱରେ ମାଜିଷ୍ଟ୍ରେଟ୍‌ମାନେ ଦେଇଥିଲେ। ମାଜିଷ୍ଟ୍ରେଟ୍‌ମାନେ ଏସ୍‌ପିଙ୍କୁ ବିଦାୟ ସମ୍ବର୍ଦ୍ଧନା ଦେବା ବିରଳ କିନ୍ତୁ ଭଲ ସମ୍ପର୍କ ପାଇଁ ତାହା ହୋଇପାରିଲା। ଛତ୍ରପୁରରେ ପୋଲିସ ବାହିନୀ ଓ ସର୍ବସାଧାରଣଙ୍କ ମିଳିତ ଶୋଭାଯାତ୍ରାରେ ସହରର ଶେଷ ପର୍ଯ୍ୟନ୍ତ ମୋତେ ନିଆଗଲା। ଗାଡ଼ିରୁ ଓହ୍ଲାଇ ସହର ଆଡ଼କୁ ଅନେଇଲି। ଦୀର୍ଘଶ୍ୱାସଟିଏ ପକେଇ ପୁଣି ଗାଡ଼ିରେ ବସିଲି। ଜଣେ ଇଂରେଜି ଲେଖକ କହିଛନ୍ତି ବିଦାୟ ସବୁବେଳେ କଷ୍ଟଦାୟକ। କଥାଟାକୁ ଅଧିକ ସାହିତ୍ୟମୟ କରି ଜଣେ ଫରାସୀ ଲେଖକ ଲେଖିଛନ୍ତି ଯେ ପ୍ରତ୍ୟେକ ବିଦାୟ ବେଳେ ଆମେ ଟିକିଏ ମରୁ। ସବୁଥର ବିଦାୟ ପରି ଏଥର ମଧ୍ୟ ମୁଁ ଟିକିଏ ମଲି।

ଆନନ୍ଦ ପଥରେ ଚାଲୁଥିବା ବେଳେ ମଝିରେ ମଝିରେ ନିରାନନ୍ଦ ରାସ୍ତାରେ ପାଚେରୀ ଭଳି ଠିଆହୁଏ। ପାଚେରୀକୁ ଡରି ଫେରିଗଲେ ପାଚେରୀ ଠିଆ ନରହି ପଛେ ପଛେ ଗୋଡ଼ାଏ। ତେଣୁ ଏକମାତ୍ର ଉପାୟ ହେଉଛି ପାଚେରୀ ଅତିକ୍ରମ କରିବା, କଷ୍ଟ

ହେଉ ପଛେ। ଗଞ୍ଜାମରେ ଆତ୍ମସନ୍ତୋଷ ମିଳିଛି ସତ; କିନ୍ତୁ ବହୁତ ବାଧା ବିଘ୍ନର ସମ୍ମୁଖୀନ ହେବାକୁ ପଡ଼ିଛି। ରାଜ୍ୟର ଜଣେ ରାଷ୍ଟ୍ରମନ୍ତ୍ରୀଙ୍କର ପ୍ରକୋପ ସେ ସମୟରେ ପ୍ରବଳ ଥିଲା। ସେ ଚାହିଁଲେ କଲେକ୍ଟର ଏସ୍‌ପି ରାତାରାତି ବଦଳି ହୋଇଯାଉଥିଲେ। ତାଙ୍କର ମଧ ଦରକାର ପାଇଲଟ୍ ଓ ଯୁଆଡ଼େ ଯିବେ ପୋଲିସ ଗାର୍ଡ଼ ଅଥଚ ରୁଲ୍ କହୁଛି ମନ୍ତ୍ରୀ ସଦର ମହକୁମା ଆସିଲେ କେବଳ ସେଇଠି ଗାର୍ଡ଼ ଦିଆଯିବ। ଛତ୍ରପୁର କେହି ଆସନ୍ତିନି, ସମସ୍ତେ ବରହମ୍ପୁର ଆସନ୍ତି ତେଣୁ ସମସ୍ତେ ଚାହାଁନ୍ତି ଗାର୍ଡ଼ ସେଇଠିକି ଯାଆନ୍ତୁ, କିନ୍ତୁ ମୁଁ ମନା କରିଦେଇଛି। ଆମର ଜଣେ ଡିଆଇଜି ଓଏସଏପିଙ୍କୁ ଧରି ରାଷ୍ଟ୍ରମନ୍ତ୍ରୀଙ୍କୁ ଅପେକ୍ଷା କରନ୍ତି ଏପରିକି ଆସ୍କା ଭଞ୍ଜନଗରକୁ ଯାଇ। ତେଣୁ ମୁଁ ବିସ୍ମିତ ହେଲିନାହିଁ ଯେତେବେଳେ ସେ ବହୁତ ଡ଼େରିରେ ଦରଖାସ୍ତ କରି ମଧ ଭୁବନେଶ୍ୱରରେ ଭଲ ସରକାରୀ ଜମିଟିଏ ପାଇଲେ। ଭକ୍ତି କଲେ କେବଳ ହରି ନୁହେଁ ଲକ୍ଷ୍ମୀ ମଧ ପ୍ରାପ୍ତ ହୁଅନ୍ତି। ସେହି ସମୟରେ ଉଦଳାରେ ଏକ ମର୍ଡ଼ର କେସ୍ ହେଲା ଓ କଂଗ୍ରେସ ଦଳର କେତେଜଣ କ୍ଷମତାଶାଳୀ ଲୋକ ରାମକୃଷ୍ଣ ପଟ୍ଟନାୟକଙ୍କୁ ସେଥିରେ ସମ୍ପୃକ୍ତ କରିବା ପାଇଁ ଚେଷ୍ଟା କଲେ। ଠିକଣା ସମୟରେ ଧରାକୋଟ ରାଜା ଓ ବିରୋଧୀ ଦଳର ଅନନ୍ତ ନାରାୟଣ ସିଂହଦେଓ ମୋତେ ଦେଖାକରି ଏଭଳି ଏକ ପ୍ରୟାସ ହେବ ବୋଲି କହିଥିଲେ। ସତକୁ ସତ ମୁଖ୍ୟମନ୍ତ୍ରୀଙ୍କ ଅଫିସରୁ ଜଣେ କେହି ଫୋନ୍ କରି ରାମକୃଷ୍ଣ ପଟ୍ଟନାୟକଙ୍କୁ ଯେମିତି ହେଲେ ଗିରଫ କରାଯାଉ ବୋଲି କହିଥିଲେ। କାହାକୁ ତୁଷ୍ଟ କରିବା ପାଇଁ ଜଣଙ୍କର କ୍ଷତି କରିବା କେବଳ ଅନ୍ୟାୟ ନୁହେଁ ପାପ ମଧ। ମୁଁ ନିଜେ କେସ୍‌ର ପରିଚାଳନା ଦାୟିତ୍ୱ ନେଇ ଏଥିରେ ବିଶିଷ୍ଟ ନେତା ରାମକୃଷ୍ଣ ପଟ୍ଟନାୟକ ଦାୟୀ ନୁହଁନ୍ତି ବୋଲି ସୁପରଭିଜନ ନୋଟ୍‌ରେ ଲେଖିଦେଲି। ସେଇଭଳି ଆସ୍କାରେ ଫାଣ୍ଡି ଉଦ୍‌ଘାଟନ କଥା। କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀ ଶର୍ମାଙ୍କୁ ମୁଖ୍ୟଅତିଥି ଭାବେ ଡାକିଥିଲି ଯଦିବା ସେ ବିରୋଧୀ ଦଳର। ସେ ଓଡ଼ିଶାର ସବୁଠାରୁ ବଡ଼ କବିରାଜ। ଜଣେ ଲେଖକ ଓ ମାନ୍ୟଗଣ୍ୟ ବ୍ୟକ୍ତି। ଅସୁବିଧା ଏତିକି ଯେ ସେ ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ବିରୋଧରେ ଲଢ଼ିଥିଲେ। ସ୍ଲୋଗାନ ପ୍ରଚାର ଓ ଅର୍ଥ ବଣ୍ଟନ ଦେଖି ଅଧିକାଂଶ ଭୋଟ ଦିଅନ୍ତି, ପାଣ୍ଡିତ୍ୟ ଦେଖି କେହି ଭୋଟ ଦିଅନ୍ତି ନାହିଁ। ତେଣୁ ତ୍ରିପାଠୀ ମହାଶୟ ହାରିଲେ। ତାଙ୍କ ବଡ଼ଭାଇ ପଣ୍ଡିତ ଅନନ୍ତ ତ୍ରିପାଠୀ ଶର୍ମା ଛଅଟି ଭାଷାରେ ପ୍ରବୀଣ। ସେ ମଧ ସଭାକୁ ଆସିଥିଲେ। ମଞ୍ଚ ଉପରେ କୃଷ୍ଣଚନ୍ଦ୍ର ତ୍ରିପାଠୀ ଶର୍ମା ମୋ' ସଙ୍ଗେ ବସିବାରେ କଂଗ୍ରେସ ନେତାମାନଙ୍କର ଗାତ୍ରଦାହ ହେଲା, ତେଣୁ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଅଭିଯୋଗ ପତ୍ର ଗଲା ଯେ ମୁଁ ବିରୋଧୀ ଦଳକୁ ପକ୍ଷପାତିତା କରୁଛି। ଚିଠିଟା ଗଲା ସିଧାସଳଖ ଓ ଆସିଲା ମୋ' ପାଖକୁ ବୁଲି ବୁଲି। ସେତେବେଳକୁ ଅଭିଯୋଗ ବାସି ହୋଇଯାଇଥିଲା ଓ ପାଞ୍ଚ ଦଶ ପଦରେ ଉତ୍ତର ଦେଇ ଫେରେଇ ଦେଲି।

୧୯୫୩ ମସିହାରେ ପାରଳାଖେମୁଣ୍ଡିରେ ଓଡ଼ିଆ ଓ ତେଲୁଗୁଙ୍କ ମଧ୍ୟରେ ଲଢ଼େଇ ହୋଇଥିଲା। ପୂର୍ବରୁ ୧୯୩୮ ମସିହାରେ ସେହିଭଳି ଲଢ଼େଇ ଥରେ ହୋଇଥିଲା। ୧୯୪୦ ମସିହାରେ ରାୟଗଡ଼ ବୋଲି ଗୋଟିଏ ସ୍ଥାନରେ ପାଣ ଓ ସଉରାମାନଙ୍କର ଲଢ଼େଇ ହେଲା ଯାହାକୁ ସଉରାମାନେ ମହାଯୁଦ୍ଧ୍ୟ ବୋଲି କହନ୍ତି। ୧୯୭୪ ମସିହାରେ ଗୁରାଣ୍ଡିକୁ ରାଜସ୍ୱ ବିଭାଗ କର୍ମଚାରୀ ଯାଇଥିଲେ ବଳକା ଚାଉଳ ଜବରଦସ୍ତ ସଂଗ୍ରହ କରିବା ପାଇଁ ଓ ସାଙ୍ଗରେ ଥିଲେ ପୋଲିସ। ସେମାନଙ୍କ ଉପରେ ଆକ୍ରମଣ ହେବାରୁ ପୋଲିସକୁ ଫାୟାରିଂ କରିବାକୁ ପଡ଼ିଥିଲା। ଆଦେଶ ଦେଇଥିଲେ ଡିଏସ୍‌ପି। ସେତେବେଳେ ଆଇ.ଜି ରାଉରକେଲାରେ ଥିଲେ ଓ ଭାବିଲେ ଡିଏସ୍‌ପି ଆପାତତଃ ଦାୟୀ, ତେଣୁ ସସ୍‌ପେଣ୍ଡ ହୁଅନ୍ତୁ। ସେଇ ମର୍ମରେ ଏକ ତାରବାର୍ତ୍ତା ଲେଖାଇ ମୋତେ ଦେଲେ ପଠେଇ ଦେବା ପାଇଁ କିନ୍ତୁ ମୁଁ ବୁଝେଇଲି ସେ ଡିଏସ୍‌ପିଙ୍କୁ ମୁଁ ଜାଣିଛି । ସେ ଅତି ଧୀର ସ୍ଥିର ଓ କୌଣସି ପଦକ୍ଷେପ ତରବରିଆ ହୋଇ ନେବେନାହିଁ। ବରଂ ଏସ୍‌ପିଙ୍କ ରିପୋର୍ଟ ପାଇବା ପାଇଁ ଅପେକ୍ଷା କରାଯାଉ ବୋଲି ଅଯାଚିତ ପରାମର୍ଶ ଦେଲି ଓ ଆଇଜି ଗ୍ରହଣ କଲେ। ପରେ ଏସ୍‌ପି ଗଞ୍ଜାମ ଫେଦା ରସୁଲ୍ ଡିଏସ୍‌ପି ସୁରେନ୍ଦ୍ର ସ୍ୱାଇଁଙ୍କ ସପକ୍ଷରେ ରିପୋର୍ଟ ଦେଲେ ଓ ତାଙ୍କର କିଛି କ୍ଷତି ହେଲାନାହିଁ। ଏଇ ପରିପ୍ରେକ୍ଷୀରେ ପାରଳାଖେମୁଣ୍ଡି ବିଷୟରେ ସବୁବେଳେ ସଜାଗ ରହିବାକୁ ପଡୁଥିଲା ଓ ଜଣେ ଦକ୍ଷ ଇନ୍‌ସପେକ୍ଟର ମୁଁ ପଠେଇଥିଲି। ପାରଳାଖେମୁଣ୍ଡିର ପ୍ରଥମ ଗସ୍ତରେ ମୁଁ ଦେଖିଲି ସେଠାକୁ ଯାଉଥିବା ଓ ସେଠାରୁ ଆସୁଥିବା ସମସ୍ତ ବସ୍‌ରେ ନିର୍ଗତ ଓ ଗନ୍ତବ୍ୟ ସ୍ଥଳ ତେଲଗୁରେ ଲେଖାଯାଉଛି। ବସ୍ ମାଲିକଙ୍କୁ ଡାକି ପଚାରିବାରୁ ସେମାନେ କହିଲେ ଯେ ଅଧିକାଂଶ ରାସ୍ତା ଆନ୍ଧ୍ରରେ ତେଣୁ ତେଲଗୁରେ ଲେଖିବା ପାଇଁ ବାଧ ହେଉଛୁ। ଅସଲ କଥା ହେଲା ଯେ ସବୁ ମାଲିକ ହେଉଛନ୍ତି ତେଲଗୁ। ସିନେମା ହଲର ମାଲିକ ତେଲଗୁ। ଅଧିକାଂଶ ସିନେମା ତେଲଗୁ କିମ୍ବା ହିନ୍ଦୀ, ଓଡ଼ିଆ ନୁହେଁ। ବସ୍ ମାଲିକମାନଙ୍କୁ କହିଲି ବସ୍‌ରେ ଗୋଟିଏ ପଟେ ତେଲଗୁ ଓ ଗୋଟିଏ ପଟେ ଓଡ଼ିଆରେ ଲେଖ, ତା'ନହେଲେ ସବୁଦିନେ ବସ ଜବତ ହେବ। କିନ୍ତୁ ଓଡ଼ିଆ ସିନେମା ଚଳେଇବା ପାଇଁ ସଫଳ ହେଲିନାହିଁ। କାରଣ ଲୋକମାନେ ଚାହିଁଲେ ନାହିଁ।

ପାରଳାଖେମୁଣ୍ଡି, ଭଞ୍ଜନଗର, ଆସ୍କା, ଛତ୍ରପୁର ବିଶ୍ୱ ବିଦ୍ୟାଳୟର ଇତିହାସ ବିଭାଗ ଓ ଖଲ୍ଲିକୋଟ କଲେଜକୁ ବିଭିନ୍ନ ସମୟରେ ମୁଖ୍ୟଅତିଥି ଭାବେ ଯାଇଥିବାରୁ ଛାତ୍ରମାନଙ୍କ ସଙ୍ଗେ ଦୂରତା କମିଯାଇଥିଲା ଓ ସିଧାସଳଖ କଥାବାର୍ତ୍ତା କରାଯାଇପାରୁଥିଲା। ଭଞ୍ଜବିହାରରେ କୁଳପତିଙ୍କ ଉପରେ ସବୁବେଳେ ଆକ୍ରମଣର ଭୟ ଥିଲା। ଦଳେ ଲଫଙ୍ଗା ଛାତ୍ର ଜଣେ ଦୁଇଜଣ ପ୍ରଫେସରଙ୍କ ନିର୍ଦ୍ଦେଶରେ ସବୁବେଳେ

ଗଣ୍ଡଗୋଳ କରୁଥିଲେ। ସେମାନଙ୍କ ନାଁରେ କେସ୍ ରୁଜୁ କରି ଗିରଫ ନକରି ଗିରଫ କରିବାର ଭୟ ଦେଖେଇ ତାଙ୍କୁ ଜବତ କରାଗଲା। ପାହାରଟେ ପକେଇବା ପରିବର୍ତ୍ତେ ବାଡ଼ିଟା ସବୁଦିନ ପାଇଁ ଉଞ୍ଚେଇ ରଖିବାଟା ସବୁବେଳେ ଫଳପ୍ରଦ। ଛତ୍ରପୁର ପହଞ୍ଚିବାର ଦୁଇ ଦିନ ପରେ ଭଞ୍ଜନଗର ଯାଉଥିଲି ଦେଖିଲି, ବଡ଼ଗଡ଼ ଥାନା ପାଖରେ ଜଣେ ଲୋକ ଗଛରେ କେରପାଲ ଭିଡ଼ି ଧ୍ୟାନ ଭଙ୍ଗୀରେ ବସିଛି ଓ ଲେଖା ହୋଇଛି ଆମରଣ ଅନଶନ। 'କିଓ ବାବୁ ବୁଦ୍ଧଦେବଙ୍କ ଭଳି କାହିଁକି ବସିଛ ?' ପ୍ରଶ୍ନର ଉତ୍ତର ନାହିଁ। ଜଣେ ସମର୍ଥକ କହିଲେ ଯେ ତାଙ୍କୁ ଅନ୍ୟାୟ ଭାବରେ କଲେଜ ପ୍ରିନ୍ସପାଲ ପଦରୁ ହଟେଇ ଦିଆଗଲା, ତେଣୁ ଆମରଣ ଅନଶନରେ ବସିଛନ୍ତି। କେବଳ ଆମରଣ ଅନଶନ ନୁହେଁ ମଉନ ବ୍ରତ ମଧ୍ୟ। ଥାନା ବାବୁ କହିଲେ ଯେ ଏ ଭଦ୍ରଲୋକଙ୍କ ଶ୍ୱଶୁର ହେଉଛନ୍ତି ସ୍କୁଲ ମ୍ୟାନେଜିଂ କମିଟିର ପ୍ରେସିଡ଼େଣ୍ଟ ଏବଂ ଶିକ୍ଷକ ଭାବେ ଯୋଗଦେଇ ସମସ୍ତଙ୍କୁ ଟପି ପ୍ରଧାନଶିକ୍ଷକ ହୋଇଗଲେ। ତା'ପରେ ସ୍କୁଲ କଲେଜରେ ପରିଣତ ହେବାରୁ କଲେଜରେ ପ୍ରିନ୍ସପାଲ ବି ହୋଇଗଲେ। ଯୋଗ୍ୟତା ଲେଖା ହୋଇଥିଲା ଏମ୍.ଏ ଓ ମ୍ୟାଟ୍ରିକ୍ୟୁଲେସନ୍ ଠାରୁ ଏମ୍.ଏ ପର୍ଯ୍ୟନ୍ତ ଫାଷ୍ଟକ୍ଲାସ। ତାଙ୍କ ଦୁର୍ଭାଗ୍ୟ ଏହିକି ଯେ ସେ ଛାତ୍ର ଥିଲାବେଳେ ତାଙ୍କଦ୍ୱାରା ବାରମ୍ବାର ପ୍ରପୀଡ଼ିତ ହୋଇଥିବା ଜଣେ ପ୍ରଫେସର ବିଶ୍ୱବିଦ୍ୟାଳୟ ଟିମ୍‌ରେ ଆସିଥିଲେ ଓ ଏହାଙ୍କୁ ପ୍ରିନ୍ସପାଲ ହିସାବରେ ଦେଖି ତାଙ୍କୁ ଆକାଶରୁ ଖସିପଡ଼ିଲା ପରି ଲାଗିଲା। ଫାଷ୍ଟକ୍ଲାସ ତ ଛାଡ଼ ଜୀବନରେ ସେକେଣ୍ଡ କ୍ଲାସ ବି ପାଇନାହାଁନ୍ତି। ତାଙ୍କ ବରଖାସ୍ତ ନିହାତି ଦରକାର ବୋଲି ବିଶ୍ୱବିଦ୍ୟାଳୟ ଟିମ୍ କହିଲା। 'ପାଠ ତ ଭଲ ପଢ଼ଉଛନ୍ତି ଡ୍ରିଗୀରେ ଆମକୁ କିସ୍ ମିଳିବ,' କହି ମଧ୍ୟ ମ୍ୟାନେଜିଂ କମିଟି ନିରାଶ ହେଲା। ତେଣୁ ବରଖାସ୍ତର ପ୍ରତିବାଦ ସ୍ୱରୂପ ଆମରଣ ଅନଶନ। ଆମରଣ ଅନଶନ ନକରି କୋର୍ଟ କଚେରୀ କର ବୋଲି କହିଲେ କିଛି ଉତ୍ତର ନାହିଁ ଯେହେତୁ ମଉନବ୍ରତ। ସନ୍ଧ୍ୟାବେଳେ ଭଞ୍ଜନଗରରୁ ଫେରିଲା ବେଳକୁ ସାଙ୍ଗରେ ଆଣିଥିଲି ପାଞ୍ଚ ଜଣ ସଶସ୍ତ୍ରଧାରୀ ପୋଲିସ। ଥାନାବାବୁଙ୍କୁ ଲିଖିତ ଆଦେଶ ଦେଲି ଯେହେତୁ ଆମରଣ ଅନଶନ ଉତ୍ତେଜନା ସୃଷ୍ଟି କରିପାରେ ଏପରିକି ତାଙ୍କ ଉପରେ ଆକ୍ରମଣର ସମ୍ଭାବନା ଥିବାରୁ ଜଣେ ହାବିଲଦାର ଓ ଚାରିଜଣ କନେଷ୍ଟବଲ ତାଙ୍କୁ ଚବିଶ ଘଣ୍ଟା ଜଗିବେ ଓ ତାଙ୍କ ପାଖକୁ ଯାଉଥିବା ଲୋକଙ୍କୁ ପୁରାପୁରି ତନଖି କରି ଛାଡ଼ିବେ। ଆଦେଶ ସାଙ୍ଗେ ସାଙ୍ଗେ କାର୍ଯ୍ୟକାରୀ ହେଲା। ଫଳରେ ମୁହଁ ଅନ୍ଧାର ପରେ ବିରାଟ ଟିଫିନ୍ କ୍ୟାରିୟରରେ ଦିବ୍ୟ ଭୋଜନ ନେଇ ଆସିଥିବା ତାଙ୍କର ଅନୁଗତ ଜଣେ ସଶସ୍ତ୍ର ପୋଲିସକୁ ଦେଖି ପଳେଇଲା। ଗୋଟିଏ ରାତି ଉପାସ ରହିବା ପରେ ସେ ଆଉ ମହାତ୍ମାଗାନ୍ଧିଙ୍କୁ ଅନୁସରଣ କରିବା ପାଇଁ ଚାହିଁଲେ ନାହିଁ। ଥାନା ବାବୁଙ୍କୁ ଅନୁରୋଧ କଲେ କମଳା ରସ ପିଏଇବା ପାଇଁ, ସେ ପଠେଇ ଦେଲେ ହେଡ଼ କନେଷ୍ଟବଲଙ୍କୁ ଏବଂ ନାଟକର ଅବସାନ ଘଟିଲା।

ଗଞ୍ଜାମ ଜିଲ୍ଲାରେ ଖଟ ବିଦ୍ୟାର ପ୍ରଚଳନ ବହୁତ। ଯଦି ଗାଁର କେହି ମରିଗଲା, କେହି ବାରମ୍ବାର ବେମାର ପଡ଼ିଲା କାହାକୁ ସାପ କାମୁଡ଼ିଲା କାହାକୁ ଉନ୍ମାଦ ରୋଗ ହେଲା, ଚୋରି ଯଦି ହେଲା ତେବେ ଦଳେ ସାଙ୍ଗେ ସାଙ୍ଗେ ପ୍ରଚାର କରନ୍ତି ଯେ କେହି ଜଣେ ଗୁଣି କରିଛି ଓ ତାକୁ ଧରିବା ପାଇଁ ଗୁଣିଆକୁ ଅଣାଯାଏ। ଗୁଣିଆ ଆସନ୍ତି ନୟାଗଡ଼ ଅଞ୍ଚଳରୁ। ଗୋଟିଏ କାଠ ଖଟକୁ ସେ ମନ୍ତୁରେଇ ଦିଅନ୍ତି। ଖଟକୁ କାନ୍ଧାନ୍ତି ଚାରିଜଣ ଲୋକ ଓ ସେମାନଙ୍କ କହିବା କଥା ଯେ ଖଟ ତାଙ୍କୁ ଠେଲି ବିଭିନ୍ନ ଦିଗକୁ ନିଏ, ଯେଉଁ ଘର ଆଗରେ ଖଟ ରହିଲା ସେ ଦୋଷୀ। ଗାଁ ସଭା ବସି ତାକୁ ଶାରୀରିକ ଦଣ୍ଡ ଦେବା ସହିତ ୧୦ ରୁ ୪୦ ହଜାର ପର୍ଯ୍ୟନ୍ତ ଫାଇନ୍ କରାଯାଏ। ଅତିଶୀଘ୍ର ମୁଁ ଉପଲବ୍ଧି କଲି ଯେ ଖଟ ବିଦ୍ୟା ପ୍ରଚଳନ ପାଇଁ କୁସଂସ୍କାର ଅପେକ୍ଷା ବଦମାସୀ ଓ ବ୍ଲାକ୍‌ମେଲିଂ ବେଶି ଦାୟୀ। ଥାନାମାନଙ୍କୁ ସର୍କୁଲାର ପଠାଗଲା ଯେଉଁଠାରେ ଖଟ ଚାଲିବାର ଜାଣୁଛ ସେ ଗୁଣିଆ ଓ ସହକାରୀଙ୍କୁ ଧରି ଥାନାକୁ ନେଇ ଆସ। ଥାନାକୁ ଧରି ନେଇଆସର ପ୍ରଚ୍ଛନ୍ନ ଇଙ୍ଗିତ ବୁଝିପାରି ଥାନାବାବୁ ମାନେ ଖଟ ଗୁଣିଆଙ୍କର ଉପଯୁକ୍ତ ପୋଲିସ ଚର୍ଚ୍ଚା କରିବାରୁ ଖଟ ବିଦ୍ୟା ପ୍ରଚଳନ ବହୁସଂଖ୍ୟାରେ କମିଗଲା ଓ ମୋ' ପାଖକୁ ବେନାମୀ ଧମକ ପୂର୍ଣ୍ଣ ଚିଠି ଆସିଲା ଓ ବର୍ଷେ ମଧ୍ୟରେ ମୋ' ବଂଶ ନିର୍ମୂଳ ହୋଇଯିବ ବୋଲି ଭବିଷ୍ୟବାଣୀ ମଧ୍ୟ କୁହାଗଲା। ଯାହାହେଉ ଏପର୍ଯ୍ୟନ୍ତ ଅଭିଶାପର ଫଳ ଫଳିନି।

ବହୁତ ବନ୍ଧୁ ଓ ଶୁଭେଚ୍ଛୁ ରହିଗଲେ। ମୋର ଶିକ୍ଷକ ଓ ବିଶିଷ୍ଟ ଗାଳ୍ପିକ ହରିହର ଦାଶ, ବିଶିଷ୍ଟ ପ୍ରାବନ୍ଧିକ ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ, ଡକ୍ଟର ବେଣୀମାଧବ ପାଢ଼ୀ, ଡକ୍ଟର ସୂର୍ଯ୍ୟନାରାୟଣ ଦାଶ, ଡକ୍ଟର ପ୍ରଫୁଲ୍ଲ ମହାନ୍ତି ଓ ଅନେକ ସାହିତ୍ୟିକଙ୍କ ସାଙ୍ଗରେ ଦେଖାହେଉଥିଲା। ଉଦୟନାରାୟଣ ପାଢ଼ୀ, ବିପିନ ବିହାରୀ ଖମାରୀ ପ୍ରଭୃତି ମିଶି ଫଲ୍‌ଗୁ ସାହିତ୍ୟ ପରିଷଦ କରିଥିଲେ ଓ ମୁଁ ନିୟମିତ ଯୋଗଦାନ କରୁଥିଲି। ସେମାନେ କରିଥିଲେ କିନ୍ତୁ ଚଳଉଥିଲେ ରଘୁନନ୍ଦନ ପାଣିଗ୍ରାହୀ। ଯେକୌଣସି ସାହିତ୍ୟ ସଭାରେ ଆୟୋଜନରେ ମାତିଯିବା ଭଳି ଲୋକ ରଘୁନନ୍ଦନ ବାବୁ, କଟକରେ ଥିବା ପରମାନନ୍ଦ ଅଧିକାରୀଙ୍କ ପରି। ଏବେ ବାରମ୍ବାର ଦେଖାହେବନାହିଁ କିନ୍ତୁ କ'ଣ କରିବା ସରକାର ଚାକିରିରେ ବଦଳି ହୁଏ, ପ୍ରତ୍ୟେକ ସ୍ଥାନରେ ଅତିଥି ଭାବେ ରହୁ ଓ ଯେଉଁ କେତେଜଣଙ୍କ ସାଙ୍ଗରେ ମାନସିକ ବନ୍ଧନ ହୁଏ ସେମାନଙ୍କୁ ବାରମ୍ବାର ଦେଖିବା ପାଇଁ ମନ ବଳେ। ଗଞ୍ଜାମରେ ଥିବାବେଳେ କଟକ କେତେବେଳେ କେମିତି ଆସେ ଓ ନିଶ୍ଚୟ ଦେଖାକରେ ଫତୁରାନନ୍ଦଙ୍କୁ ଓ ସେଇଠାରେ ଦେଖାହୁଅନ୍ତି ବୈଷ୍ଣବ ସାମଲ, ରତ୍ନାକର ଚଇନି ଓ ବିଜୟାନନ୍ଦ ସିଂ। ଫତୁରାନନ୍ଦ ତ ଚାଲିଗଲେଣି ବାକି ତିନିଜଣ ଅଛନ୍ତି। ସେମାନେ ପ୍ରତିଷ୍ଠିତ ଲେଖକ। ହଁ, ଫତୁରାନନ୍ଦ ନେଇଯାଇଥିଲେ ଜଷ୍ଟିସ ହରିହର

ମହାପାତ୍ରଙ୍କ ପାଖକୁ ଓ ତାଙ୍କର ବରାଦ ଥିଲା 'ଆପଣ ଯେତେବେଳେ କଟକ ଆସିବେ ନିଶ୍ଚୟ ଦେଖାହେବ।' ମୋର ପ୍ରଥମ ବ୍ୟଙ୍ଗ ଲେଖା 'ସାଲିସ୍ ମାଲିସ୍ ନାଲିସ୍ ଓ ସୁପାରିସ୍' ଲେଖି ଫତୁରାନନ୍ଦଙ୍କୁ ଶୁଣେଇଥିଲି ଓ ଶୁଣି ସେ ଆଶ୍ଚର୍ଯ୍ୟ ହୋଇ କିଛିକ୍ଷଣ ଅନେଇଲେ ଓ କହିଲେ 'ପୋଲିସ ଅଫିସର ଏତେ ବ୍ୟଙ୍ଗ? ବାପ୍‌ରେ ବାପ୍ ଯାଆନ୍ତୁ ରାଧାନାଥ ବାବୁଙ୍କୁ ଦେବେ, ସମାଜରେ ବାହାରିଲେ ସମସ୍ତେ ପଢ଼ିବେ। ସେ ନଛାପିଲେ ମୁଁ ଡଗରରେ ଛାପିବି।' ସମାଜ ଅଫିସକୁ ଗଲି ଓ ଦେବ ମିଶ୍ରଙ୍କ ସଙ୍ଗେ କଥା ହେଲି। ସେ ଉପରକୁ ଖବର ପଠେଇବା ମାତ୍ରେ ରାଧାନାଥ ବାବୁ ଡକେଇଲେ। ମୁଁ କଟକରେ ଆଡ଼ିସନାଲ ଏସ୍‌ପି ଥିବାବେଳେ ଯେତେ ଧରପଗଡ଼ କରୁଥିଲି ସବୁ ସମାଜରେ ବଡ଼ ବଡ଼ ଅକ୍ଷରରେ ବାହାରୁଥିଲା ଏବଂ ମୁଁ ରାଉରକେଲା ଏସ୍‌ପି ବଦଳି ହେବାର ଖବରପାଇ ମୋତେ ପ୍ରାତଃଭୋଜନ ପାଇଁ ନିମନ୍ତ୍ରଣ କରିଥିଲେ। ଭଲ ପ୍ରାତଃ ଭୋଜନ ଦେଇ ଖଣ୍ଡିଏ ବହି ଓ ଗୋଟିଏ କଲମ ଉପହାର ଦେଇଥିଲେ। କଲମ ବୋଧେ ସାଙ୍କେତିକ ଥିଲା - ଲେଖିବାର ସଙ୍କେତ। ସେ ମୁଁ ଥିଲାବେଳେ ଗଞ୍ଜାମ ଦୁଇଥର ଆସିଛନ୍ତି ଏବଂ ଉଭୟ ଥର ମୋତେ ଫୋନ କରି କହିଛନ୍ତି ଦେଖା ହେବା ପାଇଁ। ନୂଆ କରି ହୋଇଥିବା ଏକ କଲେଜରେ ସେ ଥିଲେ ମୁଖ୍ୟଅତିଥି ଓ ମୁଁ ଥିଲି ମୁଖ୍ୟବକ୍ତା ଓ ଆମ ଉଭୟଙ୍କ ଫଟୋ ବାହାରିଥିଲା ସମାଜରେ। ସେ ମୋତେ ଜାଣିଥିଲେ ଜଣେ ଅଫିସର ଓ ମଣିଷ ହିସାବରେ। ଆଜି ତାଙ୍କ ପାଖକୁ ଯାଇଛି ଅଙ୍କୁରୋଦ୍‌ଗମ ହେଉଥିବା ଏକ ଲେଖକ ହିସାବରେ। 'କୁଆଡ଼େ ବାବୁ ଆସିଲେ?' ସାର୍, ଲେଖାଟିଏ ଆଣିଛି କହିଲି ମୁଁ ଓ ପୁଣି ଯୋଡ଼ିଲି, ମୋର। ସାଙ୍ଗେ ସାଙ୍ଗେ ମନେପକେଇଲେ 'ଆଚ୍ଛା କୋରାପୁଟରେ ଥିବାବେଳେ ଖୁବ୍ ଚମତ୍କାର ଲେଖା ଆପଣ ପଠେଇଥିଲେ ଜଣେ ଡାକ୍ତରଙ୍କ ବିଷୟରେ। ସେ ସଂକ୍ରାନ୍ତୀୟ ବହୁତ ଚିଠି ବି ଆସିଥିଲା ଆମ ପାଖକୁ। ହଉ ଲେଖାଟା ପଢ଼ିଲେ। ସରକାରଙ୍କ ଶାସନ ପଦ୍ଧତିଟା କେମିତି ସାଲିସ୍ ମାଲିସ୍ ନାଲିସ୍ ଓ ସୁପାରିଶ୍ ଦ୍ୱାରା ଚାଲିଛି ତା' ଉପରେ ଲେଖା ହୋଇଥିଲା ମୋ' ସେ ବ୍ୟଙ୍ଗ ଲେଖା। ମନଧ୍ୟାନ ଦେଇ ଶୁଣିଲେ ଡକ୍ଟର ରାଧାନାଥ ରଥ ଓ କହିଲେ ବହୁତ ବଢ଼ିଆ ହୋଇଛି ତ। ଜଣେ ଏସ୍‌ପି ଏକଥା ଲେଖିଲେ ସରକାର କ'ଣ ଆପଣଙ୍କୁ ଭାବିବେ? ମୁଁ କହିଲି ମୁଁ କ'ଣ ଓଡ଼ିଶା ନାଁ ନେଇଛି? ଡକ୍ଟର ରାଧାନାଥ ରଥଙ୍କ କହିବାର ତାତ୍ପର୍ଯ୍ୟ ଥିଲା ଯେହେତୁ ସମାଜରେ ବାରମ୍ବାର ସରକାର ବିରୋଧି ଲେଖା ବାହାରୁଥିଲା ମୋ' ଲେଖା ପ୍ରକାଶିତ ହୋଇ ମୁଁ ଅଡୁଆରେ ନପଡ଼େ। କିନ୍ତୁ ମୋର ଅସୁବିଧା କିଛି ହୋଇନାହିଁ। ସମାଜରେ ଏବଂ ଧରିତ୍ରୀରେ ମୋ' ଲେଖା ବାରମ୍ବାର ପ୍ରକାଶିତ ହୋଇ ସୁଦ୍ଧା ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ମୋ'ପ୍ରତି କୌଣସି ପ୍ରତିକୂଳ ମନୋଭାବ ଦେଖାଇ

ନାହାଁନ୍ତି। ଲେଖାଟା ପ୍ରକାଶ ହେଲା ମାତ୍ରେ ବହୁ ଚିଠି ଆସିଲା। ରାଜକିଶୋର ରାୟ, ପଠାଣୀ ପଟ୍ଟନାୟକ, ଧନେଶ୍ବର ମହାପାତ୍ର, କୁଞ୍ଜବିହାରୀ ଦାଶ, ଯଦୁନାଥ ଦାସମହାପାତ୍ର, ଫତୁରାନନ୍ଦ, ବିଚିତ୍ରାନନ୍ଦ କର, ବୈଷ୍ଣବ ସାମଲ ଆଦି ବହୁ ଲେଖକ ଅଭିନନ୍ଦନ ଜଣେଇ ଚିଠି ଲେଖିଲେ। ଏବେ କଟକରେ ପହଞ୍ଚିବା ପରେ ଡକ୍ଟର ରାଧାନାଥ ଓ ଡକ୍ଟର ମହତାବଙ୍କୁ ଦେଖାକରିପାରିବି। କିନ୍ତୁ ଗଞ୍ଜାମରେ ବେଳେ ବେଳେ ଦେଖାହେଉଥିବା ଭାରତ ପ୍ରସିଦ୍ଧ ବିଶିଷ୍ଟ ଦାସକାଠିଆ ଗାୟକ ବୈଦ୍ୟନାଥ ଶର୍ମାଙ୍କ ସାଙ୍ଗେ ଆଉ ବେଶୀ ଦେଖା ସାକ୍ଷାତ ହୋଇପାରିବ ନାହିଁ। ପ୍ରତିବର୍ଷ ତାଙ୍କୁ ରିଜର୍ଭ ଲାଇନକୁ ଆଣି ଦାସକାଠିଆ କରାଏ ଓ ସାରା ଛତ୍ରପୁର ଟାଉନ୍ ଠୁଳ ହୁଏ ଦାସକାଠିଆ ଶୁଣିବା ପାଇଁ। ବଦଳି ଖବର ପାଇ ସେ ମୋତେ ଆସି ଦେଖା କରିଥିଲେ ଓ ଦୀର୍ଘ ଜୀବନ ପାଇଁ ଆଶୀର୍ବାଦ କରିଥିଲେ। ମୁଁ ତ ଏପର୍ଯ୍ୟନ୍ତ ବଞ୍ଚିଛି କିନ୍ତୁ ଅଳ୍ପ ବର୍ଷ ପରେ ଦୁର୍ବୃତମାନେ ତାଙ୍କୁ ହାଣି ମାରିଦେଲେ, ଭୁଲ୍ ବୁଝାମଣା ଯୋଗୁ। ଗଞ୍ଜାମରେ ଦେଖାହୋଇଥିଲା ପୂର୍ବତନ ମୁଖ୍ୟମନ୍ତ୍ରୀ ବିନାୟକ ଆଚାର୍ଯ୍ୟଙ୍କ ସାଙ୍ଗରେ। ଏସ୍‌ପି ଦାୟିତ୍ୱ ଗ୍ରହଣ କରିବା ପରେ ଯାଇଥିଲି ତାଙ୍କୁ ଦେଖାକରି। ଦିନ ୧୧ଟା, ଖବରପାଇ ଡକେଇ ପଠେଇଲେ ଭିତରକୁ। ଯୋତା ଖୋଲି ଗଲି। ସାଧାରଣ ଘରଟିଏ, ବାରଣ୍ଡାରେ ଆସନ ପକେଇ ବସି ଭାତ, ଡାଲି, ତରକାରି, ସନ୍ତୁଳା ଓ ବାଇଗଣ ଭଜା ସେ ଖାଉଥିଲେ। ମୋତେ ଖାଇବା ପାଇଁ ଡାକିଲେ ଓ ମଜାକରି କହିଲେ କ'ଣ କିଛି ୱାରେଣ୍ଟ ଅଛି କି ମୋ' ନାଁରେ? ଜଣେ ପୂର୍ବତନ ମୁଖ୍ୟମନ୍ତ୍ରୀ କିନ୍ତୁ ସରଳତା କେତେ ଦେଖନ୍ତୁ। ଏଇଭଳି ସରଳତା ଦେଖିଥିଲି ସଦାଶିବ ତ୍ରିପାଠୀଙ୍କ ଠାରେ। କୋରାପୁଟ ଏସ୍‌ପି ହେଲାପରେ ନବରଙ୍ଗପୁର ଯାଇଥିଲି ଏବଂ ତାଙ୍କୁ ଦେଖାକଲି। ଦେହ ଭଲ ନଥିଲା, ଖଟରେ ଥାଇ ସେ ମୋତେ ଡକେଇ ପଠେଇଲେ। ଅନେକ ସମୟ କଥାବାର୍ତ୍ତା ହେଲେ ଓ ମୋ' ପାଇଁ ଯଥେଷ୍ଟ ସମୟ ଥିଲା, ସବୁଆଡ଼େ ଅନେଇ ଘରର ଆର୍ଥିକ ପରିସ୍ଥିତି ଆକଳନ କରିବା। ବହୁବର୍ଷ ମନ୍ତ୍ରୀ, ପ୍ରାୟ ୨ ବର୍ଷ ମୁଖ୍ୟମନ୍ତ୍ରୀ ହୋଇ ମଧ୍ୟ ସଦାଶିବ ବାବୁ ଗୋଟିଏ ନିମ୍ନ ମଧ୍ୟବିତ୍ତ ପରିବାର ପରି ଚଳୁଥିଲେ। ବିନାୟକ ବାବୁ ଠିକ୍ ତାଙ୍କପରି। ଉଭୟ ସଚ୍ଚୋଟତା ପାଇଁ ବହୁମୂଲ୍ୟ ଦେଇଛନ୍ତି। ମୁଁ କୋରାପୁଟରେ ଥିଲାବେଳେ ସଦାଶିବ ତ୍ରିପାଠୀଙ୍କ ତିରୋଧାନ ହେଲା ଓ ଗଞ୍ଜାମରେ ଥିଲାବେଳେ ବିନାୟକ ଆଚାର୍ଯ୍ୟଙ୍କର। ବିନାୟକ ଆଚାର୍ଯ୍ୟଙ୍କର ମୋ' ପ୍ରତି ଗୋଟିଏ ବ୍ୟବହାର ଭୁଲିପାରିବି ନାହିଁ। ମୋ' ବେକରେ ସ୍ପଣ୍ଡିଲାଇଟସ୍ ହେବାଦ୍ୱାରା ମୁଁ ଖଟରେ ପଡ଼ି ରହିଲି। ଏକଥା ଶୁଣି ବିନାୟକ ବାବୁ ବରହମ୍‌ପୁରରୁ ଛତ୍ରପୁର ଆସିଲେ ମୋତେ ଦେଖିବା ପାଇଁ । ପଚାରିବାରୁ ଜାଣିଲି ଯେ ବସ୍‌ରେ ଆସିଛନ୍ତି। ବହୁତ ମନା କରୁଥିଲେ କିନ୍ତୁ ମୋ' ଗାଡ଼ିରେ ତାଙ୍କୁ ବରହମ୍‌ପୁର

ପଠାଇଦେଲି। ପବିତ୍ରମୋହନ ପ୍ରଧାନ, ଶ୍ରଦ୍ଧାକର ସୁପକାର, ବିନାୟକ ଆଚାର୍ଯ୍ୟ, ସଦାଶିବ ରଥ ଏମାନେ ଥିଲେ ମାଟିର ମଣିଷ। କୌଣସି କଳଙ୍କ ତାଙ୍କ ପାଖ ଆଖରେ ପଶିପାରେ ନାହିଁ। ସଚ୍ଚୋଟତାର ସ୍ୱାଦ, ସମ୍ପତ୍ତି ଆହରଣ କରିବା ସ୍ୱାଦ ଠାରୁ ଭିନ୍ନ ବୋଲି ସେମାନେ ଜାଣିଥିଲେ। ଆଜିର ରାଜନୈତିକ ଓ ସାମାଜିକ ଜୀବନରେ (ଯେଉଁ ସମୟରେ ଜଣେ ଜଣେ ଏମ୍.ଏଲ୍.ଏ ତିନି ପୁରୁଷ ପାଇଁ ସମ୍ପତ୍ତି ଅର୍ଜନ୍ତି) ଆମେ ଏଭଳି ନେତାମାନଙ୍କୁ ଭିନ୍ନ ମାନଦଣ୍ଡରେ ତଉଲୁ ଓ ବୋକା ବୋଲି କହୁ। ପ୍ରକୃତରେ ସବୁ ସାଧୁ ପୁରୁଷଗୁଡ଼ିକ ବୋକା, ତା'ନହେଲେ ତାମସିକ ଧର୍ମଛାଡ଼ି ରାଜସିକ ଧର୍ମ ସେମାନେ ଆଦରନ୍ତେ କାହିଁକି? ପୁଣି ମନେପଡ଼ିଲା ବୃନ୍ଦାବନ ନାୟକ ଓ ଶ୍ରୀହର୍ଷ ମିଶ୍ରଙ୍କ କଥା। ପୂର୍ବତନ ମନ୍ତ୍ରୀ ବୃନ୍ଦାବନ ନାୟକ ଦିନେ ଡକେଇଲେ ଓ କହିଲେ ଆପଣଙ୍କ ପରାମର୍ଶ ଲୋଡ଼ା। ଆଶା ପତ୍ରିକା ଆଉ ନାହିଁ, ମୁଁ ଚାହୁଁଛି ଦୈନିକ ଆଶା ବାହାର କରିବା। ଆପଣଙ୍କ ମତ କ'ଣ? ମୋର ମତ ଥିଲା ଯେ ଦକ୍ଷିଣ ଓଡ଼ିଶା ପାଇଁ କୌଣସି ସ୍ୱତନ୍ତ୍ର ଖବରକାଗଜ ନାହିଁ। ଏକଦା ଗଞ୍ଜାମ, ଭାଷା ଆନ୍ଦୋଳନର ପୁରୋଧା ଥିଲା ଓ ସ୍ୱତନ୍ତ୍ର ଓଡ଼ିଶା ଆନ୍ଦୋଳନର ଦୁଇଜଣ ମୁଖ୍ୟ ନାୟକ ଥିଲେ। (ପାରଳାଖେମୁଣ୍ଡି ମହାରାଜା ଓ ଖଲ୍ଲିକୋଟ ମହାରାଜା ଗଞ୍ଜାମର।) ପୁଣି ଗଞ୍ଜାମ ଜନ୍ମ ଦେଇଛି ଭଞ୍ଜ, କବିସୂର୍ଯ୍ୟ ଓ ଗୋପାଳକୃଷ୍ଣଙ୍କୁ। ବହୁତ ପୁରୁଣା ସମ୍ବାଦପତ୍ର ଆଶା ଓ ନବୀନ ଗଞ୍ଜାମରୁ ବାହାରିଛି, ବର୍ଣ୍ଣ ବୈଷମ୍ୟ ଦୂର କରିବା ଆନ୍ଦୋଳନ ଗଞ୍ଜାମରେ ହୋଇଛି। ତେଣୁ ଏକ ସ୍ୱତନ୍ତ୍ର ଖବରକାଗଜ ନିହାତି ଦରକାର। ବୃନ୍ଦାବନ ବାବୁ ପଚାରିଲେ 'ଶ୍ରୀହର୍ଷ ମିଶ୍ରଙ୍କୁ ଆଣିଲେ କେମିତି ହୁଅନ୍ତା?' ମୋର ଉତ୍ତର ଥିଲା ଶ୍ରୀହର୍ଷ ମିଶ୍ରଙ୍କ ପ୍ରତିଭା ଉପରେ ମତ ଦେବା ପାଇଁ ମୁଁ କିଏ। ପିଲାଦିନେ ପ୍ରତି ରବିବାର ସମାଜ ଖବରକାଗଜ ମୁଁ ଅନେଇ ବସିଥାଏ ତାଙ୍କର ପଶ୍ଚିମ ଦିଗନ୍ତ ପଢ଼ିବା ପାଇଁ। ତାଙ୍କପରି ଜଣେ ପ୍ରତିଷ୍ଠିତ ସମ୍ପାଦକଙ୍କୁ ଆଣିଲେ ଖବରକାଗଜ ଧନ୍ୟ ହୋଇଯିବ। ବୃନ୍ଦାବନ ବାବୁ କହିଲେ ହଁ ସମସ୍ତେ ସେଇକଥା କହୁଛନ୍ତି। ତାଙ୍କୁ ଆଣିବା। ମୋର ଦୈନିକ ଆଶାରେ ଅନେକ ପ୍ରବନ୍ଧ ବାହାରିଛି ଓ ଦୈନିକ ଆଶା ମୋତେ ଶ୍ରେଷ୍ଠ ପ୍ରାବନ୍ଧିକ ପୁରସ୍କାର ଦେଇଛି। ଗଞ୍ଜାମ ଛାଡ଼ିବା ପୂର୍ବରୁ ବୃନ୍ଦାବନ ନାୟକଙ୍କ ଠାରୁ ବିଦାୟ ନେଲି ଓ ଶ୍ରୀହର୍ଷ ମିଶ୍ରଙ୍କ ଠାରୁ ମଧ୍ୟ । ସେ ପଡ଼ିଥିଲେ ହସ୍ପିଟାଲ୍‌ରେ। ଏମିତି ଅନେକ ସ୍ମୃତି ମନ ଭିତରେ ତାଜା ହୋଇରହିଛି। ଆଉ କେତେ ମରିହଜି ଗଲେଣି ମନେ ପଡ଼ିଲେ ଲେଖିବି। ଉଦ୍ଦେଶ୍ୟ ପାଠକ ଓ ପୁରୁଣା ଦିନ ଗୁଡ଼ିକ ମଧ୍ୟରେ ଏକ ସେତୁ ବାନ୍ଧିବା।

# ପଦୋନ୍ନତି

କଟକ ସହର - ଆଇପିଏସ୍ ଅଫିସରମାନଙ୍କର ମୁଖ୍ୟ କାର୍ଯ୍ୟସ୍ଥାନ। ଅଧିକାଂଶ ଅଫିସର କଟକରେ ଅବସର ନିଅନ୍ତି। ବର୍ତ୍ତମାନ ଅବଶ୍ୟ ଅଳ୍ପ କିଛି ବଡ଼ ପୋଷ୍ଟ ଭୁବନେଶ୍ୱରରେ ଅଛି। କିନ୍ତୁ କଟକର ପ୍ରାଧାନ୍ୟ ଯାଇନାହିଁ। ଅନେକ ଅଫିସର (ବିଭିନ୍ନ ବିଭାଗର) କଟକରେ ଥାଇ ଗୋଟିଏ ପଦବୀରୁ ଆଉ ଗୋଟିଏ ପଦବୀକୁ ଯାଆନ୍ତି। ପୋଲିସରେ ଥରେ ଆଇ.ଜି ହୋଇଗଲେ (ସେତେବେଳେ) କେବଳ କଟକ କିମ୍ବା ଭୁବନେଶ୍ୱରରେ ପୋଷ୍ଟିଂ ହୁଏ। ଦୁଇଟି ଡିଆଇଜି ପୋଷ୍ଟ ଛାଡ଼ିଦେଲେ ଆଉ ସବୁ କଟକରେ । ସବୁ ହାଇକୋର୍ଟ ଜଜ୍‌ମାନେ ମଧ୍ୟ କଟକରେ ରହନ୍ତି। ତେଣୁ ମୋ' ପାଇଁ ପ୍ରଥମ ସମସ୍ୟା ହେଲା ଘରଟିଏ ପାଇବା, ୨ୟ ହେଲା ସ୍କୁଲରେ ପିଲାଙ୍କର ନାମ ଲେଖା । ମୋର ଯେତେ ବଦଳି ହୋଇଛି ସବୁ ଶିକ୍ଷା ବର୍ଷ ମଝିରେ, ଭଗବାନଙ୍କର ଆଶୀର୍ବାଦ ଯେ ତା' ସତ୍ତ୍ୱେ ମୋ' ପିଲା ଦୁଇଟି ମୂର୍ଖ ହୋଇନାହାଁନ୍ତି। ସରକାରୀ ବାସଗୃହ ପାଇବା ପାଇଁ ବହୁତ ଠେଲାଠେଲି। ବାସସ୍ଥାନ ଦେବା ପାଇଁ ସରକାର ଯେଉଁ ନିୟମ କରିଛନ୍ତି ତାକୁ କୌଣସି ଏକ ବିଚକ୍ଷଣ ଲୋକ କରିଥିବେ କାରଣ ସେଥିରେ ଇଂରାଜୀରେ ଅନେକ ଶବ୍ଦ ବ୍ୟବହାର କରାଯାଇଛି ଯାହାର ଆକ୍ଷରିକ ଅର୍ଥ 'ଯଦି, ମାତ୍ର, କିନ୍ତୁ, ହେଲେ ମଧ୍ୟ, ହୋଇପାରେ'। ତେଣୁ ସରକାର ପ୍ରଭୁ ରାମଚନ୍ଦ୍ରଙ୍କ ଦରଖାସ୍ତକୁ ଉପେକ୍ଷା କରି ରାମ ବାରିକକୁ ଘର ଦେଲେ କେହି ପ୍ରତିବାଦ କରିପାରିବ ନାହିଁ। କେନ୍ଦ୍ର ସରକାରଙ୍କର ସରକାରୀ ଘର ଦେବା ନିୟମ ବେଶ ସ୍ୱଚ୍ଛ। ଆପଣଙ୍କ ନମ୍ବର କେତେ, କେତେ ଘର ଓ କେଉଁ ପ୍ରକାର ଘର ଖାଲି ଅଛି ଓ କେବେ ପାଇବାର ସମ୍ଭାବନା ଅଛି ସେସବୁ ବିଷୟରେ ନୋଟିସ୍ ବାହାରେ। କିନ୍ତୁ ଆମର ଏଠି ନିଆରା। ଥରେ ଇଷ୍ଟେଟ୍ ଡାଇରେକ୍ଟରଙ୍କ ପାଖରେ ବସିଥିଲି, ଜଣେ ଡ଼େପୁଟି ସେକ୍ରେଟେରୀ ଦେଖାକରି ପଚାରିଲେ, 'ସାର୍, ମୁଁ ୬ ମାସ ହେଲା ଅପେକ୍ଷା କଲିଣି ମୋତେ କେବେ କ୍ୱାର୍ଟର ମିଳିବ ?' ଡାଇରେକ୍ଟରଙ୍କର ଉତ୍ତର ଥିଲା ତୁରନ୍ତ 'ତମେ ତ ପାଇବା ଉପରେ। ଆଜି ମହେଶ ମୋଦି (ଆଇଏଏସ୍)ର ନାଁ ଗଲା ଡ଼େପୁଟେସନ ପାଇଁ। ତେଣୁ ସେ ଦିନେ ନା ଦିନେ ଡ଼େପୁଟେସନରେ ଯିବ ଓ କ୍ୱାଟର ଛାଡ଼ିବ। ତା' କ୍ୱାର୍ଟରଟା ବିବେକ ପଟ୍ଟନାୟକ ଆଇଏଏସଙ୍କୁ ଦିଆଯିବ। ବିବେକ ପଟ୍ଟନାୟକଙ୍କ କ୍ୱାର୍ଟରଟିକୁ ଜଣେ ଆଡ଼ିସନାଲ ସେକ୍ରେଟେରୀ ଆଖେଇଛନ୍ତି। ତାଙ୍କ ଟେର ବହୁତ ଲମ୍ବା। ସେ ବିବେକ ପଟ୍ଟନାୟକଙ୍କ କ୍ୱାର୍ଟରଟା ନେଇଗଲେ ତାଙ୍କ କ୍ୱାର୍ଟରଟା ତମକୁ ଦେଇଦେବା।'. ଏମିତି ଧାଇଁ ଧାଇଁ ଯାଏ କଲୁରି ବେଣ୍ଟ ଗପ ପରି ଆଶ୍ୱାସନା ଶୁଣି ବିଚରା ଡ଼େପୁଟି ସେକ୍ରେଟେରୀ ବନ୍ଧୁ 'ଭଲ

କଥାଟାଏ କହିଲେ' କହି ରାଗରେ ପଳେଇଲେ। ପରେ ମୁଁ ଶୁଣିଲି ଯେ ସେ ଜଣେ ମନ୍ତ୍ରୀଙ୍କ ପାଖରେ ଅଧିଆ ପଡ଼ିବାରୁ ଇଷ୍ଟେଟ୍ ଅଫିସର ଆଲଟ୍‌ମେଣ୍ଟ ଅର୍ଡ଼ର ଧରେଇଦେଲେ। ମୋର ଇଷ୍ଟେଟ୍ ଡିପାର୍ଟମେଣ୍ଟରେ ଦୁଇଟା କାମଥିଲା। ୧୯୭୮ ମସିହାରେ ଭୁବନେଶ୍ୱର ଜମି ପାଇଁ ଦରଖାସ୍ତଟିଏ ପକେଇଥିଲି ଓ ଏସ୍‌ପି ଭୁବନେଶ୍ୱରଙ୍କୁ କହିଥିଲି ଦେଖିବା ପାଇଁ। ଏସ୍‌ପି ବଟକୃଷ୍ଣ ତ୍ରିପାଠୀ ମୁଁ କଟକ ଆଡ଼ିସନାଲ ଏସ୍‌ପି ଥିଲାବେଳେ ଡିଏସ୍‌ପି ଥିଲେ। କାମରେ ଯେମିତି ଦକ୍ଷ ଜନ ସମ୍ପର୍କ ସ୍ଥାପନ କରିବାରେ ସେତିକି ପାରଙ୍ଗମ। ସେ ଦିନେ ଫୋନ୍ କରି କହିଲେ 'ସାର୍, ଜଲ୍‌ଦି ଆସନ୍ତୁ ଆପଣଙ୍କୁ ପ୍ଲଟଟିଏ ମିଳିଛି। ଯଦି ପସନ୍ଦ ନହୁଏ ମୁଖ୍ୟମନ୍ତ୍ରୀଙ୍କୁ କହିଲେ ତା' ବଦଳରେ ଆଉ ଗୋଟିଏ ପ୍ଲଟ ଦେବେ।' ମୁଁ ଭୁବନେଶ୍ୱରରେ ପହଞ୍ଚି ଇଷ୍ଟେଟ୍ ଅଫିସରଙ୍କ ପାଖକୁ ଗଲି । ସେ ଫାଇଲ ମଗେଇ ଦେଖିଲେ। ୧୪ ପୃଷ୍ଠାର ଲିଷ୍ଟ ଓ ଶେଷ ପୃଷ୍ଠାରେ ମୁଖ୍ୟମନ୍ତ୍ରୀଙ୍କର ଆଦେଶ। ମୋତେ ସୂର୍ଯ୍ୟନଗରରେ ଭଲ ପ୍ଲଟଟିଏ ମିଳିଥିଲା ଓ ଜଣେ ଅଫିସରଙ୍କୁ ସେ ପଠେଇଲେ ମୋତେ ଦେଖେଇବା ପାଇଁ। ଦେଖିଲି ପ୍ଲଟଟି ସବୁ ଦିଗରୁ ଭଲ। ଭଲ ଘରଟିଏ କରିବାର ସ୍ୱପ୍ନ ଦେଖିଲି। ଇଷ୍ଟେଟ୍ ଡାଇରେକ୍ଟର କହିଲେ ଯେ ୧୦ ରୁ ୧୫ ଦିନ ଭିତରେ ଆଦେଶ ଯିବ। ତା'ପରେ ନିର୍ବାଚନ ଘୋଷଣା ହୋଇଗଲା । ଜନତା ପାର୍ଟି ହାରିଲା। ସରକାର ବରଖାସ୍ତ ହେଲେ ଓ ମୁଁ ମଧ୍ୟ କୋରାପୁଟରେ ପହଞ୍ଚିଲି। କୋରାପୁଟରୁ ଗଞ୍ଜାମରେ ବଦଳି ହୋଇ ପହଞ୍ଚିବା ପରେ ମନ ଘର ଧରିଲା। ଭୁବନେଶ୍ୱର ଆସିଥିଲି କୌଣସି କାମରେ ଓ ସ୍ତ୍ରୀଙ୍କୁ ନେଇକରି ଗଲି ପ୍ଲଟ ଦେଖେଇବା ପାଇଁ। ଦେଖିଲା ବେଳକୁ ପ୍ଲଟ ଅଛି କିନ୍ତୁ ଘରଟିଏ ତିଆରି ହେଉଛି। ଆଶ୍ଚର୍ଯ୍ୟ ହୋଇଗଲି ଇଷ୍ଟେଟ୍ ଡିପାର୍ଟମେଣ୍ଟଙ୍କୁ ଓ ନୂଆ ଡାଇରେକ୍ଟରଙ୍କୁ କହିଲି ମୋ' ନାଁଟା ୭ନଂ ପୃଷ୍ଠାରେ ଅଛି। ସେ ବାହାର କରି ଦେଖିଲେ ଓ ଉତ୍‌ଫୁଲ୍ଲିତ ହୋଇ ଦେଖେଇଲେ 'ଏଇ ଦେଖନ୍ତୁ ଆପଣଙ୍କ ନାଁ ନାହିଁ।' ତେଣୁ ମୁଁ ସମଗ୍ର ଲିଷ୍ଟ ପଢ଼ିଲି। କୌଣସି ଠାରେ ମୋ' ନାଁ ନଥିଲା। କାରଣ ବୁଝିପାରିଲି। ମୁଖ୍ୟମନ୍ତ୍ରୀ ମହାଶୟ ଲିଷ୍ଟର ଶେଷ ପୃଷ୍ଠାରେ ଦସ୍ତଖତ କରିଛନ୍ତି ଓ ଇଷ୍ଟେଟ୍ ଡିପାର୍ଟମେଣ୍ଟ ବାଲା ପ୍ରଥମ ୧୩ ପୃଷ୍ଠା ବାରମ୍ବାର ବଦଳେଇଛନ୍ତି। ମୋ' ପ୍ଲଟଟା ତ ଗଲା ଜଣେ ହୃଦରୋଗ ଡାକ୍ତରଙ୍କୁ। ବୟସ ପଚାଶ ପାର ହେବାପରେ ଅନେକ ରାଜ କର୍ମଚାରୀ ଓ ନେତାଙ୍କ ଛାତି ମଝିରେ ମଝିରେ ଧଡ଼ ଧଡ଼ ହୁଏ ଓ ଉପଶମ ପାଇଁ ଦରକାର ପଡ଼ନ୍ତି ହୃଦରୋଗ ଡାକ୍ତର, ଖାକିପିନ୍ଧା ବିପିନ ବିହାରୀ ମିଶ୍ର ନୁହେଁ। ତେଣୁ ବିନା ଦ୍ୱିଧାରେ ମୋ' ପାଇଁ ଉଦ୍ଦିଷ୍ଟ ପ୍ଲଟଟା ଜଣେ ଡାକ୍ତରଙ୍କୁ ଦେଇଦିଆଯାଇଛି। ମନ ଦୁଃଖରେ ଫେରୁଛି ବାରଣ୍ଡାରେ ଦେଖାହେଲା ମନ୍ତ୍ରୀ ଶ୍ରୀ ହବିବୁଲ୍ଲା ଖାଁଙ୍କ ସହିତ। ହାତ ଧରି ପକେଇ କହିଲେ 'କ'ଣ ମିଶ୍ର ସାହେବ, ତମେ ଆଜ୍ଞା କୋରାପୁଟ ଛାଡ଼ିବା ପରେ

କେବେ ଯାଇନ। ଚାଲନ୍ତୁ ରୁମ୍‌କୁ ଯିବା।' ତାଙ୍କ ସାଙ୍ଗେ ଚା' ପିଉଥିଲା ବେଳେ ଏଇ କଥା କହିବା ମାତ୍ରେ ଦିଆସିଲି କାଠି ଫୁର୍ କରି ଜଳିଲା ଭଳିଆ କହିଲେ 'ଆଜ୍ଞା ଆପଣଙ୍କ ଭଳିଆ ଲୋକଙ୍କୁ ତ ଏଇଆ କରୁଛନ୍ତି। ସାଧାରଣ ଲୋକଙ୍କୁ କ'ଣ କରୁଥିବେ? ବଛା ବଛା ଚୋରଗୁଡ଼ା ଇଷ୍ଟେଟ୍ ଡିପାର୍ଟ ମେଣ୍ଟରେ ପହଞ୍ଚିଛନ୍ତି। ତୁମେ ବସିଥାଅ ମୁଁ ଜାନକୀ ଆଜ୍ଞାଙ୍କ ପାଖରୁ ଆସେ।' ଅଧ ଘଣ୍ଟେ ପରେ ହସ ହସ ମୁହଁରେ ଫେରିଲେ ଓ କହିଲେ ହେଇଯିବ। ସେତେବେଳେ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ବେଳେ ବେଳେ ଗଞ୍ଜାମ ଯାଆନ୍ତି ଓ ଥରେ ବରହମପୁରରେ ଦେଖାହେବା ମାତ୍ରେ ନିଜ ଆଡ଼ୁ କହିଲେ 'ତୁମକୁ ପ୍ଲଟଟେ ଦେଇଛି।' ପୁଣି କାଳେ ହେରଫେର ହେବ ୨୦ ଦିନ ପରେ ଭୁବନେଶ୍ୱର ଗଲି ଅର୍ଡ଼ର ଆଣିବା ପାଇଁ। ସେଦିନ ନପହଞ୍ଚିଥିଲେ ଅର୍ଡ଼ର କ୍ୟାନ୍‌ସେଲ୍ ହୋଇଥାନ୍ତା କାରଣ ଇଷ୍ଟେଟ୍ ଡିପାର୍ଟମେଣ୍ଟରୁ ଚିଠି ଗଲା ଗଞ୍ଜାମ ନୁହେଁ ତାଳଚେର ଠିକଣାରେ ଯଦିବା ମୁଁ ଗଞ୍ଜାମରେ ଥିଲି। ପୁଣି ନାଁ ଲେଖା ହୋଇଥିଲା ବିପିନ ବିହାରୀ ଦାଶ। ୧୫ ଦିନ ଅପେକ୍ଷା କରି ଫାଇଲରେ ଲେଖାଗଲା ଯେହେତୁ ସେ ନିରବ ରହୁଛନ୍ତି ଏହି ଆଦେଶ ବାତିଲ କରି ଅମୁକ ଲୋକଙ୍କୁ ଦିଆଯାଉ। ଯାହାହେଉ ଆଦେଶଟି ପାଇଲି ଓ ସ୍ୱାମୀ ସ୍ତ୍ରୀ ଗଲୁ ପ୍ଲଟ ଦେଖିବା ପାଇଁ। ଦେଖିଲା ବେଳକୁ ପ୍ଲଟ ମଝିରେ ହନୁମାନଙ୍କ ଗୋଟିଏ ପଥରର ମୂର୍ତ୍ତି, ତା' ସାଙ୍ଗକୁ ଆଙ୍ଗୁଠି ଆକାରର ଦେବୀମୂର୍ତ୍ତି। ଦୁଇଟା କୁଡ଼ିଆ ମଧ୍ୟରୁ ଦୁଇ ତିନିଟା ଲୋକ ବାହାରି ଆସି ଚଢ଼ା ଗଳାରେ ପଚାରିଲେ 'ଆଜ୍ଞା କ'ଣ କାମ?' ମୁଁ କହିଲି 'ଏ ପ୍ଲଟଟା ମୋତେ ମିଳିଛି। କିନ୍ତୁ ମଝିରେ ହନୁମାନ ଓ ଦେବୀଙ୍କ ମୂର୍ତ୍ତି କେବେଠୁ ହେଲାଣି?' ଜିଭ କାମୁଡ଼ି ପକେଇ ଲୋକଟେ କହିଲା 'ଆଜ୍ଞା ଆମ ସାତ ପୁରୁଷ ପୂର୍ବରୁ ଏଠି ମୂର୍ତ୍ତୀ ପୂଜା ପାଉଛନ୍ତି। ଏଇଠେ ମନ୍ଦିର ହେବ। ସରକାର ତ ଭାବୁଛନ୍ତି ସେମାନେ ଭଗବାନଙ୍କ ଉପରେ। ଆପଣ ଦେବୀଙ୍କୁ ହଟେଇ ଘର କରିବେ? ଦେବୀଙ୍କ କୋପ ସମ୍ଭାଳିବେ? ଆପଣଙ୍କ ପିଲାଛୁଆ କେତୋଟି?' ଇଙ୍ଗିତ ବୁଝିପାରି ସ୍ତ୍ରୀ ଡରିକରି ମୋତେ କହିଲେ ଚାଲ ପଳେଇବା ଘର ନହେଉ ପଛେ। ମୁଁ ଏ ବିଷୟରେ କଥାଟାକୁ ଲମ୍ୱାଉନାହିଁ। ପୁଣି ମୋତେ ଆଉ ଗୋଟିଏ ଜାଗା ଦିଆଗଲା ମୁଖ୍ୟମନ୍ତ୍ରୀଙ୍କୁ କହିବା ପରେ ଓ ନୟାପଲ୍ଲୀ ଆଇ.ଆର୍.ସି ଭିଲେଜରେ। ପରେ ବାସସ୍ଥାନ କଲି। ସେତେବେଳେ ଯାଇଥିଲି ଇଷ୍ଟେଟ୍ ଡାଇରେକ୍ଟରଙ୍କ ପାଖକୁ ଜମିଟା ଦଖଲ କରିବା ପାଇଁ ଓ ସରକାରୀ କ୍ୱାର୍ଟର ପାଇବା ପାଇଁ। ଡାଇରେକ୍ଟର ସବୁ ରକମ ଆଶ୍ୱାସନା ଦେଲେ ଓ କ୍ୱାର୍ଟର ଜଲ୍‌ଦି ମିଳିବ ବୋଲି କହି ତାଙ୍କୁ ମଝିରେ ମଝିରେ ଟେଲିଫୋନ କରି ମନେ ପକେଇ ଦେବା ପାଇଁ କହିଲେ। କିନ୍ତୁ ଯେତେବେଳେ ଫୋନ୍ କଲେ ତାଙ୍କ ଷ୍ଟେନୋ କହେ ଆଜ୍ଞା ସିଟ୍‌ରେ ନାହାଁନ୍ତି। ତେଣୁ ଆଇପିଏସ୍ ମେସ୍‌ରେ

ଗୋଟିଏ ରୁମ୍‌ରେ ଆମେ ସ୍ୱାମୀ, ସ୍ତ୍ରୀ, ଦୁଇ ଝୁଅ ଓ ଗୋଟିଏ କୁକୁର ରହିଲୁ। ସେଇ ଗୋଟିଏ ରୁମ୍ ହେଲା ଆମ ପାଇଁ ଡ୍ରଇଁରୁମ୍, ବେଡ୍‌ରୁମ୍, ଡାଇନିଂ ରୁମ୍ ଓ କିଚେନ୍। ଜିନିଷଗୁଡ଼ା ଜଣେ ଭଦ୍ରଲୋକଙ୍କ ଗ୍ୟାରେଜରେ ରଖିଦେଲୁ। ତିନି ମାସ ପରେ ପୋଲିସ ବିଭାଗ ତରଫରୁ କ୍ୱାର୍ଟର ମିଳିଲା। ସେଇଟା ତୁଳସୀପୁରର ତଅଁଳା ସାହି ପାଖରେ। କ୍ୱାର୍ଟରଟା ହେଲା ଇନ୍ସପେକ୍ଟର କ୍ୱାର୍ଟର କିନ୍ତୁ ଏସ୍‌ପି ପାହ୍ୟାର ଅଫିସର ରହୁଥିଲେ। ସନ୍ଧ୍ୟାବେଳେ ତଅଁଳାମାନେ କାମ ସାରି ଫେରନ୍ତି ଓ ଉଚ୍ଚ ସ୍ୱରରେ କଥାହୋଇ ଯେଉଁ ଶବ୍ଦ ବ୍ୟବହାର କରନ୍ତି ସେସବୁ ପିଲାମାନଙ୍କର ଶବ୍ଦ ଜ୍ଞାନ ବିସ୍ତାର କରିଥିବ ନିଶ୍ଚୟ। କିନ୍ତୁ ମୋତେ ବାରମ୍ବାର ସାବଧାନ କରିବାକୁ ପଡ଼ିଲା ଏଭଳି ଶବ୍ଦର ବ୍ୟବହାର ନକରିବା ପାଇଁ। ତା'ପରେ ପିଲାଙ୍କ ସ୍କୁଲରେ ଆଡ୍‌ମିଶନ। ଯେହେତୁ ଇଂରାଜୀ ମାଧ୍ୟମ ସ୍କୁଲରେ ପଢ଼ିଛନ୍ତି, ସମ୍ଭାବନା ସୀମିତ ଥିଲା। ଗୋଟିଏ ସ୍କୁଲକୁ ଗଲୁ, ପ୍ରିନ୍ସପାଲ ସିଧାସଳଖ ନୋଟିସ୍ ବୋର୍ଡ଼କୁ ଦେଖେଇ ଦେଇ କହିଲେ ହେଇ ପଢ଼ନ୍ତୁ, ଆଡ୍‌ମିଶନ ବନ୍ଦ ହୋଇଗଲାଣି। ଆମେ ସ୍କୁଲ କମିଟି କରିଥିବା ନିୟମକୁ ଭାଙ୍ଗି ପାରିବୁ ନାହିଁ।' ତେଣୁ ଏଇ ନୀତିବାନ ପୁରୁଷଙ୍କୁ ଅଧିକ ବିବ୍ରତ ନକରି ଫେରି ଆସିଲି। କିନ୍ତୁ ମୋର ଅନେକ ଦିନ ପରେ ସଂଖ୍ୟା ଲଘୁ ସମ୍ପ୍ରଦାୟର ଜଣେ ଅଫିସର ବଦଳି ହୋଇ ଆସିଲେ ଓ ତାଙ୍କ ପିଲାଙ୍କର ଆଡ୍‌ମିଶନ ତୁରନ୍ତ ହୋଇଗଲା। ନିୟମ ଓ ତା'ର କାର୍ଯ୍ୟକାରିତା ମଧ୍ୟରେ ବହୁତ ବଡ଼ ଫାଙ୍କ ଥାଏ ଏକଥା ସମସ୍ତେ ଜାଣନ୍ତି। ଦ୍ୱିତୀୟ ସ୍କୁଲକୁ ଯିବା ପୂର୍ବରୁ ସ୍ଥାନୀୟ ପୋଲିସଙ୍କୁ କହିଲି ଓ ପୋଲିସ କହିଲା ମାତ୍ରେ ସେ ସ୍କୁଲର ପ୍ରିନ୍ସପାଲ ମୋତେ ବାଡି ନିୟମ କିଛି ଦେଖେଇ ନାହାଁନ୍ତି। ଏ.ଆଇ.ଜି.ର କାମ ପିଠିରେ ସିମେଣ୍ଟ ବସ୍ତା ବୋହିବା ଭଳି। ଡିଜି ଶ୍ୟାମସୁନ୍ଦର ପାଢ଼ୀ ଦୁଇଜଣ ଆଇଜି ବିକେ ପାଣିଗ୍ରାହୀ ଓ ପି.ସି. ରଥ ଓ ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଜଣେ ଡି.ଆଇ.ଜି ଓ ତିନିଜଣ ଏ.ଆଇ.ଜି। ମୋତେ ଏତେ ଗୁଡ଼ିଏ ଦାୟିତ୍ୱ ଦିଆଯାଇଥିଲା ଯେ ସନ୍ଧ୍ୟା ୮ଟା ପୂର୍ବରୁ କେବେ ଘରକୁ ଫେରିପାରେ ନାହିଁ। ପୁଣି ସେଇ ସମୟରେ ଘର ତିଆରି ଆରମ୍ଭ କଲି। ମୋତେ ଫୁରସତ କାଇଁ? ତେଣୁ ଘରର ଡିଜାଇନ୍ କରିବା ଓ ବିଭିନ୍ନ ଉପାଦାନ କିଣିବା ଦାୟିତ୍ୱ ସ୍ତ୍ରୀ ନେଲେ। ସରକାରୀ ଲୋନ ଦେବା ଯାହାକି ମାତ୍ର ୧ ଲକ୍ଷ ୨୫ ହଜାର ଥିଲା ଓ ବ୍ୟାଙ୍କମାନଙ୍କରୁ ଚଢ଼ା ସୁଧ ଦରରେ ଲୋନ୍ ନେବା ଦାୟିତ୍ୱ ଥିଲା ମୋର। ତା' ସାଙ୍ଗେ ମ୍ୟୁନିସପାଲଟିର ଘର ତିଆରି ମଞ୍ଜୁରୀ, ମିଟ୍ଟର ବନ୍ଦୋବସ୍ତ କରିବା ଇତ୍ୟାଦି ସରକାରୀ କାମ ମୁଁ ବହନ କଲି। କଥାରେ କହନ୍ତି ଯଦି କାହା ସାଙ୍ଗେ ଶତ୍ରୁତା ଥାଏ ସେ କଥାକୁ ଗୁପ୍ତ ରଖ ଏବଂ ତାକୁ ପ୍ରବର୍ତ୍ତାଅ ଘରଟିଏ କରିବା ପାଇଁ। ଘରଟିଏ ତିଆରି କରିବାକୁ ହେଲେ ଏତେ ଲୋକଙ୍କ ପାଖେ ଗୋଡ଼ ଭାଙ୍ଗି ଠିଆ ହେବାକୁ ପଡ଼େ ଯେ ଦୁର୍ଯ୍ୟୋଧନ

ପରି ମାନୀ ଲୋକ ମଧ୍ୟ ନମ୍ର ହୋଇଯିବ। ଗୋଟିଏ ଛୋଟିଆ ଘଟଣା କହୁଛି ଏକଥା ଦର୍ଶେଇବା ପାଇଁ ଯେ ସରକାରୀ ତଳ ସ୍ତରରେ ପ୍ରାଦୁର୍ଭାବ କେତେ। ଛାତ ପଡ଼ିବା ଦିନ ଏକ ମିକ୍ସର ମେସିନ ଦରକାର ଓ ସେତେବେଳେ ଭୁବନେଶ୍ୱରରେ ମାତ୍ର ଗୋଟିଏ। ଅଫିସରୁ ଆଦେଶ ଆଣି ମୁଁ ଓ ମିସ୍ତ୍ରୀ ଗଲୁ ମିକ୍ସର ଡ୍ରାଇଭରକୁ ଆଦେଶର କପି ଦେବା ପାଇଁ। ଖୋଜି ଖୋଜି ତାଙ୍କ ଘର ଆବିଷ୍କାର କଲୁ ଏକ ଗଳିରୁ। ମିସ୍ତ୍ରୀ ତାଙ୍କୁ ଡାକି ଆମେ ଆସିବାର ଉଦ୍ଦେଶ୍ୟ କହିବା ମାତ୍ରେ ସେ ଘର ମଧ୍ୟରେ ପଶି ଗଲେ ଓ କମ୍ବଳଟେ ଘୋଡ଼େଇ ହୋଇ ଆସିଲେ। ତା'ପରେ ମୋତେ ଓ ମିସ୍ତ୍ରୀଙ୍କୁ ଯଥାମାନ୍ୟ ଦେଇ ବଡ଼ ହତାଶ ସ୍ୱରରେ କହିଲେ 'ସାର୍, ଆଉ ୨ ଦିନ ପରେ କଲେ ହୁଅନ୍ତାନି ? ଏ ଅଲପେଇସା ଜରଟା କାହୁଁ ଥିଲା ଆଜି ମାଡ଼ି ବସିଲା। ମୁଁ ତ କାଲି ଯାଇପାରିବି ନାହିଁ।'

ମୁଁ - 'କିଓ ସବୁ ପରା ବନ୍ଦୋବସ୍ତ ହୋଇଛି, ୩୦ ଜଣ କୁଲିଙ୍କ ପାଇଁ ଆଡ଼ଭାନ୍ସ ଦିଆହୋଇଛି, ବଡ଼ କଷ୍ଟରେ ମିକ୍ସର ମିଳିଛି ମନା କଲେ କେମିତି ହେବ ? ' ଲୋକଟା ହାତଯୋଡ଼ି କହିଲା, 'ସାର୍ କ'ଣ କରିବି ? ଆପଣ କହିଲେ ମୁଣ୍ଡ କାଟି ଥୋଇଦେବି କିନ୍ତୁ ମିକ୍ସର ଚଳେଇବା ପାଇଁ ମୋ' ହାତରେ ଜୋର ନାହିଁ।' ଅସହାୟ ହୋଇ ମୁଁ ଅନେଇଲି ମିସ୍ତ୍ରୀ ମୁହଁକୁ। ମିସ୍ତ୍ରୀ ତା'କୁ ଟାଣିନେଇ ହାତରେ କିଛି ଗୁଞ୍ଜି ଦେଲା। ତା'ପରେ ଡ୍ରାଇଭର ବାବୁ ଆସି କହିଲେ 'ସାର୍ ଜର ହେଲା ବୋଲି କ'ଣ ଆପଣଙ୍କ ଶୁଭ କାମଟା ବନ୍ଦ ହୋଇଯିବ ? ଯେମିତି ହେଲେ ପଡ଼ିଉଠି ଯିବି, କିନ୍ତୁ ମୋତେ ସାହାଯ୍ୟ କରିବା ପାଇଁ ଭଣଜା ଟୋକାଟାକୁ ନେବି। ଟଙ୍କା ୨୦ରୁ ୨୫ଟା ଧରେଇ ଦେଲେ ସକାଳୁ ସେ ସନ୍ଧ୍ୟା ପର୍ଯ୍ୟନ୍ତ ଖଟିବ। ମିସ୍ତ୍ରୀ ଦେଇଥିଲା ୪୦ ଏବେ ଆଉ ୨୦, ଏଇଭଳି ୬୦ ଟଙ୍କା ପାଇବା ପରେ ଡ୍ରାଇଭରଙ୍କର ଜର ଛାଡ଼ିଗଲା ଓ ତା'ପରଦିନ ଆସି ସେ ପହଞ୍ଚିଲେ। ସେଠି ମିକ୍ସର କାମ ଆରମ୍ଭ ହେବନାହିଁ ଯଦି ପୂଜା ନହୁଏ ଓ ସେଥିପାଇଁ ଗୋଟିଏ ନଡ଼ିଆ, ୧୦ଟି ଲଡୁ ଓ ଗୋଟିଏ ଗାମୁଛା ଡ୍ରାଇଭର ନେଲା। ତା'ପରେ ଡିଜେଲ ପକେଇବା କଥା ଦାୟିତ୍ୱ ଆମର। ମୁଁ କହିଲି 'ପାଖରେ ପେଟ୍ରୋଲ ପମ୍ପ ଅଛି ଡିଜେଲ ପକେଇ ଦେଇ ଆସ' ଓ ଡ୍ରାଇଭର ଚମକି ପଡ଼ି କହିଲା 'ସେଠିକି କିଏ ଯିବ ସାର୍ ? ଅଧା ଡିଜେଲରେ ଅଧା କିରୋସିନି, ମୋ' ମିକ୍ସର କଣ୍ଡମ ହୋଇଯିବ। ତମାଣ୍ଡୋ ପାଖରେ ଯେଉଁ ପେଟ୍ରୋଲ ପମ୍ପ ସେଇଠେ ବେଷ୍ଟ ଜିନିଷ ମିଳେ।' ଅର୍ଥାତ୍ ମିକ୍ସର ଯିବ ୧୦ କି.ମି. ଓ ଫେରିବ ୧୦ କି.ମି. ଅତି କମ୍‌ରେ ସମୟ ନେବ ୩ ଘଣ୍ଟା । ଆମର ଅକ୍ଷମତା ଦେଖି ଡ୍ରାଇଭର ବାବୁ କହିଲେ 'ସାର୍ ଏତେ କଷ୍ଟ କାହିଁ କରିବେ ମୁଁ କିଛି ଅସଲ ଜିନିଷ ରଖିଛି ଆପଣଙ୍କ ଭଳି ବଡ଼ ଲୋକଙ୍କର କାମରେ ଲାଗିବ ବୋଲି। ଏଇଠେ ପାଖରେ ଜଣକ ଘରେ ଅଛି ମୋତେ ଗାଡ଼ିରେ ନେଇଗଲେ ମୁଁ ନେଇ ଆସିବି।

ପଇସାଟା ମୋତେ ଦେଇଦେବେ।' କାମ ଆରମ୍ଭ ହେଲା। ମିସ୍ତ୍ରୀ ଛାତ ଉପରେ ଚଢ଼ି ଛାତ ପକାଇବା କାମ ତଦାରଖ କରୁଥାନ୍ତି। ଜମି ପାଇବା ଠାରୁ ଆରମ୍ଭ କରି ମିସ୍ତ୍ରର ଡ୍ରାଇଭର ପାଦ ଧରିବା ମନେ ପକେଇ ଭୀଷଣ ବିରକ୍ତ ହେଉଥିଲି। ଅବସର ପରେ ଘରଟେ ଭଡ଼ା ନେଇ ରହିଯାଇଥିଲେ ଭଲହୋଇଥାନ୍ତା। ଏତେ ଝିନ୍‌ଝଟ୍ ଭିତରେ ମଣିଷ କାହିଁକି ପଶିବ। ଟିଣ ଚଉକିଟେ ପକେଇ ବସିଥାଏ। ସିମେଣ୍ଟ ଗୁଣ୍ଡ ଉଡ଼ି ମୋ' ଶରୀର ସମ୍ପୂର୍ଣ୍ଣ ଆଚ୍ଛାଦିତ। ଏଇ ସମୟରେ ଖାକି ପ୍ୟାଣ୍ଟ ଓ ଖାକି ହାପ୍ ସାର୍ଟ ପିନ୍ଧା ଓ ବିଡ଼ି ପିଉଥିବା ଜଣେ ଲୋକ ସାଇକେଲ ମାରି ଆସି ପହଞ୍ଚିଲା ଓ ସବୁ ଆଡ଼କୁ ଅନେଇ କ'ଣ ଭାବିଲା କେଜାଣି କଳେ ବିଡ଼ି ଧୂଆଁ ଛାଡ଼ି ମୋତେ ପଚାରିଲା 'କିଓ, ତମେ କଣ୍ଟ୍ରାକ୍ଟର ?' କିଛି ଉତ୍ତର ଦେବା ପୂର୍ବରୁ ଫତୁରାନନ୍ଦଙ୍କର ଗୋଟେ ଉପଦେଶ ମନେପକେଇଲି 'ଯେତେବେଳେ ବହୁତ ବିରକ୍ତି କିମ୍ବା କ୍ରୋଧ ଲାଗୁଥିବ ମଜା କଥାଟିଏ ମନେ ପକେଇବେ।' ସେ ଉପଦେଶ ମାନି ବାବୁଙ୍କର ଆକ୍ରମଣାତ୍ମକ ଭଙ୍ଗୀକୁ ଉପେକ୍ଷା କରି କୋମଳ ସ୍ୱରରେ କହିଲେ 'ଆଜ୍ଞା ହଁ'। ତାଙ୍କର ପରବର୍ତ୍ତୀ ପ୍ରଶ୍ନ ଥିଲା 'ଭଦ୍ରାମି ଶିଖିନ ?' ଓ ମୋ' ଉତ୍ତର ଥିଲା 'ଆଜ୍ଞା ଭୁଲ୍ କ'ଣ ହେଲା ଓ ଆପଣ କିଏ ?' ସେ କହିଲେ 'ଆମେ ବୋର୍ଡ଼ ?' ମୋତେ ବୁଝିବାକୁ ସମୟ ଲାଗିଲା ଯେ ସିଏ ଇଲେକ୍ଟ୍ରିସିଟି ବୋର୍ଡ଼ର କର୍ମଚାରୀ। ପୂର୍ବ ଭଳି ଚଢ଼ା ଗଳାରେ କହିଲେ 'ଛାତ ପଡୁଛି ଅଥଚ ସବ୍‌ଷ୍ଟେସନରେ ଜଣେଇନ କାହିଁକି ? ଆମେ କ'ଣ ଜାଣିନୁ ସନ୍ଧ୍ୟା ହେଲେ ତୁମେ ହୁକ ପକେଇ ଲାଇଟ୍ ଜାଳିବ।' ମୁଁ ଧୀରସ୍ଥିର ଭାବେ କହିଲି ନା ଆମେ ପେଟ୍ରୋମ୍ୟାକ୍ସ ବନ୍ଦୋବସ୍ତ କରିଛୁ। ସେ ଚଦିଲା 'ହଉ ସନ୍ଧ୍ୟାବେଳେ ମୁଁ ଆସି ଚେକ୍ କରିବି ଯୋ। ଡ୍ୟୁଟିରେ ଥିଲେ ମୁଁ ଗଭର୍ଣ୍ଣରଙ୍କୁ ବି ଛାଡ଼ିବିନି।' ଏଇ ସମୟରେ ମିସ୍ତ୍ରୀ ଛାତ ଉପରୁ ଓହ୍ଲାଇ ଆସି ସେ ଲୋକଙ୍କୁ ଡାକି ନେଇ ପଚାରିଲା। 'କ'ଣ ଭାଇ ପୋଲିସ ଏଆଇଜି ସାହେବଙ୍କ ସାଥିରେ କ'ଣ କଥା ହେଉଥିଲ ?' ଏତିକି ଶୁଣି 'ବୋପାଲୋ ମଲି, ମୋ' ନାଁ କହିବନି', କହି ସେ ଲୋକଟା ସାଇକେଲ ମାରି ପଳେଇଲା। ଘର ତିଆରି ସରିବା ପର୍ଯ୍ୟନ୍ତ ଏଇଭଳି ଅନେକ ଗୃଧ୍ର ଆସିଛନ୍ତି ଓ ଯାହାର ଭାଗ୍ୟ ଖରାପ ଥିବ ତିଆରି ସରିବା ପରେ ଇନ୍‌କମ୍ ଟ୍ୟାକ୍ସ ବାଲା ଆସି ଘର ଖର୍ଚ୍ଚ କଳନା କରିବେ। ମୂଳରୁ ଶେଷ ପର୍ଯ୍ୟନ୍ତ ୧୦୦ ବର୍ଷ ହେଲା ପ୍ରଚଳିତ ଢ଼ଙ୍ଗ 'ଆଇଲେ ଅମୀନ ଘରେ, କର ଚରଘେ, ଦିଅ ଖରଚେ, ନିଅ ପରଚେ' ପ୍ରଥା ଚାଲିଆସିଛି। ଜଣେ ଭଦ୍ରଲୋକ ଆସି ସିମେଣ୍ଟ, ଇଟା ବଜାର ଦରରୁ କମ୍ ଦାମ୍‌ରେ ଦେବି ବୋଲି କହିଲେ। କମ୍ ଦାମ୍ କାହିଁକି ବୋଲି ପଚାରିବାରୁ ଉତ୍ତର ଦେଲେ 'ପିଡ଼ବ୍ଲ୍ୟୁଡ଼ି ବାଲାଙ୍କ ହିସାବ ବହୁତ ଭୁଲ୍। ଯେତିକି ସିମେଣ୍ଟ, ଇଟା, ବାଲି, ଗୋଡ଼ି, ବଜୁରୀ ଦରକାର ତାଠୁ ଅଧିକ ଇସ୍ୟୁ କରିଦିଅନ୍ତି। ଆମେ ବାଧ ହୋଇ ବିକୁ।'

ତାଙ୍କୁ ତଡ଼ିବାକୁ ପଡ଼ିଲା। ଆଉ ଜଣେ ଆସି ଶସ୍ତାରେ ଶାଗୁଆନ କାଠ ଦେବା ପାଇଁ କହିଲେ କିନ୍ତୁ ରସିଦ୍ ଦେବେନାହିଁ। ନିଶ୍ଚିତରେ ଚୋରା କାଠ ଜାଣି ତାଙ୍କୁ ବିଦା କଲୁ। ଘର ତିଆରି ହେଲା ୧୯୮୪ ଡିସେମ୍ବରରେ ଓ ସରିଲା ୧୯୮୬ ମସିହାରେ। ଗାଡ଼ି, ଅନୁଗୁଳରେ ମିଳିଥିବା ଖଣ୍ଡେ ଜମି ବିକିବା ପାଇଁ ବାଧ ହେଲି। ନାକ ପର୍ଯ୍ୟନ୍ତ ଋଣରେ ବୁଡ଼ି ରହିଲି। ଗୋଟିଏ ଘର ତିଆରିରେ ଅଣ୍ଟା ଭାଙ୍ଗି ଗଲା କିନ୍ତୁ ଆମର ସମସାମୟିକ ଅନେକ ବନ୍ଧୁ ଦୁଇ ତିନିଟା ଲେଖାଏଁ ଘର କରିପାରିଛନ୍ତି। ବହୁତ ଆଇଏଏସ୍ ଏବଂ ଆଇପିଏସ୍ ଅଫିସର ଢେଙ୍କାନାଳ ସହରର ପାଖ ଆଖରେ ୧୦ ଏକର ୧୫ ଏକର ଲେଖାଏଁ ଜମି କିଣିଛନ୍ତି, କାରଣ ଦର୍ଶେଇଛନ୍ତି ଫାର୍ମ ହାଉସ ପାଇଁ। ଆମ ଅଫିସରମାନଙ୍କର କୃଷି ପ୍ରତି ଏତେ ଆଗ୍ରହ କାହିଁକି ମୁଁ ଏପର୍ଯ୍ୟନ୍ତ ବୁଝିପାରି ନାହିଁ। ଚରିବାଟିଆ ପାଖରେ ଦୁଇଜଣ ଆଇପିଏସ୍ ଅଫିସର (ଜଣଙ୍କର ୬୦ ଏକର, ଜଣକର ୩୦ ଏକର) ଜମି ଅଛି। ରାଉରକେଲାର ବାସନ୍ତି କଲୋନୀରେ ଓ ଛେଣ୍ଡ କଲୋନୀରେ ଅନେକ ଆଇଏସ୍, ଆଇପିଏସ୍ ଅଫିସର ଘର କିଣି ପରେ ଚଢ଼ା ଦାମ୍‌ରେ ବିକିଛନ୍ତି। କେତେକ ଅଫିସର ମେଣ୍ଟ ବାନ୍ଧି ଏଭଳି ଯୋଜନା କରନ୍ତି ଯାହାକୁ ଦୁର୍ନୀତି ବୋଲି ଭାବିହେବ କିନ୍ତୁ କହିହେବ ନାହିଁ। ଗୋଟିଏ ଉଦାହରଣ – ପୋଲିସ ବିଭାଗ ଲେଖିଲା ଯେ ଭୁବନେଶ୍ୱରର ଅମକ ସ୍ଥାନରେ ଏକ ପୋଲିସ ଷ୍ଟେସନ ହେବ। ଏକ ଅପନ୍ତରା ଜାଗାରେ ସ୍ଥାନଟି ନିରୂପଣ କରାଯିବ। କିନ୍ତୁ ତା' ପୂର୍ବରୁ କେତେଜଣ ଅତି ସିନିୟର ଅଫିସର ପାଖ ଆଖରେ ବହୁତ ଜମି ଶସ୍ତାରେ କିଣିନେବେ। ତା'ପରେ ବିଭିନ୍ନ ବିଭାଗ ତରଫରୁ ଆସିବ ଉନ୍ନତିମୂଳକ ଯୋଜନା ଯଥା ସେଇ ସ୍ଥାନରେ ହାଉସିଂ କଲୋନୀ ହେବ, ହେଲ୍‌ଥ ସେଣ୍ଟର ହେବ, ସରକାରୀ ସ୍କୁଲଟିଏ ହେବ ଇତ୍ୟାଦି। ସ୍ୱାସ୍ଥ୍ୟ ବିଭାଗ, ନଗର ଉନ୍ନୟନ ପ୍ରଶାସନ ବିଭାଗ, ଶିକ୍ଷା ବିଭାଗ ସେକ୍ରେଟେରୀମାନେ ମିଳିତ ହୋଇ ଏହି ନିଷ୍ପତ୍ତି ନିଅନ୍ତି ଓ ତାଙ୍କର ଜମି ସେଇଠି ଥାଏ। ଏସବୁ କାମ ନିରବରେ ସୂକ୍ଷ୍ମ ଉପାୟରେ କରାଯାଏ। ଜମି କିଣାଯାଏ ସ୍ତ୍ରୀଙ୍କ ନାଁରେ। ଥରେ ପୁରୀର ଜଣେ କଲେକ୍ଟର କିଛି ଜମି ଆବଣ୍ଟନ କଲେ। ଅନେକ ଜମି ତାଙ୍କ ଉପରିସ୍ଥ କର୍ମଚାରୀଙ୍କ ଧର୍ମପତ୍ନୀମାନେ ପାଇଲେ। ଇଂରେଜୀରେ ଗୋଟିଏ କଥା ଅଛି– ଚ୍ୟାରିଟି ବିଗିନ୍‌ସ୍ ଆଟ୍ ହୋମ୍ (ଦାନ ଦକ୍ଷିଣା ଘରୁ ଆରମ୍ଭ ହୁଏ) ନ୍ୟାୟରେ କଲେକ୍ଟରଙ୍କର ଧର୍ମ ପତ୍ନୀ ମଧ୍ୟ ଗୋଟିଏ ପ୍ଲଟ ପାଇଲେ। ପିଠା ବଣ୍ଟାରୁ ବଞ୍ଚିତ ହୋଇଥିବାରୁ ଜଣେ ୨ ଜଣ ସାମ୍ବାଦିକ ଚିତ୍କାର କରି ଜଳ, ସ୍ଥଳ, ଆକାଶ କମ୍ପେଇଲେ, ସରକାରୀ ଧରପଗଡ଼ ଚାଲିଲା। ବିଚରା ନିରୀହ କଲେକ୍ଟର ଓ ଅତ୍ୟୁଚ୍ଚ ଆଇଏଏସ୍ ଅଫିସରମାନେ କୈଫିୟତ ଦେଲେ ଯେ ସେମାନଙ୍କ ସ୍ତ୍ରୀମାନେ ଉଚ୍ଚ ଶିକ୍ଷିତା ଓ ତାଙ୍କ ଅଜାଣତରେ ଯଦି ସ୍ତ୍ରୀମାନେ ଦରଖାସ୍ତ ପକେଇଲେ

ସେମାନେ କାହିଁକି ଦାୟୀ ହେବେ ? ଯାହାଙ୍କ ହାତରେ ସରକାର ସେମାନେ କୈଫିୟତ ଦେଲେ ଓ ସେମାନେ ତାକୁ ଗ୍ରହଣ କଲେ। ମୋତେ ଅନେକ ସହକର୍ମୀ ପ୍ରବର୍ତ୍ତାଇଛନ୍ତି ଯେ ଜମି ଖଣ୍ଡେ ଖଣ୍ଡେ କିଣି ପକେଇ ଦେଉଥାଅ ପରେ ସୁନା ଫଳିବ। କିନ୍ତୁ ମୋର ଉତ୍ତର ଥିଲା ଯେ, ଶେଷରେ ଗୋଟିଏ ଘରେ ଆମେ ରହିବୁ। ପିଲାମାନେ ଯଦି ଅଯୋଗ୍ୟ ନହେଲେ ଖୁସିରେ ପେନ୍‌ସନ୍ ପଇସାରେ ଚଳିପାରିବୁ। ତେଣୁ ଗୁଡ଼ାଏ ଜମି, ଘର ଓ ମେଞ୍ଚେ ଟଙ୍କା କେବଳ ଗଣିତ କକ୍ଷାରେ ସୀମିତ ହୋଇ ରହିଯିବ। ଯେତିକି ସାଧାରଣ ଆବଶ୍ୟକ ସେତିକି ଢେର। 'ଅତି ସମ୍ପଦ ବାବୁ ମହା ବିଷମ।'

ଘର ତିଆରି କେବଳ ଇଟା ସିମେଣ୍ଟ ଯୋଡ଼େଇର କଥା ନୁହେଁ। ଜମି କିଣିବା ଠାରୁ ଘର ଭଡ଼ା ଲଗେଇବା ପର୍ଯ୍ୟନ୍ତ ସମସ୍ତ ପର୍ଯ୍ୟାୟକୁ ନିରୀକ୍ଷଣ କରି ମୁଁ ଉପଲବ୍ଧି କରିଛି ଯେ ଲୋକଚରିତ୍ର ଚିହ୍ନିବା ପାଇଁ ଏହା ଏକ ଉତ୍ତମ ମାଧ୍ୟମ। ଘର ତିଆରି କଲେ ଆପଣଙ୍କୁ ନିଜକୁ ବହୁତ ଟେକା ମାଡ଼ରୁ ରକ୍ଷା କରିବାକୁ ପଡ଼ିବ, ରାଜମିସ୍ତ୍ରୀ, କାଠମିସ୍ତ୍ରୀ, ବିଜୁଳୀ ତାର ମିସ୍ତ୍ରୀ, କାନ ତରାଟି, କୁଲି, ଚୌକିଦାର, ଗାଡ଼ି ଡ୍ରାଇଭର ଇତ୍ୟାଦି ବହୁତ ଲୋକଙ୍କ ମନନେଇ ଚଳିବାକୁ ପଡ଼ିବ। ମୋ' ସ୍ତ୍ରୀ ସେମାନଙ୍କ ସଙ୍ଗେ ବସି ଖାଇଛନ୍ତି ଓ କାହାକୁ ଭଉ ଓ କାହାକୁ ଭାଇ ବୋଲି ସମ୍ବୋଧନ କରିଛନ୍ତି। ଏ ସଂକ୍ରାନ୍ତରେ ମୁଁ ଏକ ଉପନ୍ୟାସ ଲେଖିଛି 'ଦିଗନ୍ତର ପଥେ' ଯାହା ହିନ୍ଦୀ ଭାଷାରେ ଅନୂଦିତ ହୋଇଛି। ଘର ତିଆରି ଉପରେ ଉପନ୍ୟାସ ଓଡ଼ିଆ ସାହିତ୍ୟରେ ଏଇଟି ହେଉଛି ଏକମାତ୍ର। ଲେଖିବା ପାଇଁ ମୋର ଆଗ୍ରହ ହେଲା କାରଣ ଘର ତିଆରି ହେଉଛି ଏକ ସୂକ୍ଷ୍ମ ଯୋଜନା ଓ ଏକ କଳାକୌଶଳ।

ପୋଲିସ ବିଭାଗର ଦୁଇଟି ହାକିମ ଗୋଟିଏ ସରକାର ଓ ଅନ୍ୟଟି ବିଚାର ବିଭାଗ। ତଦନ୍ତ ପାଇଁ ପୋଲିସ ବିଚାର ବିଭାଗ ନିକଟରେ ଉତ୍ତରଦାୟୀ। ଥାନାରେ ଏଫ୍‌ଆଇଆର ହେବା ମାତ୍ରେ ପ୍ରଥମ କପି ଏସଡ଼ିଜେଏମଙ୍କ ପାଖକୁ ଯାଏ, ଆସାମୀ ଗିରଫ ହେଲେ ମାଜିଷ୍ଟ୍ରେଟ୍‌ଙ୍କ ପାଖରେ ହାଜର କରାଯାଏ। ଅପରାଧର ଘନତା ଦେଖି ବିଚାର ହୁଏ, ଏସଡ଼ିଜେଏସ୍ କିମ୍ବା ସେସନସ୍ କୋର୍ଟରେ। ଭାରତୀୟ ପିଙ୍ଗଲ କୋର୍ଡ଼ ଓ ଅନ୍ୟାନ୍ୟ ଆଇନ୍‌ରେ ବିଭିନ୍ନ ଅପରାଧ ଚିହ୍ନଟ କରାଯାଇଛି ଓ ନିୟମ ଅନୁସାରେ ପୋଲିସ ତଦନ୍ତ କରେ। ପୋଲିସ ଅଫିସରଙ୍କର ତଦନ୍ତର ତନଖି ଉପରିସ୍ଥ ପୋଲିସ ଅଫିସର କରିପାରିବେ, ସେଥିରେ ସରକାରଙ୍କର ଓ ଅନ୍ୟକୌଣସି ଅଧିକାରୀଙ୍କର ହସ୍ତକ୍ଷେପ କରିବାର କ୍ଷମତା ନାହିଁ। ଅମୁକ କେସ୍‌ର ଚାର୍ଜସିଟ୍ ଦାଖଲକର, ଏପରି ଆଦେଶ ସରକାର କ'ଣ ସୁପ୍ରିମ୍‌କୋର୍ଟ ମଧ୍ୟ ଦେଇପାରିବେ ନାହିଁ। ପୋଲିସର ପ୍ରଶାସନିକ ପରିଚାଳନା ସରକାର କରିପାରିବେ। ସେହିପରି ଆଇନ୍ ଶୃଙ୍ଖଳା ପରିସ୍ଥିତି।

କାର୍ଯ୍ୟବିଧି ଆଇନ୍ କହୁଛି ଯେ ଗଣ୍ଡଗୋଳ ସ୍ଥାନରେ ମାଜିଷ୍ଟ୍ରେଟ୍, ତାଙ୍କ ଅନୁପସ୍ଥିତିରେ ଥାନା ଭାରପ୍ରାପ୍ତ ଅଫିସର ଓ ଉଭୟଙ୍କ ଅନୁପସ୍ଥିତିରେ ଜଣେ ସବ୍‌ଇନ୍‌ସପେକ୍ଟର ବଳପ୍ରୟୋଗ (ଲାଠି ଚାର୍ଜ, ଟିୟର ଗ୍ୟାସ୍ ଇତ୍ୟାଦି) ଆଦେଶ ଦେଇପାରିବେ। ଏସବୁ ବ୍ୟବସ୍ଥା ଥିବାବେଳେ ଡିଜି ଏବଂ ଅନ୍ୟାନ୍ୟ ପୋଲିସ ଅଫିସରଙ୍କର କାର୍ଯ୍ୟରେ ସରକାରଙ୍କର ହସ୍ତକ୍ଷେପର ପରିସର ସୀମିତ ହେବା କଥା। କିନ୍ତୁ ପାଠକମାନେ ମନେ ପକେଇ ପାରିବେ ଯେ ୧୯୬୨ ମସିହାରେ ବିଖ୍ୟାତ ବେଙ୍ଗଲି ତାରକା ଛବି ବିଶ୍ୱାସଙ୍କର ଅକାଳ ମୃତ୍ୟୁ ହେଲା ଓ ଲକ୍ଷ ଲକ୍ଷ ଲୋକ ଗୁଣ୍ଡ ହୋଇଥିଲେ। ସେମାନଙ୍କୁ କେମିତି ନିୟନ୍ତ୍ରିତ କରାଯିବ, କେଉଁ ବାଟେ ଅଣାଯିବ କେଉଁ ବାଟେ ଛଡ଼ାଯିବ ଏ ବିଷୟରେ ପୋଲିସ କମିଶନରଙ୍କୁ ନିର୍ଦ୍ଦେଶ ଦିଆଯାଉ ବୋଲି ଜଣେ ମନ୍ତ୍ରୀ ମୁଖ୍ୟମନ୍ତ୍ରୀଙ୍କୁ ପରାମର୍ଶ ଦେବାରୁ ସେ କହିଲେ 'ଏ କାର୍ଯ୍ୟରେ ମୁଁ ହସ୍ତକ୍ଷେପ କରିପାରିବି ନାହିଁ।' ଏକଦା ପଣ୍ଡିତ ନେହେରୁ ମାଡ୍ରାସ ଯାଇଥିଲେ, ସେ ଯେଉଁ ରାସ୍ତାରେ ଯାଇଥାନ୍ତେ ସେଠାରେ କିଛି ଲୋକ ଗଣ୍ଡଗୋଳ ସୃଷ୍ଟି କରିବା ସମ୍ଭାବନା ଥିବାରୁ ଆଇଜି ପି.ଭି. ଅରୁଲ୍ ଗାଡ଼ିଗୁଡ଼ିକୁ ଅନ୍ୟ ରାସ୍ତାରେ ନେଇ ମିଟିଂ ସ୍ଥଳରେ ପହଞ୍ଚାଇଲେ। ତାଙ୍କୁ ନପଚାରି କାହିଁକି ରାସ୍ତା ପରିବର୍ତ୍ତନ କରାଗଲା କହି ପଣ୍ଡିତ ନେହେରୁ ଭୀଷଣ ରାଗିଗଲେ ଓ ମୁଖ୍ୟମନ୍ତ୍ରୀ (କାମରାଜ) ଆଇ.ଜିଙ୍କୁ ଆଣି ଠିଆ କରେଇ ଦେଲେ। ପଣ୍ଡିତ ନେହେରୁ ପ୍ରଚଣ୍ଡ ଭାବେ ରାଗିଥିବା ସତ୍ତ୍ୱେ ଅରୁଲ୍ ଧୀରସ୍ଥିର ଭାବେ କହିଲେ 'ଆଇନ୍ ଶୃଙ୍ଖଳା ସମ୍ଭାଳିବା ରାଜ୍ୟର ଦାୟିତ୍ୱ ଓ ରାଜ୍ୟରେ ଏହା ମୋର ଦାୟିତ୍ୱ। ଶେଷ ମୁହୂର୍ତ୍ତରେ ଏ ନିଷ୍ପତ୍ତି ନେଲି ଗଣ୍ଡଗୋଳ ଏଡ଼ାଇବା ପାଇଁ।' ଅରୁଣଙ୍କୁ ହଇରାଣ କରିବା ପରିବର୍ତ୍ତେ ପଣ୍ଡିତ ନେହେରୁ ପ୍ରମୋଶନ ଦେଇ ସି.ବି.ଆଇ ଡାଇରେକ୍ଟର କଲେ। ୧୯୬୯ ମସିହାରେ ଭୁବନେଶ୍ୱର ସେକ୍ରେଟେରିଏଟ୍ ସାମନା ପ୍ୟାରେଡ୍ ଗ୍ରାଉଣ୍ଡରେ ସ୍ୱାଧୀନତା ଦିବସ ପ୍ୟାରେଡ୍ ସରିବା ପରେ ଜଣେ ଦି'ଜଣ ପିଲା ଓ କନେଷ୍ଟବଳଙ୍କ ହାତାହାତି ହେଲା ଓ କିଛି ପିଲା ମୁଖ୍ୟମନ୍ତ୍ରୀଙ୍କ ଘର ଆଡ଼କୁ ମାଡ଼ିଗଲେ। ଭୁବନେଶ୍ୱରର ଅତିରିକ୍ତ ଏସ୍‌ପି ବି.ପି. ଶାହା ମୋତେ ନେଇ ସିଏମ୍‌ଙ୍କ ଘର ବାଡ଼ି ପଟେ ପ୍ରବେଶ କଲେ ଓ ଖବର ପାଇ ସେ ସଙ୍ଗେ ସଙ୍ଗେ ଡକେଇଲେ। ବି.ପି. ଶାହାଙ୍କ ଠାରୁ ସବୁ କଥା ଶୁଣିବା ସମୟରେ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂଦେଓ ସିଗାରେଟ୍‌ଟିଏ ଲଗେଇଲେ ଓ କହିଲେ 'ଆଇନ୍ ଶୃଙ୍ଖଳା ରକ୍ଷା କରିବା ଦାୟିତ୍ୱ ଆପଣଙ୍କର, ମୋର ଆଦେଶ କାହିଁକି ଚାହୁଁଛନ୍ତି ? ଆଇନ୍ ଅନୁସାରେ ଯାହା ଉଚିତ୍ ତାହା କରନ୍ତୁ।' ପିଲାମାନଙ୍କୁ ଲାଠି ଧରି ଗୋଡ଼େଇବାରୁ ସେମାନେ ପଳେଇଲେ। ପୁଣିଥରେ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଗଲୁ ଓ ସେ 'ୱେଲ୍‌ଡ଼ନ୍' କହି ଖବରକାଗଜ ପଢ଼ିଲେ ଓ ଆମେ ଫେରି ଆସିଲୁ।

ସରକାରୀ କର୍ମଚାରୀଙ୍କର ମନୋବଳ ଦୁର୍ବଳ ହୋଇଗଲା ଇମରଜେନ୍ସି ସମୟରେ। ତୋଷାମଦି କରିବାରେ ପ୍ରତିଯୋଗିତା ଚାଲିଲା ଓ ମନୋବଳ ଆହୁରି ଦୁର୍ବଳ ହୋଇଗଲା '୧୯୭୭ ମସିହା ପରେ ଶାହା କମିଶନ, ପଣ୍ଡା କମିଶନ ଓ ହଜାରେ କମିଶନ ବସିବା ଦ୍ୱାରା। ପ୍ରତିଦିନ ବଡ଼ ବଡ଼ ଅଫିସରମାନେ କମିଶନ ଆଗରେ ହାଜର ହେଲେ ଓ ତାଙ୍କୁ ଓକିଲମାନେ ଛିଗୁଲେଇଲେ ଓ କମିଶନ ଧମକେଇଲେ। ସରକାରୀ କର୍ମଚାରୀଙ୍କର ମାନମହତ ବହୁତ ତଳକୁ ଚାଲିଗଲା। ଏଣିକି ଏମ୍ଏଲ୍ଏମାନେ ମଧ ବଡ଼ ବଡ଼ ଅଫିସରମାନଙ୍କୁ ନିର୍ଦ୍ଦେଶ ଦେବାକୁ ପଛେଇଲେ ନାହିଁ। କୋଡ଼ିଏ ବର୍ଷ ତଳେ ସେମାନେ ସାହସ କରୁନଥିଲେ।

୧୯୮୦ ମସିହାରେ ଶ୍ରୀ ନରସିଂହ ସ୍ୱାଇଁ ଓଡ଼ିଶାକୁ ଆଇ.ଜି ହୋଇ ଫେରିଆସିଲେ ଓ ଦେଖିଲେ ସବୁ ବିଭାଗ ପରି ପୋଲିସ ବିଭାଗ ମଧ ବିପର୍ଯ୍ୟସ୍ତ ହୋଇଗଲାଣି। ଅନେକ ବଡ଼ ବଡ଼ ଅଫିସର କଟକ ଭୁବନେଶ୍ୱର ଛାଡ଼ିଯିବା ପାଇଁ ପ୍ରସ୍ତୁତ ନଥିଲେ। ଦୁଇ ତିନି ଜଣଙ୍କୁ ଛାଡ଼ି ଦେଲେ ଡିଏସ୍ପିରୁ ଆଇପିଏସ୍ ପାଇଥିବା ଅଫିସରମାନେ ଗୋଟିଏ ଗ୍ରୁପ୍ କରିଥିଲେ। ଜାତିଆଣ ଭିତ୍ତିରେ ମଧ ଦୁଇ ତିନୋଟି ଦଳ ହୋଇଥିଲା। ଜଣେ ଡିଏସ୍ପି ବହୁଦିନ କଟକ ଭୁବନେଶ୍ୱରରେ ଥିଲେ, ଶ୍ରୀଯୁକ୍ତ ସ୍ୱାଇଁ ତାଙ୍କୁ ଗଞ୍ଜାମ ଜିଲ୍ଲା ବଦଳି କରିଦେଲେ। ସେ ଭଦ୍ରଲୋକଙ୍କର ଚେର ବହୁତ ବ୍ୟାପକ ବୋଲି ଆଇ.ଜି. ଜାଣିପାରିନଥିଲେ। କଂଗ୍ରେସର ଦୁଇ ତିନି ଜଣ ଓଜନଦାର ନେତା ଏ ଆଦେଶ ସେମାନଙ୍କର ପ୍ରାଧାନ୍ୟ ପ୍ରତି ଚ୍ୟାଲେଞ୍ଜ ବୋଲି ଧରିନେଲେ। ଶ୍ରୀଯୁକ୍ତ ସ୍ୱାଇଁଙ୍କୁ ବାରମ୍ବାର କୁହାଗଲା ଆଦେଶ ପ୍ରତ୍ୟାହାର କରିବା ପାଇଁ ଓ ସେ ମନା କଲେ। କିନ୍ତୁ ସେ ବୁଝିପାରିନଥିଲେ ଯେ ସରକାର ଏତେ ତଳ ସ୍ତରକୁ ଯାଇପାରନ୍ତି। ସେମାନେ ଆଇ.ଜି.ଙ୍କର ଡିଏସ୍ପିମାନଙ୍କୁ ବଦଳି କରିବାର କ୍ଷମତା ପ୍ରତ୍ୟାହାର କରିଦେଲେ। ନଛୋଡ଼ବନ୍ଧା ଆଇ.ଜି ଏହାପରେ ସରକାର ମୋତେ କୌଣସି ବଦଳି ପ୍ରସ୍ତାବ ମାଗନ୍ତୁ ନାହିଁ ଓ ନିଜେ ବଦଳି କରିବାର ଦାୟିତ୍ୱ ନିଅନ୍ତୁ ଓ ଅସୁବିଧା ହେଲେ ମୋତେ କିଛି କହିବେ ନାହିଁ ବୋଲି ଲେଖିଦେଲେ। ଆଇ.ଜି.ଙ୍କୁ କହି କାମ କରେଇ ନେବାଟା ସହଜ ଉପାୟ କିନ୍ତୁ ନିଜେ ଦାୟିତ୍ୱ ନେବାଟା କଷ୍ଟ, ତେଣୁ କଥାଟା ଅଚଳ ଅବସ୍ଥାକୁ ଆସିଲା ଓ ସେ ଅବସର ନେବା ପରେ ଅବସ୍ଥାର ପରିବର୍ତ୍ତନ ହେଲା!

୭୮ ମସିହା ପୋଲିସ ଆନ୍ଦୋଳନ ପରେ କନେଷ୍ଟବଳ ଓ ହାବିଲଦାର ସ୍ତରରେ ବିଶୃଙ୍ଖଳା ବହୁଗୁଣରେ ବଢ଼ିଗଲା। ପ୍ରତି ଜିଲ୍ଲା ଓ ବାଟାଲିୟନର ସଂଘ ହେଲା ଓ ଜିଲ୍ଲାରେ ମହାସଂଘ ହେଲା। ପୋଲିସ ଆନ୍ଦୋଳନ ସମୟରେ ଯେଉଁ କେତେଜଣଙ୍କୁ ଚାକିରିରୁ ବରଖାସ୍ତ କରାଯାଇଥିଲା ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟ ନିଜେ ବରଖାସ୍ତ

ହେବା ପୂର୍ବରୁ ସେମାନଙ୍କୁ ଋକିରିକୁ ଫେରାଇ ଆଣିଲେ। ଶ୍ରୀଯୁକ୍ତ ରାଉତରାୟ ଜଣେ ଦୟାଳୁ ପୁରୁଷ ଥିଲେ କିନ୍ତୁ ଏ କ୍ଷେତ୍ରରେ ଦୟା ମାରାତ୍ମକ ଥିଲା। ତା'ପରେ ଡିଏସ୍‌ପିମାନଙ୍କ ସିଧାସଳଖ ନିଯୁକ୍ତିକୁ ସବ୍‌ଇନ୍ସପେକ୍ଟର ଓ ଇନ୍ସପେକ୍ଟର ସଂଘର ଋପ ଦ୍ୱାରା ବନ୍ଦ କରିଦିଆଗଲା। ବର୍ତ୍ତମାନ ଆଇପିଏସ୍‌ରେ ୫୭ଟି ପଦବୀ ଖାଲି ତା'ର କାରଣ ହେଉଛି ଏଇ ଭୁଲ୍ ନିଷ୍ପତ୍ତି। ଶ୍ରୀଯୁକ୍ତ ସ୍ୱାଇଁ ପ୍ରଥମେ କନେଷ୍ଟବଳମାନଙ୍କର ବିଶୃଙ୍ଖଳା ବନ୍ଦ କରିବା ପାଇଁ ଚେଷ୍ଟା କଲେ। ସେମାନେ ଏତେ ବିପଥଗାମୀ ହୋଇଯାଇଥିଲେ ଯେ, ବାରଙ୍ଗରେ ଗୋଟିଏ ଘଟଣାକୁ କେନ୍ଦ୍ରକରି ଅତିରିକ୍ତ ଏସ୍‌ପି ମନମୋହନ ପ୍ରହରାଜଙ୍କୁ ବାଡ଼େଇଲେ। କିନ୍ତୁ ଏମାନଙ୍କ ଦୁର୍ବଳତା ସ୍ୱାଇଁ ସାର୍ ଜାଣିଥିଲେ। ସେମାନେ ପୂର୍ବ ଆଇ.ଜିଙ୍କ ଠାରୁ ଆଦେଶ କରିଦେଇଥିଲେ ଯେ ସଂଘର ଋନ୍ଦା ଅଫିସ ସଂଗ୍ରହ କରିଦେବ। ଶ୍ରୀଯୁକ୍ତ ସ୍ୱାଇଁ ଏହାକୁ ବନ୍ଦ କରିଦେଲେ। ନିଜକୁ ଆଇ.ଜିଙ୍କ ସମକକ୍ଷ ମନେକରୁଥିବା କେତେକ କନେଷ୍ଟବଳ ଓ ହାବିଲଦାର ଉତ୍ପାତ କରିବେ କ'ଣ ଋନ୍ଦା ସଂଗ୍ରହ ପାଇଁ ବୁଲି ବୁଲି ତାଙ୍କର ଚପଲ ଛିଣ୍ଡିଗଲା। ଯେଉଁ ସଂଘର କର୍ମକର୍ତ୍ତା ମିଟିଂରେ ଘୋଷଣା କରିଥିଲେ 'ଦରକାର ପଡ଼ିଲେ ଆମେ ଆଇ.ଜିଙ୍କୁ ଘୋଷାଡ଼ି ଘୋଷାଡ଼ି ଆଣିବୁ ବୋଲି' ସେମାନେ ଏବେ କାକୁତି ମିନତି ହେଲେ। ଆଇ.ଜିଙ୍କୁ କନେଷ୍ଟବଳ ଅପମାନ କରିବାର ମଜା ଯେଉଁ ଘରୋଇ ବିଭାଗ ଉପଭୋଗ କରୁଥିଲା ସେମାନେ ମଧ୍ୟ ସଂଘକୁ ସାହାଯ୍ୟ କରିପାରିଲେ ନାହିଁ। ଶ୍ରୀଯୁକ୍ତ ସ୍ୱାଇଁ ଅବସର ନେଲାପରେ ଶ୍ରୀ ଶ୍ୟାମସୁନ୍ଦର ପାଢ଼ୀ ହେଲେ ଡି.ଜି। ସରକାର ତାଙ୍କ କ୍ଷମତା ଆହୁରି ସଙ୍କୁଚିତ କରିଦେଲେ। ତାଙ୍କ ଅଧୀନରେ ଥିବା ଦୁଇ ଆଇ.ଜିଙ୍କୁ ଛୁଟି ଦେବାର କ୍ଷମତା ମଧ୍ୟ ତାଙ୍କର ନଥିଲା, ଗୁପ୍ତ ଚରିତ୍ର ପଞ୍ଜିକା ଲେଖିବା ତ ଦୂରର କଥା। ପ୍ରଥମ ଥର ପାଇଁ ସରକାରଙ୍କ ପକ୍ଷରୁ ରୀତିମତ ପ୍ରୟାସ ଋଲିଲା ଯେ ପୋଲିସ ବିଭାଗକୁ ଖଣ୍ଡ ଖଣ୍ଡ କରିଦେବା ଓ ଦୁର୍ବଳ କରିବା। ଘରୋଇ ବିଭାଗର ଉଦ୍ୟମକୁ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉତ୍ସାହିତ କରୁଥିଲେ କି ନାହିଁ ଜଣାନାହିଁ। କିନ୍ତୁ ବନ୍ଦ କରିନାହାଁନ୍ତି। ବର୍ତ୍ତମାନ ମୁଁ ଉପଲବ୍ଧି କଲି ଯେ ଜିଲ୍ଲା ଛାଡ଼ି ଆସିବା ଭୁଲ୍ ଥିଲା କାରଣ ଏଠାରେ ମୁଁ କାମ କରୁଛି ଏକ ଅପମାନଜନକ ବାତାବରଣ ମଧ୍ୟରେ। ଯଦିବା ସେ ମୋର କାର୍ଯ୍ୟର ତଦାରଖ କରୁନଥିଲେ ଆଇ.ଜି ବିଜୟ କୁମାର ପାଣିଗ୍ରାହୀ ମୋ' ମାନସିକ ଅବସ୍ଥା ବୁଝିପାରି ମୋତେ ଥରେ ବୁଝେଇଲେ 'ଲୋକମାନେ ଆମକୁ ଭୋଟ୍ ଦେଇନାହାଁନ୍ତି ସରକାରଙ୍କୁ ଦେଇଛନ୍ତି। ଆମର କ୍ଷମତାର ଉତ୍ସ ଦୁଇଟା, ଗୋଟିଏ ହେଲା ଆଇନ୍ ଓ ଅନ୍ୟଟି ସରକାରଙ୍କ ଆଦେଶ ନିୟମାବଳୀ। ସରକାର ଆଇନ୍‌କୁ ସହଜରେ ବଦଳେଇପାରିବେ ନାହିଁ କାରଣ ତାହା ପାଇଁ କେନ୍ଦ୍ର ସରକାରଙ୍କ ଅନୁମତି ଦରକାର। କିନ୍ତୁ ଆଦେଶ ଓ

ନିୟମାବଳୀକୁ ବଦଳେଇଲେ ଆମେ କ'ଣ କରିବା ? ଆମର ଯେଉଁ କ୍ଷମତା ମୌଳିକ ତାକୁ କିଏ ଛୁଇଁ ପାରିବେ ନାହିଁ, ବାକି କ୍ଷମତା କେତେବେଳେ ବଢ଼ିବ ଓ କେତେବେଳେ କମିବ। ଆଉ ଗୋଟିଏ କଥା ମନେରଖ କର୍ତ୍ତବ୍ୟରେ ମାନ ଓ ଅପମାନ ବୋଲି କିଛି ନାହିଁ।' ଶ୍ରୀଯୁକ୍ତ ପାଣିଗ୍ରାହୀ ପରେ ଡି.ଜି ହେଲେ। ସେ ଅତି ଦକ୍ଷ, ସଚ୍ଚୋଟ ଓ ଚବିଶ ଘଣ୍ଟା କାମରେ ବ୍ୟସ୍ତ ଥାଆନ୍ତି। ତାଙ୍କର ଅଧୀନରେ କାମ କରିବା ଗୌରବର ବିଷୟ।

ଆଜିକାଲି ବହୁତ ଜିଲ୍ଲା ହୋଇଗଲାଣି। ତେଣୁ ଜଣେ ଜଣେ ଆଇପିଏସ୍ ଅଫିସର ଚାରୋଟି ପାଞ୍ଚୋଟି ଜିଲ୍ଲାରେ ଏସିପି ହୋଇପାରୁଛନ୍ତି। କିନ୍ତୁ ଆମ ସମୟରେ ଦୁଇ, ଅତି ବେଶିରେ ତିନିରୁ ଅଧିକ ଜିଲ୍ଲାରେ କାର୍ଯ୍ୟ କରିବାର ଅବକାଶ ନଥିଲା। କାରଣ ଅନ୍ୟାନ୍ୟ ସ୍ଥାନମାନଙ୍କରେ ଆଇପିଏସ୍ ଅଫିସରଙ୍କର ଆବଶ୍ୟକତା ଥିଲା। ମୋ' ଦୁର୍ଭାଗ୍ୟ ଯେ ମୁଁ ଏଆଇଜି ହେବା ପୂର୍ବରୁ ଚାରୋଟି ଜିଲ୍ଲାରେ ଏସ୍‌ପି ହୋଇଥିଲି ଓ ଏଆଇଜି ଥିଲାବେଳେ ଦେଶରେ ଭାରତ ବନ୍ଦ ହେଲା ବୋଲି ବଲାଙ୍ଗୀର ଏସ୍‌ପି ମାସେ ଛୁଟିରେ ଯାଇଛନ୍ତି ଓ ଭୀଷଣ ଗଣ୍ଡଗୋଳ ହେବାର ଥିଲା, ତେଣୁ ଶ୍ରୀଯୁକ୍ତ ପାଢ଼ୀ ମୋତେ ଏସ୍‌ପି ଭାବେ ପଠାଇଦେଲେ। ମୋ' ଅଣ୍ଟା ଓ ବେକରେ ଭୀଷଣ ଯନ୍ତ୍ରଣା ହେଉଥିବା ସତ୍ତ୍ୱେ ମୁଁ କାର୍‌ରେ ବଲାଙ୍ଗୀର ଗଲି। ସେ ଜିଲ୍ଲା ମୋ' ପାଇଁ ସମ୍ପୂର୍ଣ୍ଣ ନୂତନ ଥିଲା। ଦ୍ୱିତୀୟରେ ମୋର ନଯିବାର ଏକ ବ୍ୟକ୍ତିଗତ କାରଣ ଥିଲା। ଅଳ୍ପ କେତେ ମାସ ତଳେ ମୋ' ଭାଣିଜୀର ବାହାଘର ପାଇଁ ପରିବାର ବଲାଙ୍ଗୀର ଯାଇଥିଲେ ଓ ବାହାଘର ଦିନ ମୋ' ବୋଉ (ମା')ର ମସ୍ତିଷ୍କରେ ରକ୍ତସ୍ରାବ ହେଲା। ଅନ୍ୟ ସମସ୍ତେ ବାହାଘରରେ ବ୍ୟସ୍ତ ହେଲେ, ମୁଁ ଓ ମୋ ସ୍ତ୍ରୀ ହସ୍ପିଟାଲରେ ବୋଉକୁ ଜଗିଲୁ। ରାତି ପ୍ରାୟ ୪ଟା ବେଳକୁ ପ୍ରୟାଣ ହୋଇଗଲା ଆମ ଆଖି ସାମ୍ନାରେ। ଟିକିଏ ଦୂରରେ ଠିଆ ହୋଇ ଜଣେ ନର୍ସ ଆଉ ଜଣଙ୍କୁ କହୁଥିବାର ମୁଁ ଶୁଣିଲି 'ବୁଢ଼ୀ ଚାଲିଗଲେ ଜାଣ ତରିଗଲେ, ନଯାଇଥିଲେ ପାରାଲିସିସ୍ ହୋଇ କେତେ କଷ୍ଟ ପାଇଥାନ୍ତେ କେଜାଣି।' ବଲାଙ୍ଗୀର ନାଁ ଶୁଣିବା ମାତ୍ରେ ମୋର ମନେପଡ଼ିଯାଏ ସେ ଦୁର୍ଗନ୍ଧପୂର୍ଣ୍ଣ ହସ୍ପିଟାଲ୍, ଦୁଇ ତିନିଟା ଟିୟୁବ୍ ଖଞ୍ଜା ହୋଇ ଚିତ୍ ହୋଇ ପଡ଼ିରହିଥିବା ମୋର ବୋଉ ଓ ମଝିରେ ମଝିରେ ତା' ହାତଟା ଭୟଙ୍କର ଭାବେ ଥରିବା କଥା। ସମ୍ବଲପୁରରେ ମୁଁ ହଇଜାରେ ପଡ଼ିଥିଲା ବେଳେ ସେ ମୋ' ପାଟିରେ କର୍ପୁରାରିଷ୍ଟ ଢ଼ାଳି ଦେଇଥିଲା। ଠାକୁରାଣୀଙ୍କ ଆଗରେ କଉଡ଼ି ହୋଇପଡ଼ି ବହୁ ପ୍ରାର୍ଥନା କରିଥିଲା ଓ ନନାଙ୍କୁ ଠେଲି ଠେଲି ଡାକ୍ତରଙ୍କ ପାଖକୁ ପଠେଇଥିଲା। କିନ୍ତୁ ସେ ମଲା ବେଳକୁ ସବୁ ପୁଅ ଝିଅ ପ୍ରତିଷ୍ଠିତ କିନ୍ତୁ କେହି ତାକୁ ରକ୍ଷା କରିପାରିଲେନି। 'ନିମିଷେ କାଳ ହରୟତି ସର୍ବ।'

ଭାରତ ବନ୍ଦ ଯୋଗୁ ଅନେକ ଜିଲ୍ଲାରେ ଫାଇରିଙ୍ଗ ଓ ଲାଠି ଚାର୍ଜ ହେଲା । ବଲାଙ୍ଗୀରରେ ପ୍ରତିଷେଧମୂଳକ ପଦକ୍ଷେପ ନେଇଥିବାରୁ ସବୁ ସୁରୁଖୁରୁରେ ଚାଲିଲା ଓ ଡି.ଜି ଏକ ପ୍ରଶଂସା ପତ୍ର ଦେଲେ । ମୁଁ ଫେରିଆସିଲି ଏଆଇଜି ପୋଷ୍ଟକୁ ।

କୋରାପୁଟରେ ଥିଲାବେଳେ ଜିଲ୍ଲାର ସର୍ବଶ୍ରେଷ୍ଠ ଇନ୍‌ସପେକ୍ଟର, ସବ୍‌ଇନ୍‌ସପେକ୍ଟର, ହାବିଲଦାର, କନେଷ୍ଟବଲମାନଙ୍କୁ ପ୍ରାଇଜ ଦେବା ପାଇଁ ଆଦେଶ ଦେଇଥିଲି । ସେଠାରୁ ଗଞ୍ଜାମ ଯିବାପରେ ମଧ୍ୟ ସେଠାରେ ସେଭଳି ଆଦେଶ ଦେଲି ଓ ଏଆଇଜି ଥିଲାବେଳେ ଆଇ.ଜି ପ୍ରଫୁଲ୍ଲ ରଥଙ୍କୁ ଆଦେଶର କପି ଦେଖାଇଲି । ସେ ଡି.ଜିଙ୍କୁ ଲେଖିଦେଲେ ଯେ ଏ ଆଦେଶ ସବୁ ଜିଲ୍ଲା ଓ ରାଜ୍ୟ ସ୍ତରୀୟ କରିବା ପାଇଁ ଏବଂ ଏହା ଶିଘ୍ର କାର୍ଯ୍ୟକାରୀ କରାଗଲା । ପୁଣି ସେଇ ସମୟରେ ଓଡ଼ିଶା ପୋଲିସର ରୌପ୍ୟ ଜୁବୁଲି ହେଲା ଓ ମୁଁ ହେଲି ଆବାହକ । ସେତେବେଳକୁ ଶ୍ରୀ ପାଣିଗ୍ରାହୀ ଡି.ଜି ଥିଲେ ଓ ଶ୍ରୀ ପାଢ଼ୀ ହୋମ୍‌ଗାର୍ଡ଼ ଡି.ଜି ଥିଲେ । ରୌପ୍ୟ ଜୁବୁଲି ଖୁବ୍ ଭଲଭାବେ ପାଳିତ ହେଲା ଓ ମୁଁ ସେକ୍ରେଟେରୀ ହୋଇଥିବାରୁ ମୋତେ ବହୁତ ଦାୟିତ୍ୱ ବହନ କରିବାକୁ ପଡ଼ିଲା । କିଛି ଭୁଲ୍ ଭଟକା ହୋଇଛି ସତ କିନ୍ତୁ ମୋଟାମୋଟି ଭାବେ ରୌପ୍ୟ ଜୁବୁଲି ଉତ୍ସବଟି ବିଶେଷ ସଫଳ ହୋଇଥିଲା । ସେଇ ସମୟରେ ମୋ' ନାଁ ଯାଇଥିଲା ପୋଲିସ ମେଡ଼ାଲ ପାଇଁ ଓ ମୁଁ ମେଡ଼ାଲ ପାଇବା ପାଇଁ ଭାରତ ସରକାରଙ୍କ ଦ୍ୱାରା ମଧ୍ୟ ବିବେଚିତ ହେଲି ।

ସରକାରୀ କ୍ଷେତ୍ରରେ ସନ୍ତୋଷ ମିଳୁଥିଲା କିନ୍ତୁ ବ୍ୟକ୍ତିଗତ ବ୍ୟାପାରରେ ନୁହେଁ । ମୋ' ପ୍ରିୟ କୁକୁରଟି ୧୪ ବର୍ଷ ମୋ' ସାଙ୍ଗରେ ଥିଲା । ଛୋଟ କୁକୁରଟିଏ, ଖରାପଡ଼ିଲେ ଲୋମ ସୁନା ଭଳି ଚକ୍ ଚକ୍ କରେ । ଦେହରେ ନାହିଁ ତା'ର ମାଉଁସ ପୁଳେ କିନ୍ତୁ ତା'ର ପରାକ୍ରମ ସିଂହଠୁ ବଳେ । ସେ ମରିଗଲା ।

ନନା ଯେ କି ଜୀବନରେ ଗୋଟେ ଇଞ୍ଜେକ୍‌ସନ ନେଇନାହାଁନ୍ତି, କୌଣସି ଗୁରୁତର ବେମାରୀରେ ପଡ଼ିନାହାଁନ୍ତି ତାଙ୍କୁ ୭୪ ବର୍ଷ ବୟସରେ ଡାଇବେଟିସ ହୋଇଗଲା । ମୋ' ଘରେ ପ୍ରାୟ ଦେଢ଼ବର୍ଷ ରହିଥିଲେ କିନ୍ତୁ ୧୯୬୩ ରୁ ୮୮ ପର୍ଯ୍ୟନ୍ତ ବିନୋଦ ଭାଇନା ଓ ଭାଉଜ ତାଙ୍କର ସେବା ଶୁଶ୍ରୁଷା କରୁଥିଲେ । ପ୍ରତି ବଦଳରେ ସେମାନେ କେବଳ ଆଶୀର୍ବାଦ ପାଇଲେ । ନନାଙ୍କ ସ୍ୱାସ୍ଥ୍ୟ ଚିନ୍ତା ସାଙ୍ଗକୁ ମୋର ଅର୍ଥ ଚିନ୍ତା । ପାଠକେ ଭାବୁଥିବେ ଜଣେ ଆଇପିଏସ୍ ଅଫିସରର ଅର୍ଥ ଚିନ୍ତା କ'ଣ ? ସେମାନେ ଜାଣନ୍ତୁ ଯେ ମୁଁ ୧୯୬୭ ମସିହାରେ ଚାକିରିରେ ଜଏନ୍ କଲି ଜଣେ କ୍ଲାସ୍ ୱାନ୍ ଅଫିସର ଭାବରେ । ବାପା ମାଆଙ୍କୁ ସମ୍ଭାଳିବା, ଭାଇଙ୍କୁ ପଢ଼ାଇବା ଇତ୍ୟାଦି କିଛି ଦାୟିତ୍ୱ ମୋର ନଥିଲା । ମଦ ପିଇବା, ବଡ଼ ବଡ଼ ହୋଟେଲରେ ଖାଇବା, ଦର୍ଶନୀୟ

ସ୍ଥାନ ବୁଲିଯିବା ଇତ୍ୟାଦି ବିଳାସ ମୁଁ କେବେ ପାଇନାହିଁ କି ପିଲାମାନଙ୍କୁ ଦେଇପାରି ନାହିଁ। ସେତେବେଳେ ଦରମା ବହୁତ କମ୍ ଥିଲା। ବିଳାସପୂର୍ଣ୍ଣ ଜୀବନ ଯାପନ କରିବାକୁ ହେଲେ ନ୍ୟାୟ ପଥରୁ ବିଚ୍ୟୁତ ହେବାକୁ ପଡୁଥିଲା। ସେଥିପାଇଁ ମୋର ବିଳାସ ପ୍ରତି ପ୍ରବୃତ୍ତି ନଥିଲା ଓ ନ୍ୟାୟ ପଥରୁ କେବେ ନିବୃତ୍ତ ହୋଇନାହିଁ। ଶସ୍ତା କନା କିଣି ଦର୍ଜି ପାଖରେ ସିଲେଇ କରି ପିନ୍ଧୁଥିଲି ଓ ତାକୁ ଦେଖି ମୋ' ଜୁନିୟର ଜଣେ କହିଲେ 'ସାର୍ ଆପଣ ଏମିତି ଘଟିଆ ସାର୍ଟ କାହିଁକି ପିନ୍ଧୁଛନ୍ତି? କ'ଣ ଅନେଷ୍ଟି ଦେଖେଇବା ପାଇଁ? ' ସେ ଭଦ୍ରଲୋକଙ୍କ ଅବସ୍ଥା ମୁଁ ଦେଖିଛି, ଡ୍ରଇଁ ରୁମ୍‌ରେ ଗୋଟିଏ ପଟା କାଠର ଖଟଟିଏ ପଡ଼ିଥିଲା ଓ ହାତଭଙ୍ଗା ଚୌକିଟିଏ ଥିଲା। ଅତି ଶିଘ୍ର ସେଇ ଥୁଣ୍ଟା ଗଛରେ ପଲ୍ଲବ କଅଁଳିଲା ଅନେକ ଓ ଝଙ୍କାଳିଆ ଗଛ ହେଲା ପରେ ସେ ମୋ' ଭଳିଆ ଅଛ କେତେଜଣଙ୍କର 'ଦାରିଦ୍ର୍ୟ' ପ୍ରତି ଉପହାସ କଲେ। ମୋର ମନେ ଅଛି ଯେତେବେଳେ ମୁଁ ବାରିପଦା ଗଲି ଷ୍ଟେନୋ ବାରମ୍ବାର କହିଲା 'ଜଲଦି ସାର୍ ପଇସା ଦିଅନ୍ତୁ ପିଲାଙ୍କର ଆଡ଼ମିଶନ୍ ହେବ।' ମୁଁ ଲାଜରେ କହିପାରିଲି ନାହିଁ ଯେ ମୋ' ପାଖରେ ପଇସା ନାହିଁ। ବାଲେଶ୍ୱରରେ ଜଣେ କଲେଜ ବେଳର ସାଙ୍ଗ କାମ କରୁଥିଲେ, ତାଙ୍କୁ କହିବାରୁ ସେ ଟଙ୍କା ଧରି ଆସି ପହଞ୍ଚିଲେ। ଏସବୁ ଦୁଃଖ କଥା, କିନ୍ତୁ ଦୁଃଖ କଥା ମନେ ପକେଇଲେ ସୁଖ ଲାଗେ ଏକଥା କାଳିଦାସ କହିଛନ୍ତି।

ବାରମ୍ବାର ବଦଳି, ପିଲାଙ୍କ ପାଠ ନଷ୍ଟ ଏକଥାକୁ ବିଚାରକୁ ନେଇ ଆମେ ସ୍ୱାମୀ, ସ୍ତ୍ରୀ ବିଚାର କଲୁ - ଯଥେଷ୍ଟ ହେଲା, ଆମ ଲଢ଼େଇ ହେବ ମନ୍ତ୍ରୀ ଓ ନେତାଙ୍କ ସଙ୍ଗରେ ଫଳ ଭୋଗିବେ ଆମ ପିଲେ । ତେଣୁ ଭାରତ ସରକାରଙ୍କୁ ଡ଼େପୁଟେସନରେ ଯିବା ପାଇଁ ନିଜ ଇଚ୍ଛା ପ୍ରକାଶ କଲି ଓ ସରକାର ସ୍ୱୀକୃତି ଦେଇ ତାହା ଦିଲ୍ଲୀକୁ ପଠେଇଦେଲେ । ସ୍ୱୀକୃତି ଦେବାର କିଛିଦିନ ପରେ ସିଆଇଏସଏଫ, ଡିଜି ଓ ଓଡ଼ିଶାର ବିଖ୍ୟାତ କବି ଦୁର୍ଗା ମାଧବ ମିଶ୍ର ଓଡ଼ିଶା ଗସ୍ତରେ ଆସିଥିଲେ। ମୋତେ ଡକେଇ ପଚାରିଲେ ଯେ ମୁଁ ସିଆଇଏସଏଫ ଯିବା ପାଇଁ ଇଚ୍ଛୁକ କି, ମୁଁ ସାଙ୍ଗେ ସାଙ୍ଗେ ହଁ କଲି କାରଣ ରାଉରକେଲାରେ ଡିଆଇଜି ପୋଷ୍ଟ ଖାଲି ହେବା ପାଇଁ ଯାଉଥିଲା। ଏହା ପରେ ପରେ ଓଡ଼ିଶା ସରକାରଙ୍କୁ ଚିଠି। କେତେଜଣ ଅଫିସରଙ୍କୁ ପଚାରିଲେ କି ସେମାନେ ସିଆଇଏସଏଫ ଯିବା ପାଇଁ ଇଚ୍ଛୁକ କି? ସମସ୍ତେ ମନା କଲେ। କେବଳ ମୁଁ ହଁ କରିଥିଲି।

ଏହି ସମୟରେ ପୁରୀ ଏସ୍‌ପି ରାଜେନ୍ଦ୍ର ଖାନ୍ନାଙ୍କର ବଦଳି ହେଲା ଓ ତାଙ୍କ ସ୍ଥାନରେ ଜଣେ ଡିଏସ୍‌ପିରୁ ଆଇପିଏସ୍ ହୋଇଥିବା ଅଫିସରଙ୍କୁ ପୋଷ୍ଟିଂ କରାଗଲା। ଦିଲ୍ଲୀରୁ ମୋ' ବଡ଼ଭାଇ ସେହି ସମୟରେ ମୋତେ ପଚାରିଲେ ଓଡ଼ିଶା ଖବର କ'ଣ ଓ ମୁଁ

ରହସ୍ୟ କରି କହିଲି 'ପୋଲିସ ଶାସନଟା ବର୍ତ୍ତମାନ ଶୀର୍ଷସ୍ଥାନରେ ପହଞ୍ଚିଲା। ୧୩ଟି ଜିଲ୍ଲାରୁ କେବଳ ଗୋଟିଏ ଜିଲ୍ଲାରେ ଜଣେ ଆଇପିଏସ୍ ଅଫିସର ଥିଲେ ତାଙ୍କୁ ମଧ୍ୟ ହଟାଗଲା। ସବୁ ଜିଲ୍ଲାରେ ଭୂତପୂର୍ବ ଡିଏସ୍‌ପି ବର୍ତ୍ତମାନର ଏସ୍‌ପି।' ସେପଟୁ ପ୍ରବଳ ହସ ଶୁଭିଲା କିନ୍ତୁ ମୁଁ ଭୁଲି ଯାଇଥିଲି ସେ ସମୟରେ ମୋ' ରୁମ୍‌ରେ ଜଣେ ସମ୍ବାଦଦାତାଙ୍କ ଉପସ୍ଥିତିକୁ। ସେ ଭଦ୍ରଲୋକ ଜଣକ ମୋ' ନାଁ ନନେଇ ଖବରକାଗଜରେ ଛାପିଦେଲେ। ଆସେମ୍ବ୍ଲିରେ ପ୍ରଶ୍ନ ଉଠାଗଲା, ତେଣୁ ନିଜକୁ ବଞ୍ଚାଇବା ପାଇଁ ସରକାର ମୋତେ କଟକ ଏସ୍‌ପି ଓ ଆଉ ଜଣେ ସିଧାନିଯୁକ୍ତ ଆଇପିଏସ୍ ଅଫିସରଙ୍କୁ ବାଲେଶ୍ୱର ଏସ୍‌ପି କରିଦେଲେ। ମୋ' ନାଁ ଡ଼େପୁଟେସନ ପାଇଁ ଯାଇଛି, ମୋଠୁ ୫ ବର୍ଷ ଜୁନିୟର ଅନ୍ୟ ପ୍ରଦେଶମାନଙ୍କରେ ଡିଆଇଜି ହେଲେଣି, ମୁଁ ଚାରିଟି ଜିଲ୍ଲାରେ ଏସ୍‌ପି ହୋଇଥିଲି ଏସବୁ କହିବା ସତ୍ତ୍ୱେ ହୋମ୍ ସେକ୍ରେଟେରୀ ଡିଜିଙ୍କୁ 'କ'ଣ ଅଛିମ ଚଳେଇ ଦିଅନ୍ତୁ କହିଲେ।' ମୁଖ୍ୟମନ୍ତ୍ରୀଙ୍କୁ ଦେଖାକରି କହିବାରୁ ସେ ଖାଲି ଫ୍ୟାନ୍‌କୁ ଅନେଇଲେ ହଁ କି ନା କିଛି କହିଲେନି। ପରେ ମୋ' ବିଷୟରେ ଏକ ହାସ୍ୟୋଦ୍ଦୀପକ ମନ୍ତବ୍ୟ ଶୁଣାଗଲା। କେଉଁଠାରୁ ଉତ୍ପନ୍ନ ହେଲା କେଜାଣି! ମନ୍ତବ୍ୟଟି ହେଉଛି ଗୋଟିଏ ଢ଼େଙ୍କାନାଳିଆ (ଅର୍ଥାତ୍ ସଞ୍ଜୀବ ହୋତା)କୁ କଟକ କଲେକ୍ଟର କରାହୋଇଥିଲା ସେ ମନାକଲା, ଆଉ ଗୋଟିଏ ଢ଼େଙ୍କାନାଳିଆ ଏସ୍‌ପି ହେବା ପାଇଁ ମନା କରୁଛି, ଅଥଚ କଟକ କଲେକ୍ଟର, ଏସ୍‌ପି ହେବା ପାଇଁ ଅନେକ ଅଫିସର ନେତାଙ୍କ ଖୋସାମତ କରନ୍ତି। ବାଧ୍ୟ ହୋଇ କଟକ ଏସ୍‌ପି ଭାବେ ଜଏନ୍ କଲି।

ଅଳ୍ପ କିଛି ମାସ ପରେ କେନ୍ଦ୍ର ସରକାରଙ୍କ ଆଦେଶ ଆସିଗଲା ଯେ ମୋର ଡିଆଇଜି ସିଆଇଏସଏଫ ରାଉରକେଲା ପୋଷ୍ଟିଂ ହୋଇଛି ଓ ଶୀଘ୍ର ମୋତେ ଅବ୍ୟାହତି ଦେବା ପାଇଁ। ଯେତେବେଳେ ପଚରା ହେଲା ସିଆଇଏସଏଫ ଯିବକି ସମସ୍ତେ ମନା କଲେ କିନ୍ତୁ ମୋର ଯେମିତି ଡିଆଇଜି ପୋଷ୍ଟିଂ ହେଲା ମୋ'ଠାରୁ ସିନିୟର କେତେଜଣ ଡି.ଜିଙ୍କ ଠାରେ ଅଭିଯୋଗ କଲେ 'ସାର୍ ଆମେ ଏସ୍‌ପି ହୋଇଅଛୁ, ସେ ଡିଆଇଜି ପୋଷାକ ପିନ୍ଧି ଏଇଠିକି ଆସିବ ଆମକୁ ତାକୁ ସାଲ୍ୟୁଟ୍ କରିବାକୁ ପଡ଼ିବ କି? ଆମକୁ ଡିଆଇଜି କରାଯାଉ ନଚେତ୍ ତା'ର ଡ଼େପୁଟେସନ ବନ୍ଦ କରାଯାଉ। ସରକାରଙ୍କ ପାଇଁ ଦ୍ୱିତୀୟ ପନ୍ଥାଟି ବେଶ୍ ଗ୍ରହଣଯୋଗ୍ୟ ଥିଲା। ଘରୋଇ ବିଭାଗ ସାଙ୍ଗେ ହାତ ମିଳାଇ ଡି.ଜି ପାଢ଼ୀଙ୍କୁ ଦୁର୍ବଳ କରିବା ପାଇଁ ମୁଖ୍ୟ ଭୂମିକା ନେଇଥିବା ଜଣେ ଆଇ.ଜି କେଜାଣି କାହିଁକି ମୋ ବିରୁଦ୍ଧରେ ଗଲେ। ବାଧ୍ୟ ହୋଇ ମୁଖ୍ୟମନ୍ତ୍ରୀଙ୍କୁ ଦେଖାକଲି। ଦୁଇ ତିନି ଥର କହିବା ପରେ ସେ ରାଜି ହେଲେ ଓ ଓଡ଼ିଶା ପୋଲିସରୁ ମୁକୁଳି ମୁଁ କେନ୍ଦ୍ର ସରକାରଙ୍କ ଅଧିନକୁ ଗଲି। ଆଉ ରାଜନୈତିକ ଚାପ ପଡ଼ିବ ନାହିଁ। ତିନି ମାସ ମଧ୍ୟରେ ବହୁ ଲୋକ

ଆସିଛନ୍ତି, ବହୁ ପ୍ରକାର କଥା କହିଛନ୍ତି। ସବୁ କଥା ବୁଲି ବୁଲି ଛିଣ୍ଡେ ଅମୁକଙ୍କର ବଦଳି ପାଇଁ। ଜଣେ ମନ୍ତ୍ରୀଙ୍କର ପ୍ରାଇଭେଟ୍ ସେକ୍ରେଟେରୀ ୱାରଲେସ୍ କଲେ ଆପଣ ଅମୁକ ତାରିଖ ଦିନ ପଟାମୁଣ୍ଡାଇରେ ମନ୍ତ୍ରୀଙ୍କୁ ଦେଖା କରନ୍ତୁ। କେଉଁ ବିଷୟରେ କଥାହେବେ କହିଲେ ମୁଁ ପ୍ରସ୍ତୁତ ହୋଇଯିବି ବୋଲି ପଚାରିବାରୁ ଆଉ ଉତ୍ତର ଆସିଲା ନାହିଁ। ଏହା ସଙ୍ଗେ କୋରାପୁଟର ଏକ ଘଟଣା ମୁଁ ତୁଳନା କରୁଛି - ଜଣେ ମହିଳା ଏମ୍ଏଲ୍ଏ ଆସି କହିଲେ 'ଆଜ୍ଞା, ଥାନା ବାବୁ ବଡ଼ ଆଲରା କରୁଛନ୍ତି ତାଙ୍କୁ ବଦଳି କରିଦିଅ।' ବର୍ତ୍ତମାନ ବଦଳି କାହିଁକି ହୋଇପାରିବ ନାହିଁ କହିଲି ଓ ସେ ହଇ ହଇ କରୁଥାନ୍ତି। ତା'ପରେ ଚା' ପିଇଲେ ଓ ଫେରିବାକୁ ଯାଉଛନ୍ତି ଦ୍ୱାରବନ୍ଧ ପାଖରୁ ଘୂରିପଡ଼ି ପଚାରିଲେ 'ତାଙ୍କ ଜାଗାରେ କିଏ ଆସୁଛନ୍ତି ଆଜ୍ଞା?' ସରଳ ଭାଷାରେ ହେଉ କି ଜଟିଳ ଭାଷାରେ ହେଉ ଘଟଣା ସବୁବେଳେ ବିରକ୍ତିକର।

ସତୁରୀ ଦଶକରେ ଭାରତର ବିଭିନ୍ନ ଶିଳ୍ପରେ ଶ୍ରମିକ ଆନ୍ଦୋଳନ ପ୍ରବଳରୁ ପ୍ରବଳତର ହେଲା। ଅଧିକାଂଶ ଶ୍ରମିକ ସଂଗଠନ ବାମପନ୍ଥୀଙ୍କ ଦ୍ୱାରା ପରିଚାଳିତ ଓ ୧୯୬୨ ଯୁଦ୍ଧ (ଚୀନ୍ର ଆକ୍ରମଣ) ପରେ ଏଭଳି ଆନ୍ଦୋଳନ ଅଧିକ ତୀବ୍ର ହେଲା। ମୁଖ୍ୟ ଶରବ୍ୟ ହେଲେ ବଡ଼ ବଡ଼ ଶିଳ୍ପ, ବିଶେଷତଃ ଔଦ୍ୟୋଗିକ ଶିଳ୍ପ/ଭାରତର ଅର୍ଥନୀତିକୁ ଅଚଳ କରିବା ପାଇଁ ଏକ ସ୍ୱତନ୍ତ୍ର ଯୋଜନା ହୋଇଥିଲା। ରାଞ୍ଚିର ଭାରିଶିଳ୍ପ କାରଖାନାରେ ଶ୍ରମିକମାନଙ୍କର ତାଣ୍ଡବ ଲୀଳା ଯୋଗୁ ଅନେକ ଧନ ଜୀବନ ନଷ୍ଟ ହୋଇଥିଲା ଓ ତା'ପରେ କେନ୍ଦ୍ର ସରକାର ନିଷ୍ପତ୍ତି ନେଲେ ଯେ ବଡ଼ ବଡ଼ ଶିଳ୍ପ ଦାୟିତ୍ୱର ସୁରକ୍ଷା ପାଇଁ ଏକ ସୁରକ୍ଷାବାହିନୀ ଗଠନ କରାଯିବ। ସେଇ ଅନୁଯାୟୀ ୧୯୭୩ ମସିହାରେ କେନ୍ଦ୍ର ଶିଳ୍ପ ସୁରକ୍ଷାବାହିନୀ (ସିଆଇଏସ୍ଏଫ୍) ଗଠନ କରାଗଲା। ସୁରକ୍ଷାବାହିନୀର ଆଇନ୍ ଓ ନିୟମ ତିଆରି କରିବାରେ କିଛି ଅଭାବ ଓ କିଛି ତ୍ରୁଟି ଥିଲା। ମୁଁ ୧୯୮୬ ମସିହାରେ ରାଉରକେଲା ଇସ୍ପାତ କାରଖାନା ସିଆଇଏସ୍ଏଫ୍ ଡିଆଇଜି ଭାବେ ଦାୟିତ୍ୱ ଗ୍ରହଣ କଲି। ସିଆଇଏସ୍ଏଫ୍ କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରଣାଳୟ ଅଧୀନରେ କାମ କରେ। ଯେଉଁ ସିଆଇଏସ୍ଏଫ୍ ଅଧିକାରୀମାନେ ଶିଳ୍ପମାନଙ୍କରେ ନିୟୋଜିତ ହୁଅନ୍ତି ସେମାନେ ଶିଳ୍ପ ପାଇଁ (ଶିଳ୍ପ ଅଧୀନରେ ନୁହେଁ) କାମ କରନ୍ତି। ଏଇ ଗୋଟିଏ କଥାକୁ ନେଇ ସିଆଇଏସ୍ଏଫ୍ର ମୁଖ୍ୟ ଓ କାରଖାନାର ମୁଖ୍ୟଙ୍କ ମଧ୍ୟରେ ଅଧିକାଂଶ ସମୟରେ କଥା କଟାକଟି ହୁଏ। ବହୁତ ମୁଖ୍ୟଙ୍କ ଧାରଣା ଯେ ସେ ହେଲେ କାରଖାନାର ମୁଖ୍ୟ। ତେଣୁ ସିଆଇଏସ୍ଏଫ୍ର ମୁଖ୍ୟ ତାଙ୍କର ଅଧସ୍ତନ କର୍ମଚାରୀ। ସେମାନେ ବୁଝିବା ପାଇଁ ଅକ୍ଷମ ଯେ, ଯଦି ସିଆଇଏସ୍ଏଫ୍ର ମୁଖ୍ୟ ତାଙ୍କର ଅଧସ୍ତନ ହୁଏ ତେବେ ଜିଲ୍ଲାପାଳ, ଏସ୍ପି ତାଙ୍କୁ କେବଳ କାରଖାନା କର୍ମଚାରୀ ଭାବେ ଗ୍ରହଣ କରିବେ, ଜଣେ ଡିଆଇଜିର ସମ୍ମାନ ଦେବେ ନାହିଁ।

ସିଆଇଏସ୍ଏଫ୍ ଗଠନ କଲାବେଳେ ଯେଉଁ କାରଖାନାରେ ସେମାନେ ନିୟୋଜିତ ହେଲେ ସେ କାରଖାନାର ସୁରକ୍ଷା କର୍ମଚାରୀମାନଙ୍କୁ ସିଆଇଏସ୍ଏଫ୍‌ରେ ନିଆଗଲା। ସେମାନେ କାମ ଶିଖିବା ପରିବର୍ତ୍ତେ ଶ୍ରମିକମାନଙ୍କର ଦାବି କ'ଣ ତାହା ବେଶ୍ ଜାଣୁଥିଲେ। ତାଙ୍କର ମନୋବୃତ୍ତି ଓ ସିଆଇଏସ୍ଏଫ୍ ପରି ଏକ ଶୃଙ୍ଖଳିତ ବାହିନୀର ଆବଶ୍ୟକତା ମଧ୍ୟରେ ତାଳମେଳ ରହିଲା ନାହିଁ। ଏମାନଙ୍କ ମଧ୍ୟରୁ ଅନେକ ଖୋଲାଖୋଲି ଭାବରେ ଆଦେଶ ଅମାନ୍ୟ କଲେ। ରବିବାର ଛାଡ଼ି ସବୁ ଦିନ ସକାଳେ ପ୍ୟାରେଡ୍ ହୁଏ ଓ ସୋମବାର ଦିନ ସ୍ଥାନୀୟ ସିଆଇଏସ୍ଏଫ୍ ମୁଖ୍ୟ ପ୍ୟାରେଡ଼ ପରିଦର୍ଶନ କରନ୍ତି। ମୁଁ ସିଆଇଏସ୍ଏଫ୍‌ରେ ଯୋଗଦାନ କରିବା ମାତ୍ରେ ପରବର୍ତ୍ତୀ ସୋମବାର ଗଲି ପ୍ୟାରେଡ଼ ପରିଦର୍ଶନ କରିବା ପାଇଁ, ଦେଖିଲା ବେଳକୁ ପ୍ୟାରେଡ଼ରେ ମାତ୍ର ୭୦ରୁ ୮୦ଜଣ ଅଛନ୍ତି ଓ ଅନେକ ବ୍ୟାରାକ୍‌ର ବାରଣ୍ଡାରେ ସାଧା ପୋଷାକ ପିନ୍ଧି ଟହଲୁଛନ୍ତି। କାରଣ ପଚାରିବାରୁ କମାଣ୍ଡାଣ୍ଟ କହିଲେ ଦଳେ କନେଷ୍ଟବଲ ଗ୍ରୁପ୍ କରିଛନ୍ତି ଓ ଲେଖିକରି ଦେଇଛନ୍ତି 'ଯେହେତୁ ସିଆଇଏସ୍ଏଫ୍ ନିୟମ ଅନୁସାରେ ସେମାନଙ୍କ ଦାୟିତ୍ୱ ହେଉଛି କାରଖାନାର ସମ୍ପତ୍ତି ରକ୍ଷା କରିବା, ଆମେ ସେ ଦାୟିତ୍ୱ ବହନ କରିଛୁ। ଯେହେତୁ ପ୍ୟାରେଡ଼ ହେବ ବୋଲି ଲେଖା ହୋଇନାହିଁ ତାହାହେଲେ ଆମେ ପ୍ୟାରେଡ଼ କରିବୁ ନାହିଁ।' ସେ ଦିନ ଅଫିସ୍‌କୁ ଆସି ସିଆଇଏସ୍ଏଫ୍ ଆଇନ୍‌କୁ ଭଲଭାବେ ପଢିଲି ଓ ଦେଖିଲି ପ୍ୟାରେଡ଼ କଥା ଲେଖା ହୋଇନାହିଁ କିନ୍ତୁ ଅନ୍ୟାନ୍ୟ ଆବଶ୍ୟକ କାର୍ଯ୍ୟ କଥା ଲେଖାଯାଇଛି। ଆଉ ଏକ ଧାରା ଅଛି ଯେ ବିନା ପ୍ରୋସିଡ଼ିଂରେ କୌଣସି କାରଣ ନଦର୍ଶାଇ ଜଣକୁ ଚାକିରିରୁ ବରଖାସ୍ତ କରାଯାଇପାରିବ। ବିଶୃଙ୍ଖଳାର ମୁଖ୍ୟନେତା ସାତ ଆଠ ଜଣଙ୍କୁ ବରଖାସ୍ତ କରିଦିଆଗଲା। ତା'ପରେ ସୋମବାର ଦିନ ପ୍ୟାରେଡ଼ ପଡ଼ିଆ ଭରପୂର। ବରଖାସ୍ତ ହୋଇଥିବା ନେତା ଅପିଲ୍ କଲେ, ହାଇକୋର୍ଟ ଗଲେ। ଶେଷରେ ଅକୃତକାର୍ଯ୍ୟ ହୋଇ ଆରେ ରଣା ଧାଇଁ ଧାଇଁ କରି ସେଇ ଅଗଣା ଭଳି ସେମାନଙ୍କ ଅବସ୍ଥା ହେଲା। କମାଣ୍ଡାଣ୍ଟଙ୍କ ପାଖେ ବହୁତ ନେହୁରା ହେଲା ପରେ ତାଙ୍କୁ ଚାକିରି ଦିଆଗଲା। ବାକି କେତୋଟି ଗଣ୍ଡଗୋଳକାରୀ ଆପେ ସୁଧୁରିଗଲେ ବିରିମାଡ଼ ଦେଖି କୋଳଥ ଚେପା ପରି।

ପିଲା ଦୁଇ ଜଣ ଭର୍ତ୍ତି ହେଲେ ଇସ୍ପାତ ଇଂଲିଶ ମିଡ଼ିୟମ ସ୍କୁଲରେ। ବର୍ତ୍ତମାନ ୫ ବର୍ଷ ଗୋଟିଏ ସ୍କୁଲରେ ପାଠ ପଢିବେ, ଭଲ ମାନର ଶିକ୍ଷା ପାଇବେ। କାମରେ ମଧ୍ୟ ହସ୍ତକ୍ଷେପ ନାହିଁ। ପାଞ୍ଚବର୍ଷ ଭିତରେ ମୋର ବଦଳି ମଧ୍ୟ ହେବ ନାହିଁ। ଯେହେତୁ ଡିଆଇଜି ହେଲି, ଦରମା ବଢିଲା, ସ୍ୱତନ୍ତ୍ର ଦରମା ପାଇଲି। ଘର ପାଇଁ ବାରଦ୍ୱାର ଶୁଣିପିଣ୍ଡା ହେବା ପାଇଁ ପଡ଼ିଲା ନାହିଁ। ଖୁବ୍ ଭଲ ବଙ୍ଗଳା ମିଳିଲା । ଅଧସ୍ତନ

କର୍ମଚାରୀମାନେ କୌଣସି ରାଜନୈତିକ ଚାପ ପକେଇ ନାହାନ୍ତି ଓ ଉପରେ ମାତ୍ର ଜଣେ ଆଇଜି ଓ ତାଙ୍କ ପରେ ଜଣେ ଡି.ଜି। ରାଉରକେଲାରେ ପହଞ୍ଚିଲା ବେଳକୁ ଋଣଗ୍ରସ୍ତ ହୋଇଥିଲି, ବର୍ତ୍ତମାନ ଋଣ ଶୁଝିବା ସମୟ ଆସିଲା। କିନ୍ତୁ ପ୍ରୟୋଗତେ କି ଖଲୁ ସେତୁ ବନ୍ଧ। ପାଣି ମାଡ଼ିଗଲା ପରେ ବନ୍ଧ ବାନ୍ଧି ଲାଭ କ'ଣ? ଜୀବନର ଯେଉଁ ସମୟକୁ ଉପଭୋଗ କରିବା କଥା, ପିଲାମାନଙ୍କୁ ସୁଖସ୍ୱାଚ୍ଛନ୍ଦ୍ୟ ଦେବା କଥା ସେ ସମୟ ପାର ହୋଇଗଲାଣି। ପୁଅର ଥିଲା ମାତ୍ର ୨ଟି ପ୍ୟାଣ୍ଟ, ଏବେ ମଧ୍ୟ ସେ କହେ 'ନନା! ସରକାର ତୁମକୁ ଚାକିରିରେ ଏତେ କମ୍ ଦରମା କାହିଁକି ଦେଉଥିଲେ? ରାଉରକେଲା ଏସ୍‌ପି ଥିଲାବେଳେ ଏସି ଗୋଟିଏ କରିପାରିଲ ନାହିଁ। ଆମେ ଗରମରେ ଖିଝିଲୁ। ଭଲ ଲୁଗାପଟା ମଧ୍ୟ କରିପାରିଲ ନାହିଁ।'

ସତକଥା। ଚାକିରି ଆରମ୍ଭ ହେଲା ୧୯୬୭ରେ। ଦୀର୍ଘ ୧୯ ବର୍ଷ ପରେ ଆର୍ଥିକ ଅବସ୍ଥା ସୁଧୁରିଲା। ଦାନ୍ତ ଥିଲାବେଳେ ଚଣା ନାହିଁ, ଚଣା ଥିଲା ବେଳେ ଦାନ୍ତ ନାହିଁ। ମୋ ଦୁଇ ପିଲା ନିଷ୍ପତ୍ତି ନେଲେ ସରକାରୀ ଚାକିରି କରି ବିଲେଇ ଛୁଆ ସାତ ଘରେ ରହିଲା ପରି ଆମେ ଏପଟସେପଟ ହେବୁ ନାହିଁ। ଆମକୁ କେହି ଫୁଟବଲ୍ ଭଳି ବ୍ୟବହାର କରି ପାରିବେ ନାହିଁ। ସେମାନେ ଠିକ୍ ନିଷ୍ପତ୍ତି ନେଇଛନ୍ତି। ବେଶ ଭଲ ଦରମା ପାଉଛନ୍ତି। ତାଙ୍କୁ କୌଣସି ନେତା ଧମକେଇବାର ପ୍ରଶ୍ନ ଉଠୁନାହିଁ ଓ ଖବର କାଗଜରେ ତାଙ୍କ ବିରୁଦ୍ଧରେ କେବେ କିଛି ବାହାରିବ ନାହିଁ। ଉଚ୍ଚ ପଦବୀ ଧରି ସମାଜରେ ଚିହ୍ନା ହୋଇ ରହିଲେ ତହିଁରେ ଅସୁବିଧା ବହୁତ। ପଦବୀ ଥିବା ପର୍ଯ୍ୟନ୍ତ ଟେକାମାଡ଼ ଖାଇବେ ବରଂ ଅଚିହ୍ନା ମୁହଁ ହୋଇ ରହିଯିବା ଭଲ। ସମୟ ଥିଲା ଓ ଲୋକେ କହୁଥିଲେ ପଣ ଅଣ୍ଟିରା ଧନ ମାଇ। ବର୍ତ୍ତମାନର ବସ୍ତୁବାଦ ଯୁଗରେ ଧନ ଅଣ୍ଟିରା ପଣ ମାଇ। ଯାହାର ପକେଟ୍ ଯେତିକି ଭରା ତା'ର ଆବଶ୍ୟକତା ସେତିକି ବେଶି । କ୍ଷମତାରେ ରହିବା ଅର୍ଥ ବାଘ ପିଠିରେ ବସିଲା ଭଳି। ଓହ୍ଲେଇ ପଡ଼ିଲା ମାତ୍ରେ କେହି ଆଉ ଡରିବେ ନାହିଁ। କିନ୍ତୁ ଧନର ପ୍ରଭାବ ସବୁଦିନେ। ଏତିକି କେବଳ ଜଗିବାକୁ ପଡ଼ିବ ଯେ ଲକ୍ଷ୍ମୀଙ୍କ ତାଡ଼ନାରେ ସରସ୍ୱତୀ ବିସ୍ଥାପିତ ନ ହୁଅନ୍ତୁ।

ବର୍ଷଗୁଡ଼ା ଘରଚଟିଆ ଭଳିଆ ଦେଖୁ ଦେଖୁ ଫୁରକିନା ଉଡ଼ିଯିବେ। କେତେ ଶୀଘ୍ର ଯେ ପାଞ୍ଚ ବର୍ଷ ଉଡ଼ିଗଲା କହିହେବ ନାହିଁ। ସେ ସମୟରେ ବହୁତ କିଛି ଘଟିଛି ମୋ ଜୀବନରେ। ବହୁତ ସୁଯୋଗ ହାତଛଡ଼ା ହୋଇଛି। ବିପଦରୁ ମଧ୍ୟ ମୁକ୍ତ ହୋଇଛି । ସବୁ କଥାରେ ଏକ ଅଦୃଶ୍ୟ ଶକ୍ତି କାମ କଲାପରି ଜଣାଯାଏ। ପାଞ୍ଚ ବର୍ଷ ରହିଲି, ଲେଖାଲେଖି ବହୁ କମ୍ ହେଲା କିନ୍ତୁ ବହୁତ ଗଳ୍ପ ହିନ୍ଦୀ [illegible] ଅନୁବାଦିତ ହେଲା। ବହୁତ ଇଂରାଜୀ ଓଡ଼ିଆ ପୁସ୍ତକ [illegible] କଲା ଓ ସାହିତ୍ୟ [illegible] ସହିତ ସଂପୃକ୍ତ ହେଲି।



କାମ ବିଶେଷ କଷ୍ଟ ନଥିଲା କାରଣ ମୋ କମାଣ୍ଡାଣ୍ଟ ଥିଲେ ଶ୍ରୀ ଅମରାନନ୍ଦ ପଟ୍ଟନାୟକ। ତାଙ୍କ ଦକ୍ଷତା ଓ ସଚ୍ଚୋଟତା ପାଇଁ ତାଙ୍କୁ ମୁଁ ସବୁବେଳେ ଶ୍ରଦ୍ଧାକରେ। ଏ ପର୍ଯ୍ୟନ୍ତ ତାଙ୍କ ସାଙ୍ଗରେ ମୋର ବ୍ୟକ୍ତିଗତ ସମ୍ପର୍କ ଖୁବ୍ ଭଲ। କାରଖାନାର ଚାରିପଟେ ଉଚ୍ଚା ଉଚ୍ଚା କାନ୍ଥ। ଲାଗିଛି ସବୁଆଡ଼େ ଲାଇଟ୍, ବନ୍ଧୁକଧାରୀ ସିଆଇଏସ୍ଏଫ୍ ଜବାନ ସବୁଆଡ଼େ ଜଗିଥାନ୍ତି। କିନ୍ତୁ ସୁରକ୍ଷା ବ୍ୟବସ୍ଥା ଡାଳେ ଡାଳେ ଗଲେ ଚୋର ଯାଆନ୍ତି ପତ୍ରେ ପତ୍ରେ। ମାଟିତଳେ ଗାତକରି କାନ୍ଥକୁ ଭେଦି ପଶନ୍ତି। ସିଆଇଏସ୍ଏଫ୍ କନେଷ୍ଟବଳ ଡକା ପକେଇଲେ ଡରି ପଳେଇବା ପରିବର୍ତ୍ତେ ଟେକା ମାରନ୍ତି। ଖଣି ଅଞ୍ଚଳର ଟେକା ବାଜିଲେ ଆଘାତ ଗୁରୁତର ହେବ। ପ୍ରତିଦିନ ଏଭଳି ଘଟଣା ଘଟିଲା ଓ ଦିନେ ଆସିଷ୍ଟାଣ୍ଟ କମାଣ୍ଡାଣ୍ଟମାନଙ୍କୁ ଡାକି କହିଲି ଆଉ ଦିନେ ଯଦି କେହି ଟେକା ମାଡ଼ ଖାଇ ଫେର ତାକୁ ଚାକିରିରୁ ସସ୍ପେଣ୍ଡ କରିବି। ସେତିକି ସତର୍କ ବାଣୀ ଯଥେଷ୍ଟ ଥିଲା। କାରଖାନା ଭିତରେ ପଶିବା ଏବଂ ବାହାରିବା କାମ ବାରମ୍ବାର କରି ଚୋରମାନଙ୍କ ସାହସ ଏତେ ବଢି ଯାଇଥିଲା ଯେ, ମୁଖ୍ୟ କାର୍ଯ୍ୟାଳୟ ସମ୍ମୁଖ କାନ୍ଥ ଡେଇଁ ଭିତରକୁ ପଶିଲେ ଓ କ୍ୟାଣ୍ଟିନ୍‌ରେ ବାକ୍ସ ଭାଙ୍ଗି ଟଙ୍କା ଲୁଟ୍ କଲେ। ଫେରିଲା ବେଳକୁ ସିଆଇଏସ୍ଏଫ୍ ହାବୁଡ଼ରେ ପଡ଼ିଲେ ଓ ମୁହାଁମୁହିଁ ହେବାମାତ୍ରେ ଟେକା ମାରିଲେ। ସାବଧାନ କରିବା ସତ୍ତ୍ୱେ ନିବୃତ୍ତ ନହେବାରୁ ହେଡ୍ କନଷ୍ଟେବଳ ଆଦେଶ ଦେଲେ ଗୁଳି ମାଡ଼ କରିବା ପାଇଁ ଓ ତିନିଜଣ ମରିପଡ଼ିଲେ। ବାକିମାନେ ଚୋରା ମାଲ୍ ଫୋପାଡ଼ି ଦେଇ ପଳେଇଥିଲେ। କାରଖାନାରୁ ପାଣି ଗଡ଼ିବା ପାଇଁ କାନ୍ଥରେ ଜାଲି ଦିଆଯାଇଥାଏ। ଚୋର ଜାଲି କାଟନ୍ତି ଅଳ୍ପ ସମୟରେ। ଇଂଜିନିୟରମାନେ ନୂଆ ଜାଲି ଲଗାଇବାକୁ ଲାଗେ ୩ରୁ ୪ଦିନ। ସାଙ୍ଗେ ସାଙ୍ଗେ ଜାଲି ଲଗାଇବା ଦରକାର ବୋଲି ବାରମ୍ବାର କହିବା ସତ୍ତ୍ୱେ ମଧ ତାହା ହୋଇପାରିଲା ନାହିଁ। ସେଥିପାଇଁ ଅଧିକ ଜବାନ ନିୟୋଜିତ କରିବା ପାଇଁ ପଡ଼ିଲା ଓ ଚୋରି ବହୁତ କମିଗଲା।

ଦିନେ ଜଣେ ଜେନେରାଲ ମ୍ୟାନେଜର ଆସି ମୋତେ କହିଲେ ଯେ, ପ୍ରତ୍ୟେକ ଦିନ ଶହ ଶହ ଟନ୍ କୋଇଲା ଆସୁଛି। ରେଳବାଇ ସୁରକ୍ଷାବାହିନୀ ବନ୍ଧମୁଣ୍ଡା ପର୍ଯ୍ୟନ୍ତ ଟ୍ରେନ୍‌କୁ ଜଗୁଛନ୍ତି କିନ୍ତୁ ବନ୍ଧମୁଣ୍ଡାରୁ କାରଖାନା ବାଟରେ ୭ କି.ମି ରାସ୍ତାରେ କୌଣସି ସୁରକ୍ଷା ବନ୍ଦୋବସ୍ତ ନଥିବାରୁ ବର୍ଷକୁ ପ୍ରାୟ ୫ କୋଟି ଟଙ୍କାର କୋଇଲା ଚୋରି ହେଉଛି। ସେ ଅଞ୍ଚଳର ସୁରକ୍ଷା ଦାୟିତ୍ୱ ସିଆଇଏସ୍ଏଫ୍‌ର ନଥିଲା ଓ ଏସମ୍ପର୍କରେ ମୋ ପୂର୍ବ ଅଧିକାରୀଙ୍କ ସହିତ କାରଖାନାର ମୁଖ୍ୟ (ମ୍ୟାନେଜିଂ ଡାଇରେକ୍ଟର)ଙ୍କ ମଧ୍ୟରେ ବହୁ ଚିଠିପତ୍ରର ଆଦାନପ୍ରଦାନ ଓ ବାଦାନୁବାଦ ହୋଇଥିଲା। ସିଆଇଏସ୍ଏଫ୍ ସହିତ କାରଖାନାର ଯେଉଁ ରାଜିନାମା ହୋଇଥିଲା ସେ ଦୃଷ୍ଟିରୁ ଦେଖିଲେ ମୋ ପୂର୍ବାଧିକାରୀ ଠିକ୍ କଥା କହୁଥିଲେ। ସେ କହିଥିଲେ ଅଧିକା ସିଆଇଏସ୍ଏଫ୍ ପାଇଁ ଅଧିକା ପଇସା

ସଉକାରଙ୍କ ପାଖେ ଜମାକର ତେବେ ଅଧିକା ଦାୟିତ୍ୱ ଆମେ ନେବୁ। ଏଣେ କାରଖାନା କ୍ଷତିରେ ଚାଲୁଥିଲା ଓ କର୍ତ୍ତୃପକ୍ଷ ତେଲ ଲଗେଇବୁ ନାହିଁ ଅଥଚ ପୁଅ ମୁଣ୍ଡ ନୁଖୁରା ହେବ ନାହିଁ ନୀତିରେ ଚାଲୁଥିଲେ। ମୁଁ ଦେଖିଲି ଏ ବାଦବିବାଦରେ କେବଳ ଚୋର ଏବଂ ବଡ଼ ବଡ଼ ଦଲାଲମାନେ ଉପକୃତ ହେଉଛନ୍ତି। ତେଣୁ ଡି.ଜି ଶ୍ରୀ ଦୁର୍ଗା ମାଧବ ମିଶ୍ରଙ୍କ ଠାରୁ ଅନୁମତି ନେଇ ବିନା ଅଧିକ ଖର୍ଚ୍ଚରେ ଟ୍ରେନ୍ ଜଗିବା ଦାୟିତ୍ୱ ନେଲୁ ଓ କୋଟି କୋଟି ଟଙ୍କା କ୍ଷତିରୁ କାରଖାନା ରକ୍ଷା ପାଇଗଲା। ବିନିମୟରେ କାରଖାନା କର୍ତ୍ତୃପକ୍ଷ ସିଆଇଏସ୍ଏଫ୍କୁ ଶତକଡ଼ା ୧୦୦ ବାସସ୍ଥାନ ଯୋଗେଇଲେ।

ସେ ସମୟରେ ସିଆଇଏସ୍ଏଫ୍ ଜବାନମାନଙ୍କୁ ଉଲର ଲମ୍ବା ହୋଟ୍ ଦିଆଯାଉଥିଲା। ସିଲେଇ କରାଯାଇଥିଲା ବାହାରେ ଓ ପ୍ରତିକୋର୍ଟ ପିଛା ୮୦ ଟଙ୍କା ସିଲେଇ ଚାର୍ଜ ଦେବାକୁ ପଡୁଥିଲା। ହିସାବ କରି ଦେଖିଲି ଯେ କୋର୍ଟରେ ଭିତର କନା ଲାଗୁଛି ମାତ୍ର ୧୦ଟଙ୍କାର ତେଣୁ ଦର୍ଜୀ ନ୍ୟାୟତଃ ଅତି ବେଶିରେ ଆଉ ୪୦ଟଙ୍କା ନେବା କଥା। ସିଆଇଏସ୍ଏଫ୍ କର୍ମଚାରୀଙ୍କ ଦୁଇଜଣଙ୍କ ବାପା ପୁରୁଣା ଦର୍ଜୀ। ତାଙ୍କୁ ବେତନ ଦେଇ ଆମର ପରିବାର ମହିଳା କେନ୍ଦ୍ରର ସଦସ୍ୟମାନଙ୍କୁ ଶିକ୍ଷା ଦିଆଗଲା। ମାସେ ମଧ୍ୟରେ ସେମାନେ ଶିକ୍ଷା ପାଇଗଲେ ଓ ସିଆଇଏସ୍ଏଫ୍କୁ ୫୦ଟଙ୍କା ଦରରେ କୋଟ୍ ସିଲେଇ କରି ଦେବ ବୋଲି ମୁଁ ଡି.ଜିଙ୍କୁ ଚିଠି ଲେଖିଲି। ଆମ ନିଜ ୟୁନିଟ୍, ରାଞ୍ଚି ଧାନବାଦ୍‌ରୁ ମଧ୍ୟ ସିଲେଇ ଅର୍ଡ଼ର ଆସିଗଲା। ସିଲେଇ ମେସିନ୍ କିଣି ୱେଲଫେୟାର ସେଣ୍ଟରରେ ରଖାଗଲା ଓ ପ୍ରତ୍ୟେକ କୋଟ୍ ପିଛା ମହିଳାମାନଙ୍କୁ ୩୦ଟଙ୍କା ଦିଆଗଲା। ମଜୁରୀ ବାବଦରେ ପାଇଲେ ୩୦ଟଙ୍କା ଓ ସିଲେଇ ମେସିନ୍ ଭଡ଼ା ବାବଦରେ ଦେଲେ ୧୦ଟଙ୍କା। ସ୍ୱାମୀମାନେ କର୍ମସ୍ଥଳକୁ ଗଲାପରେ ଅନେକ ମହିଳାଙ୍କ କାମ ଥିଲା ପରସ୍ପର ମଧ୍ୟରେ କଳିକଜିଆ କରିବା, ବର୍ତ୍ତମାନ ଆମ୍ଭ ଶୁଭଙ୍କରୀ, ଗଠନମୂଳକ କାର୍ଯ୍ୟରେ ଲାଗିଲେ।

ପୁଣି ତଳ ଶ୍ରେଣୀର କର୍ମଚାରୀଙ୍କ ଛୁଆଗୁଡ଼ା ପାଠ ନପଢି ଇଆଡ଼େ ସିଆଡ଼େ ବୁଲୁଥିଲେ। କାରଖାନା ମଧ୍ୟରେ ଗୋଟିଏ କ୍ୟାଣ୍ଟିନ୍ କରି ବର୍ଷକୁ ପ୍ରାୟ ଅଢେଇ ଲକ୍ଷ ଲାଭ କରାଗଲା ଓ ସେଇ ଟଙ୍କାରେ ପିଲାଙ୍କ ପାଇଁ ଇଂରେଜି ମାଧ୍ୟମ ସ୍କୁଲଟିଏ କରାଗଲା, ନର୍ସରୀ କେ.ଜି ପଢିବା ପାଇଁ। ଯେତିକି ପ୍ରାଇଭେଟ୍ ସ୍କୁଲମାନଙ୍କରେ ଦରମା ମିଳୁଥିଲା ତା'ର ଦେଢ଼ ଗୁଣ ଦରମା ଦେବାରୁ ବଛା ବଛା ତିନିଜଣ ଶିକ୍ଷୟିତ୍ରୀ ଆସିଲେ। ମଝିରେ ମଝିରେ ମୁଁ ସ୍କୁଲକୁ ଯାଏ ଓ ଦିନେ ଦେଖିଲି ଗୋଟିଏ ଗୁର୍ଖା କନେଷ୍ଟବଲର ଛୁଆ ସାଧାରୁଟି ଓ ଆଚାର ଖାଉଛି ଓ ଜଣେ ଇନ୍ସପେକ୍ଟର ଛୁଆ ସାଣ୍ଡଉଇଚ୍ ଓ ସିଝା ଅଣ୍ଡା ଖାଉଛି। ଦୁଃଖ ଲାଗିଲା। ଆଦେଶ ଦେଲି ଏଣିକି ଆଉ କେହି ଟିଫିନ୍ ଆଣିବେ ନାହିଁ।

ସ୍କୁଲ ତରଫରୁ ମାଗଣା ଟିଫିନ୍ ଦିଆଯିବ। ସିଆଇଏସ୍ଏଫ୍ କ୍ୟାଣ୍ଟିନକୁ ଆଦେଶ ଦିଆଗଲା, ପିଲାମାନଙ୍କୁ ଓ ଶିକ୍ଷୟିତ୍ରୀମାନଙ୍କୁ ଟିଫିନ୍ ଦେବ। ପିଲାଙ୍କୁ ଡ୍ରେସ ବହି ମଧ୍ୟ ମାଗଣା ଦିଆଗଲା ଓ ମାଗଣା ଶିକ୍ଷାଦାନ ଦିଆଗଲା। ବିଭିନ୍ନ ସ୍ଥାନରେ ଥିବା ପିଲାମାନଙ୍କୁ ଆଣିବା ପାଇଁ ସ୍କୁଲ ବସ୍ ଦିଆଗଲା ଓ ସେଥିପାଇଁ ମଧ୍ୟ କୌଣସି ଅର୍ଥ ନିଆଗଲା ନାହିଁ। ସେଇ ପଇସାଟା ଆସିଲା କ୍ୟାଣ୍ଟିନ୍ ଫଣ୍ଡରୁ। କ୍ୟାଣ୍ଟିନ୍ କରୁଥିଲା ପ୍ରଚୁର ଲାଭ। କାରଣ ସୀମା ଶୁଳ୍କ ଅନୁଷ୍ଠାନ ସାଙ୍ଗରେ କଥାବାର୍ତ୍ତା କରି ପ୍ରତି ମାସକୁ ତିନି ଚାରି ଲକ୍ଷ ଟଙ୍କାର ଜବତ ବିଦେଶୀ ମାଲ ଅଣାଯାଉଥିଲା ଓ ସେମାନେ ଆମକୁ ଶତକଡ଼ା ୧୦ ରିହାତି ଦେଉଥିଲେ। କିଣା ମୂଲ୍ୟର ଶତକଡ଼ା ୨ପ୍ରତିଶତ ଲାଭ କରିବା ଦ୍ୱାରା ୧୦୦ଟଙ୍କାରେ ୧୨ଟଙ୍କା ଲାଭ ହେଲା। ତେଣୁ ୪ ଲକ୍ଷର ଜିନିଷ ଆଣିଲେ ୪୮ ହଜାର ଟଙ୍କା ଲାଭ। ଯେଉଁ ଯେଉଁ ଜିନିଷ ଆସେ ତାହା ପ୍ରଥମେ ସିଆଇଏସ୍ଏଫ୍ ଅଫିସରଙ୍କୁ ଦିଆଯାଏ ଓ ପରେ କାରଖାନା ଅଫିସରଙ୍କ ମଧ୍ୟରେ ଠେଲାପେଲା ହୁଏ କିଏ ଆଗ ନେବ। କାରଖାନା ଭିତରେ ଖୋଲା ହୋଇଥିବା କ୍ୟାଣ୍ଟିନରେ ବିଭିନ୍ନ ପ୍ରକାର ଜଳଖିଆ ତିଆରି କରାଯାଉଥିଲା ଓ କର୍ମଚାରୀମାନେ ଫେରିଲା ବେଳକୁ ଟିଫିନ୍ କ୍ୟାରିୟରରେ ଲୋଡ଼୍ କରି ନେଉଥିଲେ କାରଣ ବଜାର ଅପେକ୍ଷା ଏହାଥିଲା ଶସ୍ତା। ଅଫିସରମାନେ ମିଟିଂ କଲେ ତାଙ୍କ କ୍ୟାଣ୍ଟିନ୍‌ରୁ ନନେଇ ସିଆଇଏସ୍ଏଫ୍ କ୍ୟାଣ୍ଟିନ୍‌ରୁ ଖାଇବା ନିଅନ୍ତି। ପରିଦର୍ଶନରେ ଆସିଥିବା ଆଇଜି ଏସବୁ ବ୍ୟବସ୍ଥା ଦେଖି ଖୁବ୍ ଖୁସିହେଲେ, ଉଚ୍ଚପ୍ରଶଂସା କରି ଡିଜିଙ୍କୁ ଚିଠି ଲେଖିଲେ କିନ୍ତୁ ମୋତେ ଥଟ୍ଟା କରି କହିଲେ 'ଯା, ଭଲ ଜଳଖିଆ ଦୋକାନଟେ ଖୋଲ। ଅତିଶୀଘ୍ର କୋଟିପତି ହୋଇଯିବୁ'।

ସିଆଇଏସ୍ଏଫ୍ କଲୋନୀ ପଛକୁ ମୁକ୍ତ ଟାଙ୍ଗର ଜମି ପଡ଼ିଥିଲା। ଏକଦା ସେଇଠି କାରଖାନା ନିର୍ଗତ ମଳ (ସ୍ଲାଗ) ପକାହେଉଥିଲା। କୃଷି ଅଧିକାରୀଙ୍କୁ ଅନୁରୋଧ କରିବାରୁ ଏ ଜମିରେ କେଉଁ କେଉଁ ଗଛ ହୋଇପାରିବ ତାହାର ଏକ ଲିଷ୍ଟ ବନେଇକି ଦେଲେ। ଏକା ସାଙ୍ଗରେ ଦଶହଜାର ଗଛ ଲଗେଇଲି, ଏବେ ସେ ଅଞ୍ଚଳ ବିଭିନ୍ନ ଗଛରେ ଭରପୂର ହୋଇ ଜଙ୍ଗଲ ହୋଇଛି। ବହୁତ ଚଢେଇ ଆସି ରହିଲେଣି। ମୁଁ ପାଞ୍ଚବର୍ଷ ରହିବା ଭିତରେ ତିନିଜଣ ଡିଜି ଆସିଛନ୍ତି। ଦୁଇଜଣ ଡିଜି ଖୁବ୍ ପ୍ରଶଂସା କଲେ କିନ୍ତୁ ଜଣେ କହିଲେ ତୁମେ ଡିଆଇଜି ନା ଡିଏଫ୍‌ଓ? ମନେ ମନେ ଭାବିଲି ପଣ୍ଡିତକୁ ବୁଝାଏ ଶାସ୍ତ୍ର, ମୂର୍ଖଙ୍କୁ ବୁଝାଏ ଠେଙ୍ଗା। ତାଙ୍କ ସାଙ୍ଗରେ ଯୁକ୍ତିତର୍କ କାହିଁକି କରିବି? ମୁଁ ଯାହା ଉଚିତ୍ ମନେକଲି କରିଲି ସେ ଯାହା ଉଚିତ୍ ମନେକଲେ କହିଲେ। ଭିନ୍ନ ଆଭିମୁଖ୍ୟ ଭିନ୍ନ ଦୃଷ୍ଟିଭଙ୍ଗୀ। ଏତିକି ପ୍ରଭେଦ ଯେ, ସେ କହିବା ପରିସ୍ଥିତିରେ ଥିଲେ ଓ ଶୁଣିବା ମୋ ଭାଗ୍ୟରେ ଥିଲା।

ଗୋଟିଏ ବିଷୟରେ ମୁଁ ଯେତେ କାନ୍ଦି କଲାଣି ହେଲେ ମଧ୍ୟ କିଛି ଲାଭ ହେଲାନାହିଁ। କାରଖାନା ଭିତରେ ବହୁ ପୁରୁଣା ଜିନିଷ ଭଙ୍ଗା ରୁଜା ଅବସ୍ଥାରେ ଥିଲା। ଦୁଇଜଣ ଇଂଜିନିୟରଙ୍କୁ ନେଇ ସବୁଆଡ଼େ ବୁଲି ଦେଖିବାରୁ ସେମାନେ ଆକଳନ କଲେ ଯେ ଏସବୁ ଜିନିଷ ଓଜନ ଦରରେ ବିକିଲେ ମଧ୍ୟ ୫୦, ୬୦ କୋଟି ଟଙ୍କା ମିଳିବ। ମୁଁ ଦେଖିଲି ଯେ ଚୋରମାନେ ଏଇଥିପାଇଁ ଆସୁଛନ୍ତି ତେଣୁ ବିକିଦେଇ କାରଖାନା ଲାଭ କାହିଁକି ନକରିବ ? ମ୍ୟାନେଜିଂ ଡାଇରେକ୍ଟର ତରଫଦାରଙ୍କ ସାଙ୍ଗେ କଥାବାର୍ତ୍ତା ହେଲି ସେ ସାଙ୍ଗେ ସାଙ୍ଗେ ତାଙ୍କର ବିଭାଗୀୟ ମୁଖ୍ୟମାନଙ୍କୁ ଡାକିଲେ, ସମସ୍ତେ ରାଜି ହେଲେ ଓ ଦିଲ୍ଲୀ ଅଫିସ୍‌କୁ ଅନୁମୋଦନ ପାଇଁ ଚିଠିଗଲା। ପ୍ରାୟ ମାସେ ପରେ ଶ୍ରୀ ତରଫ୍‌ଦାରଙ୍କୁ ପଚାରିଲି ସେ ପ୍ରସ୍ତାବଟା କ'ଣ ହେଲା ? ସେ ମୁହଁ ଶୁଖେଇ ଡ୍ରୟାର ଭିତରୁ ଚିଠିଟିଏ ବାହାର କରି ମୋତେ ଦେଖେଇଲେ। ଚିଠିରୁ ଜଣାପଡ଼ିଲାଯେ, ଇସ୍ପାତ ମୁଖ୍ୟ କାର୍ଯ୍ୟାଳୟ ସରକାରଙ୍କ ଇସ୍ପାତ ବିଭାଗକୁ ଅନୁମତି ମାଗିଲା ଏବଂ ତାଙ୍କର ଅର୍ଥ ବିଭାଗ ମୁଖ୍ୟ (ନିଶ୍ଚୟ ଜଣେ ବିଚକ୍ଷଣ ଲୋକ ହୋଇଥିବ) ମନ୍ତବ୍ୟ ଦେଲେ ପ୍ରତ୍ୟେକ ବସ୍ତୁର ନାଁ କେଉଁ ଧାତୁରେ ଗଢା କେତେ ଓଜନ, କେବେଠୁ ଖରାପ ହେଲା, କିଏ ଦାୟୀ, ମୂଳଦାମ୍ କେତେ ଥିଲା, ଏବେ ଆନୁମାନିକ ମୂଲ୍ୟ କେତେ ହେବ ଏତିକି ମାତ୍ର ଜଣେଇଲେ ଆମେ ପ୍ରସ୍ତାବକୁ ବିଚାର କରିବୁ। ଏତିକି ଦାୟିତ୍ୱ ଯଦି ପ୍ରଭୁ ହନୁମାନଙ୍କୁ ଦିଆଯାଇ ଥାନ୍ତା ସେ କହିଥାନ୍ତେ 'ଥାଉରେ ବାବା, ମୁଁ ବରଂ ଗନ୍ଧମାର୍ଦ୍ଦନ ପାହାଡ଼କୁ ଆଉ ସାତଥର ଟେକି ଆଣିବି କିନ୍ତୁ ଏକାମ କରିପାରିବି ନାହିଁ।' ଦିଲ୍ଲୀ ଯାଇଥିବା ବେଳେ ଉକ୍ତ ଜଏଣ୍ଟ ସେକ୍ରେଟାରୀଙ୍କୁ ଦେଖାକରି ମୁଁ କହିଲି। କିନ୍ତୁ ସେ ନିଜ ଜିଦ୍‌ରେ ଅଟଳ ବରଂ ଏକ ମୂଲ୍ୟବାନ ଉପଦେଶ ଦେଇଥିବାରୁ ଗର୍ବିତ ହେବାର ଲକ୍ଷଣ ତାଙ୍କ ଠାରେ ଦେଖାଗଲା। ସେ ଥିଲେ ଜଣେ କେନ୍ଦ୍ର ସଚିବାଳୟ ସେବାର କର୍ମଚାରୀ। ଜୀବନରେ ସଚିବାଳୟ ବାହାରକୁ ଯାଇ ନାହାନ୍ତି। ଯିଏ କର୍ମକ୍ଷେତ୍ରରେ ଦାୟିତ୍ୱ ବହନ କରିନାହାନ୍ତି ଓ ଯାହାଙ୍କୁ ଜଗତଟା କେବଳ ଫାଇଲ୍‌ମୟ ଦିଶେ ତାଙ୍କ ଠାରୁ ଅଧିକ କିଛି ଆଶା କରାଯାଇ ପାରିବ ନାହିଁ। ଫେରିଆସି ଶ୍ରୀ ତରଫ୍‌ଦାରଙ୍କ ସାଙ୍ଗେ କଥା ହେବାରୁ ସେ କହିଲେ 'ଆପଣ ଦେଖୁଛନ୍ତି ତ ସରକାର ଚାହାନ୍ତି ଆମେ ସବୁ ସରକାରୀ ନିୟମ ପାଳନ କରି କାମ କରିବୁ ଅଥଚ ବେସରକାରୀ ଶିଳ୍ପ ଠାରୁ ବେଶୀ ଲାଭ କରିବୁ। ଏଭଳି ପ୍ରସ୍ତାବଟିଏ ଟାଟାଷ୍ଟିଲର ମ୍ୟାନେଜିଂ ଡାଇରେକ୍ଟରଙ୍କୁ ଦେଇଥିଲେ ତାହା ଅବଶ୍ୟ ତୁରନ୍ତ କାର୍ଯ୍ୟକାରୀ ହୋଇଥାନ୍ତା।

ରାଉରକେଲାରେ ଯେମିତି ଶୀତ ସେମିତି ଖରା, ଶୀତ ତ ଶୀତ ସମ୍ଭାଳି ହେବ କିନ୍ତୁ ଖରା ପାଇଁ ଏ.ସି. କିଣିବାକୁ ପଡ଼ିବ। ଇସ୍ପାତ କାରଖାନାରୁ ଗୋଟିଏ ୧୦ ବର୍ଷର

ପୁରୁଣା ଏସି ଭଡ଼ା ସୂତ୍ରରେ ଆଣିଲି କାରଣ ନୂଆ ଏସିଟିଏ କିଣିବା ପାଇଁ ସାମର୍ଥ୍ୟ ନଥିଲା। ଦୁଇ ପିଲାଙ୍କ ରୁମ୍‌ରେ ଏୟାରକୁଲର ଲଗାଗଲା। ରାଉରକେଲାର ଜଳବାୟୁରେ ଆର୍ଦ୍ରତା ନାହିଁ ତେଣୁ ଏୟାର କୁଲର ଭଲ କାମ ଦିଏ। କଟକରେ ପୁରୁଣା ଗାଡ଼ିଟି ବିକି ଦେଇଥିଲି କାରଣ ଘର ତିଆରି କରିବା ପାଇଁ ଟଙ୍କା ଦରକାର ପଡ଼ିଲା। ୭୨ ମସିହାର ଗାଡ଼ି ୮୬ରେ ବିକିଲି ଓ କିଣା ମୂଲ୍ୟରୁ ଦୁଇ ଗୁଣରୁ ବେଶି ପଇସା ମିଳିଲା। ସେତେବେଳେ ଗାଡ଼ି ଦାମ୍ ହୁ ହୁ ବଢ଼ୁଥିଲା ତେଣୁ ଏମିତି ଲାଭ। ଦିଲ୍ଲୀ ଯାଇ ଗୋଟିଏ ପୁରୁଣା ଗାଡ଼ି କିଣିଲି। ବିକିବା ଲୋକଟା ଏମିତି ଠକ ଯେ ତା' କଥାରେ ମଜ୍ଜିଯାଇ ଗାଡ଼ି ନେଇ ଫେରିଲା ବେଳକୁ ମଥୁରା ପାଖରେ ଇଞ୍ଜିନ୍‌ର ଏକ ବିଶେଷ ଅଂଶ ଭାଙ୍ଗିଗଲା। ଗାଡ଼ି କିଣିଲି ୪୦ ହଜାରରେ (ସରକାରୀ ଲୋନ୍ ନେଇ) ଓ ସବୁ ମରାମତି ଖର୍ଚ୍ଚ ଲାଗିଲା ୧୦ ହଜାର ଟଙ୍କାରେ। ଗାଡ଼ିକୁ ବିକିଲି ୪ ବର୍ଷ ପରେ ୬୫ ହଜାରରେ।

ଭିସିଆର ମିଳୁଥିଲା। କୋଚିର ବହିଃଶୁଳ୍କ ଗୋଦାମରୁ ଭିସିଆର ଅଳ୍ପ ଟଙ୍କାରେ ମିଳିଲା। ଖୁବ୍ ଭଲ ଏବଂ ଶସ୍ତାରେ କାହିଁକି ମିଳିଲା ଏଇ ବିଷୟରେ ମୁଁ ଆଗରୁ ଲେଖିଛି। ଏବେ ଏତିକି କହିବି ଯେ ଅନ୍ୟର ଉପକାର କରିଥିଲେ, ଦିନେ ନା ଦିନେ ଉପକାର ଫେରିଆସିବ।

ପିଲାମାନେ ପାଠ ଭଲ ପଢ଼ିଲେ କାରଣ ପଢ଼ିବା ପାଇଁ ସୁଯୋଗ ମିଳିଲା ଓ ବାରମ୍ବାର ବଦଳିର ଭୟ ନଥିଲା। ଏଇ ସମୟରେ ମୋର ଏକ ସୁଯୋଗ ହାତଛଡ଼ା ହୋଇଗଲା। ମୋତେ ଭାରତ ସରକାର ଲଣ୍ଡନ ସ୍କୁଲ୍ ଅଫ୍ ଇକ୍‌ନୋମିକ୍‌ସ୍‌ରେ ସାଧାରଣ ପ୍ରଶାସନ ବର୍ଷେ ପଢ଼ିବା ପାଇଁ ମନୋନୀତ କରିଥିଲେ। ସେତେବେଳକୁ ନନାଙ୍କ ଦେହ ଭୀଷଣ ଖରାପ, ଶେଷ ସମୟ ବୋଲି ଜଣାପଡୁଥିଲା। ମୁଁ ଏଇ କାରଣ ଦର୍ଶାଇ ମନା କଲି ଓ ଏହାର ମାସେ ପରେ ସେ ବିନୋଦ ଭାଇନାଙ୍କ ଘରେ ଚାଲିଗଲେ। ୧୯୬୪ ରୁ ୧୯୮୮ ଏଇ ୨୪ ବର୍ଷ ମଧ୍ୟରୁ ଦୁଇ ତିନି ବର୍ଷ ଛାଡ଼ି ଦେଲେ ନନା ବିନୋଦ ଭାଇନାଙ୍କ ଘରେ ରହିଛନ୍ତି। ବାପ-ପୁଅ, ଶାଶୂ-ବୋହୂ, ବୋହୂ-ଶ୍ୱଶୁର ସମ୍ପର୍କ କେମିତି ହେବା କଥା ଏଇ ପରିବାରରୁ ଶିଖା ଯାଇପାରେ। ସେ ସେଭଳି କରିଥିଲେ ବୋଲି ପୁଅ-ବୋହୂଙ୍କର ସାନ୍ନିଧ ଓ ସେବା ଏପର୍ଯ୍ୟନ୍ତ ପାଉଛନ୍ତି।

ଅନ୍ୟ ଦୁଇଟି ସୁଯୋଗ ହାତରୁ ଖସିଗଲା। ଯାହା କହନ୍ତି ଭାଗ୍ୟରେ ନଥିଲେ ହୁଏନାହିଁ, ଅଯଥା ଛାଟି ପିଟି ହେଲେ କ'ଣ ହେବ? ସିଆଇଏସଏଫରେ ଦୁଇଟି ଆଇ.ଜି ପୋଷ୍ଟ ହେବା ପାଇଁ ପ୍ରସ୍ତାବ ଗଲା ଓ ସେ ଦୁଇଟା ହୋଇଯାଇଥିଲେ ମୁଁ, ଆଉ ଜଣେ ସହକର୍ମୀ ଆଇ.ଜି ହୋଇଯାଇଥାନ୍ତୁ। ପ୍ରଭୁ ଜଗନ୍ନାଥଙ୍କ ପହଣ୍ଡି ପରି ବହୁ ସ୍ଥାନରେ ଅଟକି ଅଟକି ଫାଇଲ ଗଲା ପ୍ରଧାନମନ୍ତ୍ରୀଙ୍କ ଦସ୍ତଖତ ପାଇଁ। ଠିକ୍ ସେହିଦିନ ଇରାକ

କୁଏତକୁ ଆକ୍ରମଣ କଲା ଓ ଭାରତ ସରକାର ଖର୍ଚ୍ଚ କାଟ୍ ଆଦେଶ ଜାରୀ କଲେ। ଆମ ପ୍ରସ୍ତାବ ଫେରିଆସିଲା। ୬ ମାସ ପରେ ସବୁ ଶାନ୍ତ ହେଲା ପରେ ଖର୍ଚ୍ଚ କାଟ୍ ବ୍ୟବସ୍ଥା ଆଦେଶ ପ୍ରତ୍ୟାହୃତ ହେଲା ଓ ପୁଣି ଥରେ ଫାଇଲ ଗଲା। ଏଥର କିନ୍ତୁ ସିଆଇଏସଏଫର ଜଣେ ଦୁଇଜଣ ଅଫିସର ମନ୍ତ୍ରଣାଳୟରେ ଫାଇଲ୍‌କୁ ବିଭିନ୍ନ ସ୍ତରରେ ଚପେଇ ରଖିଲେ। ସେମାନଙ୍କର ଯୋଜନା ଥିଲା ଯେହେତୁ ମୋର ଓ ମୋ' ସହକର୍ମୀଙ୍କର ପାଞ୍ଚ ବର୍ଷ ୧୯୯୧ ଜୁଲାଇ ମାସରେ ସରିଯିବ ସେ ପର୍ଯ୍ୟନ୍ତ ଫାଇଲଟା ଚାପି ଦେଲେ ଆମେ ଆଇ.ଜି ହୋଇପାରିବୁନି ଓ ଅନ୍ୟ ଦୁଇଜଣ ହେବେ। ରାଉରକେଲାରେ ଥାଇ ଦିଲ୍ଲୀରେ କ'ଣ ହେଉଛି ଜାଣିବା ସମ୍ଭବ ନଥିଲା। ତେଣୁ ଆମେ ସିଆଇଏସ୍ଏଫ୍‌ରୁ ଫେରି ଆସିବା ପରେ ସେ ଦୁଇଟି ପଦ ମଞ୍ଜୁରୀ ହେଲା ଓ ଅନ୍ୟମାନେ ପାଇଲେ। ଆଉ ଏକ ସୁଯୋଗ ହରାଇଲି। ଏକ ଅର୍ଦ୍ଧ ସାମରିକ ବାହିନୀର ଜଣେ ଆଇ.ଜି ମୋତେ ଫୋନ୍ କରି ପଚାରିଲେ ଯେ 'କଲିକତାରେ ଗୋଟିଏ ଆଇ.ଜି ପୋଷ୍ଟ ଖାଲି ପଡ଼ୁଛି ଆପଣ ଆସିବେ କି ? ' ହଁ କଲି ଓ ଫାଇଲ୍ ଗଲା। ପ୍ରଧାନମନ୍ତ୍ରୀଙ୍କ ସ୍ତରରେ ମୋ' ନାଁ କଟାଯାଇ ଆଉ ଜଣଙ୍କ ନାଁ ପୂରେଇ ଦିଆଗଲା। ସେ ଜଣେ ଶକ୍ତିଶାଳୀ କେନ୍ଦ୍ରମନ୍ତ୍ରୀଙ୍କର ଭଣଜା ଓ ଭଣଜାଙ୍କ ପ୍ରତି ମାମୁଙ୍କ ଦୁର୍ବଳତା ରହିବା ସ୍ୱାଭାବିକ। ତେଣୁ ମୋ' ସ୍ଥାନରେ ସେ ଭଦ୍ରଲୋକଙ୍କର କଲିକତା ପୋଷ୍ଟିଂ ହେଲା। ସେତିକିରେ ସେ ସନ୍ତୁଷ୍ଟ ନଥିଲେ। ଯେହେତୁ ତାଙ୍କର ପତ୍ନୀ ଦିଲ୍ଲୀରେ ଚାକିରି କରୁଥିଲେ ଓ ସେ କଲିକତା ଯାଇପାରିବେ ନାହିଁ। ତେଣୁ କଲିକତା ପଦବୀଟା ସାମୟିକ ଭାବେ ଦିଲ୍ଲୀ ଘୁଞ୍ଚେଇ ଦିଆଗଲା। ଭକ୍ତ ତୀର୍ଥ ସ୍ଥାନକୁ ଯଦି ନଯାଇ ପାରନ୍ତି ତେବେ ଅସୁବିଧା କ'ଣ ? ତାଙ୍କର ଯଦି ପ୍ରଭାବଶାଳୀ ଆତ୍ମୀୟ ଥା'ନ୍ତି ତେବେ ତୀର୍ଥସ୍ଥାନ ତାଙ୍କ ପାଖକୁ ଆସିବ। କିନ୍ତୁ ଗୋଟିଏ କଥା ଅଛି ଯେ ବେଶି ଚାଲାକି ଭଲ ନୁହେଁ। ଏ ବାବୁ ବିଭିନ୍ନ ଅପ୍ରୀତିକର ପରିସ୍ଥିତିରେ ପଡ଼ିବାରୁ କେନ୍ଦ୍ର ସରକାର ତାଙ୍କୁ ବିଦା କରିଦେଲେ। କିନ୍ତୁ ତାଙ୍କର କ୍ଷତିରେ ମୋର ଲାଭ କିଛି ହେଲା ନାହିଁ, ପାଞ୍ଚ ବର୍ଷ ପୂରିବାରୁ ମୁଁ ରାଜ୍ୟକୁ ଫେରି ଆସିଲି।

ପୁଅ ସନ୍ଦୀପ ଯୁକ୍ତ ୨ ପାଶ୍ କରି ମେସ୍ରା ଇଞ୍ଜିନିୟରିଂ କଲେଜର ସିଟ୍ ପାଇଗଲା । ଝିଅ ଯୁକ୍ତ ଦୁଇ ପଢ଼ୁଥାଏ। ପାଠ ହେଲା ଆଇସିଏସଇ। ମୋତେ ଓଡ଼ିଶା ଡି.ଜି ଅଫିସରୁ ଫୋନ୍ କରି ପଚରାଗଲା କେଉଁଠିକୁ ଗଲେ ଉଚିତ୍ ହେବ ଓ ମୁଁ ଯେହେତୁ ଝିଅ ଆଇସିଏସଇ ପଢ଼ୁଛି ଯେଉଁଠି ଆଇସିଏସଇ ଅଛି ସେଇଠିକୁ ଦିଆଯାଉ ବୋଲି କହିଲି। ଏକଥା ବି କହିଲି ଯେ ସମ୍ବଲପୁର, ସୁନାବେଡ଼ା, ବରହମ୍ପୁର, କଟକ, ଭୁବନେଶ୍ୱରରେ ଆଇ.ସି.ଏସ.ଇ ଅଛି କେବଳ ବାଲେଶ୍ୱରରେ ନାହିଁ। ମୋର ସମ୍ଭାବ୍ୟ ସମସ୍ୟାକୁ ହୃଦୟଙ୍ଗମ କରାଗଲା ବୋଲି ମୋତେ ସୂଚନା ଦିଆଗଲା; କିନ୍ତୁ ବଦଳି

ଆଦେଶ ହେଲା ବାଲେଶ୍ୱର। ଅକାଳ ବଜ୍ରପାତ କାରଣ ଝିଅ ବର୍ଷେ ପଢ଼ିଛି ଆଇସିଏସଇ ଓ ବାଲେଶ୍ୱରରେ ସିବିଏସଇ ପାଠ ପଢ଼ିବ ତା' ପୁଣି ଏକା ସାଙ୍ଗରେ ଦୁଇ ବର୍ଷର। ଭାବିଲି ଯେ ଡିଜିଙ୍କୁ ଅନୁରୋଧ କରିବି କିନ୍ତୁ ଝିଅ କହିଲା କାହାକୁ ଖୋସାମତ କରିବା ଦରକାର ନାହିଁ। ବାସ୍ତବରେ ବଦଳି ଆଦେଶ ପାଇଁ କେଉଁଠିକୁ ଯିବା ଓ ସେପାଇଁ ଅନୁରୋଧ କରିବାରେ ଅଫିସରଙ୍କର ସମ୍ମାନ କ୍ଷୁଣ୍ଣ ହୁଏ। ମୁଁ ବରଂ ଉଭୟ ରାଉରକେଲା ଗଞ୍ଜାମରେ ଥିଲାବେଳେ ଚିଠି ଲେଖିଥିଲି 'ଯେହେତୁ ମୋର ୨ ବର୍ଷ ପୂରିବା ପାଇଁ ଯାଉଛି ମୋତେ ବଦଳି କରାଯାଉ।' କୋରାପୁଟ ଏସ୍‌ପି ଥିଲାବେଳେ ଦରଖାସ୍ତ କରିଥିଲି ଯେ ମୋତେ ବାଟାଲିୟନ, କ୍ରାଇମବ୍ରାଞ୍ଚ କିମ୍ବା ଅନ୍ୟ କୌଣସି ଅଣ ଜିଲ୍ଲା ଏସ୍‌ପି ଭାବେ ବଦଳି କରାଯାଉ। ଏବେ କାହିଁକି ବା ଦରଖାସ୍ତ କରିବି ? ମୋତେ ବଦଳି କରି ଯେଉଁମାନେ ଆନନ୍ଦ ପାଉଛନ୍ତି ତାଙ୍କୁ ସେ ଆନନ୍ଦରୁ ବଞ୍ଚିତ କାହିଁକି କରିବି ? ସିଆଇଏସ୍‌ଏଫ୍ ଛାଡ଼ିବା ପାଇଁ ସଜବାଜ ହେଲି। ବହୁ ବଡ଼ଧରଣର ବିଦାୟ ସମ୍ବର୍ଦ୍ଧନା ହେଲା। ଥରେ ଭାରତୀୟ ପୋଲିସ ଫୁଟ୍‌ବଲ୍ ଟୁର୍ଣ୍ଣାମେଣ୍ଟ କରେଇଥିଲି ଏବଂ ଡିଜି ଆସିଥିଲେ ମୁଖ୍ୟଅତିଥି ଭାବେ। ଜଣେ ପୃଥିବୀ ବିଖ୍ୟାତ ଫୁଟ୍‌ବଲ୍ ଖେଳାଳୀ କୋଚ୍ ଭାବେ ଆସିଥିଲେ। ୧୯୫୬ ମସିହା ଅଲମ୍ପିକ୍‌ରେ ଖେଳିଥିବା ୟୁସୁଫ୍ ଖାଁଙ୍କୁ ଡି.ଜି ଉର୍ଦ୍ଦୁରେ ପଚାରିଲେ କିଛି ଅସୁବିଧା ହେଉଛି ? ୟୁସୁଫ୍ ଖାନ୍ ସାମାନ୍ୟ ହସି କହିଲେ ଏକମାତ୍ର ଅସୁବିଧା ହେଉଛି ଡିଆଇଜି ସାହେବ କୌଣସି ଅଭିଯୋଗ କରିବାର ଅବକାଶ ଦେଇନାହାଁନ୍ତି। ବିଦାୟ ସମ୍ବର୍ଦ୍ଧନାରେ ଜଣେ ହେଡ୍ କନେଷ୍ଟବଳ ଏକଥା ମନେ ପକେଇ କହିଲେ। ଆଉ ଜଣେ କହିଲେ ମୋର ରୋଜଗାର ଡିଆଇଜି ସାହେବଙ୍କ ରୋଜଗାରଠୁ ବେଶି ଥିଲା କାରଣ ସେ ଯେଉଁ ପରିବାର କଲ୍ୟାଣ କେନ୍ଦ୍ର ଖୋଲିଥିଲେ ସେଥିରେ ମୋ' ସ୍ତ୍ରୀ ଓ ତିନି ଝିଅ ସିଲେଇ କରିବାରୁ ସେମାନଙ୍କର ସମ୍ପୂର୍ଣ୍ଣ ଆୟ ଥିଲା ମାସିକ ୬ ହଜାରରୁ ବେଶି।

ସେ ସମୟରେ ଆଉ ଗୋଟିଏ କଥା ମନେପଡ଼େ। କେତେବେଳେ କେମିତି ଅଭିଯୋଗ ଆସିଲା ଯେ ସିଆଇଏସଏଫର ଟୋକା କନେଷ୍ଟବଳ କେତେଜଣ ଷ୍ଟେସନ ଓ ବସ୍‌ଷ୍ଟାଣ୍ଡରେ ଝିଅମାନଙ୍କୁ କମେଣ୍ଟ ମାରୁଛନ୍ତି। ଏ ସମସ୍ୟାର ଚିକିତ୍ସା ମୁଁ କଲି ଭିନ୍ନ ଉପାୟରେ। ସକାଳେ ପିଟି ପ୍ୟାରେଡ଼ ସମୟ ବଢ଼େଇ ଦେଲି। ପ୍ରତ୍ୟେକ ବ୍ୟାରାକ୍‌କୁ ଗୋଟିଏ ଭିସିଆର୍, ଅନେକ ଭାଷାର ଖବରକାଗଜ ଓ କିଛି ବହି ଯୋଗେଇ ଦିଆଗଲା। ସକାଳେ ପ୍ୟାରେଡ଼ କରି କ୍ଳାନ୍ତ ହୋଇ ବ୍ୟାରାକ୍‌ରେ ବସି ସେମାନେ ସିନେମା ଦେଖିଲେ ଓ ବାଟାଲିୟନ ପରିସର ବାହାରକୁ ଗଲେନାହିଁ। ତା'ପରେ ତାଙ୍କ ଦରମାରୁ ମାସକୁ ଦେଢ଼ ହଜାର ଟଙ୍କା କାଟି ସିଧା ବ୍ୟାଙ୍କରେ ଜମା କରେଇ ଦେଲୁ ଓ ପ୍ରତ୍ୟେକ ଗଲା

ବେଳକୁ ବ୍ୟାଙ୍କରେ ୨୦ ହଜାର ଟଙ୍କା ଫିକ୍ସ ଡିପୋଜିଟ୍ ନେଇ ଗଲେ ଓ ଅନେକଙ୍କର ସେ ଟଙ୍କା ବହୁ ଲକ୍ଷ ଉପରେ ପହଞ୍ଚିଲାଣି। ଏସବୁ ଜନମଙ୍ଗଳ କାର୍ଯ୍ୟ କଲାବେଳକୁ କାରଖାନାର ଜଣେ ଖୁପିଆ ଉପର ଅଫିସରଙ୍କୁ ଜଣେଇଲେ ଯେ ସିଆଇଏସ୍ଏଫ୍ ବାଲା ବ୍ୟାରେକ୍‌ରେ ଅଶ୍ଳୀଳ ଫିଲ୍ମ ଦେଖୁଛନ୍ତି। ସେଇ କଥା ଦିନେ ମ୍ୟାନେଜିଂ ଡାଇରେକ୍ଟର ମୋତେ କହିବାରୁ ମୁଁ ଉତ୍ତର ଦେଲି 'ଯୁବା ବୟସ, ବ୍ୟାରେକ୍‌ରେ କବାଟ କିଳି ଯଦି ଅଶ୍ଳୀଳ ଫିଲ୍ମ ଦେଖିଲେ ଦେଖନ୍ତୁ। ସେମାନେ ତ କାହାର କ୍ଷତି କରୁନାହାଁନ୍ତି। ଆମେ ବରଂ କଥାଟାକୁ ଯଦି ସକରାତ୍ମକ ଦୃଷ୍ଟିରେ ଦେଖିବା ସେମାନେ ଅଶ୍ଳୀଳ ଫିଲ୍ମ ଦେଖିଲେ ବାଟାଲିୟନ ବାହାରକୁ ଯାଇ ଅଶ୍ଳୀଳ କାମ କରିବା ପାଇଁ ମନ କରିବେ ନାହିଁ।' ମ୍ୟାନେଜିଂ ଡାଇରେକ୍ଟର ମୋତେ ଅବାକ୍ ହୋଇ ଚାହିଁ କହିଲେ 'ଏଭଳି ତର୍ଜମା ମୁଁ କେବେ ଶୁଣିନଥିଲି' ଓ ମୁଁ କହିଲି ଆପଣଙ୍କ ଗୋଇନ୍ଦା ଅଫିସର ଶ୍ରମିକ ଆନ୍ଦୋଳନ ବିଷୟରେ ଖବର ସଂଗ୍ରହ ନକରି ମୋ'ଲୋକମାନେ କ'ଣ କରୁଛନ୍ତି ସେ ବିଷୟରେ କାହିଁକି ଖବର ସଂଗ୍ରହ କରୁଛନ୍ତି ? କଥା ସେତିକିରେ ସରିଲା।

ପାଞ୍ଚ ବର୍ଷ ମଧ୍ୟରେ ରାଉରକେଲା ସିଆଇଏସ୍ଏଫ୍‌ର ବହୁ ଉନ୍ନତି ହେଲା। ଏକ ମିଟିଂରେ ଡିଜି କହିଲେ ଅନ୍ୟ ବାଟାଲିୟନ ଅଫିସରମାନେ ଯାଇ ଦେଖନ୍ତୁ ରାଉରକେଲାରେ କ'ଣ ହେଉଛି। ସରକାର କି ଉପରିସ୍ଥ କର୍ମଚାରୀ ଖୁସି ହେଲେ ଆମକୁ ଦୁଇ ପାହାଚ ଚଢ଼େଇ ପାରିବେ ନାହିଁ କିନ୍ତୁ ଖୁସି ହେବାଟା ବଡ଼ କଥା। ଅଧିକାଂଶ ସହଜରେ ଖୁସି ହୁଅନ୍ତି ନାହିଁ ଓ ପ୍ରିୟା ପ୍ରୀତି ତୋଷଣ ବେଶ୍ ଚଳେ। କେନ୍ଦ୍ରରେ କେହି ଜଣେ ପ୍ରଭାବଶାଳୀ ଓଡ଼ିଆ ମନ୍ତ୍ରୀ କେବେ ହୋଇନାହାଁନ୍ତି ଡକ୍ଟର ମହତାବ୍ ଓ ବିଜୁ ପଟ୍ଟନାୟକଙ୍କୁ ଛାଡ଼ି। ଦିଲ୍ଲୀ ଦରବାରରେ ପଞ୍ଜାବୀ ଲବି, ଦକ୍ଷିଣ ଭାରତୀୟ ଲବି, ବଙ୍ଗାଳୀ ଲବି, ରାଜପୁତ ଲବି ଓ କାୟସ୍ଥ ଲବି ବେଶ୍ ଚାଲେ। ଭୁବନେଶ୍ୱରରେ ଯେମିତି ନୂଆପଡ଼ା ନେତାଙ୍କ କାଟ୍‌ତି ନାହିଁ ଦିଲ୍ଲୀରେ ଓଡ଼ିଶା ନେତାଙ୍କ ଅବସ୍ଥା ସେଇପରି। ସେମାନେ ଓଡ଼ିଆ ଅଫିସରଙ୍କୁ ଉପରକୁ ଉଠେଇବେ କ'ଣ ନିଜ ରକ୍ଷଣ ଅସମ୍ଭାଳ। ଦୁଇ ଦୁଇ ଥର ପଦୋନ୍ନତିର ସୁଯୋଗ ହାତଛଡ଼ା ହୋଇଗଲା କାରଣ ଦିଲ୍ଲୀରେ ମୋର କେହି ମାଆ ବାପ ନଥିଲେ। ତା'ଛଡ଼ା ଓଡ଼ିଆ ମାନଙ୍କର ଟିକିଏ ସ୍ୱଜାତି ପରଶ୍ରୀକାତର ଦୋଷ ଅଛି।

ଚାକିରି ଆରମ୍ଭରୁ ଆମେ ମାନସିକ ସ୍ତରରେ ନିଜକୁ ପ୍ରସ୍ତୁତ କରିଥାଉ, ଏଇ ଭଳିଆ କେତେବେଳେ ମଧୁର ଓ କେତେବେଳେ ତିକ୍ତ ଅନୁଭୂତିକୁ ଗ୍ରହଣ କରିବା ପାଇଁ । ସାଫଲ୍ୟରେ ଅତ୍ୟନ୍ତ ଆନନ୍ଦ ନହେବା ଓ ଅସଫଳତାରେ ଭାଙ୍ଗି ନପଡ଼ିବା ପାଇଁ ଜଣେ ବୟସ୍କ ଶୁଭେଚ୍ଛୁ ମୋତେ ଥରେ କହିଥିଲେ। ୧୯୬୬ ମସିହାରେ ପ୍ରୟାଗରେ

ହେଉଥିବା ପ୍ରସିଦ୍ଧ କୁମ୍ଭମେଳା ସମୟରେ ବୁଡ଼ ପକେଇ ମୁଁ ଉଠିଆସିଲା ବେଳକୁ ଦେଖିଲି ଜଣେ ସାଧୁ ମହାରାଜ ପବିତ୍ର ଗଙ୍ଗା କୂଳରେ ବସିଛନ୍ତି। କେଜାଣି କାହିଁକି ତାଙ୍କୁ ଦେଖି ବହୁତ ଭକ୍ତି ଜାତ ହେଲା ଯଦିବା ମୋର ଏକ ବଦ୍ଧମୂଳ ଧାରଣା ଯେ ଅଧିକାଂଶ ବାବା ଓ ସାଧୁ ପ୍ରତାରଣାର ପ୍ରତୀକ। ଏମାନେ କିଛି ନୂଆ କଥା କହନ୍ତି ନାହିଁ ଯାହା ଅଛି ତାକୁ କେବଳ ବିଭିନ୍ନ ଭଙ୍ଗୀରେ ଓ ଢଙ୍ଗରେ କହନ୍ତି। ଏ ଭାବନା ସତ୍ତ୍ୱେ ମୁଁ ସ୍କୁଲ ବେଳୁ ଭାରତୀୟ ବିଦ୍ୟାଭବନ ଦ୍ୱାରା ପ୍ରକାଶିତ ଭବନସ୍ ଜର୍ଣ୍ଣଲ (ଦାମ୍ ୨୫ ପଇସା) ପଢୁଥିଲି। ସେଥିରେ ବହୁ ଜ୍ଞାନୀ ଲୋକ ଯଥା ରାଜଗୋପାଳଚାରୀ, ସି.ପି. ରାମସ୍ୱାମୀ ଆୟାର, କେ.ଏମ. ମୁନସୀ, ରାମସ୍ୱାମୀ ଲକ୍ଷ୍ମଣ ସ୍ୱାମୀ ମୁଦାଲିୟର, ଭିଭି ଗିରି, ସ୍ୱାମୀ ରଙ୍ଗନାଥାନନ୍ଦ, ସତ୍ୟସାଇ ବାବାଙ୍କ ଧର୍ମ ଓ ଆଧ୍ୟାତ୍ମିକତା ବିଷୟରେ ବହୁତ ଉପାଦେୟ ଲେଖା ବାହାରୁଥିଲା। ମୁଁ ବାବା ବିରୋଧୀ ନୁହେଁ କିନ୍ତୁ କୌଣସି ବାବାଙ୍କୁ ସହଜରେ ଗ୍ରହଣ କରେନାହିଁ। କିନ୍ତୁ ସେଦିନ ବ୍ୟତିକ୍ରମ ଘଟିଥିଲା। ଏ ବାବାଙ୍କୁ ଦେଖି କେଜାଣି କାହିଁକି ବହୁ ଭକ୍ତି ଭାବ ଜାଗ୍ରତ ହେଲା ଓ ମୁଣ୍ଡ ନୁଆଇଁ ନମସ୍କାର କଲି। ସାଙ୍ଗେ ସାଙ୍ଗେ ପଚାରିଲେ - ଛାତ୍ର? ଏକ ସ୍ୱତନ୍ତ୍ର ପରୀକ୍ଷା ଦେବା ପାଇଁ ଯାଉଛୁ? ନିଷ୍ଠାର ସହିତ ଲାଗି ରହିଥା ସଫଳ ହେବୁ। ପୁଣି ଟିକିଏ ସମୟ ପରେ - ଯଦି ଧର୍ମ ଓ ଆଧ୍ୟାତ୍ମିକତା ବିଷୟରେ କିଛି ଜାଣିବା ପାଇଁ ଚାହୁଁଛୁ ଶାସ୍ତ୍ର ପୁରାଣ ସବୁ ପଢ଼ ଓ ପ୍ରତିଦିନ ସକାଳେ ନିତ୍ୟକର୍ମ ସାରି କିଛି ସମୟ ଚିନ୍ତା କର। ନିଜକୁ ପଚାର ମୁଁ କିଏ? ଯେଉଁଦିନ ମୁଁ କିଏର ଉତ୍ତର ପାଇବୁ ଜାଣିବୁ ତୋର ଆଉ ଶାସ୍ତ୍ର ପଢ଼ିବାର ଦରକାର ନାହିଁ।' ଏକଥା ସାଧୁବାବା କହିଥିଲେ ୧୯୬୬ରେ, ଆଜି ହେଲା ୨୦୧୭ ଓ ଏ ପ୍ରଶ୍ନର ଉତ୍ତର ମୁଁ ଏପର୍ଯ୍ୟନ୍ତ ପାଇପାରିନାହିଁ। ମୁଁ ବିପିନ ବିହାରୀ ମିଶ୍ର କାରଣ ମୁଁ ମିଶ୍ର ପରିବାରରେ ଜନ୍ମଗ୍ରହଣ କରିଥିଲି ଓ ବାପା ନାଁ ଦେଇଥିଲେ ବିପିନ। ମୁଁ ଯଦି କୌଣସି ସାମଲ ପରିବାରରେ ଜନ୍ମ ଗ୍ରହଣ କରିଥାନ୍ତି ବାପା ନାଁ ଦେଇଥାନ୍ତେ ଚକ୍ରଧର ଓ ମୋ' ନାଁ ହୋଇଥାନ୍ତା ଚକ୍ରଧର ସାମଲ। ପୁଣି ମାଜିଷ୍ଟ୍ରେଟ୍‌ଙ୍କ ପୁଅ ନହୋଇ ଭିକାରିର ପୁଅ ହୋଇଥିଲେ ଭିଖ ମାଗିଥାନ୍ତି। ହଁ, ମୁଁ ପୁଅ ନହୋଇ ଝିଅ ବି ହୋଇପାରିଥାନ୍ତି। ତେଣୁ ମୁଁ ବିପିନ ବିହାରୀ ନହୋଇ ଅନ୍ୟ କିଛି ହୋଇପାରିଥାନ୍ତି। ଲେଖକ ନହୋଇ ଘାତକ ହୋଇପାରିଥାନ୍ତି। ତେଣୁ ମୁଁ ପ୍ରଶ୍ନର ଏତେ ଉତ୍ତର ଅଛି ଯେ ଜିଜ୍ଞାସୁ ପୁରୁଷଟିଏ ଉତ୍ତରର ବୁଢ଼ିଆଣୀ ଜାଲରେ ଛନ୍ଦି ହୋଇଯାଏ। କୌଣସି ଉତ୍ତରରେ ମଣିଷ ସନ୍ତୁଷ୍ଟ ହୋଇପାରିବ ନାହିଁ। ପ୍ରତ୍ୟେକ ଉତ୍ତରକୁ ନାହିଁ ନାହିଁ (ନେତି ନେତି) କରି ଉତ୍ତର ପଥରେ ଆହୁରି ଉତ୍ତର ପାଇବା ଆଶାରେ ଚାଲିଥାଏ, ଚାଲି ରହିଥାଏ (ଚରୈବେତିଃ ଚରୈବେତିଃ)।

ତେଣୁ ଏଇ ଦୃଷ୍ଟିରୁ ଦେଖିବାକୁ ଗଲେ ଠିକ୍ ସମୟରେ ପ୍ରମୋଶନ ହେବା ନହେବା ଏସବୁ ଛୋଟ ଘଟଣା। ଜୀବନରେ ଶାନ୍ତି ଓ ଅନ୍ୱେଷଣ ବଡ଼ କଥା, ପଦବୀ, ପଦକ ଓ ସ୍ୱର୍ଣ୍ଣ କୁଣ୍ଡଳ ବଡ଼ କଥା ନୁହେଁ। ସେ ସବୁର ଅଳ୍ପ ସମୟ ପାଇଁ ତତ୍କାଳିକ ପ୍ରଭାବ ଥାଏ। ତେଣୁ ମୋର କିଛି ଅନୁଶୋଚନା ନଥିଲା। ପଦୋନ୍ନତି ହେଲାନାହିଁ, ନହେଉ, ବାଲେଶ୍ୱର ବଦଳି ହେଲା ହେଉ। ଜିନିଷ ପତ୍ର ବନ୍ଧାବନ୍ଧି ହୋଇଗଲା ଏକୁଟିଆ ନିଜ କାର୍ ନେଇ ଗଲିଲି ବାଲେଶ୍ୱର, ଉଦ୍ଦେଶ୍ୟ ଥିଲା ଡିଆଇଜି ଘର ଖାଲି ପଡ଼ିଲେ ସ୍ତ୍ରୀ ଓ ଝିଅଙ୍କୁ ଆଣିବି। ମୋର କାର୍ଯ୍ୟକ୍ରମ ଥିଲା ଯେ ସକାଳେ ବାହାରି ପ୍ରାୟ ଦେଢ଼ଟା ବେଳେ ମୟୂରଭଞ୍ଜର ଯଶୀପୁରରେ ପହଞ୍ଚିବି ଓ ଗଣ୍ଡେ ଖାଇବି। ଯଶୀପୁରରେ ମୋତେ ଡି.ଜି ଅଫିସ କଣ୍ଟ୍ରୋଲ ରୁମ୍‌ରୁ ଦୁଇଟି ଖବର ଆସିଲା - ପ୍ରଥମ ଯେ ମୋ' ଶଳା, ଶାଶୂ, ଶଳା ଭାଉଜ ଓ ସାନ ଝିଆରୀ (୪ ବର୍ଷର) ଏବଂ ୨ ମାସର ପୁତୁରା ଭୁବନେଶ୍ୱର, କଟକ ରାସ୍ତାରେ ଯାଉଥିବା ବେଳେ ଗୋଟିଏ ଟ୍ରକ୍ ପିଟିଦେଲା। ଶାଶୂ ଗୁରୁତର ଭାବେ ଆହତ, ଝିଆରୀର ଗାଲଟା ଚିରି ହୋଇଗଲା ଓ ଶଳାର ସ୍ତ୍ରୀ ସମସ୍ତଙ୍କୁ ଗାଡ଼ିରୁ ବାହାର କରି ଗୋଟିଏ ଗାଡ଼ିକୁ ଅଟକାଇ ହସ୍ପିଟାଲକୁ ନେଲା ଓ ସେଇଠି ଚିକିତ୍ସା କରିବା ସମୟରେ ତା'ର ଶେଷ ମୁହୂର୍ତ୍ତ ଆସିଗଲା। ପରେ ଜଣାପଡ଼ିଲା ଯେ ଦୁର୍ଘଟଣା ଯୋଗୁ ତା'ର ଲିଭର ଖଣ୍ଡ ଖଣ୍ଡ ହୋଇଯାଇଥିଲା। ଦ୍ୱିତୀୟ ଖବର ଥିଲା ଯେ ଡି.ଜି ଆଦେଶ ଦେଇଛନ୍ତି ଆପଣ ବାରିପଦାରେ ରହିବେ ଓ ରଥଯାତ୍ରା ଆୟୋଜନର ଅଭ୍ୟାସ ତଦାରଖ କରିବେ। ଏହା ନିହାତି ଆବଶ୍ୟକ କାରଣ ଏସ୍‌ପି ଛୁଟିରେ ଥିଲେ। ଡି.ଜି ପ୍ରଫୁଲ୍ଲ ଚନ୍ଦ୍ର ରଥ ମୋ' ଶାଶୂଙ୍କର ନିକଟ ସମ୍ପର୍କୀୟ। ଦୁର୍ଘଟଣା ବିଷୟରେ ସେ ଜାଣିଥିଲେ ଓ ହସ୍ପିଟାଲ ଯାଇଥିଲେ ଦେଖିବା ପାଇଁ। କିନ୍ତୁ ବ୍ୟକ୍ତିଗତ ସମ୍ପର୍କ ଓ ସରକାରୀ କର୍ତ୍ତବ୍ୟ ଦୁଇଟି ମଧ୍ୟରେ ଗାର ଟାଣିବା ଉଚିତ୍। ଅନ୍ତତଃପକ୍ଷେ ଅନ୍ୟମାନଙ୍କ ପାଇଁ।

ଘଟଣା ବିଷୟରେ ସବିଶେଷ ବିବରଣୀ ପାଇବାର ଉପାୟ ନଥିଲା। ବାରିପଦାରେ ପହଞ୍ଚି ବଡ଼ଭାଇଙ୍କୁ ଫୋନ୍ କଲି ଓ ସେ କହିଲେ ଯେ ଅନ୍ୟମାନେ ବିପଦର ବାହାରେ ଯଦିଓ ଆଘାତ ଗୁରୁତର। ଭାରାକ୍ରାନ୍ତ ମନରେ ଗଲି ରଥଯାତ୍ରା ବନ୍ଦୋବସ୍ତର ଅଭ୍ୟାସ ଦେଖିବା ପାଇଁ। ଜିଲ୍ଲାପାଳ ଥିଲେ ହାୱା ସିଂ ଚହର, ଅତିରିକ୍ତ ଏସ୍‌ପି ସଚ୍ଚି ପଟ୍ଟନାୟକ ଓ ଏସଡ଼ିଓ ତୁହିନ୍ ପାଣ୍ଡେ। ସ୍ଥାନୀୟ ବିଶିଷ୍ଟ ବ୍ୟକ୍ତିମାନେ ସମସ୍ତେ ଚିହ୍ନା ମୁହଁ। ମୟୂରଭଞ୍ଜ ଏସ୍‌ପି ଥିବା ସମୟରେ ସେମାନଙ୍କ ସଙ୍ଗେ ପରିଚୟ। ପରଦିନ ସକାଳେ ବାଲେଶ୍ୱର ଆସି ଦାୟିତ୍ୱ ଗ୍ରହଣ କଲି। ଫୋନ୍‌ରେ ସ୍ତ୍ରୀଙ୍କ ସଙ୍ଗେ କଥା ହେଲି, ସେ କହିଲେ ଯେ ମୁଁ ରାଉରକେଲା ଛାଡ଼ିବାର ୩ ଘଣ୍ଟା ପରେ ଖବର ମିଳିଲା, ଯେହେତୁ ମୁଁ କାର୍ ନେଇ ଚାଲି ଆସିଥାଏ ସେ କେମିତି ଆସିବେ ଜାଣିପାରିଲେ ନାହିଁ।

ତେଣୁ ସେ ମୋ' ଅତି ଘନିଷ୍ଠ ବନ୍ଧୁ ଆଇଏଏସ୍ ସଞ୍ଜୀବ ହୋତାଙ୍କ ସ୍ତ୍ରୀଙ୍କୁ ଫୋନ୍ କଲେ ଓ ଶ୍ରୀ ହୋତା ଏକ ଗାଡ଼ି ବନ୍ଦୋବସ୍ତ କରିଦେଲେ। ସେ ସମୟରେ ସ୍ତ୍ରୀଙ୍କର ମାମୁ ପୁଅ ଭାଇ ସତ୍ୟ ପ୍ରକାଶ ନନ୍ଦ (ଆଇଏଏସ୍) ଓ ଜଣେ ପୁତୁରା ବହୁତ ସାହାଯ୍ୟ କରିଛନ୍ତି।

ସେ ରାଉରକେଲା ଘରେ ତାଲା ପକେଇ ଦେଇ ଆସିଥିଲେ। ମାସେରୁ ଅଧିକା ରହିଲେ ଘର ଭଡ଼ା ବଜାର ଦରରେ ନିଆଯିବ। କିନ୍ତୁ ଆମର ଉପାୟ କିଛି ନଥିଲା। ମଣିଷ ଅବସ୍ଥାର ଦାସ ଓ ସୁଖ ଦୁଃଖ ଚକ ଭଳିଆ ତଳ ଉପର ହେବେ ଏକଥା ମାନିବାକୁ ପଡ଼ିବ। ଯଥାସମ୍ଭବ ମୁଁ କଟକ ଆସିବାକୁ କହି ନିଜ କାମରେ ମନ ଦେଲି। ଗତସ୍ୟ ଶୋଚନା ନାସ୍ତି ବୋଲି କହି ନିଜକୁ ସାନ୍ତ୍ୱନା ଦେଲି। ବାରିପଦା ଗଲି ରଥଯାତ୍ରା ଉପଲକ୍ଷେ। ସେଠାରେ ରଥଯାତ୍ରା ତିନିଦିନ ପାଇଁ ହୁଏ। ଅଳ୍ପ କିଛି ବିଭ୍ରାଟ ଛାଡ଼ି ଦେଲେ ରଥଯାତ୍ରା ସୁରୁଖୁରୁରେ ହେଲା ବୋଲି କୁହାଯିବ। ଥରେ ଅଧେ ଦଉଡ଼ି ଛିଣ୍ଡିଲା କିନ୍ତୁ ଶ୍ରେଷ୍ଠ କାର୍ଯ୍ୟରେ ବହୁତ ବିଘ୍ନ ହୁଏ ବୋଲି ସଂସ୍କୃତରେ ଗୋଟିଏ କଥା ଅଛି।

## ବାଲେଶ୍ୱର ଅନୁଭୂତି

୧୯୮୬ରେ ଓଡ଼ିଶା ଛାଡ଼ି ଯାଇଥିଲି କେନ୍ଦ୍ର ସରକାରଙ୍କ ଅଧୀନକୁ। ୧୯୯୧ରେ ରାଜ୍ୟ ସରକାରକୁ ଫେରିଲି। ଏଇ ୫ ବର୍ଷ ମଧ୍ୟରେ ନୈତିକ ମାନର ଅବନତି ଦେଖି ବିସ୍ମିତ ଓ ବିବ୍ରତ ହେଲି। ବହୁଦିନ ତଳେ ଅଘନକ ଭାବେ କଟକ ଏସ୍‌ପିଙ୍କ ରୁମ୍ ଭିତରକୁ ଚାଲିଯାଇଥିଲି। ଏସ୍‌ପି ଯାଇଥିଲେ ସଂଲଗ୍ନ ବାଥ୍‌ରୁମ୍‌କୁ ଓ ବସିଥିଲେ ଜଣେ କୁର୍ତ୍ତା ପଞ୍ଜାବୀ ପିନ୍ଧା ମଧ୍ୟମ ଶ୍ରେଣୀର ନେତା। ଅଳ୍ପ କେତେ ବର୍ଷ ତଳେ ମୁଁ ଯେତେବେଳେ ଆଡ଼ିସ୍‌ନାଲ୍ ଏସ୍‌ପି ଥିଲି ଏଇ ଭଦ୍ରଲୋକ କାଗଜ ଖଣ୍ଡିକରେ ନିଜ ନାଁ ଲେଖି ବାହାରେ ଠିଆ ହେଉଥିଲେ, ଅନୁମତି ଦେଲେ ଭିତରକୁ ଆସୁଥିଲେ ଓ କହିବା ସତ୍ତ୍ୱେ ବସୁନଥିଲେ। ଆଜି କିନ୍ତୁ ଏସ୍‌ପିଙ୍କ ରୁମ୍‌ରେ ସେ ଧସେଇ ପଶିଥିଲେ ଓ ବାଥ୍ ରୁମ୍‌ରୁ ବାହାରି ତାଙ୍କୁ ଦେଖି ଏସ୍‌ପି ଗଦ୍ ଗଦ୍ ସମ୍ଭାଷଣ ବିନିମୟ ପରେ, ବାବୁ କଥା ଆରମ୍ଭ କଲେ - ଆଚ୍ଛା ମୋ ସଦର ଇନ୍‌ସପେକ୍ଟର ବଦଳି ହେଲା ତା' ଜାଗାରେ ଜେନା ଆସିଲା ? କାଇଁ ମୁଁ ତ କିଛି ଜାଣିପାରିଲିନି ? ରକ୍ଷଣାତ୍ମକ ଭଙ୍ଗୀରେ ଏସ୍‌ପି କହିଲେ - ମୁଁ ତ ପଣ୍ଡିତ (ବିଶ୍ୱନାଥ)ଙ୍କୁ ପଚାରିଥିଲି ସେ କ୍ଲିୟରାନ୍ସ ଦେଇଛନ୍ତି। ସେ କ'ଣ ଆପଣଙ୍କୁ ପଚାରି ନାହାନ୍ତି ? ଉତ୍ୟକ୍ତ ହୋଇ ନେତା ଜଣଙ୍କ କହିଲେ, ସେ କାଇଁ ଆମକୁ ପଚାରିବେ ସେ ତ ଭାବୁଛନ୍ତି ଯେ ଚିଫ୍ ମିନିଷ୍ଟର ତାଙ୍କର ବଚସ୍କର। ଆଚ୍ଛା, ଲାଲ୍‌ବାଗ୍ ଇନ୍‌ସପେକ୍ଟର କେବେ ଯିବ ? ମୁଁ ତ ସାତ ଦିନ ହେଲା ଆପଣଙ୍କୁ କହିଲିଣି। ଏସ୍‌ପିଙ୍କ ତତ୍‌କ୍ଷଣାତ୍ ଉତ୍ତର ଥିଲା - ଆଜ୍ଞା, ସେ ତ ଯିବ କିନ୍ତୁ ତା' ଜାଗାରେ କିଏ

ଆସିବ ସେଥିପାଇଁ ଆପଣ ଓ ପଣ୍ଡିତ ରାଜି ହେଲେ ହେଲା। ନେତା ରାଗିଯାଇ କହିଲେ - ସବୁ କଥାରେ ପଣ୍ଡିତ ପଣ୍ଡିତ। ଆପଣ ଓ କଲେକ୍ଟରଙ୍କ ବଦଳି କଥା ଯେତେବେଳେ ପଡ଼ିଥିଲା ମୁଁ ବନ୍ଦ କରେଇଲି, ସେତେବେଳେ ଆପଣଙ୍କ ପଣ୍ଡିତ କେଉଁଠି ଥିଲେ? ଦୋଷୀ ଭଳିଆ ଏସ୍‌ପି କହିଲେ 'ଆପଣଙ୍କ ସାହାଯ୍ୟକୁ ମୁଁ ଓ କଲେକ୍ଟର ସ୍ୱୀକାର କରୁଛୁ, କିନ୍ତୁ ସମସ୍ତଙ୍କୁ ନେଇ ଚଳିବାକୁ ହେବ।' ଏମାନଙ୍କ କଥାବାର୍ତ୍ତାର ପ୍ରତ୍ୟେକ ଶବ୍ଦ ଯେ ମୋତେ ଲାଗୁଥାଏ ଯେ ମୋ' ବିବେକକୁ କିଏ ହାତୁଡ଼ିରେ ଯେମିତି ବାରମ୍ବାର ପିଟୁଛି। ମା' ଧରଣୀ, ଦୁ ଫାଟିଯା ମୁଁ ପଶିଯାଏ - ଏଇ ପ୍ରତିକ୍ରିୟା ଆସୁଥାଏ। ସେ ଭଦ୍ରଲୋକ ଗଲାପରେ ମୁଁ ଏସ୍‌ପିଙ୍କୁ ପଚାରିଲି 'କିଓ ଏ କ'ଣ ଚାଲିଛି ? ' ଅତି ନିର୍ଲଜ ଭାବେ ଏସ୍‌ପି କହିଲେ 'ଆଜ୍ଞା, ଆପଣ ଗଞ୍ଜାମ, କୋରାପୁଟ, ରାଉରକେଲା, ବାରିପଦାରେ ପଲିଟିସିଆନ୍‌ଙ୍କୁ ନାଲି ଆଖି ଦେଖାଇ ଚାଲିଗଲେ, କଟକ, ପୁରୀ, ବାଲେଶ୍ୱରରେ ଏସ୍‌ପି ହୁଅନ୍ତୁ ତ ଦେଖିବା କେମିତି ଚଳିବେ? ୨୪ ଘଣ୍ଟା ମଧ୍ୟରେ ଆପଣଙ୍କୁ ଜିଲ୍ଲା ବାହାରକୁ ଫୋପାଡ଼ି ଦେବେ।' ଧୀର ସ୍ଥିର ଭାବେ ତାଙ୍କୁ କହିଲି 'ଜିଲ୍ଲା ବାହାରକୁ କିନ୍ତୁ ଓଡ଼ିଶା ବାହାରକୁ ନୁହେଁ। ଏତେ ଡର କାହିଁକି ଓ କଟକର କ'ଣ ଏମିତି ଆକର୍ଷଣ ଅଛି ? ' ତାଙ୍କ ଉତ୍ତର ଥିଲା ଯେ ପୋଲିସରେ ଯଦି ନାଁ କମେଇବାକୁ ଚାହାଁନ୍ତି ତାହାହେଲେ କଟକ ଏସ୍‌ପି ହେବାକୁ ପଡ଼ିବ ଓ ମୋର ପ୍ରତ୍ୟୁତ୍ତର ଥିଲା ଯେତେଜଣ କଟକ ଏସ୍‌ପି ହୋଇଛନ୍ତି କିଛି ଦିନ ନେପୋଲିୟନ ହୋଇ ତା'ପରେ ୱାଟରଲୁ ଦଶା ଭୋଗିଛନ୍ତି । ଭଦ୍ରଲୋକ ଜଣକ ମୋତେ ବାଲେଶ୍ୱର କଥା କହିଥିଲେ।

୧୯୯୧ ମସିହାରେ ମୁଁ ଡିଆଇଜି ଭାବରେ ଯେତେବେଳେ ଏସ୍‌ପିମାନଙ୍କ ସହିତ କଥାବାର୍ତ୍ତା କରେ ଅଧିକାଂଶ ମୋତେ ଧାରଣା ଦେଇଛନ୍ତି ଯେ ଏମ୍.ଏଲ୍.ଏ ଓ ଏସ୍‌ପିମାନଙ୍କ କଥାରେ ପୋଷ୍ଟିଂ ହୁଏ। ୧୯୯୦ ମସିହାରେ ଜନତା ପାର୍ଟି କ୍ଷମତାକୁ ଆସିଲା। ଏମାନେ ୭୭ ରୁ ୮୦ ପ୍ରାୟ ଅଢ଼େଇ ବର୍ଷ କ୍ଷମତାରେ ଥିଲେ, ତେଣୁ ପ୍ରବଳ କ୍ଷୁଧାର୍ତ୍ତ ଓ ତୃଷାର୍ତ୍ତ ଅବସ୍ଥାରେ କ୍ଷମତାକୁ ଆସିଲେ । ଦିନା କେତେ ଚାଲିଲା କଂଗ୍ରେସ ବାଲାଙ୍କ ବିରୁଦ୍ଧରେ ଭିଜିଲାନ୍ସ ତଦନ୍ତ। ମୂଷା ଯଦି ବେଶି ଘିଅ ଖାଏ ସେ ଏତେ ଫୁଲିଯାଏ ଯେ ଗାତ ଭିତରେ ପଶି ପାରେନି ଓ ସହଜରେ ଧରାପଡ଼େ। କଂଗ୍ରେସ ସରକାର ଅମଳରେ କେତେଗୁଡ଼ିଏ 'ଘିଅ ଖିଆ ମୂଷା' ଧରାପଡ଼ିଲେ। ବିଜୁ ବାବୁ ମଝିରେ ଅଢ଼େଇ ବର୍ଷ କେନ୍ଦ୍ର ମନ୍ତ୍ରୀ ହୋଇଥିଲେ। ୬୪ ମସିହା ପରେ ୨୭ ବର୍ଷ ପରେ କ୍ଷମତାକୁ ଆସିଲେ) ବିଭିନ୍ନ ପ୍ରକାର ଘୋଷଣା କଲେ ଯଥା - ଦୁର୍ନୀତିଗ୍ରସ୍ତ ଲୋକଙ୍କର ସମ୍ପତ୍ତି ବାଜ୍ୟାପ୍ତ କରାଯିବ। ମୁଖ୍ୟମନ୍ତ୍ରୀଙ୍କ ବିନା ଆଦେଶରେ ପୋଲିସ ଫାଇରିଂ କରିପାରିବ ନାହିଁ, ମୁଖ୍ୟମନ୍ତ୍ରୀ ଓ ମନ୍ତ୍ରୀଙ୍କୁ ପୋଲିସ ଗାର୍ଡ଼ ଦିଆଯିବ ନାହିଁ ଇତ୍ୟାଦି।

ପ୍ରଥମେ ଘୋଷଣାଟି ପଣ୍ଡିତ ନେହେରୁଙ୍କ ସ୍ୱାଧୀନତା ପୂର୍ବର ଘୋଷଣା ସଙ୍ଗେ ତୁଳନା କରାଯାଇଥିଲା। ପଣ୍ଡିତ ନେହେରୁ କହିଥିଲେ 'କଳାବଜାରୀ ଓ ଚୋରାବେପାରୀଙ୍କୁ ଲାଇଟ୍ ଖୁଣ୍ଟରେ ଫାଶୀ ଦିଆଯିବ। ଫାଶୀ ଦେବା ତ ଦୂରର କଥା, କଳାବଜାରୀ, ଚୋରାବେପାରୀ ଷାଠିଏ ମସିହା ବେଳକୁ ରାଜନୀତିରେ ପଶି ମଞ୍ଚ ଉପରେ ବସିଲେ। ସେମାନଙ୍କ ଯୁକ୍ତି ଥିଲା (ଏବେ ବି ଅଛି) ଆମେ କାହିଁକି ପଲ୍ଲିସିଆନ ବାଲାଙ୍କୁ ପଇସା ଦେବା, ନିଜେ କାହିଁକି ପଲ୍ଟିକ୍ସ ନକରିବା? କଳାବଜାରୀଙ୍କ ସମେତ ଅନେକ ବ୍ୟବସାୟୀ ବର୍ତ୍ତମାନ ରାଜନୀତିରେ, ରାଜନୀତି ସହିତ ସରକାରୀ କଳ ଓ ଗଣମାଧ୍ୟମକୁ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ଭାବେ ନିୟନ୍ତ୍ରଣ କରୁଛନ୍ତି।

ମୋ' ପୂର୍ବରୁ ଥିବା ଜଣେ ଡିଆଇଜିଙ୍କର ଆଦେଶ ପଢ଼ି ମୁଁ ଆଶ୍ଚର୍ଯ୍ୟ ହେଲି। ସେଥିରେ ଲେଖାଥିଲା ଯେକୌଣସି ଇନ୍ସପେକ୍ଟର ସବ୍‌ଇନ୍ସପେକ୍ଟର ବଦଳି କରିବା ପୂର୍ବରୁ ଏସ୍‌ପି ଡିଆଇଜିଙ୍କ ଅନୁମତି ନେବେ। ଏଇ ଆଦେଶ ପୋଲିସ ମାନ୍ୟୁଆଲ ବିରୋଧୀ, ପୋଲିସ ମାନ୍ୟୁଆଲ୍‌ରେ ଅଛି ଯେ ଜିଲ୍ଲା ମଧ୍ୟରେ ବଦଳି ଏସ୍‌ପି ନିଜେ କରିବେ। ସମସ୍ତେ ଜାଣନ୍ତି ଯେ ଏମ୍‌ଏଲ୍‌ଏ, ଏମ୍‌ପିଙ୍କ ସ୍ୱାର୍ଥ ଅଛି ଏଇ ଥାନା ପୋଷ୍ଟିଂରେ ଏବଂ ଏଇ ଆଦେଶ ଦେବା ଫଳରେ ଏମ୍.ଏଲ୍.ଏ, ଏମ୍‌ପି ଓ ମନ୍ତ୍ରୀ ଡିଆଇଜିଙ୍କୁ କହିବେ। ଏବଂ ଡିଆଇଜିଙ୍କର ରାଜନୀତି ବାଲାଙ୍କ ସହିତ ସାନ୍ନିଧ୍ୟ ଓ ବନ୍ଧୁତା ବଢ଼ିବ। ଫୋନ୍ କରି ବୁଝି ଜାଣିଲି କେବଳ ଜଣେ ଡିଆଇଜିଙ୍କୁ ଛାଡ଼ି ଓଡ଼ିଶାର ଅନ୍ୟ ସମସ୍ତେ ଏମିତି ଆଦେଶ ଦେଇଛନ୍ତି। ଏଇ ଆଦେଶକୁ ସାଙ୍ଗେ ସାଙ୍ଗେ ବାତିଲ କଲି ଓ ଏସ୍‌ପିମାନେ ସମ୍ମାନ ଫେରିପାଇଲେ।

ବାଲେଶ୍ୱରରେ ଯୁଆଡ଼େ ଯିବ ହମ୍ପ, ରାସ୍ତା କଡ଼କୁ ଯଦି ଗାଁ ରହିଲା ତେବେ ବାମ ପାଖେ ହମ୍ପ, ଡାହାଣ ପାଖେ ହମ୍ପ ଓ ଗାଁକୁ ଲାଗି ହମ୍ପ। ହମ୍ପ ଉପରେ ଗାଡ଼ି ପିଙ୍ଗପଙ୍ଗ ଭଳି ଡେଇଁ ଡେଇଁ ଯାଏ। ଲୋକେ ବାରଣ୍ଡାରେ ବସି ସ୍ମିତହାସ୍ୟ ଦେବେ ଓ ରାସ୍ତାରେ ଆନନ୍ଦରେ ବିଚରଣ କରିବେ। ପୂଜା ସମୟରେ ଚାନ୍ଦା ଆଦାୟ କରିବାରେ ହମ୍ପ ବହୁତ ସାହାଯ୍ୟ କରେ। ଜାତୀୟ ରାଜପଥ ଅଧିକାରୀଙ୍କ ବିନା ଅନୁମତିରେ ହମ୍ପ କରିପାରିବ ନାହିଁ ଏଇ ଆଦେଶ ଥାଇ ମଧ୍ୟ ଗାଁ ଲୋକ ଜବରଦସ୍ତ ହମ୍ପ କରେଇଥିଲେ, ବେଳେ ବେଳେ ସରକାରୀ କର୍ମଚାରୀ ମଧ୍ୟ ଏହାକୁ ସମର୍ଥନ କରୁଥିଲେ। ଢେଙ୍କାନାଳ ଭଳି ଏକ ଛୋଟ ସହରରେ ଜଣେ ଉଦ୍‌ଯୋଗୀ ଓ ଉତ୍ସାହୀ କଲେକ୍ଟର ୨୬ଟି ହମ୍ପ ତିଆରି କରିଥିଲେ ଓ ଆଉ ଜଣେ ଉତ୍ସାହୀ କଲେକ୍ଟର ଚେକ୍ ଗେଟ୍ କରେଇ ମାଜିଷ୍ଟ୍ରେଟ୍‌ଙ୍କ ଜରିଆରେ ଗାଡ଼ି ଚେକ୍ କରାଉଥିଲେ। 'ଚେକ୍' ଓ 'ଗେଟ୍' କରୁଛନ୍ତି ଓ ଭାଗ ଦେଉଛନ୍ତି ବୋଲି ଅଭିଯୋଗ ହେବାରୁ ଚେକ୍‌ଗେଟ୍ ବନ୍ଦ ହେଲା ସରକାରୀ ଆଦେଶ ବଳରେ।

ବାଲେଶ୍ୱର ଏବଂ ମୟୂରଭଞ୍ଜ ଜିଲ୍ଲାର ସମସ୍ତ ଜବରଦସ୍ତ କରାଯାଇଥିବା ହମ୍ପକୁ ଭାଙ୍ଗି ଦିଅ ବୋଲି ଆଦେଶ ଦେଲି ଓ ଆଦେଶର କପି କମିଶନର, ଟ୍ରାନ୍ସପୋର୍ଟ କମିଶନର, ଡିଜି ଓ ହୋମ୍ ସେକ୍ରେଟେରୀଙ୍କ ପାଖକୁ ପଠେଇଲି । ଚିଠି ପାଇ ଟ୍ରାନ୍ସପୋର୍ଟ କମିଶନର ଅଫିସରୁ ଟେଲିଫୋନ୍‌ରେ ଆର୍‌ଟିଓମାନଙ୍କୁ କୁହାଗଲା ସହଯୋଗ କରିବା ପାଇଁ। ସରକାରଙ୍କ ଠାରୁ ଆଦେଶ ଆସିଲା ପୂର୍ତ୍ତ ବିଭାଗକୁ ହମ୍ପ ହାଣିବାକୁ। ୧୫ ଦିନ ମଧ୍ୟରେ ହମ୍ପ ସବୁ ସଫା ହୋଇଗଲା ଅଳ୍ପ କେତେ ଛାଡ଼ି ଯେଉଁଗୁଡ଼ିକ ଆବଶ୍ୟକତାକୁ ଦେଖି କରାଯାଇଥିଲା ।

ବାଲେଶ୍ୱର ଲୋକମାନେ ଅତିଥି ପ୍ରିୟ। ଯୁଆଡ଼େ ଗଲେ ନିଶ୍ଚୟ ଜବରଦସ୍ତି ଖୁଆଇବେ ତା' ସଙ୍ଗେ ସଙ୍ଗେ ସାତ ଆଠଟା ପିଟିସନ ମଧ୍ୟ ଦେବେ। ସମସ୍ତ ପିଟିସନ ଅସଙ୍ଗତ ନୁହେଁ। ବାଲେଶ୍ୱର ଯିବା ପୂର୍ବରୁ ଇଂରେଜି ଅମଳରେ ଲେଖାଯାଇଥିବା ଜିଲ୍ଲା ଗେଜେଟିୟର ପଢ଼ିଥିଲି। ୧୯୧୨ ମସିହାରେ ପ୍ରସ୍ତୁତ କରାଯାଇଥିବା ଏଇ ଗେଜେଟିୟରରେ ବାଲେଶ୍ୱରବାସୀଙ୍କ ବିରୁଦ୍ଧରେ ଅସଂଖ୍ୟ କଟୁ ମନ୍ତବ୍ୟ ଦିଆଯାଇଛି ଯଥା ପ୍ରବଳ ଅଳସୁଆ, ମିଛୁଆ, ଛୁଟି ନେବାରେ ଓସ୍ତାଦ୍, ଧୂର୍ତ୍ତ, ଅବିଶ୍ୱସନୀୟ ମକଦ୍ଦମା ପ୍ରିୟ ଇତ୍ୟାଦି। ଜଣେ ଇଂରେଜି କଲେକ୍ଟର (ବିଲ୍) 'ଇଣ୍ଡିଆନ୍‌ଇଙ୍କ' ବୋଲି ଏକ ଉପନ୍ୟାସ ଲେଖିଛନ୍ତି। ଉକ୍ତ ଉପନ୍ୟାସର ମୁଖ୍ୟ ଚରିତ୍ର କୃପାସିନ୍ଧୁ ମହାନ୍ତିକୁ ବାଲେଶ୍ୱର ପୃଷ୍ଠଭୂମିରେ ଚିତ୍ରଣ କରି ଏଭଳି ଭାବେ ଲେଖା ହୋଇଛି ଯେ ପାଠକେ ବାଲେଶ୍ୱରବାସୀଙ୍କ ଉପରେ ଏକ ଭୁଲ୍ ଧାରଣା ହେବ। ଆଧୁନିକ କାବ୍ୟ ସାହିତ୍ୟର ପ୍ରବର୍ତ୍ତକ (ରାଧାନାଥ ରାୟ), ଗଦ୍ୟ ସାହିତ୍ୟର ପ୍ରବର୍ତ୍ତକ (ଫକୀରମୋହନ ସେନାପତି), ବିଶିଷ୍ଟ ପ୍ରାଚୀନ କବି (ଦୀନକୃଷ୍ଣ ଦାସ), କାନ୍ତକବି (ଲକ୍ଷ୍ମୀକାନ୍ତ), ଜାତୀୟ କବି ବୀରକିଶୋର ଦାସ, କବି ଚିନ୍ତାମଣୀ ମହାନ୍ତି, ଓଡ଼ିଶାର ଅଗ୍ରଣୀ ନେତା (ଡଃ. ମହତାବ୍), ନୀଳମଣି ରାଉତରାୟ - ଏମାନେ ସମସ୍ତେ ବାଲେଶ୍ୱରର। ଓଡ଼ିଆ ସାହିତ୍ୟ ଓ ସ୍ୱାଧୀନତା ଆନ୍ଦୋଳନର ଏକଦା ପାକଶାଳା ଥିଲା ବାଲେଶ୍ୱର। ଇଂରେଜମାନେ ଓଡ଼ିଶା ଦଖଲ କଲାବେଳେ କେବଳ ତିନୋଟି ଜିଲ୍ଲା (କଟକ, ପୁରୀ ଓ ବାଲେଶ୍ୱର) ଥିଲା। ଏଇ ତିନି ଜିଲ୍ଲାର ଲୋକମାନେ ବେଶ୍ ବୁଦ୍ଧିମାନ୍। କାଠ ପଟାଟେ ପାଇଲେ ସମୁଦ୍ର ପାର ହୋଇଯିବେ। ତେଣୁ ଏମାନଙ୍କୁ ଯେତେ ରକମ କଦର୍ଯ୍ୟ ଭାବେ ଚିତ୍ରଣ କରିବା କଥା କରାଗଲା।

ବାଲେଶ୍ୱରର ବହୁ ଅନୁଷ୍ଠାନରୁ ମୋତେ ନିମନ୍ତ୍ରଣ ଆସୁଥିଲା। କବି ବ୍ରଜନାଥ ରଥଙ୍କ ସାଙ୍ଗେ ବନ୍ଧୁତା ହୋଇଥିଲା ଥରେ ମୁଁ ବଡ଼ ଅପ୍ରୀତିକର ପରିସ୍ଥିତିରେ ପଡ଼ିଲି। ଫକୀର ମୋହନ କଲେଜର ଛାତ୍ର ସଂଘ ନିଷ୍ପତ୍ତି ନେଲେ ଯେକୌଣସି ମନ୍ତ୍ରୀଙ୍କୁ ବାର୍ଷିକ

ଉତ୍ସବକୁ ଡାକିବେ ନାହିଁ। ମୋତେ ଡାକିବା ପାଇଁ ନିଷ୍ପତ୍ତି ନିଆଗଲା। ଯେହେତୁ ପ୍ରିନ୍ସପାଲ ଅନୁରୋଧ କଲେ ମୁଁ ହଁ କଲି ଓ ସାଙ୍ଗେ ସାଙ୍ଗେ କାର୍ଡ଼ ବଣ୍ଟା ହେଲା, କିନ୍ତୁ ଜଣେ ମନ୍ତ୍ରୀ ଜିଦ୍ କଲେ ଯେ ତାଙ୍କୁ ଡକାଯାଉ। ଏଣେ ପିଲାମାନେ ଜିଦ୍ କଲେ ଯେ ଡିଆଇଜି ଆସିବେ, ମନ୍ତ୍ରୀଙ୍କ ପାଇଁ ଅଲଗା ମିଟିଂ ହେଉ। ଯଦି ଡିଆଇଜିଙ୍କୁ ଡକାନଯିବ ତେବେ ମନ୍ତ୍ରୀଙ୍କ ମିଟିଂ ଆମେ କରେଇ ଦେବୁନାହିଁ। ପ୍ରିନ୍ସପାଲ ପିଲାଙ୍କୁ ଡକେଇ କଥାବାର୍ତ୍ତା ହେଲେ କିନ୍ତୁ ପିଲାମାନେ ନିଜ ଜିଦ୍‌ରେ ଅଟଳ। ପ୍ରିନ୍ସପାଲ ନିରୁପାୟ। ଅନେକ ପିଲାଙ୍କର ନାଁ ନଜାଣିଲେ ମଧ୍ୟ ସେମାନଙ୍କ ଚେହେରା ସଙ୍ଗେ ମୁଁ ପରିଚିତ କାରଣ ମଝିରେ ମଝିରେ ମୁଁ କଲେଜକୁ ଯାଇ ପ୍ରିନ୍ସପାଲଙ୍କ ଠାରୁ ଧାର ସୂତ୍ରରେ ବହି ଆଣେ। ପ୍ରିନ୍ସପାଲ ଆଇପିଏସ୍ ପରୀକ୍ଷାରେ କୃତକାର୍ଯ୍ୟ ହୋଇଥିଲେ କିନ୍ତୁ ସ୍ୱାସ୍ଥ୍ୟ ଖରାପ ଥିବାରୁ ଚାକିରିରେ ରହିପାରିଲେ ନାହିଁ। ରହିଥିଲେ ସେ ମୋର ଆଇଜି ଓ ଡିଜି ହୋଇଥାନ୍ତେ। ଯାହାହେଉ ମିଟିଂ ହେଲା। ତିନିପା ପିଲା ମୋ' ମିଟିଂକୁ ଆସିଲେ କାରଣ ସେମାନେ ସରକାର ବିରୋଧୀ। ବାକି ସବୁ ମନ୍ତ୍ରୀଙ୍କ ମିଟିଂକୁ ଗଲେ। ଆଇନ୍ ଶୃଙ୍ଖଳା ରକ୍ଷା କରିବା ଉଦ୍ଦେଶ୍ୟରେ ମୁଁ ଏ ମିଟିଂ ଯିବାକୁ ବାଧ୍ୟ ହେଲି ବୋଲି ଡିଜିଙ୍କୁ ଲେଖି ଦେଲି ଓ ତାଙ୍କଠାରୁ କୌଣସି ଉତ୍ତର ଆସିଲା ନାହିଁ। ସରକାରଙ୍କ କାର୍ଯ୍ୟ ପଦ୍ଧତି ହେଲା ଯେ ଅଧିକାଂଶ ରିପୋର୍ଟ ପାଇବା ପରେ ଚୁପ୍ ରହିବା। ଚୁପ୍ ରହିବା ଅର୍ଥ ରିପୋର୍ଟ ଆପାତତଃ ଗ୍ରହଣ କରାଗଲା ପରେ ଦୈବାତ୍ ଏଇ କାରଣରୁ ଯଦି ସୁନାମି ଆସିଲା ତେବେ ତୁମେ ଦାୟୀ ହେବ। ବିଚିତ୍ର ବ୍ୟବସ୍ଥା ଓ ପରମ୍ପରା, ଏବେବି ଚାଲିଛି।

ଡ଼ିଆଇଜି ଘରଟା ଦୁଇ ମହଲା ବିଶିଷ୍ଟ। ସ୍ଥାନ ବିରାଟ। ଜମି ଉର୍ବର। ପଛଆଡ଼େ ବହୁତ ଘାସ। ଦେଖିଲି ଜଣେ ଅଡ଼ର୍ଲି ଆସୁଛି ବସି ବସି ଯାଉଛି। ତାକୁ ଫେରିଯିବା ପାଇଁ କହିବାରୁ ହାତ ଯୋଡ଼ି ପ୍ରାର୍ଥନା କଲା। ସାର୍ ମୋତେ ଫେରାନ୍ତୁ ନାହିଁ ମୁଁ ଗାଈ ବିଷୟରେ ସବୁ ଜାଣେ। ମୁଁ ଗାଈ ରଖିବାରେ ଆଦୌ ଇଚ୍ଛୁକ ନୁହେଁ କହିବାରୁ ସେ ମୋତେ ପ୍ରବର୍ତ୍ତେଇଲା। ସାର୍ ନୀଳଗିରିରେ ଭଲ ଗାଈ ମିଳନ୍ତି। ଇନ୍ସପେକ୍ଟରଙ୍କୁ କହିଲେ ଭଲ ଗାଈ ଗୋଟେ ଦୁଇଟା ଆଣିଦେବେ। ବୈଶିଙ୍ଗାର ଚାଉଳ କଳରୁ ଭଲ ଚୋକଡ଼ ଆସିବ, ରିଜର୍ଭ ଲାଇନ୍‌ରୁ ପେଜ ମିଳିବ। କ୍ଷୀରଟା କ୍ୟାଣ୍ଟିନ୍‌କୁ ବିକି ଦେବା। ମାଗଣା ଗାଈ, ମାଗଣା ଚୋକଡ଼, ମାଗଣା ପେଜ ଓ ମାଗଣା ଶ୍ରମିକ ଓ କ୍ୟାଣ୍ଟିନ୍‌କୁ ବିକିବା ଦ୍ୱାରା ଲାଭକୁ ଫେଣ୍ଟା ଫେଣ୍ଟି କରି ବିଚରା କନେଷ୍ଟବଲଟି ଯେଉଁ ଗୋମାତା - ଅର୍ଥନୀତି କହିଲା ତାହା ଅନେକ ସିନିୟର ଅଫିସରଙ୍କ ମେମ୍‌ସାହେବମାନେ ସାଦରେ ଗ୍ରହଣ କରିଛନ୍ତି। ମୋ' ପୂର୍ବରୁ ଜଣେ ଡିଆଇଜି ଛଅଟି ଗାଈ ରଖିଥିଲେ, କ୍ଷୀର ବିକ୍ରି କରିବା ଦାୟିତ୍ୱ ଥିଲା କନେଷ୍ଟବଳଙ୍କର। ପୁଣି ଗୋଟିଏ ପୋଖରୀ ଥିଲା ସେଥିରେ ଅନେକ ମାଛ ଧରାହେଲେ। ମୁଁ ବାଣ୍ଟି ଦିଏ।

ବିକ୍ରି କରିବାଟା କେତେ ଅସମ୍ମାନର କାର୍ଯ୍ୟ ତାହା ଅନେକ ବୁଝିପାରନ୍ତି ନାହିଁ। ଲୋଭ ମଣିଷର ମଣିଷତ୍ୱ ନଷ୍ଟ ହୋଇଯାଏ। ଥରେ ଜଣେ ମୋତେ ରହସ୍ୟ କରି କହୁଥିଲେ ଯେ ଆପଣଙ୍କ ଆଇପିଏସ୍‌ରେ ତିନି ରକମର ଅସାଧୁ ଅଫିସର ଅଛନ୍ତି ଯଥା– ମନି ମାଇଣ୍ଡେଡ୍, ମିନ୍ ମାଇଣ୍ଡେଡ୍ ଓ କାଓ ମାଇଣ୍ଡେଡ୍। ତାଙ୍କ ନିଜ ଚାକିରି (ଆଇଏଏସ୍) ବିଷୟରେ କହିଲେ ଯେ ମନି ମାଇଣ୍ଡେଡ୍ ମିନ୍ ମାଇଣ୍ଡେଡ୍ ସାଙ୍ଗକୁ କାଓ ମାଇଣ୍ଡେଡ୍ ବଦଳରେ ପ୍ଲଟ ମାଇଣ୍ଡେଡ୍ ଅଫିସର ଅଛନ୍ତି। ସେ ପର୍ଯ୍ୟନ୍ତ ତିନି ଚାରିଟା ଘର, ଗୋଟିଏ ଫାର୍ମ ହାଉସ ଓ ଅନେକ ବିଲଡ଼ର ଓ ପ୍ରାଇଭେଟ ଇଞ୍ଜିନିୟରିଂ କଲେଜ, ବଡ଼ ବଡ଼ ଦୋକାନରେ ପୁଞ୍ଜି ନିବେଶ ନହୋଇପାରିଲା ତେବେ ସେ ଅଫିସରକୁ ଧିକ୍।

ଉପୁରି ନଖାଇଲେ ଖପୁରିରେ ଖାଇବାକୁ ପଡ଼ିବ। ଏ ନୀତି ପାଳନ କରୁଥିଲେ ୫୦/୬୦ ମସିହାରେ ହାତ ଗଣତି କେତେ ଜଣ। ଏବେ ଖପୁରିରେ ଖାଇବୁ ପଛେ ଉପୁରି ନେବୁନାହିଁ ନିୟମ ପାଳନ କରୁଛନ୍ତି ଅଳ୍ପ କେତେଜଣ। ନେତାମାନଙ୍କୁ ଧରାଧରି କରି ଉପର ଅଫିସରଙ୍କୁ ଅମାନ୍ୟ କରୁଛନ୍ତି। ଡିଜିଙ୍କର ବଦଳି ପ୍ରସ୍ତାବକୁ ବନ୍ଦ କରିଦେଇପାରୁଛନ୍ତି। କ୍ଷୀର ବିକିବା, ପ୍ଲଟ କିଣିବା ବଦଳରେ ମାସକୁ ଲକ୍ଷ ଲକ୍ଷ ଟଙ୍କା ରୋଜଗାର କରି ଓଡ଼ିଶା ବାହାରକୁ ପଠଉଛନ୍ତି। ପ୍ରତିଦିନ ଏଭଳି ଚୋରି କରିବା ସତ୍ତ୍ୱେ ବି ଅହମିକାର ସୀମା ନାହିଁ। ପୋଲିସରେ କେଉଁ ମାନ୍ଧାତା ଅମଳର ସୁପରଭିଜନ ନୋଟ ଲେଖିବା ପଦ୍ଧତି ଅଛି। ଦଶ ପୃଷ୍ଠା ୧୨ ପୃଷ୍ଠାର ସୁପରଭିଜନ ନୋଟ୍‌କୁ କେହି ପଢ଼ନ୍ତି ନାହିଁ। ସେହିପରି ପ୍ରାୟ ୨୦ ପୃଷ୍ଠାର ପରିଦର୍ଶନ ମନ୍ତବ୍ୟ କେହି ପଢ଼ନ୍ତି ନାହିଁ। ପଢ଼ନ୍ତି ନାହିଁ କାରଣ ପଢ଼ିବା ପାଇଁ ସମୟ ନାହିଁ, ଇଚ୍ଛା ବି ନାହିଁ। କିନ୍ତୁ ଲେଖିବା ଚାଲିଛି।

ରାତିରେ ସିନିୟର ଅଫିସର ନାଇଟ୍ ରାଉଣ୍ଡ କରିବେ। ଯେତେବେଳେ ସହରଗୁଡ଼ିକ ଛୋଟ ଥିଲା ସବୁଆଡ଼େ ପୋଲିସ ମୁତୟନ ହେଉଥିଲେ ଉପରସ୍ଥ ଆଇପିଏସ୍ ଅଫିସରମାନେ ସାଇକେଲ ମାରି ଚେକ୍ କରୁଥିଲେ। ବର୍ତ୍ତମାନ ସହରଗୁଡ଼ିକ ଏତେ ବଡ଼ ହେଲାଣି, ଜନସଂଖ୍ୟା କ୍ଷେତ୍ରଫଳ ତୁଳନାରେ ପୋଲିସ ସଂଖ୍ୟା ଏତେ କମ୍ ହେଲାଣି ଯେ ପୋଲିସ ମୁତୟନ ହୋଇପାରୁନାହିଁ ଓ ସାଇକେଲରେ ଚେକ୍ କରିବା ପାଗଳାମି। ଆମ ଅଫିସର୍‌ମାନେ କହନ୍ତି ନା ସାଇକେଲରେ ଚେକ୍ କର କାରଣ ଆମେ କରୁଥିଲୁ। ତାଙ୍କ ସମୟରେ ପ୍ରାତଃ ଭୋଜନରେ ଚୁଡ଼ା ଚକଟା ଖିଆ ହେଉଥିଲା ବୋଲି ଆଜିକାଲିକା ଟୋକା କ'ଣ ସେଇଆ ଖାଇବେ? ଏମାନଙ୍କ କଥା କହିବା ଭଙ୍ଗୀ, ଭକ୍ତି ଦେଖାଇବାର ଢଙ୍ଗ ଓ ଷ୍ଟାଇଲ୍ ଅଲଗା। ୨୦୦୪ ମସିହାରେ ମୁଁ ଭାରତ ସରକାରରୁ ଅବ୍ୟାହତି ପାଇ ଆସିଲି ଓଡ଼ିଶା ଡି.ଜି ହେବା ପାଇଁ, ୪ ବର୍ଷ ଚାକିରି କରିଥିବା ଜଣେ ଟୋକା ଏସ୍‌ପି ମୋତେ କହିଲେ, 'ସାର୍ ୱେଲ୍‌କମ୍ ଟୁ ଓରିଶା।' ତାଙ୍କୁ ଧନ୍ୟବାଦ ଦେଇ

ପଚାରିଲି ସାରା ଓଡ଼ିଶାଟା କ'ଣ ତୁମ ଅଧୀନରେ କିଓ ? ପିଲା ଅଫିସରଗୁଡ଼ିକ ଉଚ୍ଚ ଶିକ୍ଷିତ କିନ୍ତୁ ଉପଯୁକ୍ତ ଟ୍ରେନିଂ ପାଇପାରୁନାହାନ୍ତି । ସେଇ କଥା ମୁଁ ମଝିରେ ମଝିରେ ଆଲୋଚନା କରୁଥିଲି ଏସ୍‌ପିମାନଙ୍କ ସାଙ୍ଗରେ । ପାଞ୍ଚ ଛଅ ବର୍ଷ ଚାକିରି କରି ମଧ ସେମାନେ ବେଶ୍ ବରିଷ୍ଠ ଅଫିସରଙ୍କ ଭଳିଆ କଥାବାର୍ତ୍ତା କରନ୍ତି । 'ସାର୍ ଆଜିକାଲିକା ପିଲାଙ୍କ ଠାରୁ କିଛି ଭଲ କାମ ଆଶା କରିବା ନିରର୍ଥକ ।' ପୋଲିସ ଏକାଡ଼େମୀ ଟ୍ରେନିଂ ସମୟରେ ଏଏସ୍‌ପିମାନଙ୍କ ଠାରୁ ଅଭିଯୋଗ ଶୁଣାଯାଏ ଏସ୍‌ପିଙ୍କ ବିରୁଦ୍ଧରେ ଓ ଏସ୍‌ପିମାନଙ୍କ ଠାରୁ ଶୁଣାଯାଏ ଡିଆଇଜିମାନଙ୍କ ବିରୁଦ୍ଧରେ । ଏଏସ୍‌ପିମାନେ ଯେତେବେଳେ ଏସ୍‌ପି ହୁଅନ୍ତି ଓ ଏସ୍‌ପିମାନେ ଡିଆଇଜି ହୁଅନ୍ତି ସେମାନେ ତଳ ପାହ୍ୟାମାନଙ୍କ ବିରୁଦ୍ଧରେ ଅଭିଯୋଗ କରନ୍ତି । ସାମାଜିକ ସ୍ତରରେ ଯଦି ମିଳାମିଶା ହୁଅନ୍ତା ଏଭଳି ଅଭିଯୋଗ ଆସନ୍ତା ନାହିଁ । ଆଇପିଏସ୍‌ରେ ଦୁଇ ପଦବୀ ମଧ୍ୟରେ ଯେତିକି ମାନସିକ ଦୂରତା ଆଇଏଏସରେ ତା'ଠାରୁ ବେଶି । ସେଥିପାଇଁ ଜଣେ ଅବସରପ୍ରାପ୍ତ ଆଇପିଏସ୍ ଅଫିସରଙ୍କୁ ବିଭାଗରେ ଯେତିକି ଆଦର ସମ୍ମାନ ମିଳେ ଜଣେ ଆଇଏଏସ୍ ଅଫିସରଙ୍କୁ ବିଭାଗରେ ସେତିକି ସମ୍ମାନ ମିଳେନାହିଁ । ମୁଁ ଡିଆଇଜି ଥିଲାବେଳେ ପ୍ରଦୀପ କପୁର ବାଲେଶ୍ୱର ଏସ୍‌ପି ଓ ନାଗେଶ୍ୱର ରାଓ ମୟୂରଭଞ୍ଜ ଏସ୍‌ପି ଥିଲେ । ନାଗେଶ୍ୱର ରାଓଙ୍କ ପୂର୍ବରୁ ଅଭୟ ଏସ୍‌ପି ଥିଲେ । କିନ୍ତୁ ଅଳ୍ପଦିନ ପରେ ବଦଳି ହୋଇଗଲେ । ଏମାନଙ୍କର ମାତ୍ର ପାଞ୍ଚ ବର୍ଷ ଚାକିରି ତା'ସତ୍ତ୍ୱେ ଦକ୍ଷତା ବେଶ୍ ଭଲ । ପୁଣି କପୁର ଓଡ଼ିଆ କହିଲେ କେହି କହିପାରିବେ ନାହିଁ ଯେ ସେ ଅଣ ଓଡ଼ିଆ ବୋଲି । ୧୯୯୦ ମସିହାରେ ଭଦ୍ରକରେ ସାମ୍ପ୍ରଦାୟିକ ଦଙ୍ଗା ହୋଇଥିଲା ଓ ଦଙ୍ଗା ପରେ କପୁର ଏସ୍‌ପି ହୋଇ ଆସିଲେ ଓ ପନଓ୍ୱାର ହେଲେ ଭଦ୍ରକ ଏଏସ୍‌ପି । ପନଓ୍ୱାର ବେଶ୍ ସଚ୍ଚୋଟ ଓ ସାହସୀ ଅଫିସର । ସେ ଥିବା ଯୋଗୁ ମୁଁ ନିଶ୍ଚିତ ହୋଇଥିଲି ଭଦ୍ରକରେ ଆଉ କେବେ ଦଙ୍ଗା ହେବନାହିଁ ।

କାର୍ଯ୍ୟଭାର ଗ୍ରହଣ କରିବାର ମାତ୍ର କେଇଦିନ ପରେ ଭଦ୍ରକ ସହର ପରିଦର୍ଶନରେ ଗଲି । ଏଇ କେତେଦିନ ତଳେ ସାମ୍ପ୍ରଦାୟିକ ଦଙ୍ଗା ହୋଇଥାଏ । ଅନେକ ଘର ଆଂଶିକ ଭାବେ ପୋଡ଼ିଯାଇଥାଏ ଓ ପୋଡ଼ାଗନ୍ଧ ସମ୍ପୂର୍ଣ୍ଣ ଭାବେ ଯାଇନଥାଏ । ଗଣ୍ଡଗୋଳ ହେଲା ଏକ ଛୋଟ କାରଣରୁ । ପ୍ରାୟ ୪୦୦, ୫୦୦ ଲୋକ ହନୁମାନଙ୍କ ମୂର୍ତ୍ତି ନେଇ ସହର ପରିକ୍ରମା କରୁଥିଲେ । ଗୋଟିଏ ରିକ୍‌ସାରେ ମୂର୍ତ୍ତି ଓ ଅନ୍ୟ ଏକ ରିକ୍‌ସାରେ ନେତା ମାଇକ୍‌ରେ ସ୍ଲୋଗାନ ଦେଉଥିଲେ । କେତୋଟି ସ୍ଲୋଗାନ୍ ସଂଖ୍ୟାଲଘୁ ସମ୍ପ୍ରଦାୟ ବିରୋଧି, କେବଳ ବିରୋଧୀ ନୁହେଁ ଶୁଣିବା ଲୋକ ଉତ୍ତ୍ୟକ୍ତ ହେବ । ସବୁବର୍ଷ ଶୋଭାଯାତ୍ରା ହୁଏ କିନ୍ତୁ ଏବର୍ଷର ସ୍ଲୋଗାନ ଗଣ୍ଡଗୋଳର କାରଣ ହେଲା । ଦଳେ ଟୋକା ଠେଙ୍ଗା ଧରି ଗୋଡ଼େଇ ଆସିଲାରୁ ରିକ୍‌ସାରୁ ଡିଆଁ ମାରିଲେ ନେତା ଚମ୍ପଟ ।

ନେତା ପଳାଇବା ଦେଖି ଅନ୍ୟମାନେ ଛତ୍ରଭଙ୍ଗ ଦେଲେ। ଅନେକ ଲୋକ ମାଡ଼ ଖାଇଲେ, କେତେକଣ ଲୋକଙ୍କର ଘର ଜାଳିଦିଆଗଲା। ପୋଲିସ ଓ ମାଜିଷ୍ଟ୍ରେଟ୍ ଅବସ୍ଥା ସମ୍ଭାଳିବାରେ ଉପଯୁକ୍ତ ଦକ୍ଷତା ଦେଖେଇ ପାରିନଥିବାରୁ ଏ ଘଟଣା ହେଲା। ଉତ୍ତେଜନା ଧାମନଗର, ବାଲେଶ୍ୱର, ବାସୁଦେବପୁର ଇତ୍ୟାଦି ସ୍ଥାନକୁ ବ୍ୟାପିଲା। ସରକାର ଡି.ଜି ସୋମନାଥ ମିଶ୍ର ଓ ଜଣେ ଦୁଇଜଣ ସିନିୟର ଅଫିସରଙ୍କୁ ଅବସ୍ଥା ସମ୍ଭାଳିବା ପାଇଁ ପଠେଇଲେ। ବାଲେଶ୍ୱରରେ ଜଣେ ଡିଆଇଜି ଥାଆନ୍ତି, ଜିଲ୍ଲା ପାଇଁ ଜିଲ୍ଲାପାଳ ଏସ୍‌ପି ଅଛନ୍ତି, ତେଣୁ ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଅଧିକା ଫୋର୍ସ ଓ ତାଙ୍କ ତଳ ସ୍ତରର ଅଫିସରଙ୍କୁ ପଠେଇବା ଉଚିତ ଥିଲା। ଏମାନଙ୍କ ଠାରୁ ଉପର ସ୍ତରର ଅଫିସଙ୍କୁ ପଠେଇଲେ ଦାୟିତ୍ୱ ଏମାନଙ୍କ ହାତରୁ ଖସିଯାଇ ଉପର ଅଫିସରଙ୍କ ପାଖକୁ ଯିବ। ଯେହେତୁ ଉପର ଅଫିସର ସ୍ଥାନ କାଳ ପାତ୍ର ସଙ୍ଗେ ଅଭ୍ୟସ୍ତ ନୁହଁନ୍ତି ଜିଲ୍ଲା ପ୍ରଶାସନଙ୍କୁ ଦିଗ୍‌ଦର୍ଶନ ଦେବା ପରିବର୍ତ୍ତେ ପରିସ୍ଥିତିକୁ ଅଧିକ ଜଟିଳ କରନ୍ତି। କିନ୍ତୁ ସରକାରଙ୍କ ଚିନ୍ତାଧାରା ଭିନ୍ନ ପ୍ରକାର, ଜଣେ ବଡ଼ ପାହ୍ୟାର ଅଫିସରଙ୍କୁ ପଠେଇ ଦେଇ ଖବରକାଗଜରେ ବିବୃତ୍ତି ଦିଆଯାଏ ଡି.ଜି, ଆଇ.ଜିଙ୍କୁ ଘଟଣା ସ୍ଥଳକୁ ପଠାଯାଇଛି, ତେଣୁ ଚିନ୍ତାର କାରଣ ନାହିଁ।

ଜଳାପୋଡ଼ା ଓ ଦଙ୍ଗା ପାଇଁ ଅନେକ କେସ୍ ହେଲା। ସେସବୁ ସିଆଇଡ଼ି ତଦନ୍ତ କଲା। ଜଣେ ଡିଏସ୍‌ପି ଆସି ତଦନ୍ତ କଲେ ଓ ସେ ସ୍ଥାନୀୟ ପୋଲିସ୍‌ର କୌଣସି ପରାମର୍ଶ ନେଲେନାହିଁ। ଫଳରେ ତଦନ୍ତ ତା' ବାଟରେ ଗଲା। ମୁଁ ଜଏନ୍ କଲାପରେ ରାମନବମୀ ପଡ଼ିଲା। ସରକାର ଚାହିଁଲେ ନାହିଁ ଯେ କୌଣସି ସଭା କିମ୍ବା ଶୋଭାଯାତ୍ରା ହେଉ। ମୁଁ ଡି.ଜିଙ୍କୁ ଲେଖି ଜଣେଇଲି ଯେ ଦିନେ ପରିଶ୍ରମ କରି ଆମେ ଯଦି ଶୋଭାଯାତ୍ରାଟିକୁ ଶାନ୍ତିପୂର୍ଣ୍ଣ ଭାବେ ଚଳେଇ ଦେଇପାରିବା ତେବେ ଭବିଷ୍ୟତରେ ଇଦ୍, ହୋଲି, ଦିୱାଲୀ ଓ ମହାବୀର ଜୟନ୍ତୀ ସୁରୁଖୁରୁରେ ହୋଇପାରିବ। ଗୋଟିଏ ପର୍ବ ବନ୍ଦ କଲେ ବାକି ସବୁ ପର୍ବ ମଧ ବନ୍ଦ କରିବାକୁ ପଡ଼ିବ ଓ ଦୁଇ ସମ୍ପ୍ରଦାୟ ମଧ୍ୟରେ ଦୂରତା ବଢ଼ିଚାଲିବ। ଜଣେ ସିନିୟର ଡିଆଇଜିଙ୍କୁ ପଠାଗଲା ଆଲୋଚନା କରିବା ପାଇଁ। ଆଲୋଚନା କ'ଣ କରିବେ ସେ ବରଂ ମୋତେ କଲେକ୍ଟର ଓ ଏସ୍‌ପିଙ୍କୁ ପଚାରିଲେ ଯଦି ଗଣ୍ଡଗୋଳ ହେବ ଦାୟୀ କିଏ ହେବ? ତାଙ୍କୁ ଉତ୍ତର ଦେଲି ଯେ ଯାହା ଜଣା ପଡୁଛି ଦାୟୀ କିଏ ହେବ ପ୍ରସଙ୍ଗଟି ମୁଖ୍ୟ, ସାମ୍ପ୍ରଦାୟିକ ଗଣ୍ଡଗୋଳ ହେଲା ଗୌଣ। ଆମେ ତିନି ଜଣ ଦାୟୀ ହେବୁ। ହଟିନଯାଇ ସେ କହିଲେ ଆଗ ପଛ ନବିଚାରି ଆପଣମାନେ ଚାହୁଁଛନ୍ତି ରାମନବମୀ ହେଉବୋଲି, ଦଙ୍ଗା ହେଲେ ସାରା ଦେଶରେ ଏହାର ପ୍ରଭାବ ପଡ଼ିବ। ଏକଥା ବୁଝିପାରୁଛନ୍ତି ତ? ଦଙ୍ଗା ହେବନାହିଁ ବୋଲି ଆପଣ ଲେଖିକରି

ଦେବେ ? ମୁଁ ଉତ୍ତର ଦେଲି ଦଙ୍ଗା ହେବ ବୋଲି ଆପଣ ଲେଖିକରି ଦେବେ ? ଯଦି ଆପଣ ଏତେ ନିଶ୍ଚିତ ତେବେ ସରକାର କିମ୍ବା ଡି.ଜିଙ୍କ ତରଫରୁ ଚିଠି ଆସୁ ଯେ ଭଦ୍ରକ ଏବଂ ଅନ୍ୟାନ୍ୟ କେତେକ ଅଞ୍ଚଳରେ ୧୪୪ ଧାରା ଜାରି ହେବ। କେତେ ଫୋର୍ସ ଦରକାର ତାହା ଆପଣମାନେ ହିଁ ଆକଳନ କରନ୍ତୁ ଓ ଦିଅନ୍ତୁ। ଜଣେ ସିନିୟର ଅଫିସର ଆସି ଦାୟିତ୍ୱ ନିଅନ୍ତୁ। ସେ ଭଦ୍ରଲୋକ ଫେରିଯାଇ ଡି.ଜିଙ୍କୁ କ'ଣ ରିପୋର୍ଟ ଦେଲେ ମୁଁ ଜାଣିନାହିଁ କିନ୍ତୁ ଡି.ଜି ମୋତେ ଫୋନ୍ କରି ପଚାରିଲେ ଅବସ୍ଥାକୁ ସମ୍ଭାଳି ପାରିବ କି ? ମୁଁ ହଁ କଲି, କେତେ ଫୋର୍ସ ଦରକାର ତାହା କହିଲି ଓ ତିନି ଚାରି ଜଣ ଅତିରିକ୍ତ ଏସ୍‌ପି ପାହ୍ୟାର ଅଫିସରଙ୍କୁ ପଠାଇବା ପାଇଁ କହିଲି। ଏକାନ୍ତ ଅନୁରୋଧ କଲି ଯେ ମୋ'ଠାରୁ କୌଣସି ସିନିୟର ଅଫିସର ପଠାନଯାଉ। ଡି.ଜି ହଁ କଲେ।

ତା'ପରେ ଉଭୟ ସମ୍ପ୍ରଦାୟର ନେତାଙ୍କୁ ଡକାଗଲା। ମୁସଲମାନମାନଙ୍କ ତରଫରୁ ଅବଦୁଲ ବାରି ଓ ହିନ୍ଦୁମାନଙ୍କ ତରଫରୁ ମନମୋହନ ସାମଲ ଓ ଅନ୍ୟାନ୍ୟ କେତେଜଣ ଯୋଗଦେଲେ। ସମସ୍ତେ ପ୍ରତିଶ୍ରୁତି ଦେଲେ ଯେ କୌଣସି ରକମର ଉତ୍ତେଜନାମୂଳକ ସ୍ଲୋଗାନ ଦେବା କାର୍ଯ୍ୟ କରାଯିବ ନାହିଁ। ଉଭୟ ଦଳ ନିଜ ପ୍ରତିଶ୍ରୁତି ରକ୍ଷା କଲେ। ଏସ୍‌ପି ଓ ଅନ୍ୟାନ୍ୟ ଅଫିସରଙ୍କୁ ପ୍ରଶଂସା ପତ୍ର ଦେବା ପାଇଁ ଆମେ ଚିଠି ଲେଖିଲୁ କିନ୍ତୁ ଡି.ଜି ଅଫିସରେ ଜଣେ ବରିଷ୍ଠ ଅଧିକାରୀ ଏହା ଏକ ଧରାବନ୍ଧା କାର୍ଯ୍ୟ, ତେଣୁ କୌଣସି ପ୍ରଶଂସା ପତ୍ର ଦେବାର ଅବକାଶ ନାହିଁ ବୋଲି ମନ୍ତବ୍ୟ ଦେଇ ଡି.ଜିଙ୍କ ଆଦେଶ କରେଇନେଲେ। ପ୍ରଶଂସା ମିଳୁ ନମିଳୁ କର୍ତ୍ତବ୍ୟ କରିବା କଥା, କାରଣ ସେଥିପାଇଁ ଆମେ ଦରମା ପାଉଛୁ। ଏସ୍‌ପି ଓ ଅନ୍ୟାନ୍ୟ ଅଫିସରମାନଙ୍କୁ ମୁଁ ପ୍ରଶଂସାପତ୍ର ଲେଖିଦେଲି। ବହୁଦିନ ପରେ ମୁଁ ଯେତେବେଳେ ଭାରତ ସରକାରଙ୍କ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟର ସ୍ୱତନ୍ତ୍ର ସଚିବ ହେଲି ଓ ଅନ୍ୟାନ୍ୟ ଦାୟିତ୍ୱ ସଙ୍ଗେ ପୋଲିସ ବିଭାଗର ଦାୟିତ୍ୱ ମଧ୍ୟ ନେଲି ସେତେବେଳେ ଜାଣିଲି ଯେ ଏ ପ୍ରଶଂସା ପତ୍ରର କିଛି ମୂଲ୍ୟ ନାହିଁ। ଏହା ସାହିତ୍ୟିକଙ୍କୁ କୌଣସି ଅନୁଷ୍ଠାନ ତରଫରୁ ସମ୍ମାନ ଦେବାଭଳି କଥା। ତତ୍‌କାଳିକ ଆନନ୍ଦ ଦେବାରେ ଏହା ସୀମିତ ହୋଇରହେ। ରାମନବମୀ ସୁରୁଖୁରୁରେ ହେବାରୁ ଅନ୍ୟାନ୍ୟ ପର୍ବପର୍ବାଣି ଭଲରେ ଭଲରେ ହେଲା। ମୁଁ ବଦଳି ହେବା ପରେ ଏସବୁ ବନ୍ଦ କରିଦିଆଗଲା।

ବାଲେଶ୍ୱର ଦାୟିତ୍ୱରେ ରହିଲେ ଚାନ୍ଦିପୁରର ସେନା ବିଭାଗ ସହିତ ସମନ୍ୱୟ ରଖିବା ନିହାତି ଦରକାର। କାରଣ ଅଗ୍ନି ଓ ପୃଥ୍ୱୀ ପରୀକ୍ଷା ସମୟରେ ବହୁତ ପୋଲିସ ଓ ମାଜିଷ୍ଟ୍ରେଟ୍ ମୁତୟନ ହୁଅନ୍ତି। ଚାନ୍ଦିପୁର ଯିବା ପାଇଁ ଇଚ୍ଛା ପ୍ରକାଶ କରିବାରୁ ଏସ୍‌ପି ସେନା ବିଭାଗ କର୍ତ୍ତୃପକ୍ଷଙ୍କୁ କହିଲେ ଓ ସେମାନେ ସମସ୍ତ ଆୟୋଜନ କଲେ। ଜଣେ

କ୍ୟାପ୍‌ଟେନ୍ ଦେଖାକରି ଲିଖିତ ପ୍ରୋଗ୍ରାମ୍‌ଟିଏ ଦେଲେ। ମୁଁ କେତେବେଳେ ବାହାରିବି, କେତେବେଳେ ପହଞ୍ଚିବି, ଗେଟ୍ ପାଖରେ କିଏ ପାଛୋଟି ନେବ, ଚାନ୍ଦିପୁରରେ ଥିବା ବ୍ରିଗେଡ଼ିୟର ତିୱାରୀଙ୍କ ସାଙ୍ଗରେ କେତେବେଳେ ଆଲୋଚନା ହେବ ଇତ୍ୟାଦି ଇତ୍ୟାଦି । ତା'ସାଙ୍ଗକୁ ବିଭିନ୍ନ ଅସ୍ତ୍ରଶସ୍ତ୍ର ଦେଖେଇବାର ଆୟୋଜନ ହୋଇଥିଲା। ମୋ' ପାଇଁ ବୋଫର୍ସ ଗନ୍ ଫୁଟେଇବାର ବନ୍ଦୋବସ୍ତ ହୋଇଥିଲା। ସାଙ୍ଗରେ ସ୍ତ୍ରୀ ଓ ଝିଅଙ୍କୁ ନେବାର ଇଚ୍ଛାକୁ ଦମନ କଲି କାରଣ ଗସ୍ତଟି ସମ୍ପୂର୍ଣ୍ଣ ସରକାରୀ ଥିଲା ଓ ରାତ୍ର ରହଣିର ଯୋଜନା ନଥିଲା।

ଚାନ୍ଦିପୁର ସମୁଦ୍ର କୂଳ ପୃଥିବୀରେ ଅନନ୍ୟ; ଇଂରେଜ ସାମ୍ରାଜ୍ୟରେ ଏକମାତ୍ର। ୧୮୫୪ ରୁ ଏଠାରେ ଗୋଳା ବାରୁଦ ପରୀକ୍ଷା କରାଯାଉଛି। ଜୁଆର ଆସେ ଓ ଭଟ୍ଟା ପଡ଼ିଲେ ସମୁଦ୍ର ୬ ରୁ ୭ କି.ମି. ପର୍ଯ୍ୟନ୍ତ ଘୁଞ୍ଚିଯାଏ। ପାଣି ତଳ ଭୂଇଁରେ ଜିପ୍ ଚଲେଇ ହେବ (ମୁଁ ଅନେକ ଥର କରିଛି)। ଗୋଳା ବାରୁଦ ପରୀକ୍ଷା କଲେ ତା' ସମୁଦ୍ର ଭିତରେ ଥିବା ଲକ୍ଷସ୍ଥଳରେ ବାଜିବ ଓ ତଳେ ପଡ଼ିବ। ମାଟି ଯଦି ଅତି ନରମ ହେବ ତେବେ ଫୁଟିଥିବା ଗୁଳି କାଦୁଅରେ ପଶିଯିବ। ଯଦି ପଥୁରିଆ କିମ୍ବା ଅତି ଟାଣ ହୋଇଥିବ ତେବେ ଚେପା ହୋଇଯିବ। ଇଷତ୍ କଳା, ସେ ମାଟି ଏମିତି ଯେ ଗୁଳି ଚେପା ହୁଏ ନାହିଁ କି ମାଟିରେ ପଶିଯାଏ ନାହିଁ। ପରୀକ୍ଷା ସ୍ଥାନରେ ମୁଁ ଦେଖିଲି ଯେ ବୋଫର୍ସ ପ୍ରସ୍ତୁତ । ସ୍ୱିଡ଼େନ୍‌ରେ ତିଆରି ହୋଇଥିବା ଏହି କମାଣର ଗର୍ଜନରେ ରାଜୀବ ଗାନ୍ଧିଙ୍କ ସରକାରର ପତନ ହୋଇଥିଲା। ଆମ ଦେଶରେ ଖାଦ୍ୟଶସ୍ୟରେ ସ୍ୱାବଲମ୍ବୀ ହେବା ଖବର ଅପେକ୍ଷା ବୋଫର୍ସ ଦୁର୍ନୀତି ଖବର ପ୍ରଥମେ ବ୍ୟାପେ।

ଦୂରବୀକ୍ଷଣ ଯନ୍ତ୍ରରେ ଦେଖିଲି ଯେ କେତେ ମାଇଲ ଦୂରରେ ଅଛି ଟାର୍ଗେଟ୍। ତା'ପରେ ଯାହା ଦେଖିଲି ମୁଁ ଚମକି ପଡ଼ିଲି। ଟାର୍ଗେଟ୍ ତଳେ ଠିଆ ହୋଇଛନ୍ତି ପଚାଶ ଷାଠିଏ ଲୋକ। ଆର୍ମି ଅଫିସରଙ୍କୁ ପଚାରିବାରୁ ସେ ବୁଝେଇଲେ କି ଫାଇରିଂ ପୂର୍ବରୁ ନାଲି ପତାକା ହଲାଯାଏ ଓ ସେମାନେ ମାଟିରେ ଶୋଇପଡ଼ନ୍ତି ଓ ତାଙ୍କ ଦେହ ଉପରେ ଗୋଳା ଯାଇ ଟାର୍ଗେଟ୍‌ରେ ବାଜେ। ସେମାନେ ତାକୁ ନେଇ ପଳାନ୍ତି। ଏଇଭଳି କାମ ପୁରୁଷାନୁକ୍ରମେ ସେମାନେ କରୁଛନ୍ତି। ଯେଉଁଦିନ ଖବର ଦିଆଯାଏ ସେମାନେ ଆସନ୍ତି ନାହିଁ ଓ ଗୋଳା ସଂଗ୍ରହ କରି ପରୀକ୍ଷା ପାଇଁ ଅଣାଯାଏ। ଯଦି ଦୈବାତ୍ କିଏ ଆଘାତ ପ୍ରାପ୍ତ ହୁଏ ତେବେ ଘେର ପିଠିରେ ମଲମ ଲଗାଇବା ଭଳି ତାଙ୍କୁ କ୍ଷତି ପୂରଣ ଦିଆଯାଏ । ଏଥିରେ ବିସ୍ମିତ ହେବାର କିଛି ନାହିଁ। ଦଳେ କୁଳି ନେତା କୌଣସି କାରଣରୁ ତାଙ୍କ ସମର୍ଥକଙ୍କୁ ଧରି ବିଡ଼ିଓ ଅଫିସ ଘେରାଉ କରିବେ, ନିର୍ଦ୍ଦେଶ ଦେଇଥିବେ ଯେ ପୋଲିସ ମାଜିଷ୍ଟ୍ରେଟ୍‌ଙ୍କ କୌଣସି ଅନୁରୋଧକୁ କର୍ଣ୍ଣପାତ କରିବନାହିଁ, ଅଫିସ

ଚାରିପଟେ ଜଗିଥିବା କନେଷ୍ଟବଳଙ୍କୁ ଠେଲାପେଲା କରି ବିଧା ଚାପୁଡ଼ା ମାରିବ ଓ ଇସାରା ପାଇଲା ମାତ୍ରେ ଟେକା ମାରିବ। ବାସ୍, ମେଣ୍ଢା ପଲ ମାଡ଼ିଯିବେ, ଆଦେଶ ଅକ୍ଷରେ ଅକ୍ଷରେ ପାଳନ କରିବେ ଓ ଅବସ୍ଥା ଅସମ୍ଭାଳ ହେଲେ ମାଜିଷ୍ଟ୍ରେଟ୍‌ଙ୍କ ଆଦେଶରେ ପୋଲିସ ପ୍ରଥମେ ଲୁହବୁହା ଗ୍ୟାସ୍ ତା'ପରେ ଲାଠିଚାର୍ଜ ଓ ଅବସ୍ଥା ଆୟତକୁ ନଆସିଲେ ଗୁଳିମାଡ଼ କରେ। ଜଣେ ଅଧେ ମରିବେ ଓ ଅଳ୍ପ କେତେଜଣ ଆଘାତ ପ୍ରାପ୍ତ ହେବେ ତା'ପରେ ଚାଲିବ ଆସେମ୍ବ୍ଲିରେ ଅନ୍ୟାନ୍ୟ ସ୍ଥାନରେ ବାଦ ପ୍ରତିବାଦ ଓ ତୁମୁଳ ହଟଗୋଳ । କେହି କେହି ସମ୍ବାଦ ପତ୍ର ଲେଖିବେ ଯେ ଶାନ୍ତିପୂର୍ଣ୍ଣ ଜନତା ଉପରେ ପୋଲିସର ନିର୍ମମ ଗୁଳିମାଡ଼। ପୋଲିସ ନରରାକ୍ଷସ ସାଜିଗଲାଣି। ଜଣେ ମାଜିଷ୍ଟ୍ରେଟ୍ ଓ ଏଗାର ଜଣ ପୋଲିସ ଆହତ ହେଲେ ତାହା ପ୍ରଥମ ପୃଷ୍ଠାରେ ନ ବାହାରି ଦ୍ୱିତୀୟ ପୃଷ୍ଠାର କୋଣକୁ ବାହାରିବ। ସରକାର ସାଙ୍ଗେ ସାଙ୍ଗେ ଘୋଷଣା କରିବେ ମୃତ ପରିବାରକୁ ଅନୁକମ୍ପା ରାଶି ପ୍ରଦାନ, ଆହତଙ୍କ ଚିକିତ୍ସା ଖର୍ଚ୍ଚ ଓ ତା' ସଙ୍ଗେ ସଙ୍ଗେ ବିଚାର ବିଭାଗୀୟ ତଦନ୍ତ। ତଦନ୍ତ ରିପୋର୍ଟ ବାହାରିବ ଚାରି ପାଞ୍ଚ ବର୍ଷ ପରେ ଓ କୁହାଯିବ ଶୁଙ୍ଘି ଶୁଙ୍ଘି ସୈନ୍ଧବ ଲବଣ ଭଳି ଯେ ଉପଯୁକ୍ତ ପ୍ରତିଷେଧମୂଳକ ନିଆଯାଇପାରି ନାହିଁ। କିନ୍ତୁ ଗୁଳିମାଡ଼ ଯଥାର୍ଥ। ଆମ ଦେଶରେ ଏଇଭଳି ଅନେକ ପ୍ରହସନ ଚାଲିଛି। କେହି ଜଣେ ଏ ପର୍ଯ୍ୟନ୍ତ ପଚାରି ନାହାଁନ୍ତି ଯେ ଆଇନ୍‌ଭଙ୍ଗକାରୀଙ୍କୁ ଯଦି ଅନୁକମ୍ପା ରାଶି ଦିଆଗଲା ତେବେ କର୍ତ୍ତବ୍ୟ କରି ଆହତ ହୋଇଥିବା ସରକାରୀ କର୍ମଚାରୀଙ୍କୁ କାହିଁକି ଅନୁକମ୍ପା ରାଶିରୁ ବଞ୍ଚିତ କରାଯାଉଛି ?

ଚାନ୍ଦିପୁର ଏକଦା ବିରାଟ ବନ୍ଦର ଥିଲା। ଏ ବିଷୟରେ ଫକୀର ମୋହନ ସେନାପତି ତାଙ୍କ ଗଳ୍ପରେ ଓ ଆତ୍ମଜୀବନୀରେ ଲେଖିଛନ୍ତି। ସେତେବେଳେ ଯଦି ବନ୍ଦରର ବିକାଶ କରାଯାଇପାରିଥାନ୍ତା ତେବେ କଲିକତା ବନ୍ଦରର ଆବଶ୍ୟକତା ପଡ଼ିନଥାନ୍ତା ଓ ଚାନ୍ଦିପୁର କଲିକତା ପରି ଏକ ବିରାଟ ନଗରୀ ହୋଇଥାନ୍ତା। ସେ ସମୟର ବାଣିଜ୍ୟର ଶେଷ ନିଦର୍ଶନ ଏପର୍ଯ୍ୟନ୍ତ ବାଲେଶ୍ୱର ସହରରେ ଅଛି। ଫିରିଙ୍ଗି ବଜାର, ଫରାସୀ ବଜାର ଓ ଓଲନ୍ଦାଜ ବଜାରରେ। ସେ ଦେଶର ବଣିକମାନେ ଏଠାରେ ବାଣିଜ୍ୟ କୋଠୀ କରିଥିଲେ ଓ ରପ୍ତାନି ଆମଦାନୀ ବେଶ୍ ଚାଲିଥିଲା।

ଶିମିଳିପାଳ ଦେଖିଲେ ଆନନ୍ଦ ଅପେକ୍ଷା ଦୁଃଖ ବେଶି ଲାଗେ। ଜୀବଜନ୍ତୁଙ୍କର ଶିକାର ଲାଗି ରହିଛି, କାଠ କଟା ଚାଲିଛି। ଅସ୍ତ୍ରଶସ୍ତ୍ର ବିହୀନ ଜଙ୍ଗଲ ବିଭାଗ ରକ୍ଷା କରିବାରେ ଅସମର୍ଥ ହୋଇଛନ୍ତି। ଜଙ୍ଗଲ ବିଭାଗକୁ ତାଙ୍କ ନିୟନ୍ତ୍ରିତ ଅଞ୍ଚଳରେ ପୋଲିସ କ୍ଷମତା ଦିଆଯାଉ ବୋଲି ମୁଁ ବାରମ୍ବାର ପରାମର୍ଶ ଦେଇଛି। ଏବେ ସୀମିତ କ୍ଷମତା ଦିଆଯାଇଛି। ଆଉ ଏକ ସ୍ଥାନ ହେଲା ଦୀଘା। ଜଳେଶ୍ୱରରୁ ଅଳ୍ପ କେତେଦୂର। ସହର

ହେଉଛି ବେଙ୍ଗଲରେ ଏବଂ ସମୁଦ୍ର କୂଳ ହେଉଛି ଓଡ଼ିଶାରେ। ବେଙ୍ଗଲର ଲୋକ ହୋଟେଲ୍ କରି ଲାଭବାନ ହେଉଛନ୍ତି। କଲିକତାରୁ ଦୀଘା ଆସିବା ସହଜ କାରଣ ରାସ୍ତା ଖୁବ୍ ଭଲ କିନ୍ତୁ ଓଡ଼ିଶା ପଟୁ ଯିବା ଭୀଷଣ କଷ୍ଟକର। ରାସ୍ତା ଏତେ ଖରାପ ଯେ ଗାଡ଼ି ଅଭଙ୍ଗା ଅବସ୍ଥାରେ ଫେରିବ ଏଭଳି ପ୍ରତିଶ୍ରୁତି କେହି ଦେଇପାରିବେ ନାହିଁ।

ରାଜନୈତିକ ହସ୍ତକ୍ଷେପ ବିଷୟରେ କିଛି ଲେଖିବା ନିହାତି ଦରକାର। ମୋତେ ଜଣେ ଭଦ୍ରଲୋକ ଫୋନ୍ କଲେ ଓ ଚଡ଼ା ଗଳାରେ ପଚାରିଲେ ଡିଆଇଜି କହୁଛନ୍ତି ? ମୁଁ ହଁ କରିବାରୁ କହିଲେ ମୁଁ ଜନତା ପାର୍ଟିର ପ୍ରେସିଡ଼େଣ୍ଟ କହୁଛି। ଜନତା ପାର୍ଟିର ପ୍ରେସିଡ଼େଣ୍ଟ ଅଶୋକ ଦାସ। ମୋର ପରିଚିତ ଲୋକ। ତେଣୁ କହିଲି ମୁଁ ଅଶୋକ କହୁଛି କହିଲେ କ'ଣ ଯଥେଷ୍ଟ ହବନାହିଁ ? ସେପଟୁ ଉତ୍ତର ଆସିଲା ଅଶୋକ କିଏ ? ତା'ପରେ ମୁଁ ତାଙ୍କୁ ଦୁଇ ତିନୋଟି ପ୍ରଶ୍ନ ପଚାରିଲି ଓ ଜଣାପଡ଼ିଲା ସେ ଏକ ପଞ୍ଚାୟତର ଜନତା ପାର୍ଟିର ପ୍ରେସିଡ଼େଣ୍ଟ। କାହିଁକି ଫୋନ୍ କରୁଛନ୍ତି ପଚାରିବାରୁ ଆଦେଶ ଓ ଚରମ ପତ୍ର ଦେବା ଭଙ୍ଗୀରେ କହିଲେ 'ଆପଣ ୨୪ ଘଣ୍ଟା ମଧ୍ୟରେ ଫାଣ୍ଡି ଜମାଦାରଙ୍କୁ ବଦଳି କରନ୍ତୁ ନଚେତ୍ ମୁଁ ବିଜୁ ବାବୁଙ୍କ ସଙ୍ଗେ କଥାବାର୍ତ୍ତା ହେବି।' ବିଜୁ ବାବୁଙ୍କ ସହିତ କଥାହେବାର ସୁଯୋଗରୁ ବଞ୍ଚିତ ହୁଅନ୍ତୁ ନାହିଁ କହି ଫୋନ୍‌କୁ ଥୋଇଦେଲି। ତୃଣମୂଳ ଓ ମଧ୍ୟମ ସ୍ତରର ନେତାମାନଙ୍କର ଏଭଳି ଅନେକ ଧୂଆଁବାଣ ମିଳିଛି ଓ ତାକୁ ହଜମ କରିବାକୁ ପଡ଼ିଛି। ଜିଲ୍ଲା ସ୍ତରୀୟ ନେତା ଯଥା ଏସ୍‌ପି ଏମ୍.ଏଲ୍.ଏ.ମାନେ ବେଶ୍ ସୂକ୍ଷ୍ମ। କିନ୍ତୁ ବହୁବର୍ଷ ପରେ କ୍ଷମତାକୁ ଆସିଥିବାରୁ ଲଗାମ ଛଡ଼ା ଚିଠିପତ୍ର ଦେଉଥିଲେ। ଯଥା ଅମୁକ ସବ୍‌ଇନ୍ସପେକ୍ଟରକୁ ବଦଳି କରି ଏଭଳି ସ୍ଥାନରେ ଦିଅନ୍ତୁ ଯେପରି ସେ ପଶ୍ଚାତାପ କରିବ । ଥରେ ଜଣେ ଏମ୍.ଏଲ୍.ଏ ମୁହଁ ଫଣ ଫଣ କରି ମୋତେ ଆସି କହିଲେ 'ସାର୍ ଆପଣଙ୍କ ଏସ୍‌ପି ମୋତେ ଅପମାନ ଦେଲା ଭଳି କାମ କଲେ। ମୁଁ ଦୁଇ ଦୁଇ ଥର ଚିଠି ଲେଖିବା ପରେ ଅଫିସରଙ୍କର ବଦଳି କଲେ। ବଦଳି କଲେ ମୁଁ ମାନୁଛି କିନ୍ତୁ ତାକୁ ରାସ୍ତା କଡ଼ ଥାନାକୁ ଦେଇଦେଲେ। ଏବେ ସେ ମୋତେ ଦେଖି ହସୁଛି।' ମୁଁ ବୁଝିବି କହି ଏସ୍‌ପିଙ୍କୁ ପଚାରିବାରେ ଜଣାପଡ଼ିଲା ଯେ ଏମ୍.ଏଲ୍.ଏଙ୍କ ନିର୍ଦ୍ଦେଶ ନୁହେଁ କିନ୍ତୁ ଉକ୍ତ ଅଫିସର ଚାହୁଁଥିଲେ କଲେଜ ଥିବା ଏକ ସ୍ଥାନକୁ ବଦଳି ପାଇଁ। ତେଣୁ ଜାତୀୟ ରାଜପଥ କଡ଼ରେ ଥିବା ଥାନାକୁ ବଦଳି କରାଗଲା। କିନ୍ତୁ ଏମ୍.ଏଲ୍. ଏଙ୍କର ସନ୍ଦେହ ଉକ୍ତ ଅଫିସର ଥାନା ବାରଣ୍ଡାରେ ବସି ପଇସା ସଂଗ୍ରହ କରୁଥିଲେ।

ଭୁବନେଶ୍ୱରରୁ ଜଣେ ମନ୍ତ୍ରୀ ଫୋନ୍ କରି କ୍ରୁଦ୍ଧ ହୋଇ ପଚାରିଲେ ଯେ ଆପଣଙ୍କ ମୟୂରଭଞ୍ଜ ଏସ୍‌ପି ନିଜକୁ କ'ଣ ଭାବୁଛନ୍ତି କି ? ମୁଁ ନିରୀହ ସ୍ୱରରେ ଉତ୍ତର ଦେଲି ମୁଁ କହିପାରିବି ନାହିଁ। ଶ୍ଳେଷଟା ବୁଝିପାରି ସେ ଫୋନ୍ ରଖିଦେଲେ ଓ ଏସ୍‌ପିଙ୍କ ବିରୁଦ୍ଧରେ

ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଅଭିଯୋଗପତ୍ର ପଠାଇଲେ। ଅଭିଯୋଗର ମୁଖ୍ୟ କାରଣ ହେଲା ପୋଲିସ କୁକୁର। ମନ୍ତ୍ରୀ ଯାଇଥିଲେ ସର୍କିଟ୍ ହାଉସ୍‌କୁ। ସେଇଠି କୁକୁରକୁ ଟ୍ରେନିଂ ଦେଉଥିବା କନେଷ୍ଟବଳ କୁକୁରର ବିଭିନ୍ନ ଟ୍ରେନିଂ ଦେଖେଇଲା। ମନ୍ତ୍ରୀ କୃତ୍ୟକୃତ୍ୟ ହୋଇ ୧୦୦ ଟଙ୍କା ପୁରସ୍କାର ଦେଲେ। କିନ୍ତୁ ଫେରିଲା ବେଳକୁ କୁକୁର ମନ୍ତ୍ରୀଙ୍କ ଗାଡ଼ିରେ ମୁତି ଦେଲା। ମନ୍ତ୍ରୀଙ୍କ ସମର୍ଥକମାନେ ଅଭିଯୋଗ କଲେ ଟ୍ରେନିଂ ପାଉଥିବା କୁକୁର କ'ଣ ନିଜ ମନକୁ ମୁତିଲା? ଏସ୍‌ପିଙ୍କ ନିର୍ଦ୍ଦେଶରେ କନେଷ୍ଟବଳ ଏହା କରେଇଲା। ତେଣୁ ମନ୍ତ୍ରୀଙ୍କ ରାଗିବାର ଯଥେଷ୍ଟ କାରଣ ଥିଲା। ପରେ ମୁଁ ତାଙ୍କୁ ବୁଝେଇବାରୁ ତାଙ୍କ କ୍ରୋଧର ଉପଶମ ହେଲା। ଆଉ ଜଣେ ମନ୍ତ୍ରୀ ଏକ ଆଶ୍ରମ ସ୍କୁଲରୁ ଝିଅଟିଏ ନେଇ ଚାଲିଗଲେ। ପାଠକେ ଭାବନ୍ତୁ ନାହିଁ ଯେ ସନ୍ଧ୍ୟା ବେଳେ ନୀତି ଶିକ୍ଷା ପାଇଁ ନେଇଥିଲେ। ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରୁ ମୋତେ ଚିଠି ଆସିଲା ଗୁପ୍ତ ତଦନ୍ତ କରି ଏକ ରିପୋର୍ଟ ଦେବା ପାଇଁ। ଘଟଣାଟା ସତ ବୋଲି ମୁଁ ଲେଖିଦେବାରୁ ସେ ମନ୍ତ୍ରୀ ପଦରୁ ବିଦା ହେଲେ।

## ପୁଣି କଟକ

ଯଦିବା ମୋର ଦୁଇବର୍ଷ ପୂରିନଥିଲା ବାଲେଶ୍ୱରରୁ ବଦଳି ହୋଇ ଯିବା ପାଇଁ ଇଚ୍ଛା କଲି କାରଣ, ଝିଅ (ଜୟଶ୍ରୀ) ଯୁକ୍ତ ୨ ପାସ୍ କଲା। ପ୍ରଶାସନର ମନମୁଖି କାରବାର ପାଇଁ ସେ ବଡ଼ ହଇରାଣ ହେଲା। ମୋତେ ଡି.ଜି ଅଫିସରୁ ପଚାରିବା ପରେ ମୁଁ କହିଥିଲି ଯେ ବାଲେଶ୍ୱର ବ୍ୟତୀତ ଆଉ ଯେଉଁଠିକୁ ବଦଳି କଲେ ଚଳିବ। କାରଣ ଝିଅ ଆଇସିଏସଇ ପାଠ ପଢୁଛି ଓ ବାଲେଶ୍ୱରରେ କେବଳ ସିବିଏସ୍‌ଇ ପାଠ ପଢ଼ାଯାଏ। ମୋତେ ଡି.ଜି ପରେ କହିଲେ ଯେ ତାଙ୍କୁ କୁହାଗଲା ବିପିନ ବାବୁ ଯେକୌଣସି ସ୍ଥାନକୁ ଯିବାପାଇଁ ପ୍ରସ୍ତୁତ। ବାସ୍ ବିପିନ ବାବୁ ଚାଲିଲେ ବାଲେଶ୍ୱର। ଝିଅ ଦୁଇ ବର୍ଷର ପାଠ ଗୋଟିଏ ବର୍ଷରେ ପଢ଼ିଲା ଓ ଭଗବାନ ତାକୁ କିଛି ବୁଦ୍ଧି ଦେଇଥିବାରୁ ସ୍କୁଲ ପିଲାଙ୍କ ମଧ୍ୟରେ ଫାଷ୍ଟ ହେଲା ଏବଂ ଖୁବ୍ ଭଲ ନମ୍ବର ରଖିଲା। ସେ ଓଡ଼ିଶାର କେନ୍ଦ୍ରୀୟ ବିଦ୍ୟାଳୟମାନଙ୍କର ତର୍କ ପ୍ରତିଯୋଗିତାରେ ପ୍ରଥମ ହୋଇଥିଲା। ମୁଁ ଦେଖିଲି ତାକୁ ଯୁକ୍ତ ୩ ପଢ଼ାଇଲେ ଗୋଟିଏ ସ୍ଥାନରେ ତିନିବର୍ଷ ରହିବାକୁ ପଡ଼ିବ, ବାଲେଶ୍ୱରରେ ଆଉ ତିନି ବର୍ଷ ତ ରହିହେବ ନାହିଁ। ତେଣୁ କଟକ ହେଉଛି ପ୍ରକୃଷ୍ଟ ସ୍ଥାନ ଯେଉଁଠି ବହୁତ ଡିଆଇଜି ପୋଷ୍ଟ ଅଛି। ସରକାରଙ୍କୁ ଲେଖିବି କି ନ ଲେଖିବି ଏକଥା ଚିନ୍ତା କରୁଛି, ଦିନେ ଦୁର୍ନୀତି ନିବାରଣର ମୁଖ୍ୟ ଥିବା ରାଜେନ୍ଦ୍ର ମୋହନ ପଟ୍ଟନାୟକ ମୁଁ ଭିଜିଲାନ୍ସ ଆସିବାକୁ ରାଜି କି ବୋଲି ପଚାରିବାରୁ ମୁଁ ସାଙ୍ଗେ ସାଙ୍ଗେ ହଁ କଲି। ସେ ତତ୍‌କ୍ଷଣାତ୍ ସରକାରଙ୍କୁ ଚିଠି

ଲେଖିଦେଲେ। ଏ ଖବର ସରକାରୀ ସ୍ତରରୁ ପାଇ ଡିଜି ପ୍ରଫୁଲ୍ଲ ଚନ୍ଦ୍ର ରଥ ମୋତେ ଫୋନ୍ କଲେ 'କିଓ ତୁମେ ଭିଜିଲାନ୍ସ୍ ଯିବା ପାଇଁ କାହିଁକି ଚାହୁଁଛ? ତୁମେ ବାଲେଶ୍ୱରରେ ତ ଭଲ କାମ କରୁଛ, ସେଇଠେ ଥାଅ।' ଝିଅର ଯୁକ୍ତ ୩ ପାଠ ଏବଂ ତିନି ବର୍ଷ ରହି ହେବନାହିଁ କହିବାରୁ ସେ କହିଲେ 'କାହିଁକି ରହିହେବ ନାହିଁ? ତମେ ରହିବ।' ମୁଁ ମନେ ମନେ ଭାବିଲି ଆପଣ ନିଜେ ତ ବର୍ଷେ ମଧ୍ୟରେ ଅବସର ନେବେ ତିନି ବର୍ଷର ଗ୍ୟାରେଣ୍ଟି କିପରି ଦେଉଛନ୍ତି? ତେଣୁ ମୁଁ ତାଙ୍କୁ ଅନୁରୋଧ କଲି ମୋତେ ପୋଲିସ୍‌ରୁ ଛାଡ଼ି ଦେବା ପାଇଁ ଓ ସେ ରାଜି ହେଲେ। ଖୁସିରେ ବାଲେଶ୍ୱର ଛାଡ଼ି ଆମ୍ଭେମାନେ ଆସିଗଲୁ କଟକ। ଯଥାସମ୍ଭବ ଚାକିରି ଶେଷ ପର୍ଯ୍ୟନ୍ତ ଅର୍ଥାତ୍ ୨୦୦୩ ପର୍ଯ୍ୟନ୍ତ (ସେତେବେଳେ ଅବସର ସମୟ ୫୮ ଥିଲା) ଆଉ ୧୧ ବର୍ଷ ରହିବାକୁ ପଡ଼ିବ, କଟକରୁ ଯଦି ଭାରତ ସରକାରଙ୍କୁ ବଦଳି ନହୁଏ। କଟକ ଛାଡ଼ି ରାଉରକେଲା ଗଲାବେଳେ ଜଣେ ଆଧୁନିକ କବିଙ୍କର କଟକ ପ୍ରତି ଆକର୍ଷଣ ମନେ ପକେଇଥିଲା :–

ମୁଁ ପୁଣି ଆସିବି ଫେରି
ଏଇ କଟକକୁ ଲକ୍ଷେ ବାର
ମୁଁ ପୁଣି ଆସିବି ଫେରି ମଲା ପରେ
ଲକ୍ଷେ ବାର କଟକ ସହର,
ଦେଖିବି କିପରି କେତେ ମନୋହର
ଯେତେ ମୃତ ଧବଳ ଟଗର।

ପ୍ରାରମ୍ଭିକ କିଛି ଅସୁବିଧା ହେଲା ଯଥା: ଘର ପାଇବା ଓ ଝିଅର କଲେଜରେ ଆଡ଼ମିଶନ। ବଡ଼ ଭାଇନା ସେତେବେଳେ ଆଇ.ଜି ପାହ୍ୟାରେ ଥିଲେ ଓ ସେ ମୋ' ପାଇଁ ଆଇପିଏସ୍ ମେସ୍‌ରେ ଗୋଟିଏ ରୁମ୍ କରିଦେଇଥିଲେ। ମୁଁ ସେଠି ନରହି ଦୁଇ ବଖରିଆ ଟ୍ରାନଜିଟ୍ କ୍ୟାମ୍ପରେ ରହିଲି ଓ ଜିନିଷ ଜଣଙ୍କ ଘରେ ରଖେଇ ଦେଲି। ବଦଳି ହେଲା ପରେ ସରକାରୀ ଘରକୁ ମାସ ମାସ ମାଡ଼ିବସିବା ଅଭ୍ୟାସ ମୋର ନାହିଁ। କେବଳ ରାଉରକେଲାରେ କ୍ୱାର୍ଟରକୁ ୧୦, ୧୨ ଦିନ ରଖିବା ପାଇଁ ବାଧ ହେଲି ନଚେତ୍ ସବୁବେଳେ ଦାୟିତ୍ୱ ହସ୍ତାନ୍ତର କରି ଜିନିଷ ସହିତ ମୁଁ ଚାଲିଯାଏ। ଜଣେ ପୋଲିସ ଅଫିସର (ଶ୍ରୀକାନ୍ତ ଘୋଷ) ଯାହାଙ୍କୁ ସରକାର ଆଇଜି ପାହ୍ୟାରେ ଥିଲାବେଳେ ବାଧ୍ୟତାମୂଳକ ଅବସର କରାଇଥିଲେ (ପୋଲିସ ଇତିହାସରେ ପ୍ରଥମ) ସେ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି ଯେ ଗୋଟିଏ ସ୍ଥାନରୁ ଜିଲ୍ଲାରୁ ବଦଳି ପରେ ସେ ସବୁ ଅଫିସରଙ୍କର ଗୁପ୍ତ ଚରିତ୍ର ପଞ୍ଜିକା ଲେଖିଦେଲେ ଓ ତା'ଦ୍ୱାରା ତାଙ୍କର ଜିନିଷ ପତ୍ର ପ୍ୟାକିଂରେ ଘୋର ଅସୁବିଧା ହେଲା। ତାପର ଠାରୁ ସେ ଗୁପ୍ତ ଚରିତ୍ର ପଞ୍ଜିକା ବହୁତ ଦିନ

ପକେଇ ରଖିଲେ ଓ କେବେ କେଉଁଠି ଅସୁବିଧା ହୋଇନି ବୋଲି ଦର୍ଶେଇଛନ୍ତି। ଏଭଳି ଅନୁଭୂତି ମୋର କିମ୍ବା ମୋର ସହକର୍ମୀଙ୍କର କେବେ ହୋଇନାହିଁ। ଅବସର ନେବାର ବହୁ ବର୍ଷ ପରେ ମଧ ବିଭାଗର ସମସ୍ତ ଅଫିସର ଯଥୋଚିତ ସମ୍ମାନ ଦେଖାଉଛନ୍ତି। ଶ୍ରୀ ଘୋଷଙ୍କ କ୍ଷେତ୍ରରେ କାହିଁକି ବ୍ୟତିକ୍ରମ ହେଲା ଏକଥା ସେ ଉଲ୍ଲେଖ କରିନାହାନ୍ତି।

କଟକରେ ପହଞ୍ଚି ଦାୟିତ୍ୱ ନେବାର ତିନି ଚାରି ଦିନ ପରେ ଆଉ ଏକ ଆଦେଶ ବାହାରିଲା ତାହା ହେଉଛି ଭିଜିଲାନ୍ସରୁ ବଦଳି ହୋଇ ସେଣ୍ଟ୍ରାଲ ରେଞ୍ଜ ଡି.ଆଇ.ଜି। ପାଞ୍ଚଟା ଜିଲ୍ଲାର ଏସ୍‌ପି ଗୋଟିଏ ଥର ଡିଆଇଜି ହେବାପରେ ପୁଣିଥରେ ଡିଆଇଜି ହେବା ମୋର ଆଦୌ ଇଚ୍ଛା ନଥିଲା, କିନ୍ତୁ ମୋ' ସହକର୍ମୀମାନେ ଭାବିଲେ ଯେ ମୁଁ ଧରାଧରି କରି ଏ ଇନ୍ଦ୍ରପଦ ପାଇଗଲି। ପ୍ରକୃତରେ ତିକି ଚାହୁଁଥିଲେ ମୁଁ ଭିଜିଲାନ୍ସରୁ ପଳେଇ ଆସେ। ବଦଳି ଆଦେଶ ମିଳିବା ବେଳେ ଭିଜିଲାନ୍ସ ମୁଖ୍ୟ ଥିଲେ ହାଇଦ୍ରାବାଦରେ। ତାଙ୍କୁ ଫୋନ୍‌ରେ ଜଣେଇଲା ମାତ୍ରେ ସେ କହିଲେ 'ତମେ ଯିବ ନାହିଁ ମୁଁ ଫେରିବା ପର୍ଯ୍ୟନ୍ତ।' ତାଙ୍କ ସ୍ଥାନରେ ଯିଏ ଅସ୍ଥାୟୀ ମୁଖ୍ୟ ରହିଲେ ସେ ମୋତେ ଛାଡ଼ିଲେ ନାହିଁ ଅଥଚ ଚିଫ୍ ସେକ୍ରେଟେରୀ ମୋତେ କୈଫୟତ ମାଗିଲେ ଯେ ତୁମେ ସରକାରୀ ଆଦେଶ କାହିଁକି ଉଲ୍ଲଂଘନ କଲ ? ମୁଁ ତାଙ୍କୁ ଉତ୍ତର ଦେଲି ଯେ ଭିଜିଲାନ୍‌ସର ସଚିବ ହେଉଛନ୍ତି ଚିଫ୍ ସେକ୍ରେଟେରୀ ଏବଂ ସ୍ୱତନ୍ତ୍ର ସଚିବ ହେଉଛନ୍ତି ଭିଜିଲାନ୍ସ ମୁଖ୍ୟ। ସେମାନେ ମୋତେ ଦାୟିତ୍ୱ ହସ୍ତାନ୍ତର କରିବା ପାଇଁ ଆଦେଶ ଦେଲେନାହିଁ ଏବଂ ମୁଁ ଯାଇଥାନ୍ତି କେମିତି ଓ ମୋର ଦୋଷ ରହିଲା କେଉଁଠି ? କିଛି ଦିନ ପରେ ଭିଜିଲାନ୍ସର ମୁଖ୍ୟ ରାଜେନ୍ଦ୍ର ମୋହନ ପଟ୍ଟନାୟକ ଫେରିଲେ। ତାଙ୍କର ହୃଦ୍‌ଯନ୍ତ୍ର ଅପରେସନ ହୋଇଥିଲା। ବେଶୀ ପରିଶ୍ରମ କଲେ କାଳେ ତାଙ୍କ ସ୍ୱାସ୍ଥ୍ୟର ଅବନତି ହେବ ସେଇ ବାହାନାରେ ତାଙ୍କୁ ବଦଳି କରିଦିଆଗଲା। ଚିଫ୍ ସେକ୍ରେଟେରୀ ରମାକାନ୍ତ ରଥଙ୍କ ସଙ୍ଗେ ତାଙ୍କର ଆଦୌ ଭଲ ସମ୍ପର୍କ ନଥିଲା।

ଆଣ୍ଟି କରପ୍‌ସନ ଡିପାର୍ଟମେଣ୍ଟ ଭାବେ ଜନ୍ମ ନେଇଥିବା ଭିଜିଲାନ୍‌ସର ପ୍ରଥମ ମୁଖ୍ୟ ହୋଇଥିଲେ ଘନଶ୍ୟାମ ଦାଶ। ତା'ପରେ ଶ୍ରୀକାନ୍ତ ଘୋଷ ମୁଖ୍ୟ ହୋଇ ଅନେକ ଗୁଡ଼ିଏ ନିୟମ କାନୁନ୍ ପ୍ରଣୟନ କଲେ। ୬୦ ମସିହାରେ ଭିଜିଲାନ୍‌ସର ସମ୍ମାନ ସାମାନ୍ୟ ବଢ଼ିଲା କାରଣ ଏହି ବିଭାଗର ରିପୋର୍ଟ ପାଇବା ପରେ ସରକାର ଜଣେ କମିଶନର ପାହ୍ୟାର ଅଫିସରଙ୍କୁ ତଳ ପାହ୍ୟାକୁ ଖସେଇ ଦେଲେ। ସେତେବେଳେ ପାଟଣା ମହାରାଜା ଉପମୁଖ୍ୟମନ୍ତ୍ରୀ ଥିଲେ। ୬୭ ମସିହାରେ ପାଟଣା ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ମୁଖ୍ୟମନ୍ତ୍ରୀ ହେବାରୁ ଭିଜିଲାନ୍‌ସର ଗୁରୁତ୍ୱ ବଢ଼ିଲା ଓ ଜଣେ କମିଶନର (ଡି.ଡି. ସୁରୀ)ଙ୍କ ଘର ଖାନତଲାସ ହେଲା। ଜଣେ ଚିଫ୍ ଇଞ୍ଜିନିୟରଙ୍କ

ବିରୁଦ୍ଧରେ ମଧ୍ୟ ତଦନ୍ତ ହେଲା। ଅଳ୍ପ ହେଲେ ମଧ୍ୟ ଏହିଭଳି ହାତୀ କେତୋଟି ଧରାପଡ଼ିବାରୁ ଜନସାଧାରଣଙ୍କର ଭିଜିଲାନ୍ସ ଉପରେ କିଛି ପରିମାଣର ବିଶ୍ୱାସ ଜନ୍ମିଲା। ତା'ପରେ ମାନ୍ଦାବସ୍ଥା ଲାଗିରହିଲା ୧୯୯୦ ମସିହା ପର୍ଯ୍ୟନ୍ତ। ୭୭ ମସିହାରେ ଭିଜିଲାନ୍ସ ଡିପାର୍ଟମେଣ୍ଟ ଲାଗିପଡ଼ିଲା ବିଦା ହୋଇଥିବା ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥି, ତାଙ୍କ ପୁଅ ତଥାଗତ ଶତପଥି ସେକ୍ରେଟେରୀ ରମାକାନ୍ତ ରଥ ଓ ତାଙ୍କ ସମୟର ଆଇଜି ନରସିଂହ ସ୍ୱାଇଁଙ୍କୁ ଭିଜିଲାନ୍ସ କେସ୍‌ରେ ପକେଇବା ପାଇଁ। ଦୁଇଜଣ ଡିଏସ୍‌ପି (ଯାହାଙ୍କୁ ମୁଁ ଦେଖିଛି ଯେ ସେମାନେ ଇନ୍‌ସ୍‌ପେକ୍ଟର ଥିଲାବେଳେ ମୂଷା ଭଳି ହେଉଥିଲେ) ସେମାନଙ୍କୁ ଶ୍ରୀମତୀ ଶତପଥିଙ୍କ ବିରୁଦ୍ଧରେ ଲଗେଇ ଦିଆଗଲା। ସନ୍ଧ୍ୟା ବେଳେ ଭିଜିଲାନ୍ସ ଥାନାକୁ ଆସିବା ପାଇଁ ତାଙ୍କୁ ତଲବ କରାଗଲା। ତଥାଗତ ଡାଏରୀ ବୋଲି ଏକ କାଗଜ ପ୍ରସ୍ତୁତ କରାଗଲା ଓ ବିଶ୍ୱସ୍ତ ସୂତ୍ରରୁ ଶୁଣାଗଲା ଯେ ତଥାଗତ ଶତପଥିଙ୍କ ଅକ୍ଷର ସଙ୍ଗେ ଜଣେ ସବ୍‌ଇନ୍‌ସ୍‌ପେକ୍ଟରଙ୍କ ଅକ୍ଷର ମିଶୁଥିଲା ଓ ତାଙ୍କ ଦ୍ୱାରା ଏକ ଦଲିଲ୍ ପ୍ରସ୍ତୁତ କରାଗଲା। ସେ ଦଲିଲ୍ ଯିଏ ପଢ଼ିବ ସିଏ ଭାବିବ ଯେ ତଥାଗତ ଶତପଥି ଅନେକ ଦୁଷ୍କର୍ମ କରିଛନ୍ତି। ପୁଣି ଏକ ମନଗଢ଼ା କାହାଣୀ ଯେ ସିଏ କୁଆଡ଼େ ଟିସ୍ (ତଥାଗତ ଇଣ୍ଟେଲିଜେନ୍‌ସି ସର୍ଭିସ୍) ବୋଲି ଏକ ଗୁଇନ୍ଦା ସଂସ୍ଥା ଖୋଲିଥିଲେ ଯାହାକି ଆଇଜି ନରସିଂହ ସ୍ୱାଇଁଙ୍କ ଆଶୀର୍ବାଦରୁ ହୋଇପାରିଥିଲା। ପୋଲିସରେ ବଦନାମ୍ ହୋଇଥିବା ଅନେକ ଅଫିସରଙ୍କୁ ଭିଜିଲାନ୍ସକୁ ନିଆଗଲା। ସେଥିପାଇଁ ଅନେକ ରହସ୍ୟ କରି କହିଲେ 'ହଁ କେବଳ ପଇସା ଖାଇବା ଲୋକ ହିଁ ଅନ୍ୟ ପଇସା ଖାଇବା ଲୋକଙ୍କୁ ହିଁ ଚିହ୍ନି ପାରିବେ।' ଏଇଭଳି ବଦନାମ୍ ହୋଇଥିବା କେତେଜଣ ଡିଏସ୍‌ପିଙ୍କ ଗୁପ୍ତ ଚରିତ୍ର ପଞ୍ଜିକାରେ ଖୁବ୍ ଭଲ ମନ୍ତବ୍ୟ ଦିଆହୋଇଥିବାରୁ ସେମାନେ ଆଇପିଏସ୍ ହୋଇଗଲେ ଓ ଏସ୍‌ପି ଡି.ଆଇ.ଜି ପର୍ଯ୍ୟନ୍ତ ଗଲେ।

୧୯୯୦ ମସିହାରେ ରାଜେନ୍ଦ୍ର ମୋହନ ପଟ୍ଟନାୟକ ଭିଜିଲାନ୍ସର ମୁଖ୍ୟ ହୋଇ ଦାୟିତ୍ୱ ନେବାପରେ ତାଙ୍କର ପ୍ରଥମ କର୍ତ୍ତବ୍ୟ ଥିଲା ମଇଳା ଲୁଗାକୁ କାଚି ସଫା କରିବା। ଭିଜିଲାନ୍ସରେ ଏତେ ଛିଟା ପଡ଼ିଥିଲା ଯେ ତାଙ୍କୁ ବହୁତ ଦିନ ଲାଗିଲା ସଫା କରିବାକୁ। କ୍ଷମତା ଓ ଦାୟିତ୍ୱ ବାହାରକୁ ନଯାଇ ଭିଜିଲାନ୍ସ ନିରପେକ୍ଷ ଭାବେ ତଦନ୍ତ କରିବାକୁ ବହୁତ ବଡ଼ ବଡ଼ ଅଫିସର ଧରାପଡ଼ିଲେ। ବିଜୁ ବାବୁଙ୍କର କଡ଼ା ନିର୍ଦ୍ଦେଶ ଥିଲା ଭିଜିଲାନ୍ସ ବିଭାଗରେ କେହି ହସ୍ତକ୍ଷେପ କରିପାରିବେ ନାହିଁ। ସେଇ ସାହସରେ ଆମେ ତଦନ୍ତ କରୁଥିଲୁ ଏବଂ ସରକାରଙ୍କ ଠାରୁ ଠିକ୍ ସମୟରେ ଆଦେଶ ଆସିଯାଉଥିଲା। କେବଳ ଆଇଏଏସ୍ ଅଫିସରଙ୍କ କ୍ଷେତ୍ରରେ କେତେବେଳେ କେମିତି ସନ୍ଦେହ ପ୍ରକାଶ କରାଯାଉଥିଲା। ତା'ନହେଲେ ବାକି ସବୁ କାମ ସୁରୁଖୁରୁରେ ଚାଲୁଥିଲା। ସେଇ

ସମୟର ଏକ କୌତୂହଳପୂର୍ଣ୍ଣ ଘଟଣାଟିଏ ମନେପଡ଼େ। ଏକ ମୁଲତବୀ ପ୍ରସ୍ତାବ ଆସିଲା ଓ ଆଇଜି ଜରରେ ପଡ଼ିଥିଲେ ଓ ମୋତେ ପଠେଇଲେ ମୁଖ୍ୟମନ୍ତ୍ରୀଙ୍କୁ ବୁଝେଇବା ପାଇଁ। ମୁଁ ଓ ଏସ୍‌ପି ଗଲୁ ଆସେମ୍ବ୍ଲିକୁ। ବିଜୁବାବୁଙ୍କ ସଙ୍ଗେ କଥାବାର୍ତ୍ତା ହେଲା ଏମିତି –

ବିଜୁ ବାବୁ - ହଁ କ'ଣ ହେଲା ? (ବେଶ୍ ଚଢ଼ା ଗଳାରେ)

ମୁଁ - (ଚପା ସ୍ୱରରେ) ସାର୍ ମୁଲତବୀ ପ୍ରସ୍ତାବ।

ବିଜୁ ବାବୁ - ଓଃ ସେଇଟା। ସେ ଲୋକଟାର କିଛି କାମ ନାହିଁକି ନିର୍ବାଚନ ମଣ୍ଡଳୀର କଥା ବୁଝିବା ପରିବର୍ତ୍ତେ ମୁଲତବୀ ପ୍ରସ୍ତାବ ଆଣୁଛି ? ୱେଷ୍ଟ ଅଫ୍ ଟାଇମ୍ (ସମୟ ନଷ୍ଟ)।

ତା'ପରେ କେସ୍‌ଟା ବୁଝେଇଲି। ସେ କଥାଟା ଚଟପଟ ଧରିନିଅନ୍ତି। ହଁ ହେଲା ଯାଅ କହି ଆମକୁ ବିଦା କରିଦେଲେ ଓ ଆମେ ଡ଼େପୁଟି ସେକ୍ରେଟେରୀଙ୍କ ରୁମ୍‌ରେ 'ଚା' ପିଇଲୁ। ଆସେମ୍ବ୍ଲିରେ ଉତ୍ତର ଦେଲା ବେଳେ ବିଜୁ ବାବୁ ସରକାରୀ ଗ୍ୟାଲେରୀକୁ ଅନାନ୍ତି ନାହିଁ କି କୌଣସି କାଗଜ ମଗାନ୍ତି ନାହିଁ। ଉତ୍ତର ଗଳ ଗଳ କହିଦିଅନ୍ତି। ଯଦି କେହି ଅବାନ୍ତର ପ୍ରଶ୍ନ ପଚାରିଲା ହେଡ଼ମାଷ୍ଟ୍ରେ ସ୍କୁଲ ପିଲାଙ୍କୁ ତିଆରିଲା ଭଳିଆ କହିବେ ହଁ ବସ। ବିଜୁ ବାବୁ ବାସ୍ତବରେ ଯେତିକି ଡ଼େଙ୍ଗା ରାଜନୀତିରେ ସେତିକି ଡ଼େଙ୍ଗା, ଓଡ଼ିଆ କହିବେ ଶୁଦ୍ଧ ଭାଷାରେ ଓ ଇଂରେଜି କହିବେ ଜଣେ ସାହେବ ଭଳିଆ। କୌଣସି ଆଦେଶ କୁହେଳିକା ପୂର୍ଣ୍ଣ ନୁହେଁ।

ଏସ୍‌ପି ଅନୁପ ପଟ୍ଟନାୟକ, ଏଆଇଜି ଆଶୁତୋଷ ମିଶ୍ର ଇତ୍ୟାଦି ସେ ସମୟରେ ବେଶ୍ ପରିଶ୍ରମ କରିଛନ୍ତି। ଭିଜିଲାନ୍‌ସରେ ଏସ୍‌ପି, ଡିଆଇଜି ଓ ଆଇଜିଙ୍କ କ୍ଷମତା ନିର୍ଦ୍ଧାରିତ। କେଉଁ କ୍ଷେତ୍ରରେ ଏସ୍‌ପି ଆଦେଶ ଦେବେ, କେଉଁ କ୍ଷେତ୍ରରେ ଡିଆଇଜି ଆଦେଶ ଦେବେ ଓ କେଉଁ କ୍ଷେତ୍ରରେ ଆଇ.ଜି ଆଦେଶ ଦେବେ ତାହା ଲିଖିତ। ରାଜେନ୍ଦ୍ର ମୋହନ ପଟ୍ଟନାୟକ ତାଙ୍କ ପରେ ଅମୂଲ୍ୟ ପଟ୍ଟନାୟକ ଓ ଅମୀୟ ଭୂଷଣ ତ୍ରିପାଠୀ ଏଇ ତିନିଜଣ ମୁଖ୍ୟ କେବେ ଡିଆଇଜିଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରିନାହାଁନ୍ତି ଓ ମୁଁ ଏସ୍‌ପିଙ୍କ କାର୍ଯ୍ୟରେ କେବେ ହସ୍ତକ୍ଷେପ କରିନାହିଁ। ମୁଁ ଭିଜିଲାନ୍‌ସରେ ଥିବା ସମୟରେ ମୋ' ବଡ଼ଭାଇ ଡି.ଜି ପୋଲିସ ହେଲେ। ସେ ୧୯୫୯ ମସିହାର ଆଇପିଏସ୍ ଅଫିସର, ତାଙ୍କ ବ୍ୟାଚର ଅଫିସର ହେଉଛନ୍ତି ରବି ନାରାୟଣ ମହାପାତ୍ର। ଉଭୟ ଏକ ବିଷୟ ଓ ଏକା ସାଙ୍ଗେ ପଢୁଥିଲେ, ଗୋଟିଏ ରୁମ୍‌ରେ ରହୁଥିଲେ; କିନ୍ତୁ ଆଇପିଏସ୍‌ରେ ଶ୍ରୀ ମହାପାତ୍ର ମୋ' ବଡ଼ଭାଇଙ୍କ ଉପରେ ଥିଲେ। ଏକା ବର୍ଷ ଚାକିରି କିନ୍ତୁ ଜଣେ ସିନିୟର ଓ ଜଣେ ଜୁନିୟର। ଜଣେ ଶକ୍ତିଶାଳୀ ମନ୍ତ୍ରୀ ଚାହୁଁଥିଲେ ଶ୍ରୀ ମହାପାତ୍ର ଡିଜି ହୁଅନ୍ତୁ। କିନ୍ତୁ ବିଜୁ ବାବୁ ମୋ' ବଡ଼ ଭାଇଙ୍କୁ ବାଛିଲେ। ତେଣୁ ଶ୍ରୀ ମହାପାତ୍ର ଓ ମୋ'

ବଡ଼ଭାଇଙ୍କ ମଧ୍ୟରେ ସମ୍ପର୍କ ଭଲ ରହିଲା ନାହିଁ ଓ ଦୁଇ ଷଣ୍ଢ ଲଢ଼େଇରେ ବାଛୁରୀ ମଲାପରି ମୁଁ ପରେ କ୍ଷତିଗ୍ରସ୍ତ ହେଲି। ବଡ଼ଭାଇ ଡି.ଜି ଥିଲା ପର୍ଯ୍ୟନ୍ତ ମୋର ପ୍ରମୋଶନ ହେଲାନାହିଁ ଯଦିବା ସେ ସମୟରେ ମୁଁ ଭାରତ ବର୍ଷରେ ସବୁଠାରୁ ସିନିୟର ଡି.ଆଇ.ଜି ଥିଲି। ମୋ'ଠାରୁ ଚାରି ପାଞ୍ଚ ବର୍ଷ ଜୁନିୟର ଅନ୍ୟ ପ୍ରଦେଶରେ ଆଇଜି ହୋଇସାରିଥିଲେ । ତେଣୁ କୌଣସି ଟ୍ରେନିଂରେ ଯିବା ପାଇଁ ମୁଁ ରାଜି ହେଉନଥିଲି। ପୁଣି ବଡ଼ଭାଇ ଡି.ଜି ଥିବା ପର୍ଯ୍ୟନ୍ତ ମୁଁ ପୋଲିସ ମେଡ଼ାଲ ପାଇଲି ନାହିଁ। ନାହିଁ ନାହିଁର ବନ୍ଧନରୁ ମୁକ୍ତ ହେଲି ଯେତେବେଳେ ସେ ସ୍ୱେଚ୍ଛାକୃତ ଅବସର ନେଇ ଷ୍ଟାଫ୍ ସିଲେକ୍ସନ କମିଶନ ଚେୟାରମ୍ୟାନ୍ ଭାବେ ଯୋଗଦାନ କଲାପରେ। ତାଙ୍କ ପରେ ଆସିଲେ ରବିନାରାୟଣ ମହାପାତ୍ର। ମୋ' ଝିଅ ପଢୁଥିଲା ରେଭେନ୍ସା କଲେଜରେ ଯୁକ୍ତ ୩ରେ। ରେଭେନ୍ସା କଲେଜ ସ୍ୱୟଂଚାଳିତ। ସେଇ କଲେଜରୁ ଆଉ କୌଣସି କଲେଜକୁ ସହଜେ ଯାଇହେବ ନାହିଁ। ଏକ ଆଇଜି ପୋଷ୍ଟ ଖାଲି ହେବାରୁ ଓ ଡିଜି ଅଫିସରୁ କୌଣସି ପ୍ରସ୍ତାବ ନଯିବାରୁ ମୁଁ ଚିଫ୍ ସେକ୍ରେଟେରୀଙ୍କୁ ଦେଖାକଲି ଓ ସେ ପ୍ରସ୍ତାବ ମଗେଇଲେ। ଡିଜି ପ୍ରସ୍ତାବ ଦେଲେ ଯେ ମୁଁ ଘରୋଇ ବିଭାଗର ସ୍ୱତନ୍ତ୍ର ସଚିବ ହୋଇଯାଏ। ତା'ମାନେ ପ୍ରତ୍ୟେକ ଦିନ ମୁଁ ଭୁବନେଶ୍ୱର ଯିବା ଆସିବା କରିବି କିମ୍ବା ଭୁବନେଶ୍ୱରରେ ଘର ନେଇ ରହିବି। ଘରୋଇ ବିଭାଗର ସ୍ୱତନ୍ତ୍ର ସଚିବଙ୍କୁ ଡି.ଜି ଅଫିସ୍‌ର କାର୍ ଦିଆଯାଇଥିଲା ଓ ସେ ବ୍ୟବସ୍ଥା ୧୯୮୪ ମସିହାରୁ ପ୍ରଚଳିତ ଥିଲା। ମୁଁ ୧୯୯୪ ମସିହାରେ ସ୍ୱତନ୍ତ୍ର ସଚିବ ହେଲି ଓ ହେବା ମାତ୍ରେ ଏକଦା ମୋ'ଦ୍ୱାରା ଉପକୃତ ହୋଇଥିବା ଜଣେ ଡିଏସ୍‌ପିରୁ ଆଇପିଏସ୍ ହୋଇଥିବା ଅଫିସରଙ୍କୁ ପଠାଗଲା ସେ ଗାଡ଼ିକୁ ନେଇ ଗ୍ୟାରେଜରେ ରଖିଦେବା ପାଇଁ। ଆମ ପୋଲିସରେ ଏମିତି ଅଫିସର ଅଛନ୍ତି ଯାହାକୁ ଡାକିଆଣ କହିଲେ ଧରିଆଣିବେ। ଏ ବାବୁ ଗାଡ଼ି ନେଲେ ଓ ଉବିଟି ପାଖରେ ରଖିଲେ। ମୁଁ ଏ ବିଷୟରେ ଡିଜିଙ୍କୁ ପଚାରିବାରୁ ଏ ବିଷୟ ମୁଁ କିଛି ଜାଣିନି ବୋଲି ସେ କହିଲେ। ଯାହାହେଉ, ହୋମ୍ ଡିପାର୍ଟମେଣ୍ଟରୁ ମୋତେ ଗାଡ଼ିଟିଏ ମିଳିଲା ଓ ଭିଜିଲାନ୍ସ ଏକ ଡ୍ରାଇଭର ଦେଲା। ତା'ପରେ ଡି.ଜି ଅଫିସ୍‌ରୁ ଏକ ଚିଠି ଆସିଲା 'ଯେହେତୁ ଚାକିରି ଭୁବନେଶ୍ୱରରେ ତୁମେ କଟକର ସରକାରୀ ବାସସ୍ଥାନ ଛାଡ଼।' ମୁଁ ଉତ୍ତରରେ ଲେଖିଲି ଏଭଳି ଆଦେଶ କେବଳ ସାଧାରଣ ପ୍ରଶାସନ ବିଭାଗ ଦେଇପାରିବ କାରଣ ଉକ୍ତ ବାସସ୍ଥାନ ପୋଲିସ ବିଭାଗର ନୁହେଁ। ଯାହା କୁହାଯାଏ 'ଫ୍ରାନ୍ସକୁ ଛିଙ୍କ ହେଲେ ୟୁରୋପକୁ ଥଣ୍ଡା ବେମାରୀ ଧରେ।' ସେଇଭଳି ଉପର ଅଫିସର ଦାନ୍ତ କଟ ମଟ କଲେ ତାଙ୍କ ତଳ ହାତ ଉଚେଇ ଦିଅନ୍ତି। ମୁଁ ଯେହେତୁ ଘରୋଇ ବିଭାଗର ସ୍ୱତନ୍ତ୍ର ସଚିବ ଥିଲି ସେଭଳି ଦୁଃସାହସ କେହି କରିନାହାଁନ୍ତି।

ମେମ୍‌ସାହେବମାନଙ୍କର ମିଟିଂ ହୁଏ। ସେଠାରେ ସାଧାରଣ ହିତ ବିଷୟରେ କମ୍ କଥା ହୋଇ ବେଶି କଥାବାର୍ତ୍ତା ହୁଏ କିଏ ନୂଆ ଶାଢ଼ି କିଣିଲା, କାହା ଝିଅ କେଉଁ ପିଲା ସାଙ୍ଗେ ଏପଟ ସେପଟ ହେଉଛି, କିଏ ଭଲ ପୋଷ୍ଟ ମାରିନେଲା ଇତ୍ୟାଦି। ସିନିୟର ଅଫିସରଙ୍କ ସ୍ତ୍ରୀ ଜୁନିୟର ଅଫିସରଙ୍କ ସ୍ତ୍ରୀ ଠାରୁ ମଧ୍ୟ ସିନିୟର– ଏହି ପରମ୍ପରା ଅଛି ଏବଂ ସ୍ୱାମୀ ଆଇ.ଜି ହେଲେ ସ୍ତ୍ରୀଙ୍କର ଆଡ଼ିସନାଲ ଡି.ଜିଟାର ଘଟାଟୋପ। ଯେହେତୁ ପୋଲିସ ପ୍ରଶାସନ ମୋତେ ଏକ ପ୍ରକାର 'ଦେଖିଲା ମାତ୍ରେ ଗୁଳିମାର' ଆଦେଶ ଦେଇଥିଲା ମହିଳା ମହଲରେ ମଧ୍ୟ ମୋ' ସ୍ତ୍ରୀ ପ୍ରତି ଏହା କାର୍ଯ୍ୟକାରୀ କରାଗଲା। ତେଣୁ ସେ କୌଣସି ମିଟିଂକୁ ଗଲେନାହିଁ ଓ ମୁଁ ଆଇପିଏସ୍ ମେସ୍‌କୁ ଗଲିନାହିଁ।

ହୋମ୍ ଡିପାର୍ଟମେଣ୍ଟରେ ମୁକ୍ତ ହାୱା। କାହାକୁ କୈଫିୟତ ଦେବାକୁ ପଡୁନଥାଏ। ଯାହା ଉଚିତ ମନେ କରୁଥିଲି ଲେଖିଦେଇ ଯାଉଥିଲି ଓ କେବେ ଚିଫ୍ ସେକ୍ରେଟେରୀ ଓ ମୁଖ୍ୟମନ୍ତ୍ରୀଙ୍କ ଠାରୁ ପ୍ରତିକୂଳ ମନ୍ତବ୍ୟ ଆସିନାହିଁ। ଡ଼େପୁଟି ସେକ୍ରେଟେରୀ ଓ ଜଏଣ୍ଟ ସେକ୍ରେଟେରୀ ସବୁ ପ୍ରକାର ସହଯୋଗ କରୁଥିଲେ। ସକାଳ ୯ଟାରୁ ମୁଁ କଟକ ଛାଡ଼ି ଯାଉଥିଲି ଫେରୁଥିଲି ପ୍ରାୟ ସନ୍ଧ୍ୟା ଆଠଟାରେ। କ୍ଳାନ୍ତ ଶରୀର ନେଇ, କିନ୍ତୁ ଆତ୍ମ ସନ୍ତୋଷ ସହିତ।

ମୋର ପ୍ରଥମ ପୁସ୍ତକ ହେଉଛି ତୀର୍ଯ୍ୟକ୍ ଦୃଷ୍ଟି। ଛାପିଥିଲେ ଓଡ଼ିଶା ବୁକ୍‌ଷ୍ଟୋର। କୋରାପୁଟରେ ଥିବାବେଳେ ମୋର ସାହିତ୍ୟିକ ଜୀବନ ଆରମ୍ଭ ହୋଇଥିଲା ୧୯୮୦ ମସିହାରେ। ସେତେବେଳକୁ ବୟସ ପ୍ରାୟ ପଇଁତିରିଶ। କୋରାପୁଟରେ ଥିବା ବେଳେ ବଂଶଧାରାର ସହିଦ୍ ନାମକ ଏକ ଶ୍ରଦ୍ଧାଞ୍ଜଳି ଦୈନିକ ସମାଜରେ ଲେଖିଥିଲି ଓ ବହୁତ ପ୍ରଶଂସାମୂଳକ ଚିଠି ପାଇଲା ପରେ ଆଗକୁ ବଢ଼ିବା ପାଇଁ ସାହସ କଲି। ମୋର ଡିଏସ୍‌ପି କୁମାର ମହାନ୍ତି ଜଣେ ପ୍ରତିଷ୍ଠିତ କବି। ଦିନେ ମୋତେ ଆସି ଏକାନ୍ତରେ କହିଲେ 'ସାର୍ ମୁଁ ଗଲା ୨୦ ବର୍ଷ ହେଲା ଲେଖୁଛି, ଲେଖକ ଚିହ୍ନିବାର କଳା ମୋତେ ଭଗବାନ ଦେଇଛନ୍ତି। ମୁଁ ଦେଖୁଛି ଯେତେବେଳେ ଆପଣ ଗୋଟିଏ ଘଟଣା ବର୍ଣ୍ଣନା କରୁଛନ୍ତି ଆପଣଙ୍କ ଶବ୍ଦ ସଂଯୋଜନା ଓ ଭାବ ପ୍ରକାଶ ବେଶ୍ ମନଛୁଆଁ ହେଉଛି। ବେଳେ ବେଳେ ଆପଣଙ୍କ ବ୍ୟଙ୍ଗ ବଡ଼ ଶାଣିତ ଜଣାପଡୁଛି। ଆପଣ ଗପ, ପ୍ରବନ୍ଧ ଓ ଲଘୁକଥା ଲେଖନ୍ତୁ।' ମୋର ଉତ୍ତର ଥିଲା ଯେ 'ମୁଁ ଅନେକ ଲେଖକଙ୍କର କଥା ପଢ଼ିଛି ସେମାନଙ୍କ ଭାଷା ଭଳି ମୁଁ ଲେଖିପାରିବି ନାହିଁ।' କୁମାର ମହାନ୍ତି ବୁଝେଇଲେ 'ଅନ୍ୟର ଭାଷା ଭଳି ଆପଣଙ୍କ ଭାଷା କାହିଁକି ହେବ? ଆପଣ ନିଜ ଶୈଳୀରେ ଲେଖିବେ। ଯେଉଁମାନେ ବର୍ତ୍ତମାନ ବଡ଼ ବଡ଼ ଲେଖକ ହୋଇ ବାହାରିଛନ୍ତି ସେମାନେ ଏକଦା ଟଳ ଟଳ ହେଉଥିଲେ। ଏବେ କଲମ ମୁନ ଟାଣ ହେଲାଣି। ଆପଣଙ୍କର ମଧ୍ୟ ସେଇଆ ହେବ।'

ସେ କହିବାର କିଛି ଦିନ ପରେ ଓଡ଼ିଶା ସାହିତ୍ୟ ଏକାଡ଼େମି 'ଆଦିବାସୀ ସଂସ୍କୃତି ଓ ଓଡ଼ିଆ ସାହିତ୍ୟ'ର ଆଲୋଚନାଚକ୍ର କୋରାପୁଟରେ କଲେ। ବିଖ୍ୟାତ ଲେଖକ ରାଜକିଶୋର ରାୟ ସଭାପତିତ୍ୱ କରୁଥିଲେ। ଖଗେଶ୍ୱର ମହାପାତ୍ର, ସଂକୁନ୍ତଳା ବଳିୟାରସିଂହ, ପ୍ରତିଭା ରାୟ, ପ୍ରଫୁଲ୍ଲ ତ୍ରିପାଠୀ ଇତ୍ୟାଦି ଅନେକ ସୁଲେଖକ ପ୍ରବନ୍ଧ ପାଠ କଲେ ଓ ମୋତେ କୁହାଗଲା ସମୀକ୍ଷା କରିବା ପାଇଁ। ନିଷ୍ଚୟ କୁମାର ମହାନ୍ତି ରାଜକିଶୋର ରାୟଙ୍କୁ କହିଥିବେ। ସମୀକ୍ଷା କରିବା ପାଇଁ ମୋ' ତୁଣ୍ଡକୁ ଭାଷା ଓ ଭାବନା କୁଆଡୁ ଆସିଲା ମୁଁ କହିପାରିବି ନାହିଁ କିନ୍ତୁ କିଛି ପରିମାଣରେ ସଫଳ ହେଲି। ସାହିତ୍ୟ ଏକାଡ଼େମୀ ଦ୍ୱାରା ପ୍ରକାଶିତ ପୁସ୍ତକରେ ମୋର 'ପାଣ୍ଡିତ୍ୟ ପୂର୍ଣ୍ଣ ସମୀକ୍ଷା' ପାଇଁ ପ୍ରଶଂସା କରାଗଲା। କିନ୍ତୁ ସେତେବେଳେ ପଣ୍ଡିତ ତ ଛାଡ଼ନ୍ତୁ ମୁଁ ଅର୍ଦ୍ଧ ପଣ୍ଡିତ ବି ହୋଇନଥିଲି। ସାହିତ୍ୟରେ ଗୁରୁଣ୍ଡିବା ବି ଶିଖିନଥିଲି। ଶିଶୁଟିର ଦରୋଟି ଭାଷାକୁ ସମସ୍ତେ ଭଲପାଇଲା ପରି ବୋଧହୁଏ ସାହିତ୍ୟିକମାନେ ଭଲପାଇଲେ।

ଗଞ୍ଜାମରେ ଏସ୍‌ପି ଥିଲାବେଳେ ଦୈନିକ ସମାଜରେ ଓ ଧରିତ୍ରୀରେ ଓ ଦୈନିକ ଆଶାରେ ଗୋଟିଏ ପରେ ଗୋଟିଏ ଲେଖା ଲେଖିଲି। ସେ ସମସ୍ତକୁ ସଂକଳନ କରି ତୀର୍ଯ୍ୟକ୍ ଦୃଷ୍ଟି ପୁସ୍ତକ ବାହାର କଲି। ଗଞ୍ଜାମରେ ଥିଲାବେଳେ ମୋର ପିଠିରେ ଭୀଷଣ ପୀଡ଼ା ହେବାରୁ ୧୫, ୧୬ ଦିନ ଛୁଟିରେ ରହିଲି କିନ୍ତୁ ଖଟରେ ପଡ଼ିରହି ସମୟ ନଷ୍ଟ କରିବା ପରିବର୍ତ୍ତେ ଗଳ୍ପ ଲେଖିଲି। ସତରଟି ଗଳ୍ପ ଆଦିବାସୀ ସଂସ୍କୃତିକୁ ନେଇ। ଓଡ଼ିଶାର ବିଭିନ୍ନ ଅଞ୍ଚଳର ୧୭ଟି ଆଦିବାସୀ ଗୋଷ୍ଠୀ ଯଥା - ପରଜା କନ୍ଧ, କୁଇ କନ୍ଧ, ସଉରା, ଲାଞ୍ଜିଆ ସଉରା, ବଣ୍ଡା, ସାନ୍ତାଳ, ଓରାମ୍ ଓ ଡଙ୍ଗରିଆ କନ୍ଧ ଇତ୍ୟାଦିଙ୍କ ଜୀବନୀ ଶୈଳୀକୁ ନେଇ ୧୭ଟି ଗଳ୍ପ ସଂକଳନକୁ ଦେଲି ବରହମ୍‌ପୁରର ବିଜୟ ବୁକ୍ ଷ୍ଟୋର୍‌କୁ ଓ ସାଙ୍ଗେ ସାଙ୍ଗେ ପ୍ରକାଶିତ ହେଲା। ପୁସ୍ତକ ଉନ୍ମୋଚନ କଲେ ବିଖ୍ୟାତ ଲେଖକ ଡକ୍ଟର ବେଣୀମାଧବ ପାଢ଼ୀ। ତା'ପରେ ବ୍ୟଙ୍ଗ ଗଳ୍ପର ସମାହାର 'ଦାରୋଗା ସାହିତ୍ୟିକ' ବାହାରିଲା। ୧୯୮୪ ମସିହାରେ ଗ୍ରନ୍ଥ ମନ୍ଦିର ପ୍ରକାଶ କଲା କ୍ଷୁଦ୍ର ଗଳ୍ପର ସମାହାର 'ମନର ମୁକୁର' ଏଇ ଗଳ୍ପ ସମାହାରଟି ଜଣେ କିଏ ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଁ ପଠାଇଲେ ଓ ଚୟନ କମିଟି ତାକୁ ନମ୍ବର ୧ର ସ୍ଥାନ ଦେଲେ କିନ୍ତୁ କୌଣସି କାରଣରୁ ସେ କମିଟିର ସୁପାରିଶକୁ ବାତିଲ କରି ନୂଆ କମିଟି କରାଗଲା ଓ ଗଳ୍ପ ପାଇଁ ଆଉ ଜଣେ ପାଇଲେ। ତା'ପରେ ମୁଁ ରାଉରକେଲା ଯିବାରୁ ବିଶେଷ କିଛି ଲେଖାଲେଖି କରିପାରିଲି ନାହିଁ। କିନ୍ତୁ ବହୁତ ଗଳ୍ପ ହିନ୍ଦୀ, ତେଲଗୁ ଓ ମାଲାୟଲମ ଭାଷାରେ ଅନୁଦିତ ହେଲା। ଦୁଇଟି ଅନୁଦିତ ପୁସ୍ତକ ହିନ୍ଦୀ ଭାଷାରେ ପ୍ରକାଶିତ ହେଲା। କଟକକୁ ଫେରି ଆସିବା ପରେ ମୋତେ ଜଣେ ଭଦ୍ରଲୋକ ବାରମ୍ବାର ଉପଦେଶ ଦେଲେ ଉପନ୍ୟାସ ଲେଖିବା

ପାଇଁ। ମୁଁ ସେତେବେଳେ କ୍ଷୁଦ୍ର ଗଳ୍ପ ଲେଖୁଥିଲି। ଉପନ୍ୟାସର ଶୈଳୀ ଭିନ୍ନ, ପୁଣି ଭାବନା ଉପସ୍ଥାପନା କରିବାକୁ ହେଲେ ବହୁତ କିଛି ଉପାଦାନ ସଂଗ୍ରହ କରିବାକୁ ପଡ଼ିବ। ଏସବୁ ଦୃଷ୍ଟିରୁ ପଛଘୁଞ୍ଚା ଦେଉଥିଲି କିନ୍ତୁ ଯେମିତି କୁମାର ମହାନ୍ତି ମୋତେ ପାଣିକୁ ଠେଲି ପହଁରା ଶିଖେଇଲେ, ଏ ଭଦ୍ରଲୋକ ମୋତେ ଉପନ୍ୟାସ ଲେଖିବାକୁ ସେମିତି ପ୍ରବର୍ତ୍ତେଇଲେ। ଯେହେତୁ ମୁଁ ଡାକେ ଓ ଅନ୍ୟ ଜଣେ ଲେଖେ ତେଣୁ ଅଫିସ ସମୟ ପରେ ପ୍ରତିଦିନ ଦଶ ବାର ପୃଷ୍ଠା ଡାକେ। ୧୯୯୨ ଏପ୍ରିଲ ୨୩ ତାରିଖ ଆରମ୍ଭ କଲି ଓ ମେ ୧୯ ତାରିଖରେ ସରିଲା ମୋର ପ୍ରଥମ ଉପନ୍ୟାସ 'ସହରର ଉପକଣ୍ଠେ'ର ଲେଖା। ୧୯୯୩ରେ ଏହା ପ୍ରକାଶିତ ହେଲା ଓ ସେଇବର୍ଷ ଶ୍ରେଷ୍ଠ ଉପନ୍ୟାସ ବୋଲି ବିବେଚିତ ହୋଇ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହେଲା।

ସ୍ୱତନ୍ତ୍ର ସଚିବ ଥିଲାବେଳେ ଅନେକ ଲେଖା ଲେଖିଛି ସେ ବିଷୟରେ ପରେ କହିବି। ଯେଉଁଦିନ କାର୍ଯ୍ୟଭାର ଗ୍ରହଣ କରିବା ପାଇଁ ଗଲି ମୋତେ ହୋମ୍ ସେକ୍ରେଟେରୀ ଅଭୟ ରଥ କହିଲେ ଯେ ସିଆରପିର ବହୁ ଜୱାନ ସାରା ନୟାପଲ୍ଲୀ ଅଞ୍ଚଳରେ ପିଟା ମରା କରି ଅନେକ ଲୋକଙ୍କୁ ଆଘାତ କରୁଛନ୍ତି ଏବଂ ଦୋକାନ ଭାଙ୍ଗି ଦେଇଛନ୍ତି। ସେ ଓ ମୁଁ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଗଲୁ। ସବୁ ଶୁଣି ବିଜୁବାବୁ ରାଗରେ ଅଗ୍ନିବାଣ। ପ୍ରାଇଭେଟ୍ ସେକ୍ରେଟେରୀଙ୍କୁ କହିଲେ ଲଗାଅ ଚଉନଙ୍କୁ (ସ୍ୱରାଷ୍ଟ୍ରମନ୍ତ୍ରୀ)। ସ୍ୱରାଷ୍ଟ୍ରମନ୍ତ୍ରୀଙ୍କ ଦପ୍ତରରୁ କିଏ ଜଣେ ଫୋନ୍ ଉଠେଇ କହିଲା ଯେ ସିଏ ମିଟିଂ କରୁଛନ୍ତି। ବିଜୁବାବୁ ଅଧୈର୍ଯ୍ୟ ହୋଇ କହିଲେ 'ତୁମେ ଲାଇନ୍ ଦେଲ ସେ କ'ଣ କରୁଛନ୍ତି ମୁଁ କ'ଣ ପଚାରୁଛି ?' ସେ ଲୋକ ସାଙ୍ଗେ ସାଙ୍ଗେ ଲାଇନ୍ ଦେଇଦେଲେ ଓ ବିଜୁବାବୁ ଇଂରେଜୀରେ କହିଲେ 'ଆପଣଙ୍କ ଜୱାନମାନେ ମୋର ରାଜ୍ୟବାସୀଙ୍କୁ ବାଡ଼େଇଛନ୍ତି, ସିଆରପିଙ୍କୁ ତୁରନ୍ତ ଓଡ଼ିଶାରୁ ଉଠେଇ ନିଅନ୍ତୁ' କହି ଫୋନ୍ ଥୋଇଦେଲେ। ଆମକୁ କହିଲେ ଯାଅ। ସେଦିନ ସନ୍ଧ୍ୟାରେ ଘରକୁ ଫେରି ଟିଭିରେ ଦେଖିଲି ଯେ ଏକ ତଦନ୍ତ କମିଟି କରାଯାଇଛି । ତଦନ୍ତ ମୁଁ କରିବି ଓ ସିଆରପିର ଜଣେ ଆଇଜି ମୋତେ ସାହାଯ୍ୟ କରିବେ। ୧୫ ଦିନ ମଧ୍ୟରେ ରିପୋର୍ଟ ଦିଆଯିବ ଓ ବିଧାନସଭାରେ ପେଶ୍ କରାଯିବ। ତା'ପରଦିନ ସକାଳୁ ଅଫିସ ଯିବା ପରିବର୍ତ୍ତେ ମୁଁ ସିଆରପିକୁ ଗଲି। ବିଭିନ୍ନ ସିଆରପି ଅଫିସର, ପୋଲିସ ଅଫିସର, ଜନସାଧାରଣଙ୍କର ବକ୍ତବ୍ୟକୁ ଲିପିବଦ୍ଧ କରି ରିପୋର୍ଟ ଦେଇଦେଲି ଓ ସରକାର ତାକୁ ଗ୍ରହଣ କରି ବିଧାନସଭାରେ ପେଶ୍ କଲେ ଓ ଏକ ନକଲ ଭାରତ ସରକାରଙ୍କୁ ଦେଲେ। ଦୁଇଟି ଜାତୀୟ ଖ୍ୟାତିସମ୍ପନ୍ନ ଖବରକାଗଜ ରିପୋର୍ଟରେ ନିରପେକ୍ଷତା ନେଇ ପ୍ରଶଂସା କଲେ। କିଛିଦିନ ପରେ ସିଆରପିର ଡିଜି ଆସି ମୋତେ ଡିନରକୁ ନିମନ୍ତ୍ରଣ କଲେ ଓ କହିଲେ ମୁଁ ଶୁଣୁଥିଲି ତୁମ ଉପରେ ଋପ ପଡୁଥିଲା ଯେ

ସିଆରପିକୁ ଓଡ଼ିଶାରୁ ହଟେଇବାକୁ ରିପୋର୍ଟରେ ପ୍ରସ୍ତାବ ଦେବା ପାଇଁ। ମୁଁ ତାଙ୍କୁ ଆଶ୍ୱାସନା ଦେଲି ଯେ ଏଭଳି କିଛି ଋପ ପଡ଼ିନାହିଁ। କିନ୍ତୁ ଏକ ଖବରକାଗଜ ମାଧ୍ୟମରେ ପ୍ରସ୍ତାବ ଦିଆଯାଇଥିଲା। ମୁଖ୍ୟମନ୍ତ୍ରୀ କିମ୍ବା କୌଣସି ମନ୍ତ୍ରୀ ଏ ବିଷୟରେ ଋପ ପକେଇ ନାହାଁନ୍ତି।

ଆସେମ୍ବ୍ଲି ଋଲିଥିବା ସମୟରେ ବହୁତ କାମ ପଡ଼େ। ଢ଼ିଙ୍କିଆଳ ଠାରୁ ଆରମ୍ଭ କରି ଢ଼େଙ୍କାନାଳ ପର୍ଯ୍ୟନ୍ତ ବହୁ ବିଷୟରେ ଆସେମ୍ବ୍ଲିରେ ପ୍ରଶ୍ନ ପଚରାଯାଏ ଯଥା - ନବରଙ୍ଗପୁରର ଅମକ ଗାଁରେ ଅମୁକ ଲୋକର ମର୍ଡ଼ର ହେଲା। ତିନି ଦିନ ପରେ କାହିଁକି ଆସାମୀ ଧରାପଡ଼ିନାହିଁ ? ବାସ୍ ଋଲିଲା ଖୋଳତାଡ଼। ଏସ୍‌ପି ନବରଙ୍ଗପୁରକୁ ଯିବ ଫାକ୍ସରେ ତୁରନ୍ତ ଉତ୍ତର ଦେବା ପାଇଁ। ଏଣେ ଡିଜି ଅଫିସକୁ ଯିବ ଫାକ୍ସ ତାଙ୍କ ମନ୍ତବ୍ୟ ଦେବା ପାଇଁ। ଜିଲ୍ଲାମାନଙ୍କୁ ସହଯୋଗ ମିଳୁଥିଲା କିନ୍ତୁ ଡିଜି ଅଫିସ ଅଧିକାଂଶ ସମୟ ନିରବ ରହୁଥିଲେ। ଚିଠି ପରେ ଚିଠି ଗଲେ ମଧ୍ୟ ଉତ୍ତର ଦେଉନଥିଲେ। ଗୃହ ବିଭାଗ ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲାଭଳି ଜଣାପଡୁଥିଲା ଏବଂ ଘରୋଇ ବିଭାଗକୁ ଅନୌପଋରିକ ଭାବରେ ପରିଋଳନା କରୁଥିବା ଜଣେ ମନ୍ତ୍ରୀ ମହାଶୟଙ୍କ ନିକଟରେ ଅଭିଯୋଗ କରାଗଲା ଯେ ବିପିନ ମିଶ୍ରଙ୍କୁ ଏତେ କ୍ଷମତା କାହିଁକି ଦିଆଯାଇଛି ? ମୋତେ ମନେ ହେଲା ସତେ ଯେମିତି ଡି.ଜି ଅଫିସର ଘରୋଇ ବିଭାଗ ସହିତ ଅପଡ଼ର କାରଣ ହେଲି ମୁଁ; କିନ୍ତୁ ପୋଲିସ ବିଭାଗକୁ ଯେତେ ପ୍ରକାର ସାହାଯ୍ୟ କରାଯାଇପାରେ କରୁଥିଲି ମୁଁ।

ଅଫିସରମାନେ ସାଧାରଣତଃ ବିଜୁ ବାବୁଙ୍କୁ ଭୟ କରନ୍ତି। ତାଙ୍କୁ ନା କହିବା ମାନେ ଗରମ ପାଣିରେ ଆଙ୍ଗୁଠି ପୁରାଇବା ସଙ୍ଗେ ସମାନ। ସେ ଋହୁଁଥିଲେ ଆଗେଇ ଯିବା ପାଇଁ। ନିୟମ ଥାଉ କିମ୍ବା ନଥାଉ। କଥା ନାହିଁ କଲା ମାତ୍ରେ ବିଗିଡ଼ି କହିବେ 'ସବୁ କଥାରେ ରୁଲ୍। ତୁମମାନଙ୍କ ଆଉକିଛି କଥାନାହିଁ।' ତାଙ୍କୁ କିଏ ବୁଝେଇବ ଯେ କମ୍ପାନୀ ପ୍ରଶାସନ ଓ ସରକାରୀ ପ୍ରଶାସନ ମଧ୍ୟରେ ବହୁତ ପ୍ରଭେଦ। କମ୍ପାନୀର ଆଦର୍ଶ ଥିଲା ଯେକୌଣସି ମତେ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା। ସରକାରୀ କଳର ଆଦର୍ଶ ହେଲା 'ଦେଖ ରୁଲ୍ କ'ଣ କହୁଛି।' ଲକ୍ଷ୍ୟ ସ୍ଥଳ ଚୁଲିକୁ ଯାଉ ପଛେ। କିନ୍ତୁ ସବୁ କଥା ବୁଝେଇ ଲେଖି ଦେଇଦେଲେ ବିଜୁବାବୁ ରାଜି ହୋଇଯାଆନ୍ତି। ବେଳେ ବେଳେ ତାଙ୍କ ଆଦେଶ ଭ୍ରୁକୁଞ୍ଚନ କରାଏ ଯଥା 'ସ୍ୟାକ୍ ହିମ୍'। କିଓ ଏହା ଅର୍ଥ କ'ଣ ସସ୍‌ପେଣ୍ଡ ହେବ, ଡିସ୍‌ମିସ୍ ହେବ ନା ବଦଳି ହେବ। ତାଙ୍କୁ ପଋରିବ ବା କିଏ ? ଥରେ ଫୁଲବାଣୀରେ ତାଙ୍କ ଜନତା ପାର୍ଟିର ଜଣେ କର୍ମକର୍ତ୍ତା ମୋତେ ଦିନ ପ୍ରାୟ ୧୧ଟା ବେଳେ ଦେଖାକଲେ, କାଗଜ ଖଣ୍ଡେ ଧରେଇ ଦେଲେ ଓ କହିଲେ ଆଜି ସୁଦ୍ଧା ଅର୍ଡ଼ର ବାହାର କରି ଦିଅନ୍ତୁ। କାଗଜଟି

ପଢ଼ି ଦେଖିଲି ଏହା ଏକ ଦରଖାସ୍ତ ଓ ସେ ଭଦ୍ର ଲୋକ ଲେଖିଛନ୍ତି ଯେ ପୋଲିସ ପ୍ୟାରେଡ଼ ଗ୍ରାଉଣ୍ଡକୁ ଜିଲ୍ଲା କ୍ରୀଡ଼ା ସମିତିକୁ ହସ୍ତାନ୍ତର କରାଯାଉ ଓ ଏହାକୁ ଏକ ଷ୍ଟାଡ଼ିୟମ୍‌ରେ ପରିଣତ କରାଯିବ। ପୋଲିସ ବାଲା ଯେତେବେଳେ ଚାହିଁବେ ପ୍ୟାରେଡ଼ କରିବା ପାଇଁ ଅନୁମତି ଦିଆଯିବ। ମନେହେଲା ଯେ ବିଜୁ ବାବୁ ପଢ଼ିନାହାଁନ୍ତି, ସେ ଭଦ୍ରଲୋକ ଯାହା କହିଛନ୍ତି ତାହା ବିଶ୍ୱାସ କରି 'ଘରୋଇ ବିଭାଗ ତୁରନ୍ତ ଆଦେଶ ପଠାଅ' ବୋଲି ଲେଖି ଦେଇଛନ୍ତି। ସେ କାଗଜ ସାଙ୍ଗେ ଏକ ନୋଟ୍ ସିଟ୍‌ରେ ଲେଖି ପଠେଇଲି 'ବିଭିନ୍ନ ସ୍ଥାନରେ ମୁଖ୍ୟମନ୍ତ୍ରୀ ମହାଶୟ କହି ଆସୁଛନ୍ତି ଯେ ପୋଲିସ ବିଭାଗରେ ଶୃଙ୍ଖଳା ଓ ଶାରୀରିକ କୁଶଳତା ତଥା ସଚ୍ଚୋଟତା ବୃଦ୍ଧି ପାଇବା କଥା। ଶୃଙ୍ଖଳା ଓ ଶାରୀରିକ କୁଶଳତା ବୃଦ୍ଧି ପାଇବ ଯଦି ପ୍ରତିଦିନ ଶାରୀରିକ ବ୍ୟାୟାମ ଓ ପ୍ୟାରେଡ଼ କରାଯିବ। ଯଦି ପୋଲିସ ପ୍ୟାରେଡ଼ ଗ୍ରାଉଣ୍ଡକୁ ଏକ ଅନୁଷ୍ଠାନ ହାତରେ ଟେକି ଦିଆଯିବ ତେବେ ପ୍ରଶିକ୍ଷଣ ବାଧା ପାଇବ ଓ ମୁଖ୍ୟମନ୍ତ୍ରୀଙ୍କ ଆଦେଶ ଆଦେଶରେ ହିଁ ରହିଯିବ। ସେହିଦିନ ଫାଇଲ ଫେରି ଆସିଲା, ଆଦେଶ ପ୍ରତ୍ୟାହୃତ ହୋଇ। ସେହି କଥା ମୁହଁରେ କହିଥିଲେ ସେ ମାର ନମାର ହୋଇଥାନ୍ତେ। ସରକାରୀ କର୍ମଚାରୀ ଛାଡ଼ ବିଜୟ ମହାପାତ୍ର, ନରସିଂହ ମିଶ୍ରଙ୍କୁ ଛାଡ଼ି ପ୍ରାୟ ସବୁ ମନ୍ତ୍ରୀ ତାଙ୍କୁ ଡରୁଥିଲେ। ଏ ଦୁଇ ମନ୍ତ୍ରୀ ତାଙ୍କ କାର୍ଯ୍ୟରେ ବେଶ୍ ପାରଦର୍ଶୀ। କହିବା, ଲେଖିବା ଓ ବୁଝିବାରେ ବେଶ୍ ଦକ୍ଷ।

ଥରେ ଜନତା ପାର୍ଟିର ଜଣେ ଏମ୍.ଏଲ୍.ଏ ଅଭିଯୋଗ କଲେ ଯେ ତାଙ୍କୁ ସେକ୍ରେଟେରୀଏଟ୍‌ର ସର୍ଜେଣ୍ଟ ପରିଚୟ ଦେବା ସତ୍ତ୍ୱେ ବି ଜୋତାରେ ପିଟି ତାଙ୍କ ରୁମ୍‌କୁ ନେଲେ। ମୋତେ କୁହାଗଲା ତଦନ୍ତ କରି ସନ୍ଧ୍ୟା ୫ଟା ସୁଦ୍ଧା ରିପୋର୍ଟ ଦେବା ପାଇଁ। ମୁଁ ଆଇନ୍ ମନ୍ତ୍ରୀ ନରସିଂହ ମିଶ୍ରଙ୍କ ରୁମ୍‌ରେ ସେ ଏମ୍.ଏଲ୍.ଏଙ୍କୁ ଦେଖିଲି। ତାଙ୍କ ସାଙ୍ଗରେ ଆଉ ୧୦-୧୨ ଜଣ ଏମ୍‌ଏଲ୍‌ଏ (ସମସ୍ତେ ପଶ୍ଚିମାଞ୍ଚଳର) ବସିଥିଲେ। ମୋ' ଅନୁରୋଧ କ୍ରମେ ଅନ୍ୟ ଏମ୍.ଏଲ୍.ଏମାନେ ବାହାରିଗଲେ ଓ ଅଭିଯୋଗକାରୀଙ୍କ ବକ୍ତବ୍ୟ ଲିପିବଦ୍ଧ ହେଲା। ସର୍ଜେଣ୍ଟ ଲିଫ୍ଟ ପରିଚାଳକ ଓ କେତେଜଣ ସଚିବାଳୟ କର୍ମଚାରୀଙ୍କର ବକ୍ତବ୍ୟ ଲେଖାଗଲା। ମୁଁ ଏମ୍.ଏଲ୍.ଏଙ୍କୁ ଯେତେବେଳେ ପଚାରିଲି 'ସର୍ଜେଣ୍ଟ ଯେତେବେଳେ ଆପଣଙ୍କୁ ଜୋତାରେ ପିଟିଲେ କେଉଁ ପାଦର ଜୋତାଟା ଖୋଲି ପିଟିଲେ? ୨ୟରେ ଜୋତାଟାକୁ ପାପୁଲିରେ ଧରି ହେବ କି? ଆପଣ କହୁଛନ୍ତି ଯେ ଗୋଟିଏ ହାତରେ ଆପଣଙ୍କୁ ଧରିଲେ ଓ ଆର ହାତରେ ଜୋତାରେ ପିଟିଲେ। ଏକଥା କିପରି ସମ୍ଭବ ହେଲା? ଆଉ ଗୋଟିଏ କଥା ହେଉଛି ଆପଣ କହିଲେ ଜୋତା ମାଡ଼ ହେଲା। ସେ କଥା ନିଶ୍ଚୟ ଖବରକାଗଜରେ ବାହାରିବ ଓ ଆପଣ ନିଜ ନିର୍ବାଚନ ମଣ୍ଡଳୀରେ ମୁଣ୍ଡ ଟେକି ଚାଲିପାରିବେ ତ?' ମୋ' କଥା ଶୁଣି ଉତ୍‌କ୍ଷିପ୍ତ ହୋଇ ସେ

କହିଲେ 'ନାଇଁ ଆଜ୍ଞା ଜୋତା ଫୋତା ନାଇଁ ମାରି, ହେପେଲେଇ ହେଫେଲେଇ (ଠେଲି ଠେଲି) ନେଇଗଲେ। ଏ ଜୋତା କଥା ମୋ' ସାଙ୍ଗମାନେ କହିବା ଲାଗି କହିଲେ, ପ୍ରକୃତ ଘଟଣା ହେଉଛି ଯେ ତାଙ୍କର ଏକ ବଦଳି ପ୍ରସ୍ତାବକୁ ବିଜୁବାବୁ ଗ୍ରହଣ ନକରିବାରୁ ସେ ଉତ୍ୟକ୍ତ ହୋଇ ଆସିଥିଲେ ଓ ଲିଫ୍ଟ ପାଖରେ ତାଙ୍କର ଜଣେ ସାଙ୍ଗ ବଦଳି ପ୍ରସ୍ତାବ କ'ଣ ହେଲା ପଚାରିବାରୁ ସେ ବ୍ରହ୍ମାଣ୍ଡ କମ୍ପେଇବା ସ୍ୱରରେ କହିଲେ 'ଏ ଶଳା ବିଜୁ ପଟ୍ଟନାୟକକେ ଭରସା ନାହିଁ। କିଛି ନାଇଁ କରବାର।' ପାଟି ଶୁଣି ଲୋକ ଜମିଗଲେ ଓ ଉତ୍ତେଜନା କମେଇବା ପାଇଁ ସର୍ଜେଣ୍ଟ ତାଙ୍କୁ ରୁମ୍‌କୁ ନେଇ କଫି ପିଆଇଲେ। ଏ ସମସ୍ତ କଥା ରିପୋର୍ଟରେ ଲେଖି ପଠେଇ ଦେବାରୁ ବିଜୁ ବାବୁଙ୍କ ଆଦେଶ ହେଲା 'ମୁଁ ତାକୁ ନିଜ ବାଟରେ ଠିକଣା କରିବି।' ସେ ଲୋକଙ୍କୁ ନିର୍ବାଚନରେ ଟିକେଟ୍ ମିଳିଲା ନାହିଁ।

ସେ ସମୟରେ ଜେଲ୍ ମାନ୍ୟୁଆଲ୍‌ର ସଂଶୋଧନ କରିବା ଦାୟିତ୍ୱ ମୋର ଥିଲା। କମିଟିର ଚେୟାରମ୍ୟାନ୍ ମୁଁ, ଜେଲ୍ ବିଭାଗର ଆଇ.ଜି ଓ ଆଇନ୍ ବିଭାଗର ଜଏଣ୍ଟ ସେକ୍ରେଟେରୀ ଥିଲେ ମେମ୍ବର। ଶହେରୁ ଊର୍ଦ୍ଧ୍ୱ ବର୍ଷର ପୁରୁଣା ମାନୁଆଲକୁ ସଂଶୋଧନ କରିବା କଷ୍ଟସାଧ ଥିଲା। କିନ୍ତୁ ଏକ ତୃତୀୟାଂଶ ପର୍ଯ୍ୟନ୍ତ ଆମେ ଆଗେଇଲୁ।

ସେତେବେଳେ କନ୍ଧମାଳରେ କନ୍ଧ ଓ ପାଣଙ୍କ ମଧ୍ୟରେ ସଂଘର୍ଷ ଲାଗିଲା। ପାଣମାନେ ଅପେକ୍ଷାକୃତ ଶିକ୍ଷିତ। ତାଙ୍କ ମଧ୍ୟରେ ଅନେକ ଆଇଏଏସ୍, ଆଇପିଏସ୍, ଡେପୁଟି କଲେକ୍ଟର ଚାକିରି ପାଇଛନ୍ତି। ଅଣ୍ଟିରେ ପଇସା ବେଶି। ତାଙ୍କ ମଧ୍ୟରୁ ଅନେକ କନ୍ଧମାନଙ୍କୁ ଧାର ଦେଇ ବହୁତ ସୁଧ ଆଦାୟ କରନ୍ତି। ଲାଞ୍ଚୁଆ ସରକାରୀ କର୍ମଚାରୀ ଓ କନ୍ଧଙ୍କ ମଧ୍ୟରେ ଏମାନେ ଦଲାଲି କରନ୍ତି। ପୁଣି କେତେକ କନ୍ଧମାନଙ୍କୁ ଖ୍ରୀଷ୍ଟିୟାନ ହେବା ପାଇଁ ପ୍ରବର୍ତ୍ତାନ୍ତି। ଫୁଲବାଣୀର କେତେକ ପାଣ ଖ୍ରୀଷ୍ଟିୟାନ ହୋଇ ମଧ୍ୟ ସରକାରୀ କାଗଜରେ ନିଜକୁ ହିନ୍ଦୁ ବୋଲି ଲେଖେଇଛନ୍ତି ଓ ସଂରକ୍ଷଣ କୋଟାରେ ବଡ଼ ବଡ଼ ଚାକିରି ପାଇଛନ୍ତି। ଫୁଲବାଣୀ ବାହାରେ ନିଜକୁ ଆଦିବାସୀ ବୋଲି ପରିଚୟ ଦିଅନ୍ତି। ଜମି ଦଖଲ, ଚଢ଼ା ଦରରେ ସୁଧ, କନ୍ଧ ଯୁବତୀଙ୍କୁ ଦୁର୍ବ୍ୟବହାର ଅଭିଯୋଗ ପରେ କନ୍ଧ ଓ ପାଣଙ୍କ ମଧ୍ୟରେ ଲାଗିଲା ଲଢ଼େଇ। ପାଣମାନେ ଶିକ୍ଷିତ ପଇସାବାଲା ସତ କିନ୍ତୁ କନ୍ଧମାନେ ବେଶି ସଂଗଠିତ। ଜିଲ୍ଲା ଶାସନ ଅବସ୍ଥା ସମ୍ଭାଳି ପାରିଲେ ନାହିଁ, ଅଧିକ ଫୋର୍ସ ପଠେଇ ଦେଇ ପୋଲିସ ସଦର ମହକୁମା ନିଶ୍ଚିତ ହୋଇ ବସିଲେ। କିନ୍ତୁ ସୌଭାଗ୍ୟର କଥା ବରହମ୍‌ପୁରରେ କୁଳମଣି ଦେଓ ନାମକ ଜଣେ ଟାଣୁଆ ଡି.ଆଇ.ଜି ଥିଲେ।

ମୋତେ ଦିନେ ସିଏମ୍‌ଙ୍କ ଦପ୍ତରରୁ ଡକରା ଆସିଲା। ବିଜୁ ବାବୁଙ୍କ ସଙ୍ଗରେ କଥା ହେବାରେ ଏକ ଅସୁବିଧା ହେଉଛି ଯେ ସେ ପୂର୍ବାପର ସମ୍ବନ୍ଧ ନନେଇ କଥା ଆରମ୍ଭ କରନ୍ତି। ମୁଁ ଓ ତାଙ୍କ ଅତିରିକ୍ତ ସଚିବ ଅରବିନ୍ଦ ବେହେରା ରୁମ୍‌ରେ ପଶିବା ମାତ୍ରେ ଫାଇଲ୍‌ରୁ ମୁଣ୍ଡ ଟେକି କହିଲେ ଏଇଠେ କ'ଣ ବସିଛ କିରେ? ସେଇଠେ କ'ଣ ହେଉଛି, ତୁମେମାନେ କ'ଣ କରୁଛ? କେଉଁଠେ କ'ଣ କେତେବେଳେ ପଚାରିଲେ ସେ ଆହୁରି ରାଗିବେ। ଯେଉଁଠି କଳହର ଆଭାସ ମିଳେ ସେଠି ଚୁପ୍ ରହିବା ମଧ୍ୟ ଭଲ। ଅରବିନ୍ଦ ବେହେରା ଓ ମୁଁ ପରସ୍ପରକୁ ଅନେଇଲୁ ଓ ଆଦେଶକୁ ଅପେକ୍ଷା କଲୁ। ବିଜୁ ବାବୁ କହିଲେ 'ପ୍ଲେନ ନେଇ ଆଜି ଯାଅ, ଫୁଲବାଣୀରେ କ'ଣ ହେଉଛି ସେ କଥା ମୋତେ ଆସି କାଲି କହିବ।' ପ୍ଲେନ ଖରାପ ଥିଲା, ତେଣୁ ଆମେ ଦୁଇଜଣ କାର୍ ନେଇ ଗଲୁ। ବହୁ ସ୍ଥାନରେ ଗାଁ ଲୋକଙ୍କୁ ପଚରା ଉଚରା କଲୁ। ସେତେବେଳକୁ ଅବସ୍ଥା ନିୟନ୍ତ୍ରଣାଧିନ ହେଲାଣି ଓ ଅନେକ ସ୍ଥାନରେ ଲୋକମାନେ କହିଲେ ଆଜ୍ଞା ସେ ଗୋରା ନାକ ଚେପେଟା ବାବୁ ଆମକୁ ରକ୍ଷା କଲେ। ଡିଆଇଜି କୁଳମଣି ଦେଓଙ୍କ ନାକଟା ଚେପେଟା, ରଙ୍ଗ ଗୋରା। ଖରାରେ ବୁଲି ବୁଲି ସେ କଳା କାଠ ପଡ଼ିଯାଇଥିଲେ। ଆମେ ଫେରି ଆସି ସିଏମ୍‌ଙ୍କୁ କହିଲୁ କଲେକ୍ଟର, ଏସ୍‌ପି ପାରୁପର୍ଯ୍ୟନ୍ତ କାର୍ଯ୍ୟ କରିଛନ୍ତି କିନ୍ତୁ ଡିଆଇଜିଙ୍କ ପାଇଁ ଅବସ୍ଥା ଅତିଶୀଘ୍ର ନିୟନ୍ତ୍ରଣାଧୀନ ହେଲା। ବିଜୁ ବାବୁଙ୍କ ଉତ୍ତର ଥିଲା - ଓଃ ସେ କୁଳମଣି ଦେଓ ତ। ସେ ପଦ୍ମନାଭ ତା' ବିଷୟରେ କ'ଣ ଯାଦୁ ସିଆଡୁ କହୁଥିଲା। ହଉ ରିପୋର୍ଟଟେ ଦିଅ। ଆଉ ଯଦି ଅଧିକା ଫୋର୍ସ ଦରକାର ପଠାଅ। ସେତେବେଳେ ସ୍ପେଶାଲ ବ୍ରାଞ୍ଚ ବେଶ୍ ସକ୍ରିୟ ଥିଲା। ଜିଲ୍ଲା ପ୍ରଶାସନକୁ କେଉଁ କେଉଁ ସ୍ଥାନରେ ଗଣ୍ଡଗୋଳ ହେବାର ସମ୍ଭାବନା ଅଛି ତାହା ସଠିକ୍ ଭାବରେ ଖବର ହେଉଥିଲା। ୨୦୦୯ରେ କନ୍ଧମାଳରେ ଦଙ୍ଗା ନିୟନ୍ତ୍ରଣ ବାହାରେ ଚାଲିଗଲା କାରଣ ସ୍ପେଶାଲ ବ୍ରାଞ୍ଚର ନେତୃତ୍ୱ ଦୁର୍ବଳ ଥିଲା ଓ ଜିଲ୍ଲା ପୋଲିସ ସଠିକ୍ ଖବର ପାଇପାରିଲା ନାହିଁ। ସେ ବିଷୟରେ ଗଲା ୮ ବର୍ଷ ହେଲା ତଦନ୍ତ କମିଶନ ଚାଲିଛି।

୧୯୯୨ ମସିହାରେ କେନ୍ଦ୍ରରେ ମାନବ ଅଧିକାର କମିଶନ ଗଠନ କରାଗଲା ଓ ପ୍ରଥମ ଚେୟାରମ୍ୟାନ ହେଲେ ରଙ୍ଗନାଥ ମିଶ୍ର। ସେ ଓଡ଼ିଶା ଅନେକ ଥର ଆସିଛନ୍ତି ଅନ୍ୟ ରାଜ୍ୟମାନଙ୍କୁ କେତେଥର ଯାଇଛନ୍ତି ସେ କଥା ଜାଣିବା ସମ୍ଭବ ନୁହେଁ। କିନ୍ତୁ ବହୁତ ନିର୍ଦ୍ଦେଶନାମା ପଠେଇଛନ୍ତି। ତନ୍ମଧ୍ୟରୁ ଏକଯେ ରାଜ୍ୟରେ ଜଣେ ସଂଯୋଜକ ରହିବେ ଓ କମିଶନ ତାଙ୍କୁ ଚିଠି ଲେଖିବ ଓ ସେ ହିଁ ଉତ୍ତର ଦେବେ। କମିଶନ ହୋଇଥାଏ ନୂଆ ନୂଆ। କ୍ଷମତାର ପରିସର କେତେ ସେ ବିଷୟରେ ସମସ୍ତେ ବିଦିତ ନଥିଲେ। ତେଣୁ ପ୍ରାଥମିକ ଅବସ୍ଥାରେ ବୁଝାମଣାର ଅଭାବ ହେବା ସ୍ୱାଭାବିକ। କମିଶନ

ନିର୍ଦ୍ଦେଶ, ଉପଦେଶ ନା ସୁପାରିଶ ଦେବେ ସେ ବିଷୟରେ ଅନେକ ସନ୍ଦେହ ଥିଲା। କମିଶନଙ୍କ ଚିଠିଗୁଡ଼ା ଯେଉଁ ଭାଷାରେ ଆସେ ତାହା ନିର୍ଦ୍ଦେଶ ପରି ଶୁଭେ କିନ୍ତୁ ତାଙ୍କ କ୍ଷମତା ସୁପାରିଶରେ ସୀମିତ। ଯଦି ଥାନାରେ କୌଣସି ଅପରାଧିର ମୃତ୍ୟୁ ହେଲା ଓ ସରକାର ୨ ଲକ୍ଷ ଟଙ୍କା କ୍ଷତି ପୂରଣ ପାଇଁ ଦେଲେ କମିଶନ ଲେଖିବେ ଯେ ତିନିଲକ୍ଷ ଟଙ୍କା ଦିଅ। ଏମିତି ଦୁଇ ଘରି ଥର ହେବା ପରେ ମୁଁ କମିଶନଙ୍କୁ ଚିଠି ଲେଖିଲି କେଉଁ ଘଟଣା ପାଇଁ କେତେ କ୍ଷତିପୂରଣ ଦେବା କଥା ଆପଣ ତାହାର ପ୍ରସ୍ତାବ ଦିଅନ୍ତୁ। କମିଶନ ଏଥିରେ କ୍ଷୁବ୍ଧ ହେଲେ କିନ୍ତୁ ବିଜୁ ବାବୁଙ୍କୁ ଭୟ। ଆମେ ନିର୍ଭୟରେ ମତାମତ ଦେଇ ବିଜୁ ବାବୁଙ୍କର ଆଦେଶ ନେଉଥିଲୁ ଓ କମିଶନଙ୍କୁ ଜଣେଇ ଦେଉଥିଲୁ। ଜାନକୀ ବାବୁ ମୁଖ୍ୟମନ୍ତ୍ରୀ ହେବା ପରେ କମିଶନ ଆଧିପତ୍ୟ ବିସ୍ତାର କଲେ ଯାହାକି ସ୍ପୃହଣୀୟ ନଥିଲା। ବଗର ଥଣ୍ଡ ବେଶି ଲମ୍ୱା ହେବା ଉଚିତ୍ ନୁହେଁ।

ବିଜୁ ବାବୁଙ୍କର ଅଳ୍ପ କେତେକଟି ଆଦେଶ ମାନବିକତା ଦୃଷ୍ଟିରୁ ଗ୍ରହଣୀୟ ହେଲେ ମଧ୍ୟ ଆଇନସମ୍ମତ ନଥିଲା। ସେ ଘୋଷଣା କଲେ ଯେ, ମୋ' ପୋଲିସ ମୋ' ଲୋକଙ୍କ ଉପରେ ଫାଇରିଙ୍ଗ କରିବନାହିଁ, ଯଦି ନିହାତି ଦରକାର ପଡ଼ିବ ତେବେ ମୋର ଆଦେଶ ନେଇ ଫାଇରିଙ୍ଗ କରିବ। ଏ ଆଦେଶର ବାସ୍ତବତା, କାର୍ଯ୍ୟକାରିତା ଉପରେ ସନ୍ଦେହ ଆସିବା ସ୍ୱଭାବିକ। ସୁଦୂର ଖଡ଼ିଆଳର କେଉଁ ଗାଁରେ ଯଦି ପୋଲିସ ମାଜିଷ୍ଟ୍ରେଟ୍‌ଙ୍କୁ ଲୋକମାନେ ଘେରି ଟେକା ବୃଷ୍ଟି କରିବେ ଏବଂ ଫାଇରିଙ୍ଗ ଛଡ଼ା ଅନ୍ୟ ଉପାୟ ନାହିଁ ତେବେ ସେ ମାଜିଷ୍ଟ୍ରେଟ୍ ଓ ପୋଲିସ କେମିତି ମୁଖ୍ୟମନ୍ତ୍ରୀଙ୍କ ଆଦେଶ ନେବେ ? ବିଜୁ ବାବୁଙ୍କ ପରାମର୍ଶଦାତାମାନେ ବୁଝେଇବାରୁ ସେ ତାଙ୍କର କିମ୍ୱା ଡି.ଜିଙ୍କର କିମ୍ୱା ହୋମ୍ ସେକ୍ରେଟେରୀଙ୍କର ଆଦେଶ ନେବା ପାଇଁ ପଡ଼ିବ ବୋଲି କହିଲେ କିନ୍ତୁ ଆଇନ୍ କହୁଛି ଯେ ମାଜିଷ୍ଟ୍ରେଟ୍, ତାଙ୍କ ଅନୁପସ୍ଥିତିରେ ଥାନା ଇନ୍‌ଚାର୍ଜ ଓ ଉଭୟଙ୍କ ଅନୁପସ୍ଥିତିରେ ଯେକୌଣସି ସବ୍‌ଇନ୍‌ସପେକ୍ଟର ବେନିୟମ ଜନତାଙ୍କୁ ଘଉଡ଼େଇବା ପାଇଁ ବଳ ପ୍ରୟୋଗ କରିପାରିବେ। ମୁଁ ବାଲେଶ୍ୱର ଡିଆଇଜି ଥିଲାବେଳେ ଅଫିସ ୱାର୍ଲେସରେ ଶୁଣିଲି ଯେ ଶୁଳିଆପଦା ଥାନା ବାରିପଦା କଣ୍ଟ୍ରୋଲ ରୁମ୍‌ରୁ କହୁଛି 'ସୁବର୍ଣ୍ଣରେଖା କେନାଲ ଖୋଳିବା ସ୍ଥାନରେ ଫାଇରିଙ୍ଗ ହୋଇଗଲା'। ସେତେବେଳେ ମୟୂରଭଞ୍ଜ ଏସ୍‌ପି ଛୁଟିରେ ଯାଇଛନ୍ତି ଗାଁକୁ। ଅତିରିକ୍ତ ଏସ୍‌ପି କରଞ୍ଜିଆରେ ଥାନା ପରିଦର୍ଶନ କରୁଛନ୍ତି ଡକେଇଲେ ମଧ୍ୟ ଫେରିବାକୁ ଘରିଘଣ୍ଟା ସମୟ ଲାଗିବ। ଡିଏସ୍‌ପି ଓ ଇନ୍‌ସପେକ୍ଟର ମର୍ଡ଼ର କେସ୍‌ରେ ଗାଁକୁ ଯାଇଛନ୍ତି। ତେଣୁ ନଖାଇ ଅଫିସରୁ ସିଧା ଚାଲିଗଲି ମୟୂରଭଞ୍ଜ ଓ ସୁବର୍ଣ୍ଣରେଖା ପ୍ରୋଜେକ୍ଟକୁ। କେନାଲ ଖୋଳିବା ଜାଗାରେ ଗୋଟିଏ ପ୍ଲାଟୁନ୍ ସଶସ୍ତ୍ର ବାହିନୀ, ଜଣେ ମାଜିଷ୍ଟ୍ରେଟ୍ ଓ ଜଣେ ସବ୍‌ଇନ୍‌ସପେକ୍ଟର ଥିଲେ। ମୁଁ

ପହଞ୍ଚିଲା ବେଳକୁ ମାଜିଷ୍ଟ୍ରେଟ୍ ନାହାଁନ୍ତି । ଗାଡ଼ିରୁ ଓହ୍ଲାଇବା ମାତ୍ରେ ଜଣେ ପୋଲିସ ବାବୁ ମୁହଁ ଶୁଖେଇ କହିଲେ 'ସାର୍ ମୋତେ ନପଚାରି କେହି ଜଣେ ଫାଇରିଙ୍ଗ କରିଦେଲା ।' ମୁଁ ଫାଇରିଙ୍ଗ ସ୍ଥାନକୁ ଯାଇ ଅବସ୍ଥା ବୁଝିଲି ଓ ଜଣାପଡ଼ିଲା, ଚିଫ୍ଇଞ୍ଜିନିୟର ଓ ଜଣେ ଦୁଇଜଣ ଇଞ୍ଜିନିୟର ଓ ତାଙ୍କୁ ସୁରକ୍ଷା ଦେବା ପାଇଁ ପୋଲିସ ଅଫିସର ଓ ଅଳ୍ପ କେତେଜଣ କନେଷ୍ଟବଳ କେନାଲ ଖୋଳିବା ସ୍ଥାନରେ ଥିବା ସମୟରେ ହଠାତ୍ ଗାଁ ଲୋକେ ଠେଙ୍ଗା ବାଡ଼ି ଧରି ଆକ୍ରମଣ କଲେ । ଇଞ୍ଜିନିୟରମାନେ ପଳେଇଲେ ଓ ଗାଁ ଲୋକେ ଚିଫ୍ ଇଞ୍ଜିନିୟରଙ୍କୁ ଧରି ଘୋଷାରି ଘୋଷାରି ଗାଁକୁ ନେଉଥିଲେ । ପୋଲିସ ବାବୁ କିଛି ଆଦେଶ ନଦେଉଥିବା ଦେଖି ହାବିଲଦାର ଉଚ୍ଚ ପାଟିରେ କହିଲେ 'ଛାଡ଼ି ଦିଅ ନହେଲେ ଫାଇରିଙ୍ଗ କରିବି ।' ସେମାନେ ନଛାଡ଼ିବାରୁ ସେ ଗୋଟିଏ ରାଉଣ୍ଡ ବ୍ଲାଙ୍କ ଫାଇରିଙ୍ଗ କଲେ ଓ ଆଉ ଗୋଟିଏ ରାଉଣ୍ଡ ଜନତା ଉପରକୁ ଏଭଳି ସାବଧାନ ସହିତ ମାରିଲେ ଯେ ଗୁଳିଟା ମୁଣ୍ଡ ଉପର ଦେଇ ଗୋଟିଏ ଗଛରେ ବାଜିଲା । ଗାଁର ଦୁଇଜଣ ନେତା ଯେଉଁମାନେ 'ଧର, ମାର, ବିଜୁ ପଟ୍ଟନାୟକ ପାଖରେ ଗୁଳି ଅଛି ପୋଲିସ କିଛି କରିପାରିବ ନାହିଁ' ବୋଲି ରଣହୁଙ୍କାର ଦେଉଥିଲେ ସେମାନେ ପଳେଇଲେ । ତିନି ଚାରି ଜଣ ପଡ଼ି ଆଞ୍ଜୁଡ଼ା ଖାଇଲେ । ସମସ୍ତଙ୍କ ଗୋଟିଏ ଅବସ୍ଥା, ଏଇସା କରେଗା ତୈସା କରେଗା, ସିପାହୀ ଦେଖିଲେ ଶୋଇପଡ଼େଗା ।

ବ୍ୟାରାକ୍‌କୁ ଆସି ସିପାହୀମାନଙ୍କୁ ପଚାରିଲି କିଏ ଫାଇରିଙ୍ଗ କଲା ଓ ହାତଟେକି ଜଣେ ହାବିଲଦାର କହିଲା ସାହେବ ମୁଁ କଲି । ମୁଁ ନକରିଥିଲେ ଚିଫ୍ ଇଞ୍ଜିନିୟରଙ୍କୁ ମାରିଦେଇଥାନ୍ତେ । ମୋର ପରବର୍ତ୍ତୀ ପ୍ରଶ୍ନ ଥିଲା 'ଫାଇରିଙ୍ଗ ନକରିବା ପାଇଁ ଆଦେଶ ଅଛି ଏକଥା ଜାଣିଛ ?' ଏବଂ ତାଙ୍କର ପ୍ରତ୍ୟୁତ୍ତର ଥିଲା ୨ଟି । ସାର୍ ଯଦି ଫାଇରିଙ୍ଗ କରିବାର ନାହିଁ ସରକାର ବନ୍ଧୁକ ଗୁଳି ଦେଇଛନ୍ତି କାହିଁକି ? ଓ ଅନ୍ୟଟି ହେଲା ସାର୍ ଜୀବନଟା ବଡ଼ ନା ଆଦେଶଟା ବଡ଼ ?

ସେଇଠି ଟେବୁଲ୍‌ରେ ବସି ଖଣ୍ଡିଏ କାଗଜରେ ଆଦେଶ ଲେଖିଲି ଓ ଦସ୍ତଖତ କରି ଧରେଇ ଦେଲି । ହାବିଲ୍‌ଦାର ପଚାରିଲେ 'ସାର୍ ମୁଁ କ'ଣ ସସ୍‌ପେଣ୍ଡ ହେଲି ?' ମୁଁ କହିଲି ନାଇଁ ତୁମକୁ ମୁଁ ୨ ଶହ ଟଙ୍କା ପୁରସ୍କାର ଦେଲି । ମୋର ପୁରସ୍କାର ସୀମା ୨୦୦, ତାହା ନହେଲେ ବହୁତ ବେଶି ଦେଇଥାନ୍ତି । ଏଭଳି ନାଟକୀୟ ପରିବର୍ତ୍ତନରେ ତାଳିମାଡ଼ ହୋଇଥାନ୍ତା । କିନ୍ତୁ ପୋଲିସ ଏକ ଶୃଙ୍ଖଳିତ ବାହିନୀ ଓ ତାଳି ମାରିବା ଶିଷ୍ଟତା ମଧ୍ୟରେ ନୁହେଁ । ଫେରିବା ପାଇଁ ଗାଡ଼ି ଭିତରେ ବସୁଛି ଏଇ ସମୟରେ ପୋଲିସ ଅଫିସର ଜଣକ ମୋ' କାନରେ ଫୁସ୍‌ଫୁସ୍ କରି କହିଲେ 'ସାର୍ ପ୍ରକୃତରେ ଫାଇରିଙ୍ଗ ଅର୍ଡ଼ର ମୁଁ ଦେଇଥିଲି ।' ବଡ଼ ଅଫିସରମାନେ ତଳିଆ ଅଫିସରଙ୍କର ସାଫଲ୍ୟରେ ପୁରସ୍କାରର

ସିଂହଭାଗ ନେବା କିଛି ନୂଆ କଥା ନୁହେଁ। କଥାଟା ଠିକ୍ ବାଗରେ ଗଲେ 'ମୁଁ କଲି' ଓ ଅବାଟରେ ଗଲେ 'ସାର୍ ସେ ଲୋକଟା ସର୍ବନାଶ କରିଦେଲା', ସବୁ ବିଭାଗରେ ଏମିତି ଚାଲିଛି। ସମସ୍ତେ ଯଦି କଳି ଯୁଗରେ ରହିଲେ ପୋଲିସ ସତ୍ୟ ଯୁଗକୁ ଯିବ କେମିତି ?

ବିଜୁବାବୁଙ୍କ ଆଉ ଏକ ଆଦେଶ ଅସ୍ଥିରତା ସୃଷ୍ଟି କଲା। ମହିଳାମାନଙ୍କ ଉପରେ ନିର୍ଯାତନା ଖବର ପାଇଲେ କ୍ରୋଧରେ ଅସ୍ଥିର ହୋଇଯାଉଥିଲେ ବିଜୁବାବୁ। ଏମିତି କେତେକ ଅଭିଯୋଗ ଆସିବାରୁ ଥରେ ରାଗରେ କହିଲେ ଯେଉଁମାନେ ଧର୍ଷଣ କରୁଛନ୍ତି ତାଙ୍କ ଲିଙ୍ଗ ଛେଦ କରିଦିଅ। ସେତେବେଳେ ଆମ୍ଭେମାନେ ମୁରୁକି ହସା ଦେଉଥିଲୁ, କେହି କେହି କହିଲେ ଯେ ବୁଢ଼ାର ମତିଭ୍ରମ ହେଲାଣି। କିନ୍ତୁ ସ୍ଥୂଳ ଭାବେ ଦେଖିଲେ ଆମେ କହିବା ଯଦି ହତ୍ୟା ପାଇଁ ମୃତ୍ୟୁ ଦଣ୍ଡ ଦିଆଯାଇପାରେ ତେବେ ଲିଙ୍ଗ ଛେଦନ କାହିଁ ହୋଇପାରିବନି ? ଇଏ ଏକ ବିବାଦୀୟ ପ୍ରଶ୍ନ ଓ ଭବିଷ୍ୟତ ତା'ର ଉତ୍ତର ଦେବ। କିନ୍ତୁ ସେ ସମୟରେ ବିଜୁ ବାବୁଙ୍କ ସ୍ପର୍ଶ କାତରତା ଦେଖି ଡି.ଜି ଶ୍ରୀ ରବିନାରାୟଣ ମହାପାତ୍ର 'ଶାଶୂ ହାତକଡ଼ି ନଣନ୍ଦ ବେଡ଼ି' ନାମକ ଏକ ଆଦେଶ ଦେଲେ। ସେ ଆଦେଶ ଥିଲା ଯେ ଶାଶୂ ନଣନ୍ଦଙ୍କ ବିରୁଦ୍ଧରେ ଯଦି କିଛି ପ୍ରମାଣ ଥାଏ ତାଙ୍କୁ ହାତକଡ଼ି ପକେଇ ସିଧା ହାଜତରେ ହାଜର କରେଇବ। ଏ ଆଦେଶ ସୁପ୍ରିମ୍‌କୋର୍ଟ ରାୟ ବିରୁଦ୍ଧରେ, ପୋଲିସ ମାନୁଆଲରେ ମଧ୍ୟ ମହିଳାମାନଙ୍କୁ ହାତକଡ଼ି ନପକେଇବା ପାଇଁ କଡ଼ା ନିର୍ଦ୍ଦେଶ ଅଛି। ଏହାର ବିରୋଧ କରି ମୁଁ ଏକ ଲମ୍ବା ନୋଟ୍ ଲେଖିଲି ଏବଂ ଏକଥା ଲେଖିଲି 'ଡି.ଜିଙ୍କ ଏ ଆଦେଶ ସମ୍ବିଧାନର ଧାରା ୨୧ ପ୍ରତି ଏକ ଶକ୍ତ ଚାପୁଡ଼ା। ଇଂରେଜ ଅମଳରେ କେବେ ମହିଳାମାନଙ୍କୁ ହାତକଡ଼ି ପକାଯାଇନାହିଁ କାରଣ ପୋଲିସ ମାନୁଆଲରେ ଏହା ନିଷିଦ୍ଧ କରାଯାଇଛି। ତେଣୁ ଡି.ଜିଙ୍କ ଆଦେଶ ବାତିଲ କରାଯାଉ। ସେତେବେଳକୁ କେତେକ 'ମୂର୍ଖ' ଏସ୍‌ପି ଏ ଆଇନ୍ ବହିର୍ଭୂତ ଆଦେଶକୁ ମାନି ମହିଳା ମାନଙ୍କୁ ହାତକଡ଼ି ପକେଇ ରାସ୍ତାରେ ଚଲେଇ ଚଲେଇ ନେଲେ। ଅନେକ ସମୟରେ ଶାଶୂ ବୋହୂର କଳିରୁ ମିଥ୍ୟା ଅଭିଯୋଗ ଆସିପାରେ, ଏ ସମ୍ଭାବନାକୁ ବିଚାରକୁ ନିଆଗଲା ନାହିଁ। କେସ୍ ରୁଜୁ ହେବା ମାତ୍ରେ ପୋଲିସ ଝପଟିଯାଇ ଶାଶୂ, ଶ୍ୱଶୁର, ନଣନ୍ଦ, ସ୍ୱାମୀଙ୍କୁ ବାନ୍ଧି ପକେଇଲା। ମୁଁ ଯାହା ଲେଖିଥିଲି ତା' ଉପରେ ଚିଫ୍ ସେକ୍ରେଟେରୀ ଆଦେଶ ଦେଲେ 'ଡି.ଜିଙ୍କୁ କୁହ ସେ ନିଜ ଆଦେଶକୁ ଆଉଥରେ ପର୍ଯ୍ୟାଲୋଚନା କରିବେ।' ଇତି ମଧ୍ୟରେ ଆସେମ୍ବ୍ଲିରେ ଏ ବିଷୟରେ ପ୍ରଶ୍ନ ହେଲା ଓ ବିଜୁ ବାବୁ କହିଲେ ଆଦେଶ ଠିକ୍ ଅଛି। ସମାଜରୁ ବଧୂ ନିର୍ଯାତନା କଳଙ୍କ ଦୂର କରିବା ପାଇଁ ଏଭଳି ଆଦେଶ ନିହାତି ଦରକାର। ମୁଁ ଗୃହ ବିଭାଗକୁ କହୁଛି ଯେ ସେ ରୀତିମତ ଆଦେଶ ପଠାନ୍ତୁ। ଏ ବିଷୟରେ ପୁଣିଥରେ ଲେଖି ମୁଁ ଜଣାଇଲି ଯେ ମୁଖ୍ୟମନ୍ତ୍ରୀ ମହାଶୟ

ସରକାରୀ ଓ ରାଜନୈତିକ ଘୋଷଣା ଅନେକ ସମୟରେ କରନ୍ତି କିନ୍ତୁ ତାକୁ କାର୍ଯ୍ୟକାରୀ କରିବା ସମୟରେ ଆମେ ଦେଖିବୁ ଯେ ଆଇନ୍ କ୍ଷୁଣ୍ଣ ନହେଉ। ଡିଜିଙ୍କ ନିୟମ ସୁପ୍ରିମ୍‌କୋର୍ଟଙ୍କ ଆଦେଶ ବିରୁଦ୍ଧରେ ଯାଉଛି। ତେଣୁ ମୁଖ୍ୟମନ୍ତ୍ରୀ ମହାଶୟ ନିଜ ଆଦେଶର ପୁନଃ ବିଚାର କରନ୍ତୁ। ଏ ବିଷୟରେ ଆଇନ୍ ବିଭାଗର ମତ ମଗାଗଲା ଓ ସେମାନେ ମୋତେ ସମର୍ଥନ କଲେ ଓ ତା'ସାଙ୍ଗେ ପ୍ରସ୍ତାବ ଦେଲେ ଯେ ଯେହେତୁ ହାଇକୋର୍ଟରେ କେସ୍ ଦାୟର ହୋଇସାରିଲାଣି ଅଧିକ ଚର୍ଚ୍ଚା କରିବା ଉଚିତ୍ ନୁହେଁ। ଏ କେସ୍‌ଟ ଚୂଡ଼ାନ୍ତ ନିଷତି ହେଲା କଂଗ୍ରେସ ସରକାରଙ୍କ ସମୟରେ ଓ ହାଇକୋର୍ଟ ଡିଜିଙ୍କ ଆଦେଶକୁ ବାତିଲ୍ କରି ମନ୍ତବ୍ୟ ଦେଲେ 'ଏଭଳି ଅଫିସରଙ୍କ ହାତରେ ପୋଲିସ ବିଭାଗ ନିରାପଦ ନୁହେଁ।' ବିଜୁବାବୁଙ୍କର ସହାନୁଭୂତିର ଯେଉଁ ବିକୃତିକରଣ କରାଗଲା ତା'ଦ୍ୱାରା ପୋଲିସ ବିଭାଗ ନିନ୍ଦିତ ହେଲା। ଭାଗ୍ୟ ଭଲ ଯେ ହାତକଡ଼ି ପକେଇଥିବା ପୋଲିସ ଅଫିସରଙ୍କ ନାଁରେ କେସ୍ କରିବା ପାଇଁ ହାଇକୋର୍ଟ ନିର୍ଦ୍ଦେଶ ଦେଇନାହାଁନ୍ତି।

## ଅଙ୍କାବଙ୍କା ରାସ୍ତା

୧୯୯୪ ନିର୍ବାଚନ ହେଲା। ୯୦ ମସିହା ନିର୍ବାଚନରେ ଯେଉଁ କଂଗ୍ରେସ ମୂଳପୋଛ ହୋଇଥିଲା ସେ କମ୍ୟୁନିଷ୍ଟଙ୍କ ସହାୟତାରେ ଶାସନକୁ ଫେରି ଆସିଲା। ସମ୍ଭବ ହୋଇପାରିଲା ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ରଣକୌଶଳ ପାଇଁ। ସେ ମୁଖ୍ୟମନ୍ତ୍ରୀ ହୋଇ ଫେରିଲେ ଓ ଉପମୁଖ୍ୟମନ୍ତ୍ରୀ ହୋଇ ଆସିଲେ ବସନ୍ତ ବିଶ୍ୱାଳ ଓ ହେମାନନ୍ଦ ବିଶ୍ୱାଳ। ୧୯୮୦ରେ ବସନ୍ତ ବିଶ୍ୱାଳ ରାଷ୍ଟ୍ରମନ୍ତ୍ରୀ ହୋଇଥିଲେ ମଧ୍ୟ ତାଙ୍କୁ ଅନେକ ସୁପର ଚିଫ୍ ମିନିଷ୍ଟର ବୋଲି ଡାକୁଥିଲେ। ପରବର୍ତ୍ତୀ ନିର୍ବାଚନରେ ତାଙ୍କୁ ଟିକେଟ୍ ଦିଆଗଲାନାହିଁ କାରଣ କୁହାଗଲା ଯେ ତାଙ୍କ ଭାବମୂର୍ତ୍ତି ଭଲନଥିଲା। ଭାବମୂର୍ତ୍ତି ମାପିବା ପାଇଁ କୌଣସି ଯନ୍ତ୍ର ଆବିଷ୍କୃତ ହୋଇନାହିଁ ତଥାପି କୁହାଯାଏ ରାମବାବୁଙ୍କ ଭାବମୂର୍ତ୍ତି ବେଶ୍ ଭଲ ଓ ଦାମ ବାବୁଙ୍କ କମ୍। କ୍ଷମତାକୁ ଆସିବା ପରେ କଂଗ୍ରେସ ଦଳ ଖୋଜିଲେ ଯେ ବିଜୁ ପଟ୍ଟନାୟକଙ୍କ ସଚିବ ପ୍ୟାରୀ ମହାପାତ୍ରଙ୍କର ବନ୍ଧୁ ବାନ୍ଧବ କିଏ। ସମଗ୍ର ସେକ୍ରେଟେରିଏଟ୍‌ରୁ ପ୍ୟାରୀ-ଗନ୍ଧ ଦୂର କରିବା ପାଇଁ ବଦଳି- ଫିନାଇଲ ବ୍ୟବହାର କରାଗଲା। ଯେହେତୁ ପ୍ୟାରୀ ମହାପାତ୍ର ମୋ' ମାଉସୀ ପୁଅ ଭାଇ, (ଯଦିବା ତାଙ୍କ ଦ୍ୱାରା ମୁଁ କେବେ ଉପକୃତ ହୋଇନାହିଁ ଓ କେବେ ଭିକ୍ଷା ଥଳି ଧରି ତାଙ୍କ ପାଖକୁ ଯାଇନାହିଁ) ତଥାପି ମୋତେ ବାଣିଜ୍ୟ ପରିବହନ ସଂସ୍ଥାର ମୁଖ୍ୟ ଭାବରେ ବଦଳି କରାଗଲା। ସେ ସଂସ୍ଥା ଋଣରେ ବୁଡ଼ିକରିଥାଏ। ଚାରି ପାଞ୍ଚ ମାସରେ ଥରେ ଦରମା ମିଳେ। ମୋତେ ଜାଣିକରି ସେଠିକୁ ପଠାଗଲା ଯେମିତିକି ମୁଁ ହଇରାଣ ହେବି। ପୁଣି

ମୋ' ନାଁ ପଠାଗଲା ଭାରତ ସରକାରଙ୍କୁ ଡ଼େପୁଟେସନ ପାଇଁ। ମୁଁ ୨ ଥର ଡ଼େପୁଟେସନ କରିସାରିଥିଲି, ମୋ' ଝିଅ ରେଭେନ୍‌ସାରେ ପାଠ ପଢୁଥିଲା ଏସବୁ ଜାଣି ମଧ୍ଯ ମୋ' ନାଁ ପଠାଗଲା। ମୋ' ବଡ଼ଭାଇଙ୍କୁ କର୍ପୋରେସନରୁ ବିଦା କରି ମଧୁସୂଦନ ଟ୍ରେନିଂ କଲେଜକୁ ପଠେଇଦିଆଗଲା। କିନ୍ତୁ ଆଶ୍ଚର୍ଯ୍ୟର କଥା ଦଳେ ଆଇଏଏସ ଅଫିସର ଯେଉଁମାନେ ପ୍ୟାରୀବାବୁଙ୍କ ପାଖକୁ ଧାଁ ଦୌଡ଼ କରୁଥିଲେ ଓ ତାଙ୍କ ଠାରୁ ସାହାଯ୍ୟ ନେଇଛନ୍ତି ସେଇମାନେ କଂଗ୍ରେସର ସୁନା ପୁଅ ହୋଇଗଲେ। ଗୋଟିଏ ସ୍ଥାନରେ ଚନ୍ଦା ମୁଣ୍ଡିଆ ଓ ୱିଗ୍ ଲଗେଇ ଅନ୍ୟ ସ୍ଥାନରେ ଘଞ୍ଚ ବାଳ ଦେଖେଇବା ଲୋକଙ୍କର ଅଭାବ ନାହିଁ। ସେଇମାନଙ୍କ ମଧ୍ଯରୁ ଜଣେ ଅତି ନିର୍ଲଜ ଭଳି ମୋତେ କହିଲେ 'ଆପଣଙ୍କ ପ୍ୟାରୀ ବାବୁ ଚିଫ୍ ସେକ୍ରେଟେରୀ ହେବାକୁ ବସିଥିଲେ କିନ୍ତୁ ଚିତ୍‌ପଟାଙ୍ଗ ମାରିଲେ।' ଯେତେବେଳେ ପ୍ୟାରୀବାବୁ ନବୀନ ପଟ୍ଟନାୟକଙ୍କ ପରାମର୍ଶଦାତା ହେଲେ ସେତେବେଳେ ତାଙ୍କ ପାଖକୁ ବହୁତ ଲୋକ ଧାଇଁଲେ ଓ ସବୁଠୁ ଆଗରେ ଥିଲେ ଏଇମାନେ। ଦିନେ ରହସ୍ୟ କରି ଜଣଙ୍କ ଆଗରେ କହିଦେଲି ଯେ ଏମାନେ ପିଏମ୍ ଏକାଡ଼େମୀର ଛାତ୍ର ଓ ଆଖ୍ୟାଟି ତୁରନ୍ତ ସବୁଆଡ଼େ ବ୍ୟାପିଗଲା।

ସରକାରୀ କାର୍ଯ୍ୟରେ ନିଷ୍ଠାର ସହିତ କାର୍ଯ୍ୟ କରିବା ନିୟମ କାନୁନ୍‌କୁ ତର୍ଜମା କରିବା ପରିବର୍ତ୍ତେ ଅନେକ ନେତା - ସମ୍ପର୍କ (ଜନସମ୍ପର୍କ ନୁହେଁ) କରିବାର କଳା ଆହରଣ କରନ୍ତି। କେଉଁ ସ୍ଥାନରେ କେଉଁ କାର୍ଯ୍ୟ ହୋଇପାରିବ, କାହାକୁ କିପରି ତୁଷ୍ଟ କରାଯିବ ଏ ଖବର ସଂଗ୍ରହ କଷ୍ଟସାଧ ହେଲେ ମଧ୍ଯ ଅନେକ ସାରା ଜୀବନ ଏହାକୁ ସିଡ଼ି ଭାବରେ ବ୍ୟବହାର କରନ୍ତି। ଖାଲି ଗଳିରି କାହିଁକି ସାହିତ୍ୟ କ୍ଷେତ୍ରରେ ମଧ୍ଯ ହୁଏ। ଅନେକ ସାହିତ୍ୟିକ ଧରାଧରି କରି କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର, ଜ୍ଞାନପୀଠ ପୁରସ୍କାର ପାଇଯାଇଛନ୍ତି। କିନ୍ତୁ କେତେ ପୁରସ୍କାର ଆମେ ପାଇଲୁ କେତେ ପୋଜିସନକୁ ଆମେ ଗଲୁ ସେସବୁ ଅପେକ୍ଷା ମାନସିକ ଶାନ୍ତି ବେଶି ଗୁରୁତ୍ୱପୂର୍ଣ୍ଣ।

ହଁ ବଦଳି କଥା ଲେଖୁ ଲେଖୁ ଏକଥା ଲେଖିଦେଲି। ମୋ' ବଦଳି ଏକ ବାଜେ କର୍ପୋରେସନକୁ ହେଲା ବୋଲି ଚିଫ୍ ସେକ୍ରେଟେରୀ ଆର୍.ଏନ୍. ଦାଶ ଦୁଃଖିତ ହେଲେ ଓ ମୁଖ୍ୟମନ୍ତ୍ରୀଙ୍କ ଠାରୁ ଆଦେଶ କରେଇ ଦେଲେ ଯେ ମୁଁ ଆଇଜି.ଏଫ୍.ଏସ୍.ଏଲ୍ ହେବି। କିନ୍ତୁ ତା'ପରଦିନ ପୋଲିସ ଦପ୍ତରର ଜଣେ ଡିଆଇଜି ଆଦେଶ ପରିବର୍ତ୍ତନ କରାଇଦେଲେ। ମୋ' ପାଇଁ ଏତିକି ଆଶ୍ୱାସନାର ବିଷୟ ଥିଲା ମୋତେ ଏଣିକି ଭୁବନେଶ୍ୱର ଆସିବାକୁ ପଡ଼ିବ ନାହିଁ ଓ ସ୍ୱାଧୀନ ଭାବରେ କର୍ପୋରେସନ କାର୍ଯ୍ୟ ଚୁଲାଇବି। ଆଉ ଦୁଇଟି ଖୁସିର ଖବର ଥିଲା ଯେ ମୋର ପ୍ରଥମ ଉପନ୍ୟାସ ସହରର ଉପକଣ୍ଠେ (ଯାହାକୁ ମୁଁ ୨୭ ଦିନରେ ଲେଖିଥିଲି) ଓଡ଼ିଶା ସାହିତ୍ୟ ଏକାଡ଼େମୀ

ପୁରସ୍କାର ପାଇଲା। ଆମ ପରିବାରର ମୁଁ ହେଲି ପ୍ରଥମ ଏକ ସ୍ୱୀକୃତିପ୍ରାପ୍ତ ଲେଖକ। ତା' ସଙ୍ଗେ ସଙ୍ଗେ ଭାରତ ସରକାରଙ୍କ ଦ୍ୱାରା ରାଷ୍ଟ୍ରପତିଙ୍କ ବିଶିଷ୍ଟ ସେବା ମେଡ଼ାଲ ପାଇଲି। ଭଗବାନ ଗୋଟିଏ ଆଡ଼େ ଅଭାବ ଦେଲେ ଅନ୍ୟ ଆଡ଼େ କ୍ଷତିପୂରଣ ଦେଇଦିଅନ୍ତି।

ସେକ୍ରେଟେରୀଏଟ୍‌ର ଅଫିସରମାନେ ପ୍ରଥମ ଥର ପାଇଁ ବଦଳି ହୋଇଥିବା ଜଣେ ଅଫିସରଙ୍କୁ ବିଦାୟସଭା ଦେଲେ ଏବଂ ସେ ଗୌରବର ସ୍ଥାନ ମୁଁ ପାଇଲି। ମୁଁ ଯେତେବେଳେ କାର୍ଯ୍ୟଭାର ଗ୍ରହଣ କଲି ଜାଣିଲି ଯେ ପିଅନମାନଙ୍କ ସଂଘର ସଭାପତି ଓ ସେକ୍ରେଟେରୀ ମୋ' ଅଧୀନରେ, କିରାଣୀମାନଙ୍କର ସଂଘର ସଭାପତି ମଧ୍ୟ ମୋ' ଅଧୀନରେ। ସତେ ଯେମିତି ଏହା ଯଥେଷ୍ଟ ନୁହେଁ, ଷ୍ଟେନୋମାନଙ୍କର ସଂଘର ସଭାପତି ମଧ୍ୟ ମୋର ପି.ଏ। ମୁଁ କାର୍ଯ୍ୟଭାର ଗ୍ରହଣ କରିବାର ପାଞ୍ଚ ଛଅ ଦିନ ପରେ ଜଣେ ପିଅନ ଦେଖା କରିବାକୁ ଆସିଲେ ଏବଂ କହିଲେ 'ସାର୍ ମୁଁ ଆପଣଙ୍କ ଅଫିସ୍ ରୁମ୍‌ର ପିଅନ।' ଏତେ ଦିନକୁ କୁଆଡ଼େ ଥିଲ ବୋଲି ପଚାରିବାରୁ ଉତ୍ତର ମିଳିଲା, ଜେଲ୍‌ରେ ଥିଲି ଓ କାହିଁକି ପଚାରିବାରୁ ପୁଣି ଉତ୍ତର ମିଳିଲା ଏଇ ଚିଫ୍ ସେକ୍ରେଟେରୀଙ୍କୁ ଧକ୍‌କା, ଫକା ମାରିଥିଲି। ମୁଁ ଜଏନ୍ କରିବାର ପ୍ରାୟ ବର୍ଷେ ପୂର୍ବରୁ ଦରମା ଓ ଡିଏ ନେଇ ପ୍ରବଳ ଅସନ୍ତୋଷ ଥିଲା, ଦିନେ ସମସ୍ତେ ଦଳବଦ୍ଧ ହୋଇ ସେକ୍ରେଟେରୀଏଟ୍‌ରେ ଅଫିସରମାନଙ୍କୁ ଆକ୍ରମଣ କଲେ। ବିଜୁ ବାବୁ ଲଞ୍ଚ ଖାଇବା ପାଇଁ ଯାଉଥିଲେ ତାଙ୍କୁ ଆକ୍ରମଣ କରିବା ପାଇଁ ସାହସ କଲେନାହିଁ କିନ୍ତୁ ଚିଫ୍ ସେକ୍ରେଟେରୀଙ୍କୁ ଠେଲାପେଲା କରି ତଳକୁ ଫୋପାଡ଼ି ଦେବା ପାଇଁ ଯାଉଥିଲେ ପୋଲିସ ରକ୍ଷା କଲା। ହୋମ୍ ସେକ୍ରେଟେରୀଙ୍କର ପ୍ରାଇଭେଟ୍ ସେକ୍ରେଟେରୀ ତାଙ୍କ ରୁମ୍ ବାହାରେ ତାଲା ପକେଇ ଦେଇ ଓ ହୋମ୍ ସେକ୍ରେଟେରୀ ପଳେଇଲେ ବୋଲି କହି ଲୋକଙ୍କୁ ଫେରେଇଦେଲେ। ବଡ଼ କଷ୍ଟରେ ଅବସ୍ଥା ଆୟତ୍ତାଧିନ ହେଲା। ଏଭଳି ଯୋଜନା କରାଯିବାର ଖବର ସ୍ପେଶାଲ ବ୍ରାଞ୍ଚ କିପରି ଜାଣିପାରିଲା ନାହିଁ ତାହା ବିସ୍ମୟର କଥା। ସେତେବେଳେ ମୋ' ବଡ଼ଭାଇ ଶରତ ଚନ୍ଦ୍ର ମିଶ୍ର ଡିଜି ଥିଲେ। ଏଇ ଘଟଣା ପରେ ସେକ୍ରେଟେରୀଏଟ୍‌ର ସୁରକ୍ଷା ଦାୟିତ୍ୱ ଘରୋଇ ବିଭାଗର ସ୍ୱତନ୍ତ୍ର ସଚୀବଙ୍କୁ ଦିଆଗଲା। ମୁଁ କାର୍ଯ୍ୟଭାର ଗ୍ରହଣ କରିବାର ପୂର୍ବଦିନ କିଛି କର୍ମଚାରୀ ହୋମ୍ ସେକ୍ରେଟେରୀଙ୍କ ରୁମ୍‌ରେ ପାଟିତୁଣ୍ଡ କରିଥିଲେ। ତା'ପରେ ନିଷ୍ପତ୍ତି ନିଆଗଲା ଯେ ମୋତେ ତିନି ଜଣ ସ୍ପେଶାଲ ବ୍ରାଞ୍ଚ ଅଫିସର ଦିଆଯିବ କର୍ମଚାରୀଙ୍କ ବିଷୟରେ ଖବର ଦେବାପାଇଁ। ସେମାନେ ମଝିରେ ମଝିରେ ଆସୁଥିଲେ ଖବର ଦେବା ପାଇଁ ଓ ଖବର ଦେବା ପୂର୍ବରୁ ସବୁ ଆଡ଼କୁ ଅନେଇବେ (କାଳେ କିଏ ଶୁଣୁଥିବ କି) କହନ୍ତି 'ସାର୍ ସେମାନେ କିଛି ଗୋଟେ କରିବେ । କିଏ ଓ କ'ଣ କରିବେ ପଚାରିଲେ ଉତ୍ତର ମିଳେ 'ତାଙ୍କ ମଧ୍ୟରୁ ଦଳେ ବଦ୍‌ମାସ୍ ଲୋକ ଅଛନ୍ତି ଓ ସେମାନେ

ଗଣ୍ଡଗୋଳ କରିବେ। ଖବର ଦିଅନ୍ତି ଏଇଭଳିଆ ଓ ସବୁଦିନ ଆସି ମୋ' ପ୍ରାଇଭେଟ୍ ସେକ୍ରେଟେରୀଙ୍କୁ ପଚାରିବେ ମୁଁ କାହା ସାଙ୍ଗେ ଫୋନ୍‌ରେ କଥା ହେଉଛି। ପୋଲିସ ବିଭାଗ ଚାହିଁଲେ ଟେଲିଫୋନ୍ ବିଭାଗକୁ ପଚାରି ପାଇଥାଇପାରେ କିନ୍ତୁ ଇଣ୍ଟରକମ୍‌ରେ କଥା ହେଲେ ଜାଣିବେ କେମିତି? ସେଥିପାଇଁ ପ୍ରାଇଭେଟ୍ ସେକ୍ରେଟେରୀଙ୍କ ସହାୟତା ମଗାଯାଉଥିଲା। ଦିନେ କ୍ଷୁବ୍ଧ ହୋଇ ପ୍ରାଇଭେଟ୍ ସେକ୍ରେଟେରୀ ମୋତେ କହିବାରୁ ମୁଁ ଉପଦେଶ ଦେଲି 'ଏଣିକି ପଚାରିଲେ କହିଦେବ ସବୁଦିନେ ମନ୍ତ୍ରୀ ବିଜୟ ମହାପାତ୍ରଙ୍କ ସଙ୍ଗେ କଥାବାର୍ତ୍ତା ହେଉଛନ୍ତି।' ବହୁବର୍ଷ ପରେ ମୁଁ ଯେତେବେଳେ ସ୍ପେଶାଲ ବ୍ରାଞ୍ଚର ଆଇ.ଜି ହେଲି ସେ ଅଫିସର ନିଜେ ଆସି ଦୋଷମାନି କହିଲେ; 'ସାର୍ ମୋତେ ଯାହା ଆଦେଶ ଦିଆଯାଇଥିଲା ମୁଁ ତାହା ପାଳନ କରୁଥିଲି।' ଏଇସବୁ ଦୁଶ୍ଚିନ୍ତାରୁ ରକ୍ଷା ପାଇଲି ବାଣିଜ୍ୟ ପରିବହନ ନିଗମ ଯୋଗଦାନ କଲାପରେ । ସେ ସଂସ୍ଥାରେ ଦୁଃଶ୍ଚିନ୍ତା ଅନ୍ୟପ୍ରକାର।

ପାରାଦ୍ୱୀପରେ ଏକ ଉଚ୍ଚ ଶ୍ରେଣୀର ବନ୍ଦର କରିବା ପାଇଁ ବିଜୁବାବୁଙ୍କ ସ୍ୱପ୍ନ ଥିଲା। ତାଙ୍କର ତିନୋଟି ବିଶେଷତ୍ୱ ଥିଲା - ଜଣେ ସଫଳ ଶିଳ୍ପପତି, ସ୍ୱାଭିମାନୀ ରାଜନୀତିଜ୍ଞ ଓ ଦରଦୀ ପୁରୁଷ। ନାରୀକେଳ ବ୍ୟକ୍ତିତ୍ୱ ବିଜୁବାବୁ ଠୋ ଠା କଥା କହନ୍ତି ହେଲେ ତାଙ୍କ ଭିତରଟା କୋମଳ। ସେ ପ୍ରତିଶୋଧପରାୟଣ ନୁହଁନ୍ତି। ମୁଁ ବଡ଼ବିଲ ଏଏସ୍‌ପି ଥିଲାବେଳେ ମୋ' ବନ୍ଧୁ ହିମାଂଶୁ ସରକାର (ଆଇଏଏସ୍) ଚମ୍ପୁଆ ଏସଡ଼ିଓ ଥିଲେ। ବଡ଼ବିଲ ଅଞ୍ଚଳରେ ବିଜୁବାବୁଙ୍କର ଲୁହା ଖଣି ଥିଲା ଓ ତାଙ୍କର ଜଣେ ମ୍ୟାନେଜର ନିଜ ଔଦ୍ଧତ୍ୟାମି ଯୋଗୁଁ ସମଗ୍ର ସରକାରୀ କଳକୁ ଶତ୍ରୁ କରିସାରିଥିଲେ। ଥରେ ଧର୍ମଘଟ ହେଲା ଓ ମ୍ୟାନେଜର ବାବୁ ନିଜେ ଆସିବା ପରିବର୍ତ୍ତେ ଜଣେ ଲୋକ ହାତରେ ଖବର ପଠେଇଲେ ତାଙ୍କୁ ଦେଖାକରିବା ପାଇଁ। ତାଙ୍କ ଦୂତ କହିଲେ ଯେ ବିଜୁବାବୁ ଆସିବେ ତେଣୁ ଧର୍ମଘଟକାରୀଙ୍କ ବିରୁଦ୍ଧରେ ୧୪୪ ଧାରା କରାଯାଉ। ମ୍ୟାନେଜରଙ୍କ ପାଖକୁ ଯିବା ପରିବର୍ତ୍ତେ ଏସଡ଼ିଓ ଓ ମୁଁ ନିଷ୍ପତ୍ତି କଲୁ ସମସ୍ତଙ୍କ ବିରୁଦ୍ଧରେ ୧୪୪ ଧାରା ଲାଗୁ କରିବା ପାଇଁ। ବିଜୁବାବୁ ସେତେବେଳେ କେନ୍ଦୁଝର ଆସିଥିଲେ, ମ୍ୟାନେଜର ଅଭିଯୋଗ କରିବାରୁ କହିଲେ 'ସେ ଟୋକା ଅଫିସରଗୁଡ଼ା ଆଇନ୍ ଫାଇନ୍ କିଛି ବୁଝିନଥିବେ। ଆପିଲ ନକରି ମୋ' ପାଖକୁ କାହିଁକି ଆସିଛ?' କଥା ସେତିକିରେ ସରିଲା। ମୋ' ଲେଖିବାର ଉଦ୍ଦେଶ୍ୟ ହେଉଛି ବିଜୁବାବୁ ଆଦୌ ପ୍ରତିଶୋଧପରାୟଣ ନୁହଁନ୍ତି। ରାଗିଲା ବେଳେ ଦିଆସିଲି କାଠି ଭଳି ଫୁର୍ କିନା ଜଳି ଫୁର୍ କିନା ଲିଭିଯାନ୍ତି। କିନ୍ତୁ ପ୍ରବଳ ଜିଦ୍‌ଖୋର। ପଣ୍ଡିତ ନେହେରୁଙ୍କ ସଙ୍ଗେ ଜିଦ୍ କରି ପାରାଦ୍ୱୀପ ବନ୍ଦର କରେଇଲେ। କିନ୍ତୁ ଦୈତାରୀ ମାଇନ୍‌ସ୍‌ରୁ ଲୁହାପଥର ଆଣିବା ପାଇଁ ରେଲ୍ ଲାଇନ୍

ମାଗିବାରୁ କେନ୍ଦ୍ର ସରକାର ମନାକଲେ। ଦୃଢ଼ ସଂକଳ୍ପ (ଜିଦ୍‌ଖୋର୍ ବି କୁହାଯାଇପାରେ) ବିଜୁବାବୁ କହିଲେ ଆମେ ରାସ୍ତା କରିବୁ। ଦୈତାରୀରୁ ପାରାଦ୍ୱୀପ ଏକ୍ସପ୍ରେସ୍ ଓ୍ୱେ ରାସ୍ତା ହେଲା ଓ ଏଭଳି ରାସ୍ତା ସାଙ୍ଗେ କୌଣସି ରାସ୍ତା (ସମ୍ବଲପୁର ରାଉରକେଲା ରାସ୍ତାକୁ ଛାଡ଼ି) ସମକକ୍ଷ ନୁହେଁ। ସେତେବେଳେ ଓଡ଼ିଶାରେ ଟ୍ରକ୍‌ର ଅଭାବ। ପୁରୁଣା ମଡ଼େଲ୍ ଟ୍ରକ୍, ୧୦ ଟନ୍‌ରୁ ବେଶୀ ଲୁହା ପଥର ବୋହିପାରିବେ ନାହିଁ। ଅତ୍ୟଧିକ ଟ୍ରକ୍ ଚଳପ୍ରଚଳ ଯୋଗୁ ବହୁତ ଦୁର୍ଘଟଣା ହେଉଥିଲା। ସମସ୍ୟାର ସମାଧାନ ପାଇଁ ଏକ ନୂଆ ବାଣିଜ୍ୟ ପରିବହନ ନିଗମ କରାଗଲା। ଜାପାନରୁ ବଡ଼ ବଡ଼ ଟ୍ରକ୍, ଡମ୍ପର ଅଣାଗଲା ଓ ସେଗୁଡ଼ିକ ତିରିଶ ଚାଳିଶ ଟନ୍ ଲୁହାପଥର ବୋହିପାରୁଥିଲେ। ଦୈତାରୀରୁ ପାରାଦ୍ୱୀପକୁ କିପରି ଲୁହାପଥର ପଠେଇବୁ ସେହି ଚିନ୍ତାରେ ଓଡ଼ିଶା ଖଣି ନିଗମ ମୁଣ୍ଡରେ ହାତଦେଇ ବସିଥିଲେ। କିନ୍ତୁ ବାଣିଜ୍ୟ ପରିବହନ ନିଗମ ମୁଣ୍ଡବ୍ୟଥାର କାରଣ ଦୂର କରିଦେଲା। ପରିବହନ ନିଗମ ଖୁବ୍ ଭଲ ଚାଲିଲା କିନ୍ତୁ ଅନେକ ବ୍ୟବସାୟୀ ସଂସ୍ଥା ଟ୍ରକ୍ ଆଣିଲା ପରେ ଖଣି ନିଗମ ଚାହିଁଲା ସେମାନଙ୍କ ଦ୍ୱାରା ବ୍ୟବସାୟ କରିବା ପାଇଁ। କାରଣ ବଡ଼ ସହଜ। ପରିବହନ ନିଗମ ପର୍ସେଣ୍ଟେଜ୍ ଦେଇପାରିବ ନାହିଁ। ଅଣସରକାରୀ ବ୍ୟବସାୟୀ ସଂସ୍ଥା ମୋଟା ଅଙ୍କର ପର୍ସେଣ୍ଟେଜ୍ ଦେବେ। ଯେଉଁଭଳି ନିଗମକୁ ପରିବହନ ନିଗମ ଆୟୁବର୍ଦ୍ଧକ ଖାଦ୍ୟ ଦେଇଥିଲା ସେଇ ପରିବହନ ନିଗମର ଅକାଳ ବାର୍ଦ୍ଧକ୍ୟର କାରଣ ହେଲା ଖଣି ନିଗମ। ବାଣିଜ୍ୟ ପରିବହନ ନିଗମ ପାରାଦ୍ୱୀପ ବନ୍ଦରରୁ କିଛି ବ୍ୟବସାୟ ପାଇଥାଏ, ତାଳଚେର କୋଇଲା ଖଣିରେ ଆଉକିଛି। ଖଣି ନିଗମ ଅନ୍ୟ ବେପାରୀଙ୍କୁ ସନ୍ତୁଷ୍ଟ କଲାପରେ ଯାହାକିଛି ବଳେ ତାହା ପରିବହନ ନିଗମକୁ ଦୟା ପୂର୍ବକ ଦିଏ। ଏହି ନିଗମକୁ 'ଅମାନିଆ' ଆଇପିଏସ୍ ଅଫିସର୍‌ଙ୍କୁ ପଠାଯାଏ। ୧୯୯୪ରେ କଂଗ୍ରେସ ସରକାର କ୍ଷମତାକୁ ଆସିବା ପରେ ପୋଲିସ କର୍ତ୍ତୃପକ୍ଷ ମୋତେ ସେଇଠିକି ପଠେଇବା ପାଇଁ ସେକ୍ରେଟେରିଏଟ୍‌ର ତିନି ମହଲାରେ ପ୍ରସ୍ତାବ ଦେଲେ। ମୁଁ ସେ ଅଫିସରେ ପହଞ୍ଚି ଦେଖିଲି ସମସ୍ତଙ୍କ ମୁହଁରେ ନୈରାଶ୍ୟର ଭାବ। ଦରମା ତିନି ମାସ ହେଲା ପାଇ ନାହାଁନ୍ତି। ଏକମାତ୍ର କାର୍ ତାକୁ ପେଟ୍ରୋଲ ଦେବା ବନ୍ଦ କରିଦିଆଯାଇଛି। ପାରାଦ୍ୱୀପ ପୋର୍ଟରେ ବିଲ୍ କ୍ଲିୟର କରିବାକୁ କଳା ଟଙ୍କା ଦରକାର ପଡୁଛି। ପୋର୍ଟ କଥା ଛାଡ଼ନ୍ତୁ ଓଡ଼ିଶାର ଗୋଟିଏ ବିଭାଗରୁ କେତେ ଲକ୍ଷ ଟଙ୍କା ମିଳିବାର ଥିଲା। ସେ ବିଭାଗର ସେକ୍ରେଟେରୀ ନିର୍ଲଜ ଭାବେ ଗୋଟେ ଭିସିଆର ମାଗିଲେ ଓ ତାଙ୍କୁ ଜଣେ କଣ୍ଟ୍ରାକ୍ଟର ଜରିଆରେ ଦିଆଗଲା। ଏକଥା କୌଣସି ରେକର୍ଡ଼ରେ ନାହିଁ। ଥିଲେ ମୁଁ ଭିଜିଲାନ୍‌ସରେ ଦେଇଥାନ୍ତି।

ମୁଁ ଅଫିସରମାନଙ୍କୁ ଡାକି କହିଲି ଯେ 'ମୁଁ ପଳେଇ ଯିବା ପାଇଁ ଆସିନାହିଁ। ତୁମ୍ଭେମାନେ ସହଯୋଗ କଲେ ଅଧିକ ବ୍ୟବସାୟ ଆଦେଶ ଆଣିବି ଓ ଅନ୍ତତଃପକ୍ଷେ

ଦରମା ଦେଇହେବ ଓ ଋଣ ଶୁଝିହେବ।' ପାରାଦ୍ୱୀପ ବନ୍ଦର ଚେୟାରମ୍ୟାନ୍‌ଙ୍କ ସାଙ୍ଗରେ କଲେଜ ବେଳୁ ଚିହ୍ନା ପରିଚୟ, ତାଙ୍କ ସାଙ୍ଗେ କଥାବାର୍ତ୍ତା ହେବାରୁ ଅଧିକା ଅର୍ଡ଼ର ମିଳିଲା ଓ ବିଲ୍ ସୁରୁଖୁରୁରେ ପାସ୍ ହେଲା। ତାଳଚେରର ଚିଫ୍ ଜେନେରାଲ୍ ମ୍ୟାନେଜରଙ୍କୁ ଦେଖାକରି କଥାବାର୍ତ୍ତା ହେବାରୁ ସେଠାରୁ ମଧ ଭଲ ଅର୍ଡ଼ର ମିଳିଲା। କିନ୍ତୁ ସରକାରଙ୍କ ବିଭାଗରୁ ଆଦେଶ ପାଇବା କଷ୍ଟ ହେଲା କାରଣ କଂଗ୍ରେସ ସରକାର ମୋ' ପ୍ରତି ବିମୁଖ ବୋଲି ଅନେକଙ୍କର ଧାରଣା ଥିଲା। ସେଇ ସମୟରେ ମୁଁ ଚେଷ୍ଟା କଲି ପରିବହନ ନିଗମକୁ ଖଣି ନିଗମରେ ମିଶେଇ ଦେବା ପାଇଁ। ଏ ସଂକ୍ରାନ୍ତରେ ଦୁଇ ତିନି ଥର ମିଟିଂ ହେଲା। ଅତିରିକ୍ତ ମୁଖ୍ୟ ସଚିବ ସୁଧାଂଶୁ ମିଶ୍ରଙ୍କ ଅଧକ୍ଷତାରେ ଯେଉଁ ମିଟିଂ ହେଲା ସେଥିରେ ଖଣି ନିଗମର ଚେୟାରମ୍ୟାନ ପ୍ରସନ୍ନ ମିଶ୍ର ବିଶେଷ ଆପତ୍ତି ଉଠେଇଲେ ନାହିଁ। ମୁଁ ସମସ୍ତ କର୍ମଚାରୀଙ୍କୁ ଦରମା ଦେବାରେ ସକ୍ଷମ ହେଲି। କିନ୍ତୁ ଖଣି ନିଗମ ସହିତ ମିଶ୍ରଣ ବୋଧହୁଏ କରିପାରିଥାନ୍ତି ଯଦି ଆଉ କିଛିଦିନ ରହିଥାନ୍ତି। ଇତି ମଧ୍ୟରେ ଏକ ଦୁର୍ଘଟଣା ଘଟିଲା। ଜଣେ ମନ୍ତ୍ରୀ ମୋତେ ଘରକୁ ଡକେଇଲେ ଓ ଖୁବ୍ ଅତିଥି ଚର୍ଚ୍ଚା କଲେ। ତାଙ୍କ ଅତିଥି ଚର୍ଚ୍ଚା ଦେଖି ମୁଁ ପ୍ରମାଦ ଗଣିଲି। ଶଲ୍ୟ ଦୁର୍ଯ୍ୟୋଧନର ଫାଶରେ ପଡ଼ିଲା ପରି ମୁଁ ପଡ଼ିବି ନାହିଁ ତ ? ମନ୍ତ୍ରୀ ମୋତେ ନିଗମ କଥା ପଚାରିଲେ ଓ ମୁଁ ତାଙ୍କୁ କହିଲି ଖଣିନିଗମ ସହିତ ମିଶ୍ରଣ କରିବା ପାଇଁ ମୁଁ ପ୍ରୟାସ କରୁଛି ଓ ସରକାର ଆଦେଶ ଦେଇଛନ୍ତି ଖାଲିଥିବା ପଦବୀ ପୂରଣ କରାଯିବ ନାହିଁ ଏବଂ କୌଣସି ପଦୋନ୍ନତି ଦିଆଯିବ ନାହିଁ। ସେସବୁ କରିବା ଦ୍ୱାରା ଖର୍ଚ୍ଚ ଉପରେ ନିୟନ୍ତ୍ରଣ ରହୁଛି ଓ ଖଣି ନିଗମ ସଙ୍ଗରେ ମିଶ୍ରଣ ହୋଇଗଲେ ଆଉ କିଛି ସମସ୍ୟା ରହିବ ନାହିଁ। ମୋର କହିବାର ଉତ୍ସାହ ବଢ଼ିଚାଲିଥାଏ କାରଣ ମନ୍ତ୍ରୀ ମହାଶୟ ମଝିରେ ମଝିରେ 'ବଢ଼ିଆ', 'ଏପରି କରିବା ଦରକାର' ଭଳି ମନ୍ତବ୍ୟ ଦେଉଥାନ୍ତି। ନିଜର କୃତିତ୍ୱରେ ସନ୍ତୁଷ୍ଟ ହୋଇ ମୁଁ ଯିବା ପାଇଁ ବାହାରୁଛି ମନ୍ତ୍ରୀ ଉବାଚ - ମିଶ୍ର ସାହେବ୍ ଆମ ଏରିଆରୁ ସତୁରି ଅଶିଟା ଲୋକ ଆସିଛନ୍ତି ତାଙ୍କୁ ଖଣ୍ଡେ ଖଣ୍ଡେ ଚାକିରି ଦେଇଦିଅନ୍ତୁ। ଆକାଶରୁ ଖସିପଡ଼ିଲା ପରି ମୋତେ ଲାଗିଲା। ଏ ଲୋକଟା ଅତି ମୂର୍ଖ ନା ଅତି ଚାଲାକ୍ ମୁଁ କଳନା କରିପାରିଲି ନାହିଁ। ଏବେ ବୁଝୁଛି ଯେ ଖୁବ୍ ଚାଲାକ୍ କାରଣ ସେ ଗୋଟିଏ ବିରାଟ ଇଞ୍ଜିନିୟରିଂ କଲେଜ ବେନାମୀରେ କରୁଛନ୍ତି ଓ ତାହା ଅଧାରେ ଅଟକି ଯାଇଛି। ମୁଁ ତାଙ୍କୁ ପୁଣି ବୁଝେଇଲି - ସାର୍, ଆପଣ ବୋଧେ ଅନ୍ୟମନସ୍କ ଥିଲେ। ମୁଁ କହିଥିଲି ଯେ ଖର୍ଚ୍ଚ କାଟ୍ ହେଉଛି, ଖାଲିଥିବା ପଦବୀ ପୂରଣ କରାଯିବ ନାହିଁ ସରକାରୀ ଆଦେଶ ଆସିଛି ...'। ମୋ' ପାଟିରୁ କଥା ଛଡ଼େଇ ନେଇ ସେ କହିଲେ 'ହଁ, ସରକାରଙ୍କ ଆଦେଶ ମାନନ୍ତୁ। ମାନିବେ ନାହିଁ କେମିତି ? କିନ୍ତୁ ମୋ' ଲୋକଗୁଡ଼ାକୁ ଚାକିରିରେ ରଖିଦିଅନ୍ତୁ। ହଁ, ଆଉ ଗୋଟିଏ

କଥା, ମୋ' ଘର ତିଆରିରେ ଇଟା, ବାଲି, ସିମେଣ୍ଟ ଆଣିବାକୁ ଭାରି ଅସୁବିଧା ହେଉଛି। ଆପଣଙ୍କ କର୍ପୋରେସନ ତରଫରୁ ମୋତେ ଗୋଟେ ଟ୍ରକ୍ ଦିଅନ୍ତୁ।' ଏମିତି ହୋଇପାରିବ ନାହିଁ କହି ମୁଁ ଉଠି ଆସିଲି। ଏ ଘଟଣାର ଅଳ୍ପ ଦିନ ପରେ ମୋର ବଦଳି ହେଲା ଆଇ.ଜି ପ୍ରଶାସନ ଭାବରେ। ସରକାର ଡି.ଜି ରବିନାରାୟଣ ମହାପାତ୍ରଙ୍କୁ ହଟେଇ ପୋଲିସ ହାଉସିଂ କର୍ପୋରେସନର ଚେୟାରମ୍ୟାନ୍ କଲେ ଓ ଅମୀୟ ଭୂଷଣ ତ୍ରିପାଠୀ ହେଲେ ନୂଆ ଡି.ଜି। ସେ ଓ ଘରୋଇ ସଚିବ ସଂଜିବ ବାବୁ ସରକାରଙ୍କ ଉପରେ ଚାପ ପକେଇ ମୋତେ ଆଇ.ଜି ପ୍ରଶାସନ ଭାବେ ନେଲେ।

ନିଗମର ମୁଖ୍ୟ ଥିବା ସମୟରେ ସରକାରଙ୍କ ଠାରୁ ଏକ ଅଦ୍ଭୁତ ଓ ଆନନ୍ଦଦାୟକ ଆଦେଶ ମିଳିଲା। ପୋଲିସର ହୀରକ ଜୟନ୍ତୀ କରାହେଉଥିଲା ବେଶ୍ ଧୁମ୍‌ଧାମ୍‌ରେ। ଯଦିଓ ମୁଁ ପୋଲିସ୍ ବିଭାଗରେ ସେତେବେଳେ ନଥିଲି ମୋତେ ଆବାହକ କରାଗଲା। ଏ ସମ୍ପର୍କରେ ଡି.ଜିଙ୍କୁ ଦେଖା କରିବା ପୂର୍ବରୁ କେତେକ କାର୍ଯ୍ୟକ୍ରମ ମନ ମଧରେ ବାଛିଲି। ପ୍ରଥମ ହେଲା ଏକ ସୁଦୃଶ୍ୟ ପ୍ୟାରେଡ୍ କରାଯିବ ଓ ମାନ୍ୟବର ରାଜ୍ୟପାଳଙ୍କୁ ଡକାଯିବ। ମୁଖ୍ୟମନ୍ତ୍ରୀ ଆସିପାରିବେ ନାହିଁ କାରଣ ସାଂସଦ ନିର୍ବାଚନ ଥିଲା। ଏକ ସୁନ୍ଦର ସ୍ମରଣିକା କରାଯିବ। ପ୍ୟାରେଡ୍‌ରେ ପାଞ୍ଚଜଣ ଅବସରପ୍ରାପ୍ତ ଏବଂ କୃତବିଦ୍ ପୋଲିସ ଅଫିସରଙ୍କୁ ସ୍ୱତନ୍ତ୍ର ସମ୍ବର୍ଦ୍ଧନା ଦିଆଯିବ ଏବଂ ଏହି ବ୍ୟବସ୍ଥା ସବୁବର୍ଷ ଚାଲୁ ରହିବ। ପାଞ୍ଚ ଜଣ ଅବସରପ୍ରାପ୍ତ ପୋଲିସ ଖେଳାଳିଙ୍କୁ ମଧ ସମ୍ବର୍ଦ୍ଧନା ଦିଆଯିବ। ପୋଲିସ ସଂକ୍ରାନ୍ତରେ ଏକ ଫିଚର ଫିଲ୍ମ କରାଯିବ। ପୋଲିସର ପୁରୁଣା ରେକର୍ଡ୍ ଅସ୍ତ୍ରଶସ୍ତ୍ର ପୋଷାକର ଏକ ସଂଗ୍ରହାଳୟ କରାଯିବ। ପୋଲିସ ବ୍ୟାଣ୍ଡପାର୍ଟି ପାଇଁ ଏକ ସ୍ୱତନ୍ତ୍ର ଓଡ଼ିଶା ପୋଲିସର ଟ୍ୟୁନ୍ କରାଯିବ।

ମୁଁ ସବୁଦିନ ଆସି ଡି.ଜି ଅଫିସରେ ବସୁଥିଲି ଓ ଏସବୁ କାମ କରୁଥିଲି। ହୀରକ ଜୟନ୍ତୀରେ ଏକ ସେମିନାର ହୋଇଥିଲା ଓ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଆସିଥିଲେ। ଜୟନ୍ତୀ ବେଶ୍ ସୁରୁଖୁରୁରେ ସରିଲା। ସରକାର ଏକ ପ୍ରଶଂସା ପତ୍ର ଦେଲେ ଓ ଆଇ.ଜି ପାହ୍ୟାର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ (ଆଇ.ଜି ପ୍ରଶାସନ) ପଦବୀରେ ମୁଁ ଅବସ୍ଥାପିତ ହେଲି। ଇତି ମଧ୍ୟରେ ଦୁଇଥର ମୁଖ୍ୟମନ୍ତ୍ରୀଙ୍କ ସାଙ୍ଗରେ ଦେଖାହୋଇଥିଲା, ଥରେ ସ୍ୱାଧୀନତା ଦିବସ ଉପଲକ୍ଷେ ମୋ' ଛାତିରେ ରାଷ୍ଟ୍ରପତିଙ୍କର ବିଶିଷ୍ଟ ସେବା ମେଡ଼ାଲ ସେ ଝୁଲେଇଥିଲେ, ଆଉଥରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଦେଇଥିଲେ। ଉଭୟଥର ବେଶ୍ ଗମ୍ଭୀର ଦିଶୁଥିଲେ। ବୋଧହୁଏ ଭାବୁଥିଲେ ଏ ଅଫିସର ପ୍ରତି ଅନ୍ୟାୟ କରିଛି। ମୁଁ ଆଇ.ଜି ପଦରେ ଅବସ୍ଥାପିତ ହେବାପରେ ତାଙ୍କୁ ଦେଖାକଲି। ଏଣିକି ସେ ବେଶ୍ ପ୍ରଫୁଲ୍ଲ। କେତେବେଳେ କେମିତି ଡି.ଜି ନଥିଲେ ମୋତେ ଫୋନ୍ କରି କଥାବାର୍ତ୍ତା

ହୁଅନ୍ତି। କେବେ ମୌଖିକ ଭାବରେ ବେନିୟମ ଆଦେଶ ନେଇନାହାଁନ୍ତି ଲିଖିତ ତ ଦୂରର କଥା। ଜାନକୀବଲ୍ଲଭ ପଟ୍ଟନାୟକଙ୍କ ବିଚକ୍ଷଣତାକୁ ଦେଖିଲେ ଯେକୌଣସି ଲୋକର ମୁଣ୍ଡ ନଇଁଯିବ। ଯେକୌଣସି ସମସ୍ୟା ବିଷୟରେ କହିଲେ ସାଙ୍ଗେ ସାଙ୍ଗେ ସମାଧାନର ଉପାୟ ବତେଇ ଦିଅନ୍ତି। ଆସେମ୍ବ୍ଲିର ପ୍ରଶ୍ନ ଉତ୍ତର ସମୟରେ ହୋମ୍ ସେକ୍ରେଟେରୀ ଓ ମୁଁ ତାଙ୍କ ପାଖକୁ ଯାଉ। ପ୍ରଶ୍ନ ଓ ଆମେ ଲେଖିଥିବା ଉତ୍ତରକୁ ଆଖିବୁଜି ଶୁଣନ୍ତି ଓ ତା'ପରେ କିଛି ସଂଶୋଧନ କରିଦିଅନ୍ତି। ଆମେ ନଜାଣିଥିବା କଥା କିଛି କହିଦିଅନ୍ତି, କୁଆଡୁ ସଂଗ୍ରହ କରନ୍ତି କେଜାଣି ? ଆସେମ୍ବ୍ଲିରେ ଉତ୍ତର ଦେଲାବେଳେ ସାମାନ୍ୟ ବିଚଳିତ ହୁଅନ୍ତି ନାହିଁ। କାରଣ ତାଙ୍କୁ ଯୁକ୍ତିରେ କେହି ପରାସ୍ତ କରିପାରି ନାହାଁନ୍ତି। ଆସେମ୍ବ୍ଲି ଭିତରକୁ ପଶିବା ପୂର୍ବରୁ ଚ୍ୟାମ୍ବରକୁ ଡକାନ୍ତି ଓ ପ୍ରଶ୍ନୋତ୍ତର ପରେ ଫେରିଗଲେ ଆଉଥରେ ଡକାନ୍ତି। ଯାହା ଉତ୍ତର ଦେଇଛନ୍ତି, ପ୍ରତିଶ୍ରୁତି ଦେଇଛନ୍ତି ତାହା ପାଳନ କରିବା ପାଇଁ ଆଦେଶ ଦିଅନ୍ତି। ଭିନ୍ନ ମତ ଦେଲେ ମଧ୍ୟ ରାଗନ୍ତି ନାହିଁ, ବିଜୁ ବାବୁ ହୋଇଥିଲେ କହିଥାନ୍ତେ 'ତୁ କ'ଣଟା ଜାଣିଛୁ ଚୁପ୍ ରୁହ।' ଜାନକୀ ପଟ୍ଟନାୟକଙ୍କ ଚ୍ୟାମ୍ବରରେ ଉତ୍ତେଜନା କିମ୍ବା ଭୟର ଲେଶ ମାତ୍ର ଚିହ୍ନ ନଥାଏ। ଅ ଆରମ୍ଭ କଲା ମାତ୍ରେ କ୍ଷ ଧରି ପାରୁଥିବା ଏଇ ଧୀରସ୍ଥିର ବିଚକ୍ଷଣ ମୁଖ୍ୟମନ୍ତ୍ରୀଙ୍କ ନିକଟରେ କାମ କରିବା ସୌଭାଗ୍ୟର କଥା।

ଆଇ.ଜି ପ୍ରଶାସନର ବହୁତ୍ କାମ। ବଦଳି, ପ୍ରମୋଶନ, ଅଭିଯୋଗ ଶୁଣାଣୀ, ଗଣମାଧ୍ୟମ ସହିତ ସମନ୍ୱୟ ରକ୍ଷା କରିବା, ଏସ୍‌ପି ଅଫିସ ପରିଦର୍ଶନ କରିବା, ଓଡ଼ିଶା ସରକାରଙ୍କ ତରଫରୁ ଦିଲ୍ଲୀରେ ବିଭିନ୍ନ ସମ୍ମିଳନୀକୁ ଯିବା, ଅନ୍ୟାନ୍ୟ ବିଭାଗ ସହିତ ସମନ୍ୱୟ ରକ୍ଷା କରିବା, ଘରୋଇ ଏବଂ ଅର୍ଥ ବିଭାଗ ଠାରୁ ବିଭିନ୍ନ ପ୍ରସ୍ତାବର ଅନୁମୋଦନ ଆଣିବା ଇତ୍ୟାଦି କାମ ସହିତ ଡି.ଜିଙ୍କୁ ସବୁ ରକମର କାର୍ଯ୍ୟରେ ସହାୟକ ହେବା ଇତ୍ୟାଦିର ବୋଝ ବେଶ୍ ଭାରି ଥିଲା। ଦାୟିତ୍ୱ ଯେତିକି ବେଶୀ ହେବ ସେହି ପରିମାଣରେ କ୍ଷମତା ଆସିବ ଓ କ୍ଷମତା ସାଙ୍ଗରେ ଉତ୍ତରଦାୟିତ୍ୱ ତ ସବୁବେଳେ ଯୋଡ଼ାଯାଇଥାଏ। ଏହାର ଅନ୍ୟ ଏକ ଦିଗ ହେଉଛି ଈର୍ଷା ଜାତ କରାଇବା। ପୋଲିସ୍ ବାହିନୀରେ ଶୃଙ୍ଖଳା ରକ୍ଷା କରିବା ମଧ୍ୟ ମୋର କାମ ଥିଲା। ବିଭିନ୍ନ ସଂଘକୁ ସହଯୋଗ କରିବା ସହିତ ନିୟନ୍ତ୍ରଣ କରିବାକୁ ମଧ୍ୟ ପଡୁଥିଲା। ସେ ସମୟରେ ଆଇପିଏସ୍‌ରେ ବିଶୃଙ୍ଖଳା ପଶିଲାଣି। କେତେକ ଯୁବ ଅଫିସର ଏକ ମେଣ୍ଟ ବାନ୍ଧି ପରସ୍ପରକୁ ଖବର ଦେଉଥିଲେ ଓ ନିଜର ବଦଳି କରାଉଥିଲେ। ଭୁବନେଶ୍ୱର ମାର୍କେଟ୍‌ରେ ଏକ ଜଣାଶୁଣା ଦୋକାନର ମାଲିକ ମାଧ୍ୟମରେ ଏମାନେ ରାଜନୈତିକ ଚାପ ପକାଉଥିଲେ। ମୋତେ ଓ ହୋମ୍‌ସେକ୍ରେଟେରୀଙ୍କୁ ହଟେଇବା ଏହି କ୍ଷୁଦ୍ର ଦଳର କାର୍ଯ୍ୟ ଥିଲା। ଆମ ଦୁଇଜଣଙ୍କ ବିରୁଦ୍ଧରେ ଖବର କାଗଜରେ ଛପେଇବାର ବନ୍ଦୋବସ୍ତ ମଧ୍ୟ ହୋଇଥିଲା। ଜଣେ ଏସ୍‌ପି

ଉପମୁଖ୍ୟମନ୍ତ୍ରୀଙ୍କ ପାଦ ଛୁଉଁଥିଲେ, ଆଉ ଜଣେ ଚଟାଣରେ ବସି ପଡୁଥିଲେ । ଟିକିଏ ଭଲ ପୋଷ୍ଟିଂ ପାଇବେ ବୋଲି ଏଇ ଆଶାରେ ଅଫିସରମାନେ ବହୁତ ତଳକୁ ଯେ ଖସି ଯାଆନ୍ତି ଏକଥା ପାଠକମାନେ ଜାଣନ୍ତି କି ନାହିଁ ମୁଁ ଜାଣିନି ।

ମୁଁ ଆଇ.ଜି ଥିବା ସମୟରେ ପୁରୀର ବିଶ୍ୱ ବିଖ୍ୟାତ ନବକଳେବର ହେଲା ଓ ଡିଜି ମୋତେ ପରିଚାଳନାର ସମ୍ପୂର୍ଣ୍ଣ ଦାୟିତ୍ୱ ଦେଲେ । ସେଥିପାଇଁ ବିରାଟ ପ୍ରସ୍ତୁତି ଚାଲିଲା, ବାରମ୍ବାର ପୁରୀ ଯିବାକୁ ପଡ଼ିଲା ।

୧୯୯୬ ମସିହାରେ ଜଗନ୍ନାଥଙ୍କ ନବକଳେବର । ଯେହେତୁ ମୁଁ ୧୯୬୯ ମସିହା ନବକଳେବର ସମୟରେ ପୁରୀରେ ତାଲିମ୍ ପାଉଥିଲି, ମୋର କିଛି ଅଭିଜ୍ଞତା ଥିଲା । ସେତେବେଳେ ଏସ୍‌ପି ଏନ୍.କେ.ସିଂହ (ଯାହାଙ୍କୁ ମୁଁ ବହୁତ ସମ୍ମାନ କରେ) ସେ ମୋତେ ନବକଳେବର ବନ୍ଦୋବସ୍ତ ବିଷୟରେ ବେଶ୍ ଭଲ ଧାରଣା ଦେଇଥିଲେ । କିନ୍ତୁ ଇତି ମଧ୍ୟରେ ବହୁତ କିଛି ଘଟିଯାଇଛି । ପୁରୀ ସହରର ଜନସଂଖ୍ୟା ବହୁତ ବଢ଼ିଗଲାଣି ଓ ରାଜ୍ୟରେ ବହୁତ ଗାଡ଼ି । ଯାତ୍ରୀଙ୍କ ସଂଖ୍ୟା ବହୁତ ଅଧିକ ହେବ କିନ୍ତୁ ବଡ଼ଦାଣ୍ଡ ଯାହା ଥିଲା ସେଇଆ ଓ ରାସ୍ତା ଦୁଇ ପାଖରେ ସେଇ ପୁରୁଣା ଘର । ଅନେକ ମଠ ଦଦରା ଅବସ୍ଥାକୁ ଆସିଲେଣି, ଭୟ ହେଉଥାଏ କାଳେ ବହୁତ ଲୋକ ଯଦି ଘର ଉପରେ ବସି ରଥଯାତ୍ରା ଦେଖିବେ ଯେକୌଣସି ମୁହୂର୍ତ୍ତରେ ଦୁର୍ଘଟଣା ଘଟିଯାଇପାରେ ।

ବହୁତ ଅଧିକ ସଂଖ୍ୟାରେ ଟ୍ରେନ୍ ଆସିବେ ଓ ଯାତ୍ରୀମାନଙ୍କୁ ସୁରକ୍ଷା ଦେବା ଏକ ଗୁରୁଦାୟିତ୍ୱ ଥିଲା । ଜାମଶୋଳା ଓ ଜଳେଶ୍ୱର ଦେଇ ଉତ୍ତର ଭାରତରୁ ସୋହେଲା ଦେଇ, ମଧ୍ୟ ଭାରତରୁ ଓ ଗିରିଶୋଳା ଦେଇ ଓ ଦକ୍ଷିଣ ଭାରତରୁ ଅନେକ ଯାତ୍ରୀବାହୀ ବସ୍ ମଧ୍ୟ ଆସିବେ । ଦୁର୍ଘଟଣା ସହିତ ରାସ୍ତାରେ ଗାଡ଼ି ଅଟକେଇ ଦାଦାବଟି ଅସୁଲର ସମ୍ଭାବନାକୁ ଦୂର କରିବା ପାଇଁ ପୋଲିସ ପେଟ୍ରୋଲିଂ ଦରକାର । ପୁଣି ଅଧିକ ଫୋର୍ସ, କେନ୍ଦ୍ର ସରକାର, ବିହାର ଓ ଆନ୍ଧ୍ର ସରକାରଙ୍କୁ ମାଗିବାକୁ ପଡ଼ିବ । ବିଭିନ୍ନ ରାଜ୍ୟକୁ ଲେଖିବାକୁ ପଡ଼ିବ ସେ ରାଜ୍ୟର ଚୋର ଖଣ୍ଡକୁ ଠାବ କରିବା ପାଇଁ ସାଧାପୋଷାକରେ ଅଫିସର ପଠାଇବା ପାଇଁ । ହୋମ୍ ସେକ୍ରେଟେରୀ ସଞ୍ଜୀବ ହୋତା, ପୂର୍ତ୍ତ ବିଭାଗ ସେକ୍ରେଟେରୀ ଶ୍ରୀ ରଥ ଓ ମୁଁ ଗଲୁ ଦେଖିବା ପାଇଁ ଯେ ପିପିଲି ସହର ପୂର୍ବରୁ ବାଇପାସ୍ କରି ହେବ କି ନାହିଁ । ବିଭିନ୍ନ କାରଣରୁ ତାହା ସମ୍ଭବ ନଥିଲା ତେଣୁ କଟକରୁ ପୁରୀ ପର୍ଯ୍ୟନ୍ତ କଡ଼ାକଡ଼ି ଟ୍ରାଫିକ୍ ନିୟନ୍ତ୍ରଣର ବନ୍ଦୋବସ୍ତ କରିବାକୁ ପଡ଼ିଲା । ଓଡ଼ିଶା ବାହାରୁ ପ୍ରଥମ ଥର ପାଇଁ ସିଆରପିର ରାପିଡ଼ ଆକ୍ସନ ଫୋର୍ସ ଆଣିବାକୁ ପଡ଼ିଲା । ଏତେ ଫୋର୍ସଙ୍କ ରହିବା, ଅସ୍ଥାୟୀ ପାଇଖାନା ତିଆରି କରିବା, ଖାଦ୍ୟ ଶସ୍ୟ ଓ ଜଳ ଯୋଗାଣ କରିବା ଇତ୍ୟାଦି କାର୍ଯ୍ୟକୁ ମଧ୍ୟ ତଦାରଖ କରିବାକୁ ପଡ଼ିଲା । ଆଉ ଗୋଟିଏ ବଡ଼ ଦାୟିତ୍ୱ ଥିଲା

ବଡ଼ ବଡ଼ ଅଫିସରଙ୍କର ରହିବା ପାଇଁ ସ୍ଥାନ। କାମ ଥାଉ କି ନଥାଉ ସମସ୍ତେ ସପରିବାରେ ବାହାରି ପଡ଼ନ୍ତି ଓ ସମସ୍ତଙ୍କ ଦରକାର ସବୁଠୁ ଭଲ ସ୍ଥାନ। ନିଜ ରହିବା ସ୍ଥାନ ଦେଖିସାରି ଅନ୍ୟମାନେ ବିଶେଷତଃ ତାଙ୍କ ଜୁନିୟରମାନେ କିଭଳି ସ୍ଥାନରେ ରହୁଛନ୍ତି ତା' ଉପରେ ମଧ୍ୟ ନଜର ପକାଯାଏ। ସତ କହିବାକୁ ଗଲେ ସବୁ ପରିସ୍ଥିତିର ସମାଧାନର ବାଟ ଅଛି କିନ୍ତୁ ମଣିଷର ଲୋଭ, ଗର୍ବ, ଅହମିକା ଜନିତ ପରିସ୍ଥିତି ସମ୍ଭାଳିବା କାଠିକର ପାଠ। ସ୍ଥାନୀୟ ପୋଲିସ କେତେକ କମ୍ପାନୀ ଗେଷ୍ଟ ହାଉସ୍‌ର ରୁମ୍ ରଖିଥିଲେ। କେତେକ ହୋଟେଲ୍ ରୁମ୍ ବରାଦ ମଧ୍ୟ ମିଳିଥିଲା। ଜଣେ ଉଚ୍ଚ ପୋଲିସ ଅଫିସର ଆଗତୁରା ଗଲେ ଦେଖିବା ପାଇଁ ତାଙ୍କ ପାଇଁ ଯେଉଁ ରୁମ୍ ହୋଇଛି ତାହା ମେମ୍ ସାହେବଙ୍କ ପସନ୍ଦଯୋଗ୍ୟ ହେବ କି ନାହିଁ। ଏ ଭଦ୍ର ଲୋକଙ୍କର ନବକଳେବର ପ୍ରସ୍ତୁତି ସାଙ୍ଗରେ କିଛି ସମ୍ପର୍କ ନଥିଲା ତଥାପି ସେ ଟୁର୍ ପକେଇଥିଲେ। ତାଲିମ୍ ପାଉଥିବା ଏଏସ୍‌ପି ଯେତେବେଳେ ତାଙ୍କୁ ରୁମ୍ ଦେଖେଇଲେ ସେ ରୁମ୍‌କୁ ପସନ୍ଦ କଲେ କିନ୍ତୁ ପଚାରିଲେ 'ଯଦି ଏଇ ରୁମ୍ ହୋଇପାରିଲା ତେବେ ସମୁଦ୍ରକୁ ମୁହଁ କରିଥିବା ରୁମ୍ କାହିଁକି କରିପାରିଲ ନାହିଁ?' ତା'ପରେ ବହୁତ ଗାଳି ଏବଂ ଆଶ୍ୱାସନା ଯେ ତୁମ ଭାଗ୍ୟ ଭଲ ଆଜି ମ୍ୟାଡ଼ାମ ଥିଲେ ତୁମ ଅବସ୍ଥା କ'ଣ ନା କ'ଣ କରିଦେଇଥାନ୍ତେ। ଏକଦା ଗାଉଁଲି ଝିଅ ଓ ଏବେର ମ୍ୟାଡ଼ାମଙ୍କ ରୁଚି ଅନୁସାରେ ହୋଟେଲ ରୁମ୍ ବନ୍ଦୋବସ୍ତ ନକରିପାରିବାରେ ଏଏସ୍‌ପି ନିଜକୁ ଦୋଷୀ ମନେକରି କାନ୍ଦ କାନ୍ଦ ହୋଇଗଲେ।

ଯେହେତୁ ୧୯୬୯ ମସିହାରେ ନବକଳେବର ହୋଇଥିଲା ହିସାବ ଅନୁସାରେ ପରବର୍ତ୍ତୀ ନବକଳେବର ୧୯୮୮ରେ ପଡ଼ିବା କଥା କିନ୍ତୁ ସ୍ୱତନ୍ତ୍ର ତିଥି ପଡ଼ିବା ଦ୍ୱାରା ୧୯୭୭ରେ ମଧ୍ୟ ପଡ଼ିଲା। ସେତେବେଳେ ବହୁତ ବିଭ୍ରାଟ ହେଲା। ରସି ବାରମ୍ବାର ଛିଡ଼ିଲା, ଚକ ଭାଙ୍ଗିଲା ଓ ରଥ ବାରମ୍ବାର ବଙ୍କା ବାଟରେ ଗଲେ। ୧୯୬୯ ରଥଯାତ୍ରା ସମୟରେ ବଳଭଦ୍ରଙ୍କ ରଥ ଦାୟିତ୍ୱରେ ଥିବା ଏସ୍‌ପି ସୁରୁଖୁରୁରେ ରଥକୁ ନେଇ ପହଞ୍ଚେଇଲେ, ତାଙ୍କ ପଛକୁ ସୁଭଦ୍ରାଙ୍କ ରଥ ଏସଡ଼ିଓ ନେଇ ଗୁଣ୍ଡିଚା ମନ୍ଦିର ପାଖେ ପହଞ୍ଚେଇଲେ। କିନ୍ତୁ ଜଗନ୍ନାଥଙ୍କ ରଥ ତେଢ଼ା ବାଟରେ ଗଲେ ଓ ଦାୟିତ୍ୱରେ ଥିବା କଲେକ୍ଟର ପ୍ରସନ୍ନ ପଟ୍ଟନାୟକ ନୟାନ୍ତ ହୋଇଗଲେ। ଜଗନ୍ନାଥଙ୍କ ରଥ କାହିଁକି ଆସିପାରୁନାହାଁନ୍ତି ଜାଣିବା ପାଇଁ ଏସ୍‌ପି ଆସିଲେ ଓ ମୁଁ ପଛେ ପଛେ। ମନ୍ଦିର ପ୍ରଶାସକ ପରମାନନ୍ଦ ତ୍ରିପାଠୀଙ୍କୁ ପଚାରିବାରୁ ସେ କହିଲେ 'କ'ଣ କରିବା ଠାକୁର ତ ଚାହୁଁନାହାଁନ୍ତି।' ଏହି ସମୟରେ ଜଣେ ସେବାୟତ କହିଲେ 'ତମେ ଏ କାଳିଆକୁ ଚିହ୍ନିନ? ଇଏ କିଛି କମ୍ ନୁହେଁ, ଖୋସାମତି ଚାହୁଁଛି। କଲେକ୍ଟରଙ୍କୁ କୁହ ଗୋଡ଼ ତଳେ ପଡ଼ିଯାଉ। କାଳିଆ ଯଦି ନଯିବ ମୋତେ କହିବ।' ସେବାୟତମାନଙ୍କର ପ୍ରଭୁ

ଜଗନ୍ନାଥଙ୍କ ସହିତ ଏଇଭଳି ସମ୍ପର୍କ। ସେମାନେ ନିଜକୁ ଠାକୁରଙ୍କ ଭାଇ ବୋଲି ଭାବନ୍ତି। ତାଙ୍କ କଥା ମାନି ପ୍ରଶାସକ କଲେକ୍ଟରଙ୍କୁ କହିଲେ। ଆମେ ସବୁ ଦେଖୁଥାଉ। କଲେକ୍ଟର ରଥ ଉପରେ ଚଢ଼ିଲେ ଓ ପ୍ରଭୁ ଜଗନ୍ନାଥଙ୍କ ସାମନାରେ ଲମ୍ୱ ହୋଇ ପଡ଼ିଗଲେ। ଓହ୍ଲେଇ ଆସିଲେ ଛଳ ଛଳ ଆଖିରେ। ତା'ପରେ ରଥ ଠିକ୍ ଚାଲିଲେ। ସଂଯୋଗ ନା ଅଲୌକିକ ? ନାସ୍ତିକ କହିବେ ସଂଯୋଗ ଭକ୍ତ କହିବେ ପ୍ରଭୁଙ୍କ ନିର୍ଦ୍ଦେଶ।

୧୯୯୬ ନବକଳେବର ପ୍ରସ୍ତୁତି ସମୟରେ ଭାସମାନ ବାଦଲ ପରି ଏଇଭଳି ଅନେକ ସ୍ମୃତି ମନକୁ ଆସୁଥିଲା। କିଛି ଅଘଟଣ ନହେଉ ବୋଲି ସବୁଦିନେ ପ୍ରାର୍ଥନା କରୁଥିଲି। ଅଘଟଣ ହୋଇଥିଲେ ଚିରକାଳ ନିଜକୁ ଦୋଷୀ ମନେ କରିଥାନ୍ତି ଓ ଚାକିରି କ୍ଷେତ୍ରରେ ସବୁଦିନ ପାଇଁ ମୁହଁ କଳା ପଡ଼ିଥାନ୍ତା। ଇତି ମଧ୍ୟରେ ବହୁତ ପରିବର୍ତ୍ତନ ହେଲାଣି। ସେତେବେଳେ ପୋଲିସ ମୁଖ୍ୟ ଥିଲେ ଆଇ.ଜି ଏବେ ଡି.ଜି। ସେତେବେଳେ ଡିଆଇଜି ନରସିଂହ ସ୍ୱାଇଁ ଦାୟିତ୍ୱ ପରିଚାଳନା କରୁଥିଲେ ଆଇ.ଜିଙ୍କ ଉପସ୍ଥିତିରେ। ଏବେ ମୁଁ ପରିଚାଳନା କରିବି ଡି.ଜି ଅମୀୟ ଭୂଷଣ ତ୍ରିପାଠୀଙ୍କ ଉପସ୍ଥିତିରେ। ବନ୍ଦୋବସ୍ତ କରିବା ପାଇଁ ସମ୍ପୂର୍ଣ୍ଣ ସ୍ୱାଧୀନତା ସେ ମୋତେ ଦେଇଥିଲେ।

ନବକଳେବର ସମୟରେ ଯେଉଁ ପହଣ୍ଡି ହେଲା ତା'ର ଦର୍ଶନ ପାଇଁ ସୁପ୍ରିମ୍‌କୋର୍ଟର ଚାରି ପାଞ୍ଚ ଜଣ ଜଜ୍, ଓଡ଼ିଶା ହାଇକୋର୍ଟର ସବୁ ଜଜ୍ ଓ ଅବସରପ୍ରାପ୍ତ ମୁଖ୍ୟ ବିଚାରପତି ରଙ୍ଗନାଥ ମିଶ୍ର ସେମାନଙ୍କ ସହ ଥିଲେ। ସମସ୍ତେ ଭୁଲ୍ ବୁଝାମଣାର ବଶବର୍ତ୍ତୀ ହୋଇ ମନ୍ଦିର ଭିତରକୁ ପଶିଗଲେ ଓ ଲଗାମଛଡ଼ା ସେବାୟତମାନେ ପାଟିତୁଣ୍ଡ କଲେ। ଡିଜି ଶ୍ରୀ ତ୍ରିପାଠୀ ଆସି ସବୁ ଜଜ୍‌ଙ୍କୁ ଚାଲିଯିବା ପାଇଁ କହିଲେ ଓ ସେମାନେ ଚାଲିଗଲେ। ଏମିତି ସାମାନ୍ୟ ଅଘଟଣ କେତେକ ସ୍ଥାନରେ ହେଲା। କିନ୍ତୁ ବିସ୍ମୟର କଥା, ଅନେକ ପୋଲିସ ଅଫିସର ଯେଉଁମାନେ ଅଣପୋଲିସ ବିଭାଗର ଦାୟିତ୍ୱରେ ଥିଲେ ସେମାନେ ପୋଷାକ ପିନ୍ଧି ମନ୍ଦିର ଭିତରେ ଲଣ୍ଡଭଣ୍ଡ ହେଉଥିଲେ ଏବଂ କେହି କେହି ଖବରକାଗଜବାଲାଙ୍କ ସାମନାରେ ନିଜର ବଳିଷ୍ଠ ଭୂମିକା ବିଷୟରେ କହୁଥିଲେ। କାମ କଲେ ଡି.ଜି, ମୁଁ, ଡି.ଆଇ.ଜି ସୁରେନ୍ଦ୍ର ସ୍ୱାଇଁ ଓ ଡିଆଇଜି ଗୋପାଳ ନନ୍ଦ, ଖବରକାଗଜରେ ବାହାବାହା ନେଲେ କିନ୍ତୁ ଏଇମାନେ। ମାଗି ଆଣିଲା ଡିଅଣର ସୁଆଦ ଭଲ କିନ୍ତୁ ଦିନକ ପାଇଁ। ପରବର୍ତ୍ତୀ ସମୟରେ ଖବରକାଗଜରେ ଅବଶ୍ୟ ପ୍ରକୃତ ଖବର ବାହାରିଲା। ରଥ ସାମ୍‌ନାରେ ଆକାଶବାଣୀ ମୋ' ଇଣ୍ଟରଭ୍ୟୁ ନେଲେ ଓ ଇଂରେଜି ଖବରକାଗଜମାନଙ୍କରେ ଓଡ଼ିଶା ପୋଲିସକୁ ବହୁତ ପ୍ରଶଂସା କରାଗଲା।

ଗାଡ଼ି ଆଣିଲେ ଯାନବାହାନ ବ୍ୟବସ୍ଥା ବାଧାପ୍ରାପ୍ତ ହେବ ବୋଲି ଆମେ ନିଷ୍ପତ୍ତି ନେଲୁ ଯେ କେବଳ ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ, ମୁଖ୍ୟ ବିଚାରପତି ଓ ବାଚସ୍ପତିଙ୍କ କାର

ମନ୍ଦିର ଦକ୍ଷିଣ ଦ୍ୱାର ପାଖକୁ ଆସିବ। ଅନ୍ୟ ସମସ୍ତେ ଗଦାଧର ହାଇସ୍କୁଲରେ ଗାଡ଼ି ରଖି ଚାଲି ଚାଲି ଆସିବେ। ଏ ବନ୍ଦୋବସ୍ତରେ ମୁଖ୍ୟମନ୍ତ୍ରୀ ରାଜି ହେଲେନାହିଁ। ତାଙ୍କ ନିର୍ଦ୍ଦେଶ ଥିଲା ରାଜ୍ୟପାଳଙ୍କ ଛଡ଼ା ଆଉ କାହା ଗାଡ଼ି ଯିବ ନାହିଁ। ସେ ନିଜେ ଚାଲି ଚାଲି ଆସିଲେ ଅଥଚ ନିଜକୁ ମୁଖ୍ୟମନ୍ତ୍ରୀଙ୍କ ଠାରୁ ବଡ଼ ମନେ କରୁଥିବା ତାଙ୍କର ଜଣେ ସହକର୍ମୀ ଗଦାଧର ହାଇସ୍କୁଲ ପାଖରେ ପାଟିତୁଣ୍ଡ କଲେ ଓ ଅତି ତଳକୁ ଖସିଯାଇ ଘୋଷଣା କଲେ 'ସେ ଡିଜି ଓ ଆଇଜି ବିପିନ ମିଶ୍ରଙ୍କୁ ମୁଁ ଦେଖିନେବି'। କିନ୍ତୁ ସେଠି ରଖାଯାଇଥିବା ପୋଲିସ ଯେଉଁମାନେ ଅନ୍ୟ ଜିଲ୍ଲାରୁ ଆସିଥିଲେ ସେମାନେ ରାସ୍ତା ଉପରେ ବଡ଼ ବଡ଼ ଡ୍ରମ୍ ଥୋଇଦେଇଥିଲେ ଓ ତାଙ୍କ ଉପରେ ସବୁ ରକମର ଧମକ ଚମକର କିଛି ପ୍ରଭାବ ପଡ଼ିଲାନି। ତମ୍ ତମ୍ ହୋଇ ମନ୍ତ୍ରୀ ଜଣକ ଚାଲି କରି ଗଲେ ଓ ସାଙ୍ଗରେ ଥିବା ଜଣେ ପୋଲିସ୍ କର୍ମଚାରୀଙ୍କୁ ପଚାରିଲେ ବାଟଟା ଏତେ ଲମ୍ବା କ'ଣ ପାଇଁ ? ମନ୍ତ୍ରୀ ମହାଶୟଙ୍କୁ କିଏ ବା କହିବ 'ଆପଣ ଯେତେ କ୍ଷମତାଶାଳୀ ମନ୍ତ୍ରୀ ହୁଅନ୍ତୁ ରାସ୍ତାଟି ସଂକୁଚିତ ହୋଇପାରିବ ନାହିଁ।' ସେ ବାରଟା ପରେ ଫେରିଗଲେ ଓ ସାଢ଼େ ବାରଟା ପରେ ରାଜ୍ୟପାଳଙ୍କ ଏଡ଼ିସି ମୋତେ ଫୋନ୍ କରି କହିଲେ ଯେ ରାଜ୍ୟପାଳ ଆସିବା ପାଇଁ ଚାହୁଁଛନ୍ତି ତେଣୁ ଗାଡ଼ି ଦକ୍ଷିଣ ଦ୍ୱାରକୁ ନଆସି ଗରୁଡ଼ ସ୍ତମ୍ଭ ନିକଟକୁ ଆସିବ। କାରଣ ଲେଡ଼ି ଗଭର୍ଣ୍ଣର ଦକ୍ଷିଣ ଦ୍ୱାର ପଟେ ଆସିଲେ ପାହାଚ ଚଢ଼ି ପାରିବେ ନାହିଁ। ତାଙ୍କୁ ବୁଝେଇଲି ଯେ, ଏହା ଅସମ୍ଭବ। ସିଂହଦ୍ୱାର ଛାଡ଼ନ୍ତୁ, ବହୁଦୂର ହସ୍ପିଟାଲ ପର୍ଯ୍ୟନ୍ତ ମଧ ଜନାରଣ୍ୟ। ଲୋକମାନଙ୍କୁ ହଟେଇ ବାଟ କଢ଼େଇ ହୋଇପାରିବ ନାହିଁ। ଗଭର୍ଣ୍ଣର ଅବସ୍ଥା ବୁଝିପାରି ମୋତେ ଫୋନ୍ କଲେ ଓ କହିଲେ 'ମୁଁ ଆପଣଙ୍କ ସମସ୍ୟା ବଢ଼େଇବା ପାଇଁ ଚାହୁଁନାହିଁ କିନ୍ତୁ କାଲି ସକାଳେ ଦର୍ଶନ କରିପାରିବି କି ?' ଆତ୍ମହରା ହୋଇ କହିଲି ସାର୍ ନିଶ୍ଚୟ। ମୁଁ ନିଜେ ଏ ଦାୟିତ୍ୱ ନେଉଛି। ଉଚ୍ଚ ସ୍ଥାନରେ ଥାଇ ଉଚ୍ଚ ମନର ଏ ଏକ ବଳିଷ୍ଠ ନିଦର୍ଶନ। ଅଥଚ ଅଳ୍ପ କେତେ ବାଟ ଚାଲିବେ ବୋଲି ମୁଖ୍ୟମନ୍ତ୍ରୀଙ୍କ ଶକ୍ତିଶାଳୀ ସହକର୍ମୀ ଦିନ ଗୋଟାଏରେ ଖବର ପଠାଇଲେ 'ସେ ଡି.ଜି ଓ ଆଇ.ଜିଙ୍କୁ କୁହ ମୋତେ ପାଞ୍ଚ ମିନିଟ୍‌ରେ ସର୍କିଟ୍ ହାଉସ୍‌ରେ ଦେଖା କରିବେ।' ଆମ ତରଫରୁ ଉତ୍ତର ଗଲା ଯେ ରଥଯାତ୍ରା ନସରିବା ପର୍ଯ୍ୟନ୍ତ ଆମେ କୁଆଡ଼େ ଯିବୁନାହିଁ। ସେ ଭଦ୍ରଲୋକଙ୍କର ଡି.ଜି ଓ ମୋ' ପ୍ରତି ଶତ୍ରୁତା ସବୁଦିନ ପାଇଁ ରହିଲା।

ରଥ ଟଣା ସମୟ। ଅଥଚ କେତେଜଣ ଅଫିସର ନିକଟରେ ଏକ ରୁଦ୍ଧ କୋଠରିରେ କିଛି ସାମ୍ବାଦିକ ଓ ଜଣେ ଓକିଲଙ୍କ ସାଙ୍ଗେ ବସି ଚିକେନ୍ ପକୋଡ଼ା ଓ ମଦ ସେବନ କରୁଥିଲେ। ଜଣେ ଆଇଏଏସ୍ ଅଫିସର୍ ମୋତେ କହିଲେ ସାର୍ ଏମାନେ ନମସ୍କାର ଯୋଗ୍ୟ ମଧ ନୁହଁନ୍ତି।

୧୯୬୯ ମସିହାର କଥାଟିଏ କହୁଛି। ସକାଳ ୫ରୁ ରଥ ଡ୍ୟୁଟିରେ ଥିଲି। ଭିଡ଼ ଭେଦ କରି ବାହାରକୁ ଆସିବାର ପ୍ରଶ୍ନ ଉଠୁନି, ଦେହରୁ ଗମ୍ ଗମ୍ ଝାଳ ବାହାରୁଛି। ତଣ୍ଟି ଓ ଓଠ ଶୁଖି ଯାଉଥିଲା। ସକାଳୁ ଅଳ୍ପ ଟିକେ ଚୂଡ଼ା ଖାଇଥିଲି ସେଇଟା କେତେବେଳୁ ହଜମ ହୋଇ ଭୋକରେ ପେଟ ଜଳୁଛି। ମନେ ମନେ ଭାବୁଥାଏ ମୁଠେ ଭାତ ଓ ଢୋକେ ପାଣି ମିଳନ୍ତା କି। ଏବେ ସେ କଥା ମନେ ପଡ଼ିଲେ ମୁଁ ଭାବେ ଯେଉଁମାନେ ଦିନକୁ ଦୁଇ ବେଳା ଖାଇବା ପାଇଁ ପାଉନାହାଁନ୍ତି ସେମାନେ କେମିତି ଭୋକକୁ ସମ୍ଭାଳୁଛନ୍ତି ? ତାଙ୍କ ପରି ଆମେ କାହିଁକି କଷ୍ଟସହିଷ୍ଣୁ ହୋଇପାରିନାହେଁ ? ସେଇ ଭୋକିଲା ଓ ଶୋଷିଲା ଅବସ୍ଥାରେ ଉପରକୁ ଅନଉଥାଏ ଓ ଦେଖୁଥାଏ କୋଠାମାନଙ୍କରେ ଚୌକିରେ ବସି ଗୋଡ଼ ଲମ୍ବେଇ ଯାତ୍ରୀମାନେ ଭୋଜନ କରୁଥାନ୍ତି ଓ କୋକାକୋଲା ପିଉଥାନ୍ତି। କେଉଁଠୁ ପାଣି ପିଇବି କେଉଁଠୁ ଖାଇବା ଆଣିବି ଏଇ ଚିନ୍ତା କରୁଥାଏ। ଏଇ ସମୟରେ ଜଣେ ମୋ' କାନ୍ଧରେ ହାତ ପକେଇବାରୁ ଘୂରିପଡ଼ି ସେ ବ୍ୟକ୍ତିଙ୍କୁ ଦେଖିଲି। 'ମୁଁ ନରେନ୍ଦ୍ର ମହାପାତ୍ର, ଖୋର୍ଦ୍ଧା ଏସଡ଼ିଓ। ଆପଣ ବିଶ୍ୱମୋହନ ବାବୁଙ୍କ ପୁଅ ତ ? ମୁଁ ହଁ କରିବାରୁ ଆହୁରି ଆନ୍ତରିକତା ସହିତ କହିଲେ 'କିଓ ଚିହ୍ନି ପାରୁନ କେମିତି ? ସମ୍ବଲପୁରରେ ତୁମେ ସ୍କୁଲରେ ପଢୁଥିଲ, ଆମେ ସନ୍ଧ୍ୟାବେଳେ ତୁମ ନାନାଙ୍କ ପାଖକୁ ଯାଉଥିଲୁ ଓ ତୁମେ ଚ଼' ଆଣି ଦେଉଥିଲ। ବର୍ତ୍ତମାନ ମୁଁ ଦେଖୁଛି ତୁମେ କେଉଁ ଜାଗାରେ ସ୍ଥିର ହୋଇ ଠିଆ ହେଉନ ଖାଲି କାମ କରୁଛ ? ରଥ ଟଣା ହେବାକୁ ବାକି ଅଛି ଚାଲ ମୋ' ସାଙ୍ଗରେ।' ସେ ମୋତେ ଏମାର ମଠକୁ ନେଇଗଲେ। ମଠ ବାଲା ଆମକୁ ଦେଖି ଆସନ ପକେଇଲେ ଓ ପୁରୀ, ତରକାରି, ଖେଚେଡ଼ି, ଗରମ ବୁନ୍ଦିଆ ଆଣି ଥୋଇଦେଲେ। ତା' ସାଙ୍ଗେ ସାଙ୍ଗେ ଗ୍ଲାସେ ପାଣି। ପାଣିଟା ଅମୃତ ଭଳିଆ ଲାଗିଲା। ପୁରୀ, ତରକାରି, ବୁନ୍ଦିଆ ଏମିତି ବାଗୁ ବାଗୁ କରି ଖାଇଲି ଯେ ମନେ ପକେଇଲେ ଲାଜ ଲାଗୁଛି। ଆମେ ଦୁଇଜଣ ଖାଉଥାଉ ସେମାନେ ପରଷି ଚାଲିଥାନ୍ତି। ଖାଇବା ସରିବା ଉପରେ, ଏଇ ସମୟରେ ଆସିଲେ ଆଇ.ଜି ଆର.କେ. ପାଢ଼ୀ, କମିଶନର ଚକ୍ରବର୍ତ୍ତୀ, ହୋମ୍ ସେକ୍ରେଟେରୀ ବିପିନ ରଥ, ଡିଆଇଜି ନରସିଂହ ସ୍ୱାଇଁ ଓ କଲେକ୍ଟର, ଏସ୍‌ପି। ଆମକୁ ଆନନ୍ଦରେ ଖାଉଥିବା ଦେଖି ଆଇଜି ଇଂରେଜୀରେ ଲଘୁ ମନ୍ତବ୍ୟ ଦେଲେ 'ଏ ପିଲାଟି ମୋ'ଠାରୁ ଆହୁରି ତେଜ୍, ଏ ନିଶ୍ଚୟ ଆଇ.ଜି ହେବ।' ଦେଖିଲ ଉପାୟ ଏ ନିଜେ ଖୋଜି ବାହାର କଲା ଅଥଚ ଆମେ ଚିନ୍ତା କରୁଥିଲୁ କ'ଣ ଖାଇବା।' ଏସ୍‌ପି କହିଲେ ସାର୍ ମୁଁ ତାକୁ ଟ୍ରେନିଂ ଦେଇଛି ଓ ମୁରୁକି ହସା ଦେଇ ଡି.ଆଇ.ଜି ପଚାରିଲେ - କ'ଣ ଖାଇବାରେ ? ତା'ପରେ ବଢ଼ାହେଲା ଓ ସେମାନେ ଭୋକିଲା ଜନତା ପରି ଖାଇ ଚାଲିଲେ। ମୁଁ ଓ ନରେନ୍ଦ୍ର ବାବୁ ପରସ୍ପରକୁ ଅନେଇ

ମୁରୁକିହସା ଦେଲୁ ଓ ବଳିଥିବା ଖାଦ୍ୟକୁ ଖୁଣ୍ଟି ଖାଇଲୁ ସେମାନେ ବସିଥିଲା ବେଳେ ଉଠି ଚାଲିଯିବାଟା ଶିଷ୍ଟତା ବିରୁଦ୍ଧ ହୋଇଯାଇଥାନ୍ତା।

୧୯୯୬ ମସିହାରେ ଭୋକରେ ଛଟପଟ ହେବାର ଅବକାଶ ନଥିଲା। ସାରା ପୋଲିସ୍ ବାହିନୀ, ମାଜିଷ୍ଟ୍ରେଟ୍ ସ୍ୱେଚ୍ଛାସେବୀମାନଙ୍କୁ ଫୁଡ୍ ପ୍ୟାକେଟ୍ ଯୋଗାଇବାର ବନ୍ଦୋବସ୍ତ ହୋଇଥିଲା। ବୋତଲରେ ପାଣି ମିଳୁଥିଲା। ଖାଇବା ପାଇଁ କୁଆଡ଼େ ଯିବାକୁ ଦରକାର ପଡ଼ିଲାନି। ମୁଁ ମୋ' ପାଇଁ ଗୋଟେ ବୋତଲରେ ଲେମ୍ବୁ ରସ ଓ ଲୁଣ ପଡ଼ିଥିବା ପାଣି ନେଇଥିଲି। ସେଥିରୁ ଅଳ୍ପ ଅଳ୍ପ ପିଇଲେ ଶୋଷ ହେଉନଥିଲା। ଜଣେ ଭଦ୍ରଲୋକ କହିଲେ - ସବୁ କଥା ଆପଣ ଚିନ୍ତା କରି ଆସିଥାନ୍ତି। ମୁଁ କହିଲି ପ୍ରଥମେ ଶରୀର। ଶରୀର ଠିକ୍ ଥିଲେ ଧର୍ମ କର୍ମ ସବୁ କରାଯାଇପାରିବ।

ରଥଯାତ୍ରାରେ ଯେତେ ସମସ୍ୟା ବାହୁଡ଼ାଯାତ୍ରାରେ ସେତେ ନୁହେଁ। କେବଳ ଗୋଟିଏ ଦିନ - ସନ୍ଧ୍ୟା ଦର୍ଶନ ପାଇଁ ସାବଧାନ ହେବାକୁ ପଡ଼େ କାରଣ ଗୁଣ୍ଡିଚା ମନ୍ଦିରରେ ହୁଏ ଅସମ୍ଭବ ଭିଡ଼, ବିଶେଷତଃ ବଙ୍ଗାଳୀ ଯାତ୍ରୀଙ୍କର। ଏଇ ଯାତ୍ରାରେ ଚାରି ଭାଗରୁ ଭାଗେ ହେଉଛନ୍ତି ବଙ୍ଗାଳୀ ଯାତ୍ରୀ। ସେମାନଙ୍କ ଜାତି ସେମିତି। ଛୋଟ ହେଉ କି ବଡ଼ ହେଉ ନିଶ୍ଚିତ କୌଣସି ତୀର୍ଥ ସ୍ଥାନ ଯିବେ ଓ ଦର୍ଶନୀୟ ସ୍ଥାନ ଦେଖିବେ।

ତା'ପରଦିନ ବାହୁଡ଼ା ଯାତ୍ରା, ବହୁତ ଆଗରୁ ମୁଁ ମନ୍ଦିର ଗଲି। ଦେଖିଲି ଡି.ଆଇ.ଜି ସୁରେନ୍ଦ୍ର ସ୍ୱାଇଁ ଗୋଟିଏ ସ୍ଥାନରେ ବଡ଼ ଚିନ୍ତିତ ହୋଇ ବସିଛନ୍ତି। କେନ୍ଦ୍ରାଞ୍ଚଳ ଡିଆଇଜିଙ୍କର ଦାୟିତ୍ୱ ବେଶ୍ ଭାରି। କିନ୍ତୁ ଏତେ ଚିନ୍ତିତ କାହିଁକି, ପଚାରିବାରୁ ସେ କହିଲେ। ସାର୍ ଗୋଟିଏ କଥା କହିବି ଆପଣ ବାହୁଡ଼ା ନସରିବା ପର୍ଯ୍ୟନ୍ତ କାହାକୁ ଏକଥା କହିବେ ନାହିଁ। କଥାଟା ଭାରି ମାରାତ୍ମକ।

ତାଙ୍କୁ ଆଶ୍ୱାସନା ଦେଲି ଯେ କାହାକୁ କହିବି ନାହିଁ ଓ ବଡ଼ କୁଣ୍ଠାର ସହିତ ସେ କହିଲେ– ଅଞ୍ଜନା ମିଶ୍ର ଅଭିଯୋଗ କରିଛନ୍ତି ଯେ ତାଙ୍କୁ ଆଡ଼ଭୋକେଟ୍ ଜେନେରାଲ୍ ଇନ୍ଦ୍ରଜିତ ରାୟ ଧର୍ଷଣ କରିଛନ୍ତି। ସ୍ତମ୍ଭୀଭୂତ ହୋଇଗଲି। ଅଞ୍ଜନା ମିଶ୍ର ପ୍ରଥମେ ଅଭିଯୋଗ କରିଥିଲେ ତାଙ୍କ ସ୍ୱାମୀ, ତାଙ୍କ ଭିଣୋଇ ଓ ଆଉ କେତେ ଜଣଙ୍କ ନାଁରେ। ତାଙ୍କ ସ୍ୱାମୀ (ଜଙ୍ଗଲ ବିଭାଗର ସିନିୟର ଅଫିସର) ବହୁତ ହଇରାଣ ହରକତ ହେଲେ। ତଦନ୍ତ ଚାଲିଥିଲା ଏଇ ସମୟରେ ସେ କାହିଁକି ଆଡ଼ଭୋକେଟ୍ ଜେନେରାଲ୍ଙ୍କ କଟକ ଘରକୁ ଗଲେ ଯେଉଁଠି ସେ ଏକୁଟିଆ ରୁହନ୍ତି, ଅଭିଯୋଗ ଧର୍ଷଣ ପର୍ଯ୍ୟନ୍ତ କଥା କାହିଁକି ଗଲା। ଏଭଳି ଅନେକ ପ୍ରଶ୍ନ ମନକୁ ଦଂଶନ କଲା। ଗଣମାଧ୍ୟମ ଏକଥା ଜାଣିଲେ ଗଗନ ପବନ ମୁଖରିତ ହେବ। ସରକାର ଟଳମଟଳ ହୋଇଯିବ କାରଣ ଇନ୍ଦ୍ରଜିତ୍ ରାୟ ଜାନକୀ ପଟ୍ଟନାୟକଙ୍କ ଅତି ଘନିଷ୍ଠ। ଚିନ୍ତାରେ ମୋ' ମୁହଁ କଳା ପଡ଼ିଗଲା।

ବଡ଼ କଷ୍ଟରେ ନବକଳେବର ବଡ଼ ସୁଖୁଖୁରୁରେ ସରିବା ପାଇଁ ଯାଉଛି । ଗୋଟିଏ ଦୁଃଖ ନଯାଉଣୁ ଆଉ ଗୋଟିଏ ଦୁଃଖ ମାଡ଼ି ଆସିଲା ପରି ସାରା ଭାରତରେ ଚହଳ ପକେଇଲା ଭଳିଆ ଖବରଟେ ବାହାରିବା ପାଇଁ ଯାଉଛି । ଅଭିଯୋଗର ତଦନ୍ତ କରିବ ପୋଲିସ । ଏପଟେ ମୁଖ୍ୟମନ୍ତ୍ରୀ ସେପଟେ ଗଣମାଧ୍ୟମ, ନିକିତି ସମତା ରକ୍ଷା କରିପାରିବ ତ ? ମୋତେ ଚିନ୍ତିତ ହେବାର ଦେଖି ସୁରେନ୍ଦ୍ର ବାବୁ ବୁଝେଇଲେ 'ସାର୍ ଆପଣ ଏତେ ବ୍ୟସ୍ତ କାହିଁକି ହେଉଛନ୍ତି ? ଆମର ପ୍ରଥମ ଦାୟିତ୍ୱ ହେଲା ବାହୁଡ଼ା ଯାତ୍ରା । ପୁଣି ଦୁଇଦିନ ପରେ ସୁନାବେଶ । ସେସବୁ ସରୁ ତା'ପରେ ଆମେ ଏକଥା ବୁଝିବା । ନ୍ୟାୟ ଭାବରେ କେସ୍‌ଟାକୁ ତଦନ୍ତ କଲେ ଆମକୁ କିଏ କାହିଁ କ'ଣ କହିବ ?'

ବାହୁଡ଼ା ଯାତ୍ରା ସୁରୁଖୁରୁରେ ସରିଲା । ରାତି ୧୨ଟାରେ ଡି.ଜି ଓ ମୁଁ କଟକ ଫେରିଲୁ । ତା' ଆରଦିନ ଅଫିସ୍ କାମ ସାରି ପୁଣି ସନ୍ଧ୍ୟା ବେଳେ ଯିବୁ ବନ୍ଦୋବସ୍ତ କରିବାକୁ । ଅଫିସ ଯିବା ମାତ୍ରେ ଡିଜିଙ୍କୁ ମୁଁ ଏ ଖବର ଦେଲି । ତାଙ୍କର ଇନ୍ଦ୍ରଜିତ୍ ରାୟଙ୍କ ସଙ୍ଗେ ଭଲ ବନ୍ଧୁତା । ସେ ଜାଣିଲା ବେଳକୁ ନେଡ଼ିଗୁଡ଼ କହୁଣୀକୁ ବହି ଗଲାଣି ।

୧୯୯୬ ଓ ୯୭ ମସିହାରେ ଅଞ୍ଜନା ମିଶ୍ର କେସ୍ ସାରା ଦେଶରେ ଚହଳ ପକେଇଥିଲା । ଅଞ୍ଜନା ମିଶ୍ର ଉଚ୍ଚ ଶିକ୍ଷିତା, ତାଙ୍କ ବାପା ଚିଫ୍ ଇଞ୍ଜିନିୟର ଥିଲେ ଓ ସ୍ୱାମୀ ଜଣେ ସିନିୟର ଫରେଷ୍ଟ ଅଫିସର । ସେ ଅଭିଯୋଗ କଲେ ଯେ ତାଙ୍କ ସ୍ୱାମୀ ଓ ତାଙ୍କ ପରିବାରର ଅନ୍ୟ କେତେ ଜଣ ତାଙ୍କୁ ନିର୍ଯାତନା ଦେଉଥିଲେ । ପୋଲିସରେ କେସ୍ ହେଲା ଓ କେନ୍ଦ୍ରାଞ୍ଚଳ ଡିଆଇଜି ସୁରେନ୍ଦ୍ର ସ୍ୱାଇଁ କେସ୍‌ର ତଦନ୍ତ ଭାର ନିଜେ ଗ୍ରହଣ କଲେ । ସାଧାରଣତଃ କେସ୍ ତଦନ୍ତ କରନ୍ତି ଇନ୍‌ସପେକ୍ଟର କିମ୍ବା ସବ୍‌ଇନ୍‌ସପେକ୍ଟର, ଦୁର୍ନୀତି ନିବାରଣ ଓ ସିବିଆଇରେ ଡିଏସ୍‌ପି କରନ୍ତି । କିନ୍ତୁ ଡିଏସ୍‌ପିରୁ ଊର୍ଦ୍ଧ୍ୱ ଅଫିସର ତଦନ୍ତ କରିବାର ନଜିର ନାହିଁ । ଯଦିବା ଆଇନ୍ ଅନୁସାରେ ଡି.ଜି ଚାହିଁଲେ ମଧ୍ୟ ତଦନ୍ତ କରିପାରିବେ ସାଧାରଣତଃ ଅତିରିକ୍ତ ଏସ୍‌ପି ଓ ତଦୂର୍ଦ୍ଧ୍ୱ ଅଫିସର ତଦନ୍ତର ତନଖି କରନ୍ତି କିନ୍ତୁ କେଉଁ ପରିସ୍ଥିତିରେ ବା କେଉଁ ବିଚାରରେ ଡିଆଇଜି ସୁରେନ୍ଦ୍ର ସ୍ୱାଇଁ ସିଧା ତଦନ୍ତ କଲେ ତାହା ଜାଣିହେଲା ନାହିଁ । ଯଦିବା ଏହା ଆଶ୍ଚର୍ଯ୍ୟଜନକ ତଥାପି ହସ୍ତକ୍ଷେପ କରିବାର ଅବକାଶ ନଥିଲା । କେବଳ ଥରେ ଡିଜି ଅମୀୟ ଭୂଷଣ ତ୍ରିପାଠୀ ମୁଁ ଥିବାବେଳେ ଫୋନ୍ କରି ତାଙ୍କୁ କହିଲେ ଯେ ତୁମେ ତଦନ୍ତ ନକରି ପରିଚାଳନା କରିବା ଉଚିତ୍ । ତଥାପି ଶ୍ରୀ ସ୍ୱାଇଁ ତଦନ୍ତ କରିଚାଲିଲେ । ସେ ବୋଧହୁଏ ଆହୁରି ଉପରୁ ମୌଖିକ ନିର୍ଦ୍ଦେଶ ପାଇଥିବେ । ଏଇ କେସ୍‌ର ତଦନ୍ତ ଚାଲୁଥିବା ସମୟରେ ଅଞ୍ଜନା ମିଶ୍ର ଅଭିଯୋଗ କଲେ ଯେ ସେ ଆଡ଼ଭୋକେଟ୍ ଇନ୍ଦ୍ରଜିତ୍ ରାୟଙ୍କର କଟକ ବାସ ଭବନକୁ ଯାଇଥିଲେ ଯେଉଁଠାରେ ସେ ଏକୁଟିଆ ରହୁଥିଲେ । ସେଇଠାରେ ଶ୍ରୀ ରାୟ ତାଙ୍କୁ ଧର୍ଷଣ

କଲେ। ଅଞ୍ଜନା ମିଶ୍ରଙ୍କର ଏହି ଅଭିଯୋଗ ବିଷୟରେ ଶ୍ରୀ ସ୍ୱାଇଁ ମୋତେ ପୁରୀରେ କହିଥିଲେ ଓ ମୁଁ ଡିଜିଙ୍କୁ କହିଥିଲି। କିନ୍ତୁ ସେପର୍ଯ୍ୟନ୍ତ ଲିଖିତ ଅଭିଯୋଗ ଆସିନଥିଲା ଓ ଡି.ଜି ମୋତେ କହିଲେ ଯେ ତୁରନ୍ତ ମୁଖ୍ୟମନ୍ତ୍ରୀଙ୍କୁ ଏ ବିଷୟରେ କହିବି। ନିଶ୍ଚୟ କହିଥିବେ। କାରଣ ଶ୍ରୀ ତ୍ରିପାଠୀଙ୍କୁ ମୁଁ ଯେତେ ଦୂର ଜାଣେ ସେ କଥା ରଖନ୍ତି। ସେଇଦିନ ସନ୍ଧ୍ୟାବେଳା ଅଞ୍ଜନା ମିଶ୍ର ଦଳେ ମହିଳା ସାମାଜିକ କର୍ମୀଙ୍କ ସହିତ କ୍ୟାଣ୍ଟନମେଣ୍ଟ ଥାନାକୁ ଆସି ମାମଲା ଦାୟର କଲେ। ବାସ୍, ଗଣମାଧ୍ୟମକୁ ମିଳିଗଲା ସୁସ୍ୱାଦୁ ଖାଦ୍ୟ। କଂଗ୍ରେସ ବିରୋଧୀ ଖବରକାଗଜ ଓ ଟିଭି ଟେକା ମାରିବା ଆରମ୍ଭ କଲେ। ମୁଖ୍ୟମନ୍ତ୍ରୀଙ୍କ ଇସ୍ତଫା ଦାବି କରାଗଲା ଆସେମ୍ବ୍ଲିରେ ହଟ୍ଟଗୋଳ ହେଲା। ଇନ୍ଦ୍ରଜିତ ରାୟଙ୍କୁ ଖୋଜିଲା ବେଳକୁ ସେ ନାହାଁନ୍ତି। ଅନେକ ତାଙ୍କୁ ନିନ୍ଦା କଲେ ଓ ସେଥିମଧ୍ୟରୁ ଅଧିକାଂଶ ତାଙ୍କ ଦ୍ୱାରା ଉପକୃତ ହେଉଥିବା ଆଡ୍‌ଭୋକେଟ୍ ଓ ବଡ଼ ବଡ଼ ଅଫିସର 'ସମ୍ପଦ ବେଳେ ସର୍ବେ ସଖା, ବିପଦେ ନ ଦିଅନ୍ତି ଦେଖା'ର ପୁନରାବୃତ୍ତି ହେଲା।

ଓଡ଼ିଶା ତଥା ସମଗ୍ର ଦେଶକୁ ଚହଲେଇ ଦେବା ଭଳି ଆଉ ତିନୋଟି ଘଟଣା ଘଟିଛି। ୨ଟି ୫୦ ରୁ ୬୦ ମସିହା ମଧ୍ୟରେ ଓ ଆଉ ଦୁଇଟି ୮୦ ମସିହା ପରେ। ପୁରୀରେ ହୋଇଥିଲା କମଳା ହରଣ କେସ୍। ଅଭିଯୋଗ ହୋଇଥିଲା ଜଣେ ପୋଲିସ ଅଫିସରଙ୍କ ବିରୁଦ୍ଧରେ। ସେ ଓ ଅଳ୍ପ କେତେକ ସହକର୍ମୀ ରଥଯାତ୍ରା ଦେଖିବା ପାଇଁ ଆସିଥିବା କମଳା ବୋଲି ଝିଅଟିକୁ ଅପହରଣ କରି ଧର୍ଷଣ କଲେ ବୋଲି ଅଭିଯୋଗ ହେଲା। 'ରକ୍ଷକ ଭକ୍ଷକ ହେଲା, ବାଡ଼ ଖାଇଲା କ୍ଷେତ' ଇତ୍ୟାଦି ତାଚ୍ଛଲ୍ୟ ପୂର୍ଣ୍ଣ ମନ୍ତବ୍ୟ ପୋଲିସ ବିରୁଦ୍ଧରେ ଦିଆଗଲା। ପୋଲିସ ଅଫିସରମାନେ ଗିରଫ ହେଲେ ଓ ତାଙ୍କର ବିଚାର ହେବା ପରେ ଖବର କାଗଜ ବାଲା ଥମିଲେ। ଉକ୍ତ ପୋଲିସ ଅଫିସରମାନେ ତଳ କୋର୍ଟରେ ଦଣ୍ଡିତ ହେଲେ କିନ୍ତୁ ସର୍ବଶେଷରେ ସୁପ୍ରିମ୍‌କୋର୍ଟରେ ନିର୍ଦ୍ଦୋଷରେ ଖଲାସ ହେଲେ। ଖଲାସ ହେଲେ ସିନା; କିନ୍ତୁ ଚଳି ଚଳାନ୍ତ ହେଲେ ଓ ଅପବାଦର ନାଗରା ବାଜିଲା ଦୁନିଆ ସାରା।

ଦ୍ୱିତୀୟ କେସ୍ ହେଲା ଶାନ୍ତିଲତା ଧର୍ଷଣ ଓ ମର୍ଡ଼ର କେସ୍। କଟକରେ ରହୁଥିବା ଶାନ୍ତିଲତାକୁ କେତେ ଜଣ ଉଚ୍ଚ ପରିବାରର ପିଲା ବାରମ୍ବାର ଧର୍ଷଣ କରି ହତ୍ୟା କଲେ ଓ ଶବକୁ କୂଅରେ ପକେଇ ଦେଲେ। ଶବ ବାହାରିଲା ପରେ ହତ୍ୟା କଥା ଜଣାପଡ଼ିଲା। ଗୋଲକ ବଳିୟାର ସିଂହ ବୋଲି ଜଣେ ଦକ୍ଷ ପୋଲିସ ଅଫିସର କେସ୍‌କୁ ଖୋଳତାଡ଼ କରି ଅପରାଧୀମାନଙ୍କ ଧରିଲେ ଓ ଯେଉଁଦିନ ସେମାନଙ୍କୁ ମାଜିଷ୍ଟ୍ରେଟ୍‌ଙ୍କ ଆଗରେ ପେଶ୍ କରାଗଲା ଅନେକ ଲୋକ ପାନ ଖାଇ କୋର୍ଟ ବାରଣ୍ଡାରେ ଠିଆ ହୋଇଥିଲେ ଓ ସେମାନଙ୍କ ଉପରେ ପାନଛେପ ପକାଇଲେ। ବଡ଼ କଷ୍ଟରେ ଅପରାଧୀମାନେ ଉଚ୍ଚ

ନ୍ୟାୟାଳୟରେ ଖଲାସ ହୋଇଗଲେ କାରଣ ସାକ୍ଷୀ କେହି ନଥିଲେ ଓ ଯଥେଷ୍ଟ ପାରିପାର୍ଶ୍ୱିକ ପ୍ରମାଣ ନଥିଲା । ଅନ୍ୟ ଏକ ଚାଞ୍ଚଲ୍ୟକର କେସ୍ ହୋଇଥିଲା କଟକ ଜିଲ୍ଲାର ଛବିରାଣୀ ମର୍ଡ଼ର କେସ୍ । ଛବିରାଣୀଙ୍କ ସ୍ୱାମୀ ଛୋଟିଆ କାଗଜଟିଏ ପ୍ରକାଶନ କରି ବିଭିନ୍ନ ଦୁର୍ନୀତି ଘଟଣା ପଦାକୁ ପକାଉଥିଲେ । କେତେକ ଅଭିଯୋଗ କରୁଥିଲେ ସେଥିମଧ୍ୟରୁ କେତେ ସମ୍ବାଦ ମିଥ୍ୟା ଓ ଉଦ୍ଦେଶ୍ୟ ପ୍ରଣୋଦିତ । ଛବିରାଣୀ ଏବଂ ତାଙ୍କ ସ୍ୱାମୀଙ୍କୁ ଏକ ନିଛାଟିଆ ସ୍ଥାନରେ ପାଇ କେତେକ ଅସାମାଜିକ ଲୋକ ସ୍ୱାମୀଙ୍କୁ ପ୍ରବଳ ମାଡ଼ ଦେଲେ ଏବଂ ଛବିରାଣୀଙ୍କୁ ଧର୍ଷଣ କରି ହତ୍ୟା କଲେ । ପୋଲିସ କେସ୍‌ଟାକୁ ଚାପି ଦେଉଛି ବୋଲି ଅଭିଯୋଗ ହେଲା । ଯେହେତୁ ଛବିରାଣୀଙ୍କ ସ୍ୱାମୀ ଜଣେ ସାମ୍ବାଦିକ ଥିଲେ ସମ୍ବାଦପତ୍ରମାନେ ନିଜ ନିଜ ମଧ୍ୟରେ ସମସ୍ତ ବିଭେଦ ଭୁଲିଯାଇ ସମସ୍ୱରରେ ରଡ଼ି ପକେଇଲେ ଓ ସରକାର ବଦନାମ ହେଲା । ସେତେବେଳେ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଥିଲେ ।

୧୯୮୦ ପରବର୍ତ୍ତୀ ଏଇ ଛବିରାଣୀ ଘଟଣା ପରେ ଚହଳ ପକେଇଲା ଅଞ୍ଜନା ମିଶ୍ର କେସ୍ । ପୂର୍ବ ତିନୋଟି କେସ୍ ଓ ଅଞ୍ଜନା ମିଶ୍ର କେସ୍ ଭିତରେ ପ୍ରଭେଦ ଥିଲା ଯେ, ଏଇ କେସ୍‌ରେ ପ୍ରଥମ ଅଭିଯୋଗ (ନିର୍ଯାତନା) ହେଲା ଜଣେ ବରିଷ୍ଠ ଜଙ୍ଗଲ ବିଭାଗ ଅଧିକାରୀଙ୍କ ବିରୁଦ୍ଧରେ ଓ ଦ୍ୱିତୀୟ ଅଭିଯୋଗ (ଧର୍ଷଣ) ଖୋଦ୍ ଆଡ଼ଭୋକେଟ୍ ଜେନେରାଲ (ଯେ କି ମୁଖ୍ୟମନ୍ତ୍ରୀଙ୍କ ବଡ଼ ଘନିଷ୍ଠ)ଙ୍କ ବିରୋଧରେ । ତାଙ୍କୁ ବରଖାସ୍ତ କରିବା ପାଇଁ ଦାବି ହେଲା, ମୁଖ୍ୟମନ୍ତ୍ରୀ ଅଳ୍ପ କେତେ ଦିନ ନିରବ ରହିଲେ । ଖୋଦ୍ ଇନ୍ଦ୍ରଜିତ୍ ରାୟ କୋର୍ଟରେ ହାଜର ହୋଇ ଜାମିନ୍ ପାଇଲେ ଓ ଆଡ଼ଭୋକେଟ୍ ଜେନେରାଲ ପଦବୀରୁ ଇସ୍ତଫା ଦେଲେ । ଜାନକୀ ପଟ୍ଟନାୟକ ଓ କଂଗ୍ରେସ ସରକାର ସମ୍ଭାବ୍ୟ ଇନ୍ଦ୍ରାୟ ତକ୍ଷକାୟ ସ୍ୱାହା ପରିସ୍ଥିତିରୁ ରକ୍ଷା ପାଇଗଲେ । ଏ କେସ୍ ସିବିଆଇକୁ ଦିଆଗଲା ଗଣମାଧ୍ୟମ ଚାପରେ କେଶ୍‌ରେ ଇନ୍ଦ୍ରଜିତ୍ ରାୟଙ୍କୁ ଜେଲ୍ ଦଣ୍ଡ ମଧ୍ୟ ହେଲା । ସେ ଜିଲ୍ଲା ଜଜ୍ କୋର୍ଟରେ ଅପିଲ କଲେ । ସାତ ବର୍ଷରୁ ଉର୍ଦ୍ଧ୍ୱ ଅପିଲ ଶୁଣାଣି ଚାଲିଲା ଓ ଇତି ମଧ୍ୟରେ ତାଙ୍କର ଆକସ୍ମିକ ମୃତ୍ୟୁ ହେଲା । ବହୁଦିନ ପର୍ଯ୍ୟନ୍ତ ଅଞ୍ଜନା ମିଶ୍ରଙ୍କୁ ପୋଲିସ ସୁରକ୍ଷା ଦିଆଗଲା କାରଣ ଇନ୍ଦ୍ରଜିତ ରାୟ ଘଟଣା ପରେ ତାଙ୍କୁ ନନ୍ଦନକାନନ ରାସ୍ତାରେ କେତେଜଣ ଅସାମାଜିକ ବ୍ୟକ୍ତି ଧର୍ଷଣ କଲେ । ଟି.ଭି ଆଗରେ ସେ ଅଭିଯୋଗ କଲେ ସେମାନେ ସବୁ ମୁଖ୍ୟମନ୍ତ୍ରୀଙ୍କ ଲୋକ । ଅଞ୍ଜନା ମିଶ୍ର ଘଟଣାର ଫାଇଦା ନେଲେ ଜଣେ ମନ୍ତ୍ରୀ; ଯଦିବା ସେଥିରେ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କର କୌଣସି ରକମ ହାତ ନଥିଲା ଓ ସେ ଇନ୍ଦ୍ରଜିତ୍ ରାୟଙ୍କୁ ବଞ୍ଚେଇବା ପାଇଁ କୌଣସି ଉଦ୍ୟମ କରିବାର ପ୍ରମାଣ ନାହିଁ ତଥାପି କେସ୍‌ଟା ଏଭଳି ଭାବେ ଚିତ୍ରିତ କରାଗଲାଯେ ସେ ନିନ୍ଦିତ ହେଲେ ।

ଶ୍ରୀ ତ୍ରିପାଠୀ ଅବସର ନେଲା ପରେ ବନବିହାରୀ ପଣ୍ଡା ହେଲେ ଡି.ଜି ପୋଲିସ। ନୂଆ ଡି.ଜି ତାଙ୍କ ପସନ୍ଦ ମୁତାବକ ଆଇ.ଜି ପ୍ରଶାସନ ଆଣିବେ ବୋଲି କଳ୍ପନା ଜଳ୍ପନା ହେଲା। ସେ ଚାହିଁଲେ କି ନଚାହିଁଲେ ଜଣାନାହିଁ। କିନ୍ତୁ ମୁଁ ରହିଲି। ୯୮ରେ ସାଧାରଣ ନିର୍ବାଚନ ହେଲା। ସେ ସମୟରେ ଜଣେ ଅତି ଉତ୍ସାହୀ ଜିଲ୍ଲାପାଳ ଖବର କାଗଜରେ ବିବୃତି ଦେଲେ ଯେ ଗଣ୍ଡଗୋଳକାରୀଙ୍କୁ ଦେଖିବା ମାତ୍ରେ ଗୁଳି କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଛି। ମୁଁ ସେ ଜିଲ୍ଲାର ଏସ୍‌ପି ଓ ଅନ୍ୟ ଜିଲ୍ଲାର ଏସ୍‌ପିମାନଙ୍କୁ ନିର୍ଦ୍ଦେଶ ଦେଲି ଯେ ଦେଖିବା ମାତ୍ରେ ଗୁଳି କରିବା ଆଦେଶ ସମ୍ପୂର୍ଣ୍ଣ ବେଆଇନ୍ ଓ ପୋଲିସ ଅଫିସର ମାତ୍ରା ଅନୁସାରେ ପଦକ୍ଷେପ ନେବେ। ମାତ୍ରାଧିକ କାର୍ଯ୍ୟ କେବେ କରିବା ଉଚିତ୍ ନୁହେଁ।

ନିର୍ବାଚନ ସୁରୁଖୁରୁରେ ହେଲା ଓ ସରକାରଙ୍କଠାରୁ ପ୍ରଶଂସା ପତ୍ର ମିଳିଲା। ତା'ପରେ ଦଶହରା ମଧ୍ୟ ସୁରୁଖୁରୁରେ ହେଲା। ଏଇ ସମୟରେ ଏକ ଅଭାବନୀୟ ଘଟଣା ଘଟିଲା। ଇନ୍ଦ୍ରଜିତ ରାୟଙ୍କ କେସ୍ ସିବିଆଇକୁ ଦିଆଯାଉ ବୋଲି ଏକ ଜନସ୍ୱାର୍ଥ ମାମଲା ହାଇକୋର୍ଟରେ ଦାୟର କରାଗଲା ଓ ସେଇ ମାମଲା ସଂକ୍ରାନ୍ତରେ ପୂର୍ବତନ ଡି.ଜି ଅମୀୟ ଭୂଷଣ ତ୍ରିପାଠୀ ଏକ ସତ୍ୟପାଠ କରିଥିଲେ। ମୁଁ ଗଞ୍ଜାମରୁ ଟୁର୍‌ରେ ଫେରିଲା ବେଳେ ସତ୍ୟପାଠକୁ ଖବରକାଗଜରେ ପଢ଼ିଲି ଓ ମୋର ତତ୍‌କ୍ଷଣାତ୍ ପ୍ରତିକ୍ରିୟା ଥିଲା ଏ ସତ୍ୟ ପାଠ ନିଶ୍ଚୟ ସମସ୍ୟା ସୃଷ୍ଟି କରିବ ବିଶେଷତଃ ମୋ' ପାଇଁ। ଡିଜି ଶ୍ରୀ ତ୍ରିପାଠୀଙ୍କ ବିରୁଦ୍ଧରେ ମନ୍ତବ୍ୟ ଯୋଗାଡ଼ ଚାଲିଲା। ଜଣେ ଅବସରପ୍ରାପ୍ତ ଡି.ଜି ତାଙ୍କ ବିରୁଦ୍ଧରେ ଏକ ଷ୍ଟେଟ୍‌ମେଣ୍ଟ ଦେଲେ, ଯଦିବା ସେ କେସ୍‌ରେ ତାଙ୍କର କୌଣସି ସମ୍ପୃକ୍ତି ନଥିଲା। ତାଙ୍କର କି ଉଦ୍ଦେଶ୍ୟ ଥିଲା ସେ ଜାଣିଥିବେ। କନେଷ୍ଟବଲ ସଂଘର ସଭାପତି ମଧ୍ୟ ଶ୍ରୀ ତ୍ରିପାଠୀଙ୍କ ବିରୁଦ୍ଧରେ ବିବୃତ୍ତି ଦେଲେ। ମୋତେ ଜଣେ ସିନିୟର ଅଫିସର ପ୍ରସ୍ତାବ ଦେଲେ ଶ୍ରୀ ତ୍ରିପାଠୀଙ୍କ ବିରୁଦ୍ଧରେ ଏକ ମନ୍ତବ୍ୟ ଦେବା ପାଇଁ ଯେ ମୋ' ସଂକ୍ରାନ୍ତରେ ସତ୍ୟପାଠରେ ଯାହା ଲେଖିଛନ୍ତି ତାହା ମିଛ ବୋଲି କହିବା ପାଇଁ। ଯଦିବା ମଝିରେ ମଝିରେ ମୁଁ ମୁଖ୍ୟମନ୍ତ୍ରୀଙ୍କୁ ଭେଟୁଥିଲି ସେ କେବେ ମୋତେ ଏକଥା କହିନାହାଁନ୍ତି। କିନ୍ତୁ ମୋତେ କୁହାଗଲା ଯେ ସରକାର ଚାହୁଁଛନ୍ତି। ମୁଁ ଯଦି ତ୍ରିପାଠୀଙ୍କ ବିରୁଦ୍ଧରେ ମନ୍ତବ୍ୟ ଦେଇଥାନ୍ତି ତେବେ ତାଙ୍କ ସତ୍ୟପାଠର ସତ୍ୟତା କମିଯାଇଥାନ୍ତା। କିନ୍ତୁ ମୁଁ ବିଭାଗରେ କାହାକୁ ମୁହଁ ଦେଖେଇ ପାରିନଥାନ୍ତି। ଶ୍ରୀ ତ୍ରିପାଠୀଙ୍କ ପ୍ରତି ମୋର ସମ୍ମାନ ଓ ନିଜ ଆତ୍ମସମ୍ମାନ ଜଗିବା ପାଇଁ ମୁଁ ମନ୍ତବ୍ୟ ଦେବା ପାଇଁ ଅକ୍ଷମତା ପ୍ରକାଶ କଲି। ଅଳ୍ପଦିନ ପରେ ମୋତେ ବଦଳି କରାଗଲା ଆଇ.ଜି ବେତାର ଓ ବେତାର ଆଇ.ଜି ବିଦ୍ୟାଭୂଷଣ ମହାନ୍ତି ମୋ' ସ୍ଥାନରେ ଆସିଲେ। ଦିନରେ ଯେଉଁ ୧୪ ଘଣ୍ଟା କାମ କରିବାକୁ ପଡୁଥିଲା ତାହା କମି ଆସିଲା ଚାରି ଘଣ୍ଟାକୁ। ପ୍ରାୟ ବର୍ଷେ ରହିଲି ଓ ଏହି ସମୟରେ ଅନେକ

ସାହିତ୍ୟିକ ସମ୍ମାନ ମିଳିଲା। ଝିଅର ବାହାଘର ହେଲା। ଝିଅ ରେଭେନ୍ସାରେ ରାଜନୀତି ବିଜ୍ଞାନ ପଢ଼ି ପ୍ରଥମ ଶ୍ରେଣୀରେ ପ୍ରଥମ ଓ ବେଷ୍ଟ ଗ୍ରାଜୁଏଟ୍ ହୋଇଥିଲା। ତା'ପରେ ଏମ୍‌ବିଏ କରି ଚାକିରି କଲା। ମୋର ଜଣେ ସାଙ୍ଗ ଓ କକ୍ଷମ ବିଭାଗର ପଦସ୍ଥ କର୍ମଚାରୀ ଭାଗୀରଥି ନନ୍ଦଙ୍କ ପୁଅ ସଙ୍ଗେ ତା'ର ବାହାଘର ହେଲା। ମୋ' ପ୍ରତି କେତେ ସଦିଚ୍ଛା ଥିଲା ତାହା ଜଣାପଡ଼ିଲା ମୁଖ୍ୟ ବିଚାରପତି ସମେତ ସମସ୍ତ ହାଇକୋର୍ଟ ଜଜ୍, ଆଠ ଜଣ ମନ୍ତ୍ରୀ, ଚିଫ୍ ସେକ୍ରେଟେରୀ ଭୂତପୂର୍ବ ଚିଫ୍ ସେକ୍ରେଟେରୀ, ବହୁ ସିନିୟର ପୋଲିସ ଅଫିସର ଓ ଅବସରପ୍ରାପ୍ତ ପୋଲିସ ଅଫିସର ଝିଅ ବାହାଘରକୁ ଆସିବାରୁ। ମୁଖ୍ୟ ବିଚାରପତି ଫୁକନ୍‌ଙ୍କ ସାଙ୍ଗେ ମୋ' ସମ୍ପର୍କ ଖୁବ୍ ଭଲଥିଲା ଓ ସେ ଭୋଜିକୁ ଆସି ବହୁ ସମୟ ରହିବାରୁ ବେଶ୍ ଖୁସି ଲାଗିଲା। ଜଣେ ସାମ୍ବାଦିକ ବନ୍ଧୁ କହିଲେ କମ୍ ଖର୍ଚ୍ଚ କିନ୍ତୁ ରାଜକୀୟ ସମ୍ମାନ ଆପଣଙ୍କ ଝିଅ ଜ୍ୱାଇଁ ପାଇଲେ।

ଓଡ଼ିଶା କଂଗ୍ରେସରେ ନେତୃତ୍ୱ ପରିବର୍ତ୍ତନ ହେଲା। ଜାନକୀ ପଟ୍ଟନାୟକଙ୍କ ସ୍ଥାନରେ ଗିରିଧାରୀ ଗମାଙ୍ଗ ଆସିଲେ। ଘରୋଇ ବିଭାଗ ପାଇଁ ଜଣେ ରାଷ୍ଟ୍ରମନ୍ତ୍ରୀ (ପ୍ରସାଦ ହରିଚନ୍ଦନ) ରହିଲେ। ଅଜିତ ତ୍ରିପାଠୀ ହୋମ୍ ସେକ୍ରେଟେରୀ ହୋଇ ଆସିଲେ। ଡିଜି ବନବିହାରୀ ପଣ୍ଡାଙ୍କୁ ବଦଳି କରାଯାଇ ଦିଲ୍ଲୀପ ମହାପାତ୍ରଙ୍କୁ ଡିଜି କରାଗଲା ଓ ଚିଫ୍ ସେକ୍ରେଟେରୀ ସୁଧାଂଶୁ ମିଶ୍ରଙ୍କ ସ୍ଥାନରେ ସହଦେବ ସାହୁ ଆସିଲେ।

ସବୁ ରାଜନୈତିକ ଦଳମାନେ ବିରୋଧି ଦଳରେ ଥିଲାବେଳେ ପ୍ରଶାସନରେ ସରକାର ହସ୍ତକ୍ଷେପ କରନ୍ତି ବୋଲି ଅଭିଯୋଗ କରନ୍ତି। ଏଇ ଅଭିଯୋଗ ବିଶ୍ୱାସଯୋଗ୍ୟ କାରଣ ସେମାନେ କ୍ଷମତାରେ ଥିବାବେଳେ ହସ୍ତକ୍ଷେପ କରୁଥିଲେ। ନୂଆ ମୁଖ୍ୟମନ୍ତ୍ରୀ ଆସିବା ମାତ୍ରେ ଚିଫ୍ ସେକ୍ରେଟେରୀ, ଡିଜି ଅନେକ ଜିଲ୍ଲାପାଳ, ଏସ୍‌ପି, ହୋମ୍‌ସେକ୍ରେଟେରୀ ଓ ସେକ୍ରେଟେରୀଙ୍କୁ ବଦଳି କରିବାର କୌଣସି ପ୍ରଶାସନିକ କାରଣ ନଥାଇ ମଧ୍ୟ ଏହା ହୁଏ। କ୍ଷମତାରେ ଥିବା ବଡ଼ ବଡ଼ କର୍ମଚାରୀ ପୂର୍ବ ସରକାରଙ୍କ ବଟସ୍କର ବୋଲି ନୂଆ ସରକାରଙ୍କ ଧାରଣା ଜନ୍ମେ। ଇନ୍ଦ୍ର ଆସନ୍ତି ଯାଆନ୍ତି କିନ୍ତୁ ସଚିଙ୍କର ସମସ୍ତଙ୍କ ପ୍ରତି ଆନୁଗତ୍ୟ ଥାଏ, ଆମ ନେତାମାନେ କିନ୍ତୁ ଏକଥା ଗ୍ରହଣ କରିବାକୁ ଆଦୌ ପ୍ରସ୍ତୁତ ନୁହଁନ୍ତି। ତାଙ୍କ ମନ ମଧ୍ୟରେ ସବୁବେଳେ ସନ୍ଦେହ ରହେ ଯେ ଏମାନେ ପୂର୍ବ ସରକାରଙ୍କୁ ସମସ୍ତ ଗୁପ୍ତ କଥା କହିଦେବେ ଓ ସରକାରଙ୍କ କୌଣସି କାର୍ଯ୍ୟକ୍ରମ ଠିକ୍ ଭାବେ ତୁଲାଇବେ ନାହିଁ। ନୂଆ ଡି.ଜି ହେଲେ ଦିଲ୍ଲୀପ କୁମାର ମହାପାତ୍ର। ତାଙ୍କ ରେକର୍ଡ଼ କହେ ଯେ ଜନ୍ମ ୧୯୪୩ରେ ଓ ଏମଏ ପାଶ୍ କଲେ ୧୯୬୧ରେ। ଅର୍ଥାତ୍ ୧୮ ବର୍ଷରେ ଏମ୍ଏ ଓ ୧୨ ବର୍ଷରେ ମାଟ୍ରିକ୍ୟୁଲେସନ୍। ଆମ ସମୟରେ ମାଟ୍ରିକ୍ୟୁଲେସନ୍ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଥିଲା ଓ ତା' ପୂର୍ବରୁ ଶିଶୁ ଶ୍ରେଣୀ ମଧ୍ୟ ଥିଲା।

ସେ କେମିତି ୧୨ ବର୍ଷରେ ମେଟ୍ରିକ୍ ପାଶ୍ କଲେ ତାହା ବିସ୍ମୟର କଥା। ମୁଁ ମାଟ୍ରିକ୍ ପାଶ୍ କଲି ୧୯୬୧ରେ ୧୬ ବର୍ଷ ବୟସରେ ଓ ଏମ୍ଏ ପାଶ୍ କରୁ କରୁ ଆଇପିଏସ୍ ପାଇଲି। ଶ୍ରୀ ମହାପାତ୍ର ଏମ୍ଏ ପାଶ୍ କଲାପରେ ଯଦି ଆଇପିଏସ୍ ପାଇଥାନ୍ତେ ତାହା ୬୧ ମସିହାରେ ସମ୍ଭବ ହୋଇଥାନ୍ତା। କିନ୍ତୁ ଏମ୍ଏ ପାଶ୍ କରିବାର ଚାରିବର୍ଷ ପରେ ୬୫ ମସିହାରେ ଆଇପିଏସ୍ ପାଇଲେ। ପାଠରେ ମୋଠୁ ୬ ବର୍ଷ ଆଗରେ। ବୟସରେ ଦୁଇବର୍ଷ ଆଗ ଓ ଚାକିରିରେ ମଧ୍ୟ ୨ ବର୍ଷ ଆଗ। ତାଙ୍କ ସାଙ୍ଗରେ ମୋର ଅନେକ ମନାନ୍ତର ଓ ମତାନ୍ତର ହେଲା।

## ଗୁଇନ୍ଦା ବିଭାଗର ଦାୟିତ୍ୱ

ମୋତେ ସରକାର ଗୋଏନ୍ଦା ବିଭାଗର ଆଇଜି କରିଦେଲେ ଓ ଜନ୍ ନାଏକ ହେଲେ ଅତିରିକ୍ତ ଡି.ଜି। ଆମକୁ ମୁଖ୍ୟମନ୍ତ୍ରୀ ଓ ରାଷ୍ଟ୍ରମନ୍ତ୍ରୀ ମଝିରେ ମଝିରେ ଡକାନ୍ତି ଆଇନ୍ ଶୃଙ୍ଖଳା ପରିସ୍ଥିତି ବିଷୟରେ ଜାଣିବା ପାଇଁ। ଶ୍ରୀ ଗମାଙ୍ଗ ସବୁ ଶୁଣନ୍ତି ଓ ମୁଣ୍ଡ ଟୁଙ୍ଗାରନ୍ତି।

ତାଙ୍କ ଭଳି ସରଳ ଲୋକ ବହୁତ୍ କମ୍ ଅଛନ୍ତି। ସମୟର କୌଣସି ଠିକଣା ନଥାଏ। ଦିନେ ଦିନେ ରାତି ୪ଟା ବେଳକୁ ଖାଇବେ ଓ ମନ ହେଲେ ଚଟାଣରେ ସଉପଟେ ପକେଇ ଶୋଇଯିବେ। ଗର୍ବ ଅହମିକାର ପ୍ରଶ୍ନ ଉଠୁନାହିଁ। ତାଙ୍କ ସମୟରେ ଯେଉଁ ମନ୍ତ୍ରୀମାନେ ଜାନକୀ ପଟ୍ଟନାୟକ ଥିଲା ବେଳେ ଉତ୍ପାତ ହେଉଥିଲେ ତାଙ୍କ ପ୍ରାଧାନ୍ୟ ଚାଲିଗଲା। ବିଭିନ୍ନ ବିଭାଗର ଅଫିସରମାନଙ୍କୁ ଫୋନ୍ କରି ଧମକେଇବା ଅଭ୍ୟାସକୁ ପରିତ୍ୟାଗ କରି ଅନ୍ୟାନ୍ୟ ମନ୍ତ୍ରୀଙ୍କ ପରି ଭଦ୍ରଲୋକ ହୋଇଗଲେ।

ଶ୍ରୀ ଗମାଙ୍ଗଙ୍କ ସମୟରେ ଦକ୍ଷିଣ ଓଡ଼ିଶାରେ ବାତ୍ୟା ହେଲା। ବାତ୍ୟା ପାଇଁ ମୋତେ ବାରମ୍ବାର ଯିବାକୁ ପଡ଼ିଲା କାରଣ ସୋନିଆ ଗାନ୍ଧି ଓ ଅନ୍ୟମାନେ ଆସୁଥିଲେ। ୧୪ ଅକ୍ଟୋବରରେ ବାତ୍ୟା ହେଲା ଓ ୨୯ ତାରିଖରେ ମହାବାତ୍ୟା ହେଲା। ସେଦିନ ମୁଁ ଅଫିସରେ ବସିଥାଏ। ସକାଳ ୯ଟାରେ ଝରକା ବାଟେ ଦେଖିଲି ଗଛଟେ ପଡ଼ି ଫାଟକ ଅବରୋଧ କରିଦେଲା। କବାଟଟା ବନ୍ଦ କରିବା ପାଇଁ ଚେଷ୍ଟା କଲି; କିନ୍ତୁ ଯେତେ ଥର କବାଟ ପାଖକୁ ଯାଏ ପବନ ମୋତେ ଠେଲିଦିଏ ପଛକୁ। ବଡ଼ କଷ୍ଟରେ କବାଟକୁ ଠେଲିଲି ଓ ଭୟ ହେଉଥାଏ କବାଟ କାଳେ ଠେଲିଦେଇ ମୋତେ କାନ୍ଥ ସହିତ ମିଶାଇ ଦେବ। ବଡ଼ କଷ୍ଟରେ ବନ୍ଦ କଲି ଓ ଟେବୁଲ୍‌ଟାକୁ ଟାଣି ଆଣି କବାଟ ସାଙ୍ଗରେ ଦେଇଦେଲି। ମୋ' ଆଟାଚିରେ ଥାଏ ସାତ ଆଠଟି ବିସ୍କୁଟ୍। ଟୁର୍‌ରେ ଗଲେ କାଳେ ଦରକାର ପଡ଼ିବ ବୋଲି ପାଖରେ ରଖିଥାଏ। ପବନ ଠେଲୁଥାଏ କବାଟକୁ।

ସ୍କାଇଲାଇଟ୍ ଭାଙ୍ଗି କାଠ ଟୁକୁଡ଼ା ପଡ଼ି ଛୁରା ଗୁଳି ଭଳିଆ ଆସିଲା। ଭାଗ୍ୟକୁ ମୋ' ଦେହରେ ବାଜିନି କେବଳ କବାଟ ନୁହେଁ ବାତ୍ୟା ବିଧା ମାରି ଫେଲିଲା ଛାତକୁ। ଭୟ ହେଉଥାଏ ପୁରୁଣାକାଳିଆ ଘର ଛାତ କାଳେ ପଡ଼ିଯିବ କି? କିନ୍ତୁ ସେଭଳି କିଛି ହେଲାନାହିଁ। ସାରା ଦିନ ମହାବାତ୍ୟା ବହୁ ଧମକେଇଲା। ବହୁତ ଡରେଇଲା। ଛୋଟ ଛୋଟ ଗୋଡ଼ି ସ୍କାଇଲାଇଟ୍ ବାଟେ ବୁଲେଟ୍ ପରି ଆସିଲା। ମୁହଁରେ ବିରାଟ ଟାୱେଲଟେ ପକେଇ ମୁଁ ନିଜକୁ ରକ୍ଷା କରୁଥିଲି। ଚାରିଆଡୁ ଶୁଭୁଥାଏ ମଡ଼ ମଡ଼ ଶବ୍ଦ, ପ୍ରକୃତିର ତାଣ୍ଡବ ଲୀଳା। ଅଫିସ ଚାରିପାଖ ସମସ୍ତ ଗଛ ଭାଙ୍ଗି ପଡ଼ିଲା। ମୁଁ ଖାଲି ଆଶଙ୍କା କରୁଥିଲି ଘରେ ଏକୁଟିଆ ଥିବା ସ୍ତ୍ରୀଙ୍କ ବିଷୟରେ।

ସ୍ପେଶାଲ ବ୍ରାଞ୍ଚ ଅଫିସରୁ ମୋ ଘର ୧୫ ମିନିଟ୍‌ର ଚଲାବାଟ, ମୋତେ କିନ୍ତୁ ଘରେ ପହଞ୍ଚିବାକୁ ଦେଢ଼ ଘଣ୍ଟା ଲାଗିଲା। ଗଛ, ଡାଳ, ଖଣ୍ଡ ଖଣ୍ଡ ଆଜବେଷ୍ଟସ, ନଡ଼ା, ବାଉଁଶ, ସାଙ୍ଗକୁ ମଲାପକ୍ଷୀ, କୁକୁର, ବିଲେଇ ଓ ଗାଈ, ମଇଁଷି, ରାସ୍ତାରେ କୁଢ଼େଇ ହୋଇ ପଡ଼ିଥାନ୍ତି। କି ବୀଭତ୍ସ ଦୃଶ୍ୟ। ଗୋଟିଏ ଜାଗାରେ ଠିଆ ହୋଇଗଲି। ଆଗରେ ଅଣ୍ଟେ ଉଚ୍ଚାର ଭଙ୍ଗା ଗଛ ଓ ଡାଳ। ଡେଇଁ କରି ଯାଇହେବ କିନ୍ତୁ ଆଖି ପଡ଼ିଗଲା ଗୋଟିଏ ଭଦଭଦଳିଆ ଚଢ଼େଇ ଉପରେ। ୫୦ ବର୍ଷ ତଳେ ଆମେ ଢେଙ୍କାନାଳରେ ଯେଉଁ ଭଡ଼ା ଘରେ ରହୁଥିଲୁ ତାକୁ ଲାଗି ବିରାଟ ଚକୁଣ୍ଡା ଗଛ। ଚକୁଣ୍ଡା ଗଛରେ ଦୁଇଟି ଭଦଭଦଳିଆ ଚଢ଼େଇ ରହୁଥିଲେ । ପରୀକ୍ଷା ଦିନ ବଡ଼ି ଭୋର୍‌ରୁ ଉଠି ଚଢ଼େଇ ସକାଳୁ ଉଡ଼ିଯିବା ପୂର୍ବରୁ ଆମେ ଦେଖିବା ପାଇଁ ଚେଷ୍ଟା କରୁ। ଭଦଭଦଳିଆ ଚଢ଼େଇ ଦେଖି ପରୀକ୍ଷା ଦେଲେ ନିଶ୍ଚୟ ତୁ ଫାଷ୍ଟ ହେବୁ ବୋଲି ମୋତେ ବାମଦେବ ରଥ ବୋଲି ଜଣେ ଛାତ୍ର କହିଥିଲା। ଦିନେ ଆମ ପିଅନ କୁଆଡୁ ଗୋଟେ ଭଦଭଦଳିଆ ଚଢ଼େଇ ଧରି ଆଣିଲା ଓ ଆମେ ତାକୁ ପଞ୍ଜୁରୀରେ ରଖିଲୁ। ସେ କାହିଁ ରହନ୍ତା? ଦିନେ ପଞ୍ଜୁରୀ ଖୋଲି ଉଡ଼ି ପଳେଇଲା। ଆଜି ଦେଖିଲି ଡାଳ ଉପରେ ଶୋଇଛି ଭଦଭଦଳିଆ ଚଢ଼େଇଟିଏ, ମହା ଶାନ୍ତିରେ, ଚିର ନିଦ୍ରାରେ । ଛୁଆଙ୍କୁ ଖୋଇବା ପାଇଁ ତାକୁ ବ୍ୟସ୍ତ ହେବାକୁ ପଡ଼ିବ ନାହିଁ। ଚିଲର ଉପସ୍ଥିତି ତାକୁ ବିବ୍ରତ କରିବ ନାହିଁ। ଗଛ ଲତା ଜୀବଜନ୍ତୁ ମଣିଷ ପରି ବିଚରା ଚଢ଼େଇଟି ମହାବାତ୍ୟା ସାଙ୍ଗରେ ଲଢ଼େଇ କରି ହାରିଯାଇଛି। ଖଣ୍ଡିଏ ଦୂରରେ ପଡ଼ିଥାଏ କୁଆଟିଏ। ତା' ଗଳାଟା ଖରାପ ବୋଲି ସମସ୍ତେ ତାକୁ ଦୂର ଦୂର ମାର ମାର କରନ୍ତି କିନ୍ତୁ ସମୟ ଥିଲା କୁଆ ଆମ ପାଇଁ ଥିଲା ସକାଳର ଆଲାରାମ୍ ଘଡ଼ି।

ବଡ଼ କଷ୍ଟରେ ଗଛକୁ ଡ଼େଇଁ ପାର୍ ହେଲି। ବାଁ ପାଖେ ଦେଖିଲି ଇଲେକ୍ଟ୍ରି ଖୁଣ୍ଟ। ଖସି ପଡ଼ିନି ସିନା ଠିଆ ହୋଇଛି ଅଷ୍ଟବକ୍ର ମୁନି ପରି। ତାର ଛିଣ୍ଡି ରାସ୍ତାରେ ପଡ଼ିଛି। ସକ୍ ମାରିବ କି? ନାଇଁ ମ ବାତ୍ୟା ଆରମ୍ଭ ହେବା ପୂର୍ବରୁ ଲାଇନ୍ ସବୁ କାଟି ଦିଆଯାଇଥିଲା।

ଭଦଭଦଳିଆ ଓ କୁଆ ଠାରୁ ବିଦାୟ ନେଇ ଆଗେଇ ଚାଲିଲି। କ୍ୟାଣ୍ଟନମେଣ୍ଟ ରୋଡ଼ରେ ରାସ୍ତା କଡ଼କୁ ଗାଈଟିଏ ମରି ପଡ଼ିଛି, ଟିକିଏ ଦୂରରେ ବାଛୁରୀଟିଏ। ମାଆ ପୁଅ ବୋଧେ ଫେରୁଥିଲେ ଗୁହାଳକୁ। ବାଟରେ ଯମ ରୂପୀ ମହାବାତ୍ୟା ମାଡ଼ି ବସିଲା। ବିକଳରେ ରଡ଼ି ନିଶ୍ଚୟ ପକେଇଥିବ କିନ୍ତୁ କିଏ ଶୁଣିଥିବ ? ହଜାର ହଜାର ମଣିଷ, ଲକ୍ଷ ଲକ୍ଷ ପଶୁ ପକ୍ଷୀ ଜୀବଜନ୍ତୁଙ୍କର ଆର୍ତ୍ତନାଦ ମହାବାତ୍ୟାର ମହାଗର୍ଜନରେ ଉଭେଇ ଯାଇଥିବ। ପବନ ବହୁଥାଏ ଜୋର, ବାରମ୍ବାର ମୁଁ ଠେଲି ହେଇ ଯାଉଥାଏ। ମଦୁଆଙ୍କ ପରି ଟଳି ମଳି ହୋଇ ଚାଲୁଥାଏ ଘର ଆଡ଼କୁ। ସ୍ତ୍ରୀ ବଞ୍ଚିଛନ୍ତି ତ ? ଘରେ ପହଞ୍ଚିବା ବେଳକୁ ଦେଖିଲି କବାଟ ଠିଆ ମେଲା ଓ ସ୍ତ୍ରୀ ଓଦା ଗାମୁଛାକୁ ବାହାରେ ଚିପୁଡ଼ୁଥାନ୍ତି। ଯାହାହେଉ ଘର ଉପରେ ନିମ୍ବ ଗଛ ପଡ଼ିନାହିଁ ଏବଂ ସ୍ତ୍ରୀ ସୁରକ୍ଷିତା। ଭଗବାନ ଡାକ ଶୁଣିଲେ ତାହାହେଲେ। ତାଙ୍କଠାରୁ ଲୋମ ଟାଙ୍କୁରା ବିବରଣୀ ଶୁଣିଲି। ସକାଳ ସାଢ଼େ ଆଠଟା ବେଳେ ମୁଁ ଯେତେବେଳେ ଅଫିସ ବାହାରିଲି ସେ ମନା କରୁଥିଲେ। ତାଙ୍କ ଅନ୍ତର ଭିତରୁ କିଏ ଯେମିତି କହୁଥିଲା ଯେ ମହାବିପତ୍ତି ମାଡ଼ିଆସୁଛି। ପ୍ରାୟ ନଅଟା ବେଳକୁ ଟେଲିଫୋନ୍ ତାର ଛିଡ଼ିଗଲା। ବିଜୁଳିବତି ବନ୍ଦ, ତାପରେ ହାୱା ଓ ବର୍ଷା। ହାୱା ମଝିରେ ମଝିରେ ଶବ୍ଦ କରୁଥାଏ, ଶୁଭୁଥାଏ ବଜାରୀ ଟୋକା, ଝିଅଙ୍କୁ ଦେଖିଲେ ମାରୁଥିବା ହୁଇସିଲ ଶବ୍ଦ ପରି। ବଡ଼ କଷ୍ଟରେ ସେ କବାଟ ଝରକା ବନ୍ଦ କଲେ। କିଛି ସମୟ ପରେ କବାଟ ଝରକା ହଲିବା ଆରମ୍ଭ କଲା। ବାଡ଼ି ପଟେ ନିମ୍ବ ଗଛ ହାତ ପଙ୍ଖା ପରି ବାଁ ଡାହାଣ ହଲିଲା। ବିରାଟ ଗଛ, ଗଣ୍ଡି ବେଶ୍ ମୋଟ ପଡ଼ିଯାଇଥିଲେ ଉପର ମହଲା ଛାତ ଭାଙ୍ଗି ଯାଇଥାନ୍ତା। ତଳକୁ ଓହ୍ଲେଇ ଗଲେ ଓ କବାଟ ଝରକା ବନ୍ଦ କରି ସୋଫାକୁ କବାଟରେ ଠେସି ଦେଲେ। ପ୍ରାୟ ୧ଟା ବେଳକୁ ତେରେଛା ବର୍ଷା ମାରିଲା। କବାଟ ସନ୍ଧି ବାଟେ ପାଣି ପଶିଲା। ଡ୍ରଇଁ ରୁମ୍, ବେଡ଼ରୁମ୍, କିଚେନ୍ ସବୁଆଡ଼େ ପାଣି। ଅର୍ଦ୍ଦଳୀ ଲକ୍ଷ୍ମଣ ଚେତାବନୀ ଦେଲା - ମାଆ କୌଣସି କବାଟ ପାଖକୁ ଯାଆନ୍ତୁ ନାହିଁ। କବାଟ ଉପୁଡ଼ି ଦେହରେ ପଡ଼ିଯିବ। ପ୍ରଥମେ ସୋଫା ଉପରେ ବସିଲେ ପାଣି ପଶି ପାଦରୁ ଆଣ୍ଠୁଏ ପର୍ଯ୍ୟନ୍ତ ହେଲା। ତାପରେ ଡାଇନିଂ ଟେବୁଲ ଉପରେ ବସିଲେ। ଲକ୍ଷ୍ମଣ ହାତ ଯୋଡ଼ି ଓ ଆଖି ବୁଜି ପାହାଚ ଉପରେ ବସିଗଲା। ଚାରିଆଡୁ କେବଳ ଦୁମ୍‌ଦାମ୍ ଧଡ଼ଧାଡ଼ ଶବ୍ଦ। ଲାଗୁଥାଏ କି ଘର କେତେବେଳେ ଭୁଷୁଡ଼ି ପଡ଼ିବ। ସାରା ରାତି ଭଗବାନଙ୍କୁ ଜପ କରି ଏମାନେ ବସିଲେ। ସ୍ତ୍ରୀ ଚିନ୍ତିତ ଥିଲେ ମୋ ବିଷୟରେ କାରଣ ସ୍ପେଶାଲ ବ୍ରାଞ୍ଚ ଅଫିସ ବହୁତ ପୁରୁଣା। ସେଇ ବୁଢ଼ା ଦଦରା ଘରଟି କେମିତି ମହାବାତ୍ୟାର ମୁକାବିଲା କରିବ ?

ମାସର ୨୯ ତାରିଖ। ଆମର ବଜାର ସଉଦା ଆସେ ମାସେ ପାଇଁ। ତେଣୁ ଡାଲି ଚାଉଳ ତେଲ ଲୁଣ ସବୁ ସରିବା ଉପରେ । ଗ୍ୟାସ ସିଲିଣ୍ଡର ମଧ୍ୟ ସରିବା ଉପରେ। ଘର

ଉପରେ ଥିବା ଟାଙ୍କିରେ ପାଣି ଦିନକ ଭିତରେ ସରିଯିବ। ଇନଭର୍ଟର ମାତ୍ର ୬ ଘଣ୍ଟା ପାଇଁ ଆଲୁଅ ଦେବ। ଘରେ ଲଣ୍ଠନ ନାହିଁ କି ବତିଟିଏ ନାହିଁ। ପାଣି ଆଣିବା ପାଇଁ କୂଅ ନାହିଁ କି ପୋଖରୀ ନାହିଁ। ଥିଲେ ମୁଁ ଲଣ୍ଠନ ଜାଳିଥାନ୍ତି ଯାହାକି ଆମେ ଜାଳିକରି ପିଲାଦିନେ ପଢୁଥିଲୁ ଓ କୂଅରୁ ପାଣି ଆଣିଥାନ୍ତି। କିଛିଦିନ ପାଇଁ ମୁଁ ଗରିବ ହେବାପାଇଁ ଚାହୁଁଥିଲି। କିନ୍ତୁ ତାହାବି ସମ୍ଭବ ନୁହେଁ। ଲଣ୍ଠନ ନାହିଁ କି କୂଅ ନାହିଁ। ସନ୍ଧ୍ୟା ହେଲେ ଅନ୍ଧାର ହୋଇଯିବ, କ'ଣ କରିବୁ? ଏଇଆ ଭାବୁଛୁ ଏରିଆର ଗୋଟିଏ ଘରୁ ଫଡ଼ ଫଡ଼ ଶବ୍ଦ ଶୁଭିଲା। ଜଣେ ସିନିୟର ପୋଲିସ ଅଫିସର ସରକାରୀ କିରୋସିନ ପକେଇ ସରକାରୀ ଜେନେରେଟର ଚଳେଇଲେ। ତାଙ୍କ ଘରେ ଆଲୁଅ ଜଳିଲା, ଫ୍ୟାନ୍ ଘୂରିଲା ଓ ରୋଷେଇ ଠିକ୍ ଭାବେ ଚାଲିଲା। କିଛି ସମୟ ପରେ ପଡ଼ୋଶୀ ଘରୁ, ଝିଅଟିଏ ଡିବିରୀଟିଏ ଆଣି କହିଲା ମଉସା; ଆମ ଘରେ ଯୋଡ଼ିଏ ଡିବିରୀ, ଆପଣଙ୍କ ପାଇଁ ଗୋଟିଏ ଦେଉଛି। ସେ ଭଦ୍ରଲୋକ ଜିଲ୍ଲାଜଜ୍ ପାହ୍ୟାର ଅଫିସର୍। ଏଇ ଅଳ୍ପଦିନ ହେଲା ଚାଲିଗଲେ। ସେ ଡିବିରୀଟିର ସେ ସମୟର ମୂଲ୍ୟ କେତେ ମୁଁ ଆକଳନ କରିପାରୁନାହିଁ । ତାଙ୍କର ଉଦାରତାର ବ୍ୟାପ୍ତି ମଧ୍ୟ ମାପି ପାରୁନାହିଁ। ଯାହାହେଉ ମଣିଷ ମଣିଷ ପାଇଁ ଭାବୁଛି ଓ ମଣିଷର ଭବିଷ୍ୟତ ସୁରକ୍ଷିତ।

ରାତିରେ ଡିବିରୀ ଜାଳି କୌଣସି ମତେ ରହିଗଲୁ, ଲକ୍ଷ୍ମଣ ଚାଲିଗଲା ଯେ ଫେରିପାରିଲା ନାହିଁ। ତା' ଘର ଅବସ୍ଥା କହିଲେ ନସରେ। କିନ୍ତୁ ଆଉ ଜଣେ ଅର୍ଡ଼ର୍ଲୀ ମନୋଜ ଆସି ପହଞ୍ଚିଲା। ସାଙ୍ଗରେ ଆଣିଥାଏ ବିସ୍କୁଟ୍ ପ୍ୟାକେଟ୍ ଦୁଇଟା। ସାଇକେଲ ପଛଆଡ଼େ ଟୋକେଇରେ ରଖିଥାଏ ବହୁତ ଜିନିଷ, ୧୫ କି.ମି. ଦୂର ଗାଁକୁ ଯାଇ ବାପା ମାଆଙ୍କୁ ଦେଖିବା ଆମକୁ ଦୁଇଟା ବିସ୍କୁଟ୍ ପ୍ୟାକେଟ୍ ଧରେଇ ଦେଇ ସେ ଗଲା। ତିନିଦିନ ପରେ ଫେରିଲା। ତାଠୁ ଶୁଣାଗଲା ଯେ ସେ ଜାତୀୟ ରାଜପଥରେ ବଡ଼ କଷ୍ଟରେ ପହଞ୍ଚିଲା ଓ ସେଇଠାରେ ଦଳେ ଲୋକ ଝାମ୍ପ ମାରି ବୋଝଟା ଛଡ଼େଇ ନେଲେ ଓ ପରସ୍ପର ଧକ୍କା, ବିଧା ଓ ମୁଥ ମରାମରି ହୋଇ ବିସ୍କୁଟ୍ ତକ ଖାଇଗଲେ ଓ ଚାଉଳ, ଡାଲି ଆଞ୍ଜୁଳାଏ ଲେଖା ଧରି ନିଜ ଘର ଆଡ଼କୁ ଧାଇଁଲେ। ଅନେକ ଜିନିଷ ଭୂଇଁରେ ପଡ଼ି ନଷ୍ଟ ହୋଇଗଲା। ନିଜ ପ୍ରାଣ ବଞ୍ଚେଇ ସେ ଗାଁରେ ପହଞ୍ଚିଲା।

କିଛି ସମୟ ପରେ ସହର ଦେଖିବା ପାଇଁ ମୁଁ ଗଲି। ମାତା ମଠରୁ ନଦୀ ବନ୍ଧ ଉପରେ ମୁଁ ଚାଲିଲି ତୁଳସୀପୁର ଆଡ଼କୁ। ରାସ୍ତା ଉପରେ ଗୋଟିଏ ଷଣ୍ଢ ପଡ଼ିଥିବା ଦେଖି ମୁଁ ଚମକି ଉଠିଲି। ଷଣ୍ଢଟା କଟି ୨ ଖଣ୍ଡ ହୋଇଯାଇଥିଲା। ଜଣାପଡୁଥାଏ ଯେ ଉଡ଼ି ଆସୁଥିବା କୌଣସି ବଡ଼ ଟିଣ ଖଣ୍ଡ ସୁଦର୍ଶନ ଚକ୍ର ପରି ତାକୁ ୨ ଖଣ୍ଡ କରିଦେଇଛି। ଏଇ ସମୟରେ ଶୁଭିଲା ଭାରତ ମାତା କି ଜୟ। ଦେଖିଲି ମୁଣ୍ଡରେ ବିଶ୍ୱହିନ୍ଦୁ ପରିଷଦ ଲେଖା

ହୋଇଥିବା ଫିତା ବାନ୍ଧିଥିବା ସାତ ଆଠଟି ଯୁବକ ମଲା ଷଣ୍ଢକୁ ଗୋଟିଏ ଶଗଡ଼ ଉପରେ ପକଉଛନ୍ତି। ପ୍ରଶଂସାପୂର୍ଣ୍ଣ ଆଖିରେ ତାଙ୍କୁ ଦେଖି ଆଗକୁ ଗଲି ବାଲିଯାତ୍ରା ପଡ଼ିଆ ପାଖରେ। ବିଶ୍ୱହିନ୍ଦୁ ପରିଷଦର ଆଉ ଦଳେ ପିଲା ଚୁଡ଼ା ପ୍ୟାକେଟ୍ ଧରି ବାଣ୍ଟୁ ଥାନ୍ତି। ମୋତେ ଜଣେ କହିଲା ନେବେ? ସମସ୍ତ ସମ୍ମାନ ଏବଂ ପାହ୍ୟା ଭୁଲିଯାଇ ମୁଁ ହାତଟା ବଢ଼େଇ ଦେଲି।

ସ୍ୟାଟେଲାଇଟ୍‌ରେ ଉଠାଯାଇଥିବା ଫଟୋ ଟିଭିରେ ଦେଖେଇଲା। ସାରା କଟକ ଦିଶୁଥିଲା ଏକ ହ୍ରଦ ଭଳି। ଘରି ପାଞ୍ଚୋଟି ଘର ପାଣି ଭିତରେ ଉଙ୍କି ମାରୁଥିଲେ। ହାଇଦ୍ରାବାଦରେ ମୋ ପୁଅ ଓ ଝିଅ ଥିଲେ ଓ ପୁଅ କାନ୍ଦି କାନ୍ଦି ଗଲା ଆନ୍ଧ୍ରପ୍ରଦେଶ ଡିଜି ଶ୍ରୀ ଦୋରାଙ୍କ ପାଖକୁ। ଡିଜି ଶ୍ରୀ ଦୋରା ସ୍ୟାଟେଲାଇଟ୍ ଫୋନ୍‌ରେ ଫୋନ୍ କରି ବୁଝିଲେ କଟକ ବାସିନ୍ଦା ସମସ୍ତେ ସୁରକ୍ଷିତ ଅଛନ୍ତି, କିନ୍ତୁ ସମ୍ପତ୍ତି ବହୁତ ନଷ୍ଟ ହୋଇଛି। ନଦୀ ବନ୍ଧରୁ ଆସିଲି କ୍ୟାଣ୍ଟନମେଣ୍ଟ ରାସ୍ତାକୁ ଓ ମୁହେଁଇଲି ଅଫିସକୁ। ପୁରୁଣା ସେକ୍ରେଟେରିଏଟ୍ ଅଫିସ ସାମନାରେ ଜଣେ ଲୋକ ଘଦର ବିଛେଇ ଗଦେଇଥିଲା ଶହେରୁ ଅଧିକ ଘଇନା ଟ୍ରାନ୍‌ଜିଷ୍ଟର। ବ୍ୟାଟେରୀ ସମେତ ଦାମ୍ ୧୫୦ ଟଙ୍କା। ଯାହାହେଉ ଟିଭି ତ ଗଲା ଟ୍ରାନ୍‌ଜିଷ୍ଟରରେ କିଛି ଖବର ଶୁଣି ହେବ। କିନ୍ତୁ ପକେଟ୍‌ରେ ଥାଏ ଷାଠିଏ ଟଙ୍କା। ଅଫିସ୍ ଯାଇ ଡ୍ରରୁ ଟଙ୍କା ବାହାର କଲି ଓ ଜଣେ କନେଷ୍ଟବଲ୍‌କୁ ଦୌଡ଼େଇଲି ତାକୁ ଆଣିବା ପାଇଁ। ସେ ପହଞ୍ଚିଲା ବେଳକୁ ଦାମ୍ ହେଲାଣି ୨୦୦ ଟଙ୍କା। ଅଧ ଘଣ୍ଟେରେ ଦରବୃଦ୍ଧି ଶତକଡ଼ା ୩୦ ରୁ ଅଧିକ ଏଭଳି ଦୃଷ୍ଟାନ୍ତ ପୃଥିବୀରେ ନଥିବ।

ୱାରଲେସ୍‌ର ବ୍ୟାଟେରୀ ଠିକ୍ ଅଛି କିନ୍ତୁ ଟାୱାର ନାହିଁ। ଅସ୍ଥାୟୀ ଭାବେ ଏକ ଟାୱାର ଲଗେଇ ଆମେ ଭୁବନେଶ୍ୱର ସାଙ୍ଗେ ୱାରଲେସ୍‌ରେ କଥାବାର୍ତ୍ତା ହୋଇପାରିଲୁ ଏବଂ ଖବର ମିଳିଲା ଯେ ଭୁବନେଶ୍ୱରରେ ବିଶେଷ କିଛି କ୍ଷୟ କ୍ଷତି ନାହିଁ ଏବଂ ଆନ୍ଧ୍ର ପୋଲିସ ପହଞ୍ଚି ରାସ୍ତା ସଫା କରିବା ଆରମ୍ଭ କଲେଣି। ୨ ଦିନ ମଧ୍ୟରେ ପାଣି ସରିଗଲା। ପରେ ପାଣି ଯୋଗାଣ ଗାଡ଼ି ଆସି ଘର ଆଗରେ ପାଣି ଦେଲା। ଆମେ ପାଣି ସଂଗ୍ରହ କରି ଘରେ ଡ୍ରମରେ ରଖିଲୁ। ତିନି ଦିନ ପରେ ପ୍ରଥମ ଥର ପାଇଁ ଗାଧୋଇବି। ତଳେ ବାଥରୁମ୍ ଅଛି କିନ୍ତୁ ଉପର ମହଲାରେ ସବୁଦିନ ଗାଧୋଇ ଆସୁଛି ଓ ତଳ ବାଥରୁମ୍‌ର ଉପସ୍ଥିତିକୁ ଭୁଲିଯାଇ ପାଣି ବାଲ୍ଟି ଧରି ଗଲି ଉପରକୁ। ସେଇ ବାଲ୍ଟିଏ ପାଣିରେ ଖିଅର ହେବା ଗାଧୋଇବା ସମସ୍ତ ନିତ୍ୟକର୍ମ ସରିଲା। ଢେଙ୍କାନାଳର ଏସ୍‌ପି ମୋ ପାଇଁ ଲଣ୍ଠନ, କିଛି କିରୋସିନ, ଡାଲି, ଘଉଳ, ଆଳୁ, ପିଆଜ ପଠେଇଥିଲେ। ଯଦିବା ମୁଁ ଅନୁରୋଧ କରିନଥିଲି। ଦୁଇଦିନ ପରେ ଗ୍ୟାସ ସିଲିଣ୍ଡରଟେ ମିଳିଗଲା ୨ ଗୁଣ ଦାମ୍‌ରେ। ପାଞ୍ଚ ଗୁଣ ହୋଇଥିଲେ ମଧ୍ୟ କିଣିଥାନ୍ତି କାରଣ ମଣିଷ ଅବସ୍ଥାର ଦାସ।

ଅଫିସରେ ଡିଜି ଅଫିସରୁ ଚିଠି ଆସିଥାଏ ଯେ ବାତ୍ୟା ସମୟରେ ସ୍ପେଶାଲ ବ୍ରାଞ୍ଚର ଖବର କାହିଁକି ନାହିଁ? ରାସ୍ତା ଘାଟ ଧୋଇଯାଇଛି, ଟେଲିଫୋନ୍ ତାର ଛିଣ୍ଡି ଯାଇଛି, ବେତାର ବିଭାଗ ଅକ୍ଷମ ତେଣୁ ସ୍ପେଶାଲ ବ୍ରାଞ୍ଚ ଅଫିସରମାନେ କେମିତି ଖବର ଦେଇଥାନ୍ତେ? କିନ୍ତୁ କ'ଣ କରିବା ସ୍ୱର୍ଗକୁ ନିଶୁଣୀ ନାହିଁ ମୂର୍ଖ ଲୋକଙ୍କୁ ଉତ୍ତର ନାହିଁ। ସେ ଚିଠିର ଉତ୍ତର ନଦେଇ ଆମେ ଚୁପ୍ ରହିଲୁ।

କିଛିଦିନ ପରେ ଜିପ୍ ନେଇ ମୁଁ ଗଲି ବିଭିନ୍ନ ଅଞ୍ଚଳ ଦେଖିବା ପାଇଁ। ସେତେବେଳକୁ ଆନ୍ଧ୍ର ପୋଲିସ ଓଡ଼ିଶା ପୋଲିସ ସେନାବାହିନୀ ବିଭିନ୍ନ ସ୍ୱେଚ୍ଛାସେବୀମାନେ ପୂର୍ଣ୍ଣ ପ୍ରାଣରେ ଲାଗିପଡ଼ିଥାନ୍ତି ଖାଦ୍ୟ ଯୋଗାଇବାରେ ଏବଂ ଚିକିତ୍ସା କରିବାରେ। ମହାକାଳପଡ଼ାରେ ପହଞ୍ଚିଲି। ସେଠି ଶୁଣିଲି ଯେ ହଜାର ହଜାର ଲୋକ ନିଖୋଜ ହୋଇଗଲେ, ସମସ୍ତେ ବାଂଲାଦେଶୀ, ଅନୁପ୍ରବେଶକାରୀ। ପାରାଦ୍ୱୀପରେ ବହୁ ଶ୍ରମିକ ମରିଗଲେ, ଅନେକ ତେଲଗୁ ନୋଳିଆ ଧୋଇ ହୋଇଗଲେ। ପାରାଦ୍ୱୀପ, ଜଗତସିଂହପୁର, କେନ୍ଦ୍ରାପଡ଼ା, ନିଆଳି, କଟକ, ଗୋବିନ୍ଦପୁର, ଏରସମାରେ ବହୁ କ୍ଷୟକ୍ଷତି ହେଲା। ଚବିଶ ଘଣ୍ଟାରେ ପ୍ରାୟ ସତର ଇଞ୍ଚ ବର୍ଷା ହେବାରୁ ସବୁଆଡ଼େ ପାଣି ଓ ପାଣି। ଲୋକଙ୍କ ସାହାଭରସା ହେଲା ଏକ୍ସପ୍ରେସ୍‌ୱେ।

କିଛିଦିନ ପରେ କଂଗ୍ରେସ ହାଇକମାଣ୍ଡ ଶ୍ରୀ ଗମାଙ୍ଗଙ୍କୁ ବଦଳେଇ ହେମାନନ୍ଦ ବିଶ୍ୱାଳଙ୍କୁ ମୁଖ୍ୟମନ୍ତ୍ରୀ କଲେ। ବିଧାନସଭା ନିର୍ବାଚନ ପାଖେଇ ଆସିବାରୁ ଆମର କାମ ବହୁତ ବଢ଼ିଗଲା। ଶ୍ରୀ ଗମାଙ୍ଗ ବଦଳିବା ଦ୍ୱାରା ଘରୋଇ ବିଭାଗ ମୁଖ୍ୟମନ୍ତ୍ରୀ ସିଧାସଳଖ ଦେଖିଲେ। ହେମାନନ୍ଦ ବିଶ୍ୱାଳ ଅଳ୍ପ କଥାବାର୍ତ୍ତା କରନ୍ତି, କାହାକୁ କଡ଼ା ଭାଷା ବ୍ୟବହାର କରନ୍ତି ନାହିଁ ଓ କଥାଟା ବୁଝେଇ ଦେଲେ ମାନି ଯାଆନ୍ତି। ତାଙ୍କ ସମୟରେ ଗଞ୍ଜାମର ଅଡ଼ବାରେ ପୋଲିସ ଫାଇରିଂରେ କେତେଜଣ ଆଦିବାସୀ ମୃତ ହେଲେ ଓ ମୋତେ ପଠାଗଲା ଅବସ୍ଥାର ପର୍ଯ୍ୟବେକ୍ଷଣ କରିବା ପାଇଁ। କମିଶନର ଜଗଦାନନ୍ଦ ପଣ୍ଡା ଓ ଆଇ.ଜି ଅମରାନନ୍ଦ ପଟ୍ଟନାୟକ ଆସିଥାନ୍ତି। ଘଟଣାଟି ଘଟିଥାଏ ଡିସେମ୍ବର ଶେଷ ସପ୍ତାହରେ। ହେଲିକପ୍ଟରରେ ଥରେ ଆସିଲେ କେନ୍ଦ୍ରମନ୍ତ୍ରୀ ନବୀନ ପଟ୍ଟନାୟକ ଓ ତାଙ୍କୁ ସବୁ ମୁଁ ବୁଝେଇଲି। ତାଙ୍କ ପରେ ଆସିଲେ ମୁଖ୍ୟମନ୍ତ୍ରୀ ହେମାନନ୍ଦ ବିଶ୍ୱାଳ। ସାଙ୍ଗରେ ଟିଭି ଓ କ୍ୟାମେରା ମ୍ୟାନ୍। ତାଙ୍କୁ ଅବସ୍ଥା ବିଷୟରେ ଅବଗତ କରିବା ପରେ ସେ ସନ୍ତୁଷ୍ଟ ହୋଇଗଲେ। ଅଡ଼ବା ଗେଷ୍ଟହାଉସ୍‌ର ଗୋଟିଏ ରୁମ୍‌ରେ ଡିସେମ୍ବର ୩୧ ତାରିଖରେ ରାତି ୧୨ଟା ପରେ କମିଶନର ଜଗଦାନନ୍ଦ ଓ ମୁଁ ନୂତନବର୍ଷ ପାଳିଲୁ। ସେତେବେଳେ ସେ କହିଥିଲେ ଦାଦା କେତେବେଳେ କୋଉ କଥା। ମଣିଷ ଆୟୁଷ ଉପରେ କି ଭରସା? କେତେ କେତେ ସତ ସେ କହିଥିଲେ । ଏଇ ଅଳ୍ପ କେତେ ବର୍ଷ ତଳେ ସେ

ଆତ୍ମହତ୍ୟା କଲେ। ସେ ଜଣେ ଭଲ ଅଫିସର ତଥା ଭଲ ମଣିଷ ବି ଥିଲେ। ଭଲ ଅଫିସର ଭଲ ମଣିଷ ଏକ ବିରଳ ସଂଯୋଗ।

ନିର୍ବାଚନ ଯେତିକି ପାଖେଇ ଆସିଲା ସେତିକି ଦୌଡ଼ିବାକୁ ପଡ଼ିଲା ବିଭିନ୍ନ ସ୍ଥାନକୁ, ଖାଲି ମିଟିଂ ଓ ମିଟିଂ। ବର୍ତ୍ତମାନ ରାଜନୈତିକ ଆକାଶରେ ବିଜୁବାବୁ ନାହାଁନ୍ତି। ମନେପଡ଼େ ତାଙ୍କ କଥା। କ୍ଷମତାରେ ଥାଆନ୍ତୁ କି ନଥାନ୍ତୁ ମୁଣ୍ଡ ଟେକି ଚାଲନ୍ତି। ତାଙ୍କୁ ପ୍ରଧାନମନ୍ତ୍ରୀ ହେବା ପଦରୁ ବଞ୍ଚିତ କରିବା ପାଇଁ ରାତି ଅଧିଆ ଭିଜିଲାନ୍‌ସ କେସ୍ କରାଗଲା। ତାଙ୍କ ପାଖ ଲୋକ ତାଙ୍କ ବିରୁଦ୍ଧରେ ଗଲେ। ବିଜୁ ବାବୁ ଦିଲ୍ଲୀରେ ଥିବା ସମୟରେ ତାଙ୍କର ପ୍ରୟାଣ ହେଲା। ତାଙ୍କ ମର ଦେହକୁ ଯେଉଁଦିନ ଅଣାଗଲା ଲୋକମାନଙ୍କୁ ସମ୍ଭାଳି ଡିଜି ଅମୀୟ ତ୍ରିପାଠୀ, ଡିଆଇଜି ପ୍ରକାଶ ମିଶ୍ର, ଏସ୍‌ପି ଦେବାଶିଷ ପାଣିଗ୍ରାହୀ ଓ ମୁଁ ନୟାନ୍ତ ହୋଇଗଲୁ। ତାଙ୍କ ସ୍ମୃତି ସଭାରେ ଭାରତର ସବୁ ବଡ଼ ବଡ଼ ନେତା ଆସିଥିଲେ। ଦିଲ୍ଲୀର ଦୂରବୀକ୍ଷଣରେ ବିଜୁ ବାବୁ ଥିଲେ ଶେଷ ଓଡ଼ିଆ।

ଏବେ ପୁଣି ନେତାଙ୍କ ଭିଡ଼, ବିଜୁ ବାବୁଙ୍କ ପୁଅ ନବୀନ ପଟ୍ଟନାୟକଙ୍କୁ ଆଣି ଜନତା ଦଳର କେତେକ ନେତା (ବିଜୟ ମହାପାତ୍ର, ନଳିନୀ ମହାନ୍ତି ଇତ୍ୟାଦି) ବିଜୁ ଜନତା ଦଳ କଲେ। ନବୀନ ପଟ୍ଟନାୟକ ଏବେ ଓଡ଼ିଶା ରାଜନୀତିରେ ଠିଆ ହେବେ ମୁଖ୍ୟ ଚରିତ୍ର ଭାବରେ। ଦୁଇଟି ମୁଖ୍ୟ ଦଳ କଂଗ୍ରେସ ଓ ବିଜେପି ମଧ୍ୟ ଲଢ଼ିବେ। ବିଜେପି, ବିଜେଡ଼ି ମେଣ୍ଟ ହେଲା। ନବୀନ ପଟ୍ଟନାୟକ ଯୁଆଡ଼େ ଗଲେ ଲୋକେ କଥାହେଲେ ହେଇ ବିଜୁ ବାବୁଙ୍କ ପୁଅ। ୨୦୦୦ ମସିହା ନିର୍ବାଚନରେ ସେ ଜିତିଲେ ବିଜୁ ବାବୁଙ୍କ ପୁଅ ହିସାବରେ। ପରବର୍ତ୍ତୀ ଦୁଇଟି ନିର୍ବାଚନ ନବୀନ ପଟ୍ଟନାୟକ ହିସାବରେ। ନବୀନ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ହେଲେ ଓ ତାଙ୍କର ଜଣେ ପରାମର୍ଶଦାତା ରହିଲେ। ରାଜନୀତି ଓ ପ୍ରଶାସନ ପାଇଁ ଦୁଇଟି କ୍ଷମତା କେନ୍ଦ୍ର ସୃଷ୍ଟି ହେଲା।

ନିର୍ବାଚନ ପାଇଁ ପ୍ରାର୍ଥୀ ପତ୍ର ଦାଖଲ କରିବା ଦିନ ମୁଁ କେନ୍ଦ୍ରାପଡ଼ାରୁ ଏକ ଖବର ପାଇ ଚକିତ ହୋଇଗଲି। ବିଜେଡ଼ିର ବିଶିଷ୍ଟ ନେତା ତଥା ସଂଗଠକ ବିଜୟ ମହାପାତ୍ରଙ୍କ ପ୍ରାର୍ଥୀପତ୍ର ନେଇ ଏ ସମ୍ବାଦ। ବିଜେଡ଼ି ଦଳର ସଭାପତି ଥିଲେ ନବୀନ ପଟ୍ଟନାୟକ। ତାଙ୍କର ଏକ ପତ୍ର ନିର୍ବାଚନ ଅଧିକାରୀଙ୍କୁ ଦିଆଗଲା ଦିନ ୨ଟା ୫୯ ମିନିଟ୍‌ରେ ଓ ସେଥିରେ ଲେଖା ହୋଇଥିଲା ଯେ ବିଜୟ ମହାପାତ୍ର ଆଉ ବିଜେଡ଼ି ଦଳରେ ନାହାଁନ୍ତି। ତେଣୁ ତାଙ୍କ ପ୍ରାର୍ଥୀପତ୍ର ଖାରଜ ହୋଇଗଲା। ସେ ଜାଣିଲା ବେଳକୁ ୩ଟା ବାଜିଲାଣି, ଆଉ ପ୍ରାର୍ଥୀପତ୍ର ଦାଖଲ କରାଯାଇପାରିବ ନାହିଁ। ତେଣୁ ସେ ନିର୍ବାଚନରେ ଲଢ଼ିବାରୁ ବଞ୍ଚିତ ହେଲେ। ମୁଁ ଆଶ୍ଚର୍ଯ୍ୟ ହେବା ସ୍ୱାଭାବିକ କାରଣ ବିଜେଡ଼ିର ଅଧିକାଂଶ ସଭାର ଆୟୋଜନ ପଛରେ ଥିଲେ ସେ, କର୍ମୀମାନଙ୍କ ସହିତ ତାଙ୍କର ଥିଲା ଭଲ ପରିଚୟ।

କ'ଣ ପାଇଁ ତାଙ୍କୁ ଭୁବନେଶ୍ୱରରେ ବସେଇ, କିପରି ନିର୍ବାଚନ କରାଯିବ ତା'ର ଯୋଜନା କରନ୍ତୁ ବୋଲି କୁହାଯାଇ ସିଆଡ଼େ ତାଙ୍କର ପ୍ରାର୍ଥୀପତ୍ର ଖାରଜ କରେଇ ଦିଆଗଲା ତାହା ଏ ପର୍ଯ୍ୟନ୍ତ ସନ୍ଦେହର ବଳୟରେ ରହିଛି। ସେଇଦିନ ଠାରୁ ବିଜୟ ମହାପାତ୍ର ଏପର୍ଯ୍ୟନ୍ତ ଓଡ଼ିଶା ରାଜନୀତିରେ ବିଶେଷ ଆଗେଇ ପାରିନାହାଁନ୍ତି। ସୂଚନା ମିଳିଲା ଯେ ଜଣେ ଅବସରପ୍ରାପ୍ତ ଆଇଏଏସ୍ ଅଫିସର ଓ ଦୁଇଜଣ କାର୍ଯ୍ୟରତ ଆଇଏଏସ୍ ଅଫିସର୍ ଏ ଯୋଜନା କଲେ। ନବୀନ ବାବୁଙ୍କୁ ପ୍ରବର୍ତ୍ତାଇଲେ ଓ ଚିଠି ଲେଖି ତାଙ୍କ ଠାରୁ ଦସ୍ତଖତ କରେଇଦେଲେ। ସେତେବେଳେ ନବୀନ ବାବୁ ରାଜନୀତିରେ ନୂଆ ନୂଆ। ତେଣୁ ଜନରବରେ ସତ୍ୟତା ଥାଇପାରେ ବୋଲି ଅନେକ ବିଶ୍ୱାସ କଲେ।

ନିର୍ବାଚନରେ ବିଜେଡ଼ି ଓ ବିଜେପି ବେଶ୍ ଭଲ ସଂଖ୍ୟା ପାଇ ଜିତିଲେ। ନବୀନ ବାବୁ ଯୁଆଡ଼େ ଗଲେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ପାଇଲେ। କେନ୍ଦ୍ରରୁ ବିଜେପି ପାଇଁ ଅଟଳ ବିହାରୀ ବାଜପେୟୀ ଓ ଲାଲ କୃଷ୍ଣ ଆଡ଼ଭାନୀ ଆସିଲେ ଓ କଂଗ୍ରେସ ପାଇଁ ସୋନିଆ ଗାନ୍ଧି। କଂଗ୍ରେସରେ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ପ୍ରାଧାନ୍ୟ ଦିଆଗଲା ନାହିଁ। 'ଘର ବୁଢ଼ୁ ଓ ତା' ସଙ୍ଗେ ସଉତୁଣୀ ବୁଢ଼ି ମରୁ' ଏଇ ନୀତିରେ ନରସିଂହ ରାଓଙ୍କର ଅନ୍ତରଙ୍ଗ ଜାନକୀ ବାବୁଙ୍କୁ ପ୍ରାଧାନ୍ୟ ନଦେବାରୁ କଂଗ୍ରେସର ବହୁତ କ୍ଷତି ହେଲା। କଂଗ୍ରେସର ଓଡ଼ିଶାରେ ଯେତେ ନେତା ଥିଲେ ଏବଂ ଅଛନ୍ତି ସେ ସମସ୍ତଙ୍କ ଠାରୁ ବେଶି ବିଚକ୍ଷଣ ଓ ତାଙ୍କର କର୍ମୀମାନଙ୍କ ଉପରେ ବେଶ୍ ଭଲ ନିୟନ୍ତ୍ରଣ। ଓଡ଼ିଶାର କଂଗ୍ରେସ ନେତାମାନେ ହାଇକମାଣ୍ଡଙ୍କ କ୍ରୂର ଦୃଷ୍ଟିରେ ପଡ଼ିବା କିଛି ନୂଆ କଥା ନୁହେଁ। ସର୍ଦ୍ଦାର ପଟେଲଙ୍କର ଟାଣୁଆ ସମର୍ଥକ ଡକ୍ଟର ମହତାବଙ୍କୁ କେନ୍ଦ୍ର ମନ୍ତ୍ରୀମଣ୍ଡଳରୁ ବିଦା କରିଦିଆ ଯାଇଥିଲା, ବିଜୁ ପଟ୍ଟନାୟକଙ୍କୁ ଇନ୍ଦିରା ଗାନ୍ଧି ବିଦା କଲେ ଓ ନନ୍ଦିନୀ ଦେବୀଙ୍କୁ ସଞ୍ଜୟ ଗାନ୍ଧି ଦୁଆର ଦେଖେଇଲେ। ଜାନକୀ ପଟ୍ଟନାୟକଙ୍କୁ ହାଇକମାଣ୍ଡ କଂଗ୍ରେସର ନେତୃତ୍ୱ ପାଇଁ ଉପଯୁକ୍ତ ମଣିଲେ ନାହିଁ ଯଦିବା ସେ ପ୍ରଣବ ମୁଖାର୍ଜୀଙ୍କର ସମର୍ଥନ ପାଉଥିଲେ।

ବିଜେପି ବିଜେଡ଼ି ମେଣ୍ଟ, ନୂଆ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଓ ବିଜେପି ତରଫରୁ ସର୍ବ ବରିଷ୍ଠ ନେତା ବିଶ୍ୱଭୂଷଣ ହରିଚନ୍ଦନ। ଉଭୟଙ୍କ ଭାବମୂର୍ତ୍ତି ଖୁବ୍ ଭଲ। ଶପଥ ଗ୍ରହଣ କଲାପରେ ମୁଖ୍ୟମନ୍ତ୍ରୀ ଆସିଲେ ସେକ୍ରେଟେରିଏଟ୍‌କୁ। ଲାଗିଲା ଅଫିସରଙ୍କ ସୁଅ। ସମସ୍ତଙ୍କ ମୁହଁରେ ଗୋଟିଏ ଭାବ ଯେ ପୂର୍ବ ସରକାରଙ୍କ ପାଖରେ କାମ କରିଛୁ ସିନା କିନ୍ତୁ ସତୀତ୍ୱ ହରେଇନାହୁଁ। ମୁରୁକି ହସାଦେଇ ସମସ୍ତଙ୍କ ଠାରୁ ନବୀନ ବାବୁ ଫୁଲତୋଡ଼ା ଗ୍ରହଣ କରୁଥିଲେ ଓ ସମସ୍ତେ ଆଶ୍ୱସ୍ତ ଜଣା ପଡୁଥିଲେ। ଯାହାହେଉ ଆସନ ଟଳିବ ନାହିଁ। ନବୀନ ବାବୁ ଫୁଲତୋଡ଼ା ଗ୍ରହଣ କରୁଥିଲା ବେଳେ ତାଙ୍କ ପରାମର୍ଶଦାତା ନିଜ ଘରେ ବସି ଅଙ୍କ କଷୁଥିଲେ। କିଏ କୁଆଡ଼େ ଯିବ ତା'ର ଅଙ୍କ କଷା ଓ ତାଙ୍କୁ

ପରାମର୍ଶ ଦେଉଥିଲେ ଆଠ ଜଣ ଆଇଏଏସ ଅଫିସର। ଏମାନେ ସମସ୍ତେ ପୂର୍ବତନ ମୁଖ୍ୟ ଶାସନ ସଚିବ ରବି ଦାସଙ୍କର ପ୍ରବଳ ବିରୋଧି। କେତେଜଣ ସିନିୟର ଅଫିସର ଫାଇଲରେ ନୋଟ୍ ସିଟ୍ ଏବଂ ଅର୍ଡ଼ରକୁ ଜେରକ୍ସ କରି ବିଭିନ୍ନ ସ୍ଥାନରେ ଦେଇଥିବାର ସୂଚନା ମିଳୁଥିଲା। ଏଭଳି ଭଦ୍ରଲୋକ ଚୋରଙ୍କୁ ଧରିବା ତ ଦୂର କଥା ଜାଣିବା ବି କଷ୍ଟ ଥିଲା।

ନବୀନ ବାବୁ ଡି.ଜି. ବଦଳେଇବା ପାଇଁ ଚାହିଁଲେ। ସେତେବେଳେ ଡି.ଜି. ବନବିହାରୀ ପଣ୍ଡା ତାଙ୍କର କେତେଜଣ ଅଫିସରଙ୍କୁ ଧରି ଯାଇଥିଲେ ଦେଖା କରିବା ପାଇଁ, ଫେରିଲା ବେଳେ ସନ୍ତୁଷ୍ଟ ଥିବାର ଜଣାପଡୁଥିଲା। କିନ୍ତୁ ଚିଫ୍ ସେକ୍ରେଟେରୀ, ଡି.ଜି., ହୋମ୍ ସେକ୍ରେଟେରି ଓ ଅନେକ ଜିଲ୍ଲାପାଳ, ଏସ୍‌ପିଙ୍କର ବଦଳି ହେଲା ପ୍ରଥମ ପର୍ଯ୍ୟାୟରେ। ମୋତେ ପୋଷ୍ଟିଂ କରାଗଲା ଭିଜିଲାନ୍‌ସର ମୁଖ୍ୟ (ଆଇଜି ପଦବୀ) ଭାବରେ। ଆଡ଼ିସନାଲ ଡିଜି ଇଣ୍ଟେଲିଜେନ୍‌ସ ଜନ୍ ନାଏକଙ୍କୁ ମଧ୍ୟ ବଦଳି କରିଦିଆଗଲା। ତାଙ୍କୁ ବଦଳି କରିବା ପାଇଁ ବିଜେପି ତରଫରୁ ଚାପ ପଡ଼ିଥିଲା। ମୁଁ ବହୁତ ଦିନ ପରେ ଫେରିଲି ଭିଜିଲାନ୍‌ସକୁ। ଏଇଠୁ ପଦୋନ୍ନତି ପାଇ ଯାଇଥିଲି, ପୁଣି ଆସିଲି।

## ଭିଜିଲାନ୍‌ସ ବିଭାଗରେ ମୁଖ୍ୟ ହିସାବରେ ଦାୟିତ୍ୱ

ସେତେବେଳକୁ ମୁଁ ହିସାବ କରି ଦେଖିଲି ଯେ, ମୋ'ଠାରୁ ଆଇଏଏସ୍‌ରେ ସାତ ବର୍ଷ ଜୁନିୟର ମୋ' ଉପର ପାହ୍ୟାକୁ ଗଲେଣି। କେନ୍ଦ୍ର ସରକାରଙ୍କର ଉପଦେଶ ହେଉଛି ଯେ ଆଇଏଏସ ଅଫିସର ଆଇପିଏସ ଅଫିସରଙ୍କଠାରୁ ୨ ବର୍ଷ ଆଗରେ ରହିବ ଅର୍ଥାତ୍ ମୁଁ ୧୯୬୭ ମସିହାରେ ଆଇ ିଏସ ଓ ୧୯୬୯ ମସିହାର ଆଇଏଏସଙ୍କ ପାହ୍ୟା ସଙ୍ଗେ ସମାନ ରହିବ। କେରଳ, ଆନ୍ଧ୍ର, କର୍ଣ୍ଣାଟକ, ରାଜସ୍ଥାନ ପ୍ରଭୃତି ପ୍ରଦେଶମାନଙ୍କରେ ଏ ଉପଦେଶକୁ ପାଳନ କରାଯାଉଥିଲା। ମୋଠାରୁ ୫ ବର୍ଷ ଜୁନିୟର ଆଇପିଏସ ଅଫିସର ଅନ୍ୟ ରାଜ୍ୟରେ ଆଡ଼ିସନାଲ ଡି.ଜି ହୋଇଥିଲେ। ଅଥଚ ମୁଁ ଆଇ.ଜି ହୋଇ ପଡ଼ିରହିଥିଲି। ଯେହେତୁ ଭିଜିଲାନ୍‌ସ କାର୍ଯ୍ୟରେ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ବାରମ୍ବାର ଯାଉଥିଲି ତାଙ୍କୁ ଏଇକଥା ବୁଝେଇଲି ଓ ସେ ନିଷ୍ପତ୍ତି ନେଲେ ଯେ ଆଇଏଏସ ଓ ଆଇପିଏସ୍‌ମାନଙ୍କ ମଧ୍ୟରେ ପାତର ଅନ୍ତର ହେବନାହିଁ। ଓଡ଼ିଶାରେ ଯେତେ ମୁଖ୍ୟମନ୍ତ୍ରୀ ହୋଇଛନ୍ତି ସେମାନଙ୍କ ମଧ୍ୟରୁ ବିଜୁ ପଟ୍ଟନାୟକ ଏବଂ ନବୀନ ପଟ୍ଟନାୟକ ସବୁ ସର୍ଭିସ୍‌କୁ ସମ ଦୃଷ୍ଟିରେ ଦେଖୁଥିଲେ। ବିଜୁ ପଟ୍ଟନାୟକଙ୍କ ସମୟରେ ପ୍ରମୋଶନ ଦେବା ପାଇଁ ଅନେକ ନୂଆ ପଦବୀ ସୃଷ୍ଟି ହୋଇଥିଲା ଓ ଅନେକ ଆଇପିଏସ୍ ଅଫିସରଙ୍କୁ ଅବସର ପରେ ଚାକିରି ମଧ୍ୟ ମିଳିଥିଲା। ନବୀନ ପଟ୍ଟନାୟକଙ୍କ ସମୟରେ ଅବସ୍ଥା ଆହୁରି

ଭଲ ହେଲା । ଆମମାନଙ୍କର ଅବସ୍ଥାକୁ ସୁଧାରିବା ପାଇଁ କେତେକ ଅତିରିକ୍ତ ଡିଜି, ଆଇଜି ପଦବୀ ସୃଷ୍ଟି କରାଗଲା । ବିଜୁ ବାବୁ ଓ ପରବର୍ତ୍ତୀ ସମୟରେ ଆଇପିଏସ୍ ଅଫିସରଙ୍କର ପରିସ୍ଥିତି ସୁଧାରିବାରେ ପ୍ୟାରିମୋହନ ମହାପାତ୍ର ଆଇଏଏସଙ୍କ ଭୂମିକା ବଳିଷ୍ଠ ଓ ସକରାତ୍ମକ ଥିଲା । ଅଥଚ ଜାନକୀ ପଟ୍ଟନାୟକଙ୍କ ସମୟରେ ଆଇପିଏସ୍ ଅଫିସରଙ୍କର ସ୍ଥିତି ସୁଧାରିବା ପାଇଁ କୌଣସି ପଦକ୍ଷେପ ନିଆଗଲା ନାହିଁ । ତାଙ୍କୁ ଆସୋସିଏସନ୍ ତରଫରୁ ଦେଖାକଲେ, ସେ ସବୁ ଶୁଣନ୍ତି ଦିଗ୍‌ବଳୟକୁ ଅନାନ୍ତି ଓ ସ୍ମାରକପତ୍ରରେ ଦସ୍ତଖତ କରି ଚିଫ୍ ସେକ୍ରେଟେରୀ ସୁଧାଂଶୁ ମିଶ୍ରଙ୍କ ପାଖକୁ ପଠେଇ ଦିଅନ୍ତି । ସ୍ମାରକ ପତ୍ରଟିକୁ ସେଇଠି କିମ୍ବା ଅନ୍ୟ କେଉଁଠି କବର ଦିଆଯାଏ ଜାଣିହୁଏ ନାହିଁ । ବିଜେପିର ପୋଲିସ ପ୍ରତି ପ୍ରତିକୂଳ ମନୋଭାବ କୌଣସି ରାଜ୍ୟରେ ନଥିଲା କାରଣ ବିଜେପି ନେତାମାନଙ୍କର ରାଜନୈତିକ ଜୀବନରେ ପୋଲିସ ସାଙ୍ଗରେ ଖଣ୍ଡା ଲଢ଼େଇ ହୋଇନାହିଁ । କିନ୍ତୁ କଂଗ୍ରେସର ଅଭିଯୋଗ ଯେ ସେମାନେ ଯେତେବେଳେ ସ୍ୱାଧୀନତା ଆନ୍ଦୋଳନ ଲଢ଼ୁଥିଲେ ପୋଲିସ ତାଙ୍କୁ ଲାଠି ମାଡ଼ କରୁଥିଲା ଓ ଗିରଫ କରୁଥିଲା । ପୋଲିସକୁ ନିର୍ଦ୍ଦେଶ ଦେଉଥିବା ଜିଲ୍ଲାପାଳ, କମିଶନର, ଏସଡ଼ିଓ (ସମସ୍ତେ ଆଇସିଏସ)ଙ୍କର ଭୂମିକାକୁ କଂଗ୍ରେସ ନେତାମାନେ ଅଣଦେଖା କରି ପୋଲିସକୁ ଶରବ୍ୟ କଲେ । ଖବର କାଗଜରେ ବାହାରୁଥିଲା ଯେ ପୋଲିସର ଲାଠି ଚାଳନା । କେବେ ବାହାରେ ନାହିଁ ଯେ ମାଜିଷ୍ଟ୍ରେଟ୍‌ଙ୍କ ନିର୍ଦ୍ଦେଶରେ ପୋଲିସ ଲାଠି ଚାଳନା କଲା । ସ୍ୱାଧୀନତା ପରେ ଏକଦା ଅତ୍ୟାଚାରୀ (ସମସ୍ତେ ନୁହଁନ୍ତି) ଆଇସିଏସ୍ ଅଫିସର୍‌ମାନେ କଂଗ୍ରେସ ସରକାରଙ୍କର ସୁନା ପୁଅ ହୋଇଗଲେ । ସେଥିରୁ ଜଣଙ୍କର ଭୂମିକା ପାଠକେ ଜାଣନ୍ତୁ । ସେଇ ଭଦ୍ରଲୋକ କଟକ କଲେକ୍ଟର ଥିଲାବେଳେ ତାଙ୍କ ଆଉଟ୍ ହାଉସରେ ଅନେକ ୱାରେଣ୍ଟରେ ଖୋଜା ଯାଉଥିବା ବିହାରର ଜଣେ କଂଗ୍ରେସ ନେତା ଲୁଚିଥିଲେ । ପୋଲିସ ସୁରାକ୍ ପାଇ ତାଙ୍କୁ ଧରିଲା । ସେ ମାଜିଷ୍ଟ୍ରେଟ୍ ଆଗରେ କହିଲେ ଯେ ସେ ଜିଲ୍ଲାପାଳଙ୍କ ଜ୍ଞାତସାରରେ ରହୁଥିଲେ । ଜିଲ୍ଲାପାଳ ସାଙ୍ଗେ ସାଙ୍ଗେ କୈଫିୟତ ଦେଲେ 'ମୁଁ ଏସବୁ ଜାଣିନାହିଁ ଓ କଂଗ୍ରେସ ଦଳ ସାଙ୍ଗେ ମୋର କିଛି ସମ୍ପର୍କ ନାହିଁ ।' ଇଂରେଜ ସରକାର ତାଙ୍କ ବିରୁଦ୍ଧରେ କିଛି କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେନାହିଁ । କିନ୍ତୁ ବଦଳି କରିଦେଲେ । ସ୍ୱାଧୀନତା ପରେ ସେଇ ଭଦ୍ରଲୋକ ସେ ସ୍ୱାଧୀନତା ଆନ୍ଦୋଳନକୁ ସମର୍ଥନ କରୁଥିଲେ ବୋଲି ଦାବି କଲେ ଏବଂ ପ୍ରମାଣ ସ୍ୱରୂପ ଏଇ ଘଟଣାଟାକୁ ଦର୍ଶାଉଥିଲେ । ପ୍ରଶାସନରେ ସେ ବହୁ ଉଚ୍ଚକୁ ଉଠିଲେ । ସେଇଭଳି କଂଗ୍ରେସ ସରକାର ଥିଲା ବେଳେ କେତେକ ଅଫିସର ଜାନକୀ ପଟ୍ଟନାୟକ କିମ୍ବା ବସନ୍ତ ବିଶ୍ୱାଳଙ୍କର ଅନୁଗତ ଥିଲେ, ସେମାନେ ବିଜେଡ଼ିର ଅନୁଗତ ହୋଇଗଲେ । 'ସକାଳ-ସନ୍ଧ୍ୟା

ରଣନୀତି' ବେଶ୍ ଭଲ। ସକାଳେ କ୍ଷମତାରେ ଥିବା ଦଳକୁ ଦେଖା କରିବା ଓ ସନ୍ଧ୍ୟାରେ ବିରୋଧୀ ଦଳ ନେତାଙ୍କୁ। ଏଇ ରଣନୀତି କେତେ ଜଣ ଆଇପିଏସ ଅଫିସର ମଧ୍ୟ ଆଦରିଛନ୍ତି। ବିଜୁ ବାବୁଙ୍କ ପ୍ରିୟ ସିଆଡ଼େ ଗୁପ୍ତରେ କଂଗ୍ରେସ ବାଲାଙ୍କ ସାଙ୍ଗରେ ସମ୍ପର୍କ । କେତେଜଣ ଅଫିସର ଜନତା ଶାସନ ସମୟରେ ନୀଳମଣି ରାଉତରାୟଙ୍କର ପ୍ରିୟ ଥିଲେ କିନ୍ତୁ ୮୦ ମସିହାରେ ନୂଆ ମୁଖ୍ୟମନ୍ତ୍ରୀ ଜାନକୀ ପଟ୍ଟନାୟକଙ୍କର ଅନୁଗତ ହୋଇଗଲେ। ଜନସାଧାରଣ ଯେଉଁ ଅଭିଯୋଗ କରୁଛନ୍ତି ଯେ ସରକାରୀ କର୍ମଚାରୀ ତାଙ୍କ କଥା ଶୁଣୁନାହାଁନ୍ତି ସେ ଅଭିଯୋଗର ଅନେକ ସତ୍ୟତା ଅଛି କାରଣ ସରକାରୀ କର୍ମଚାରୀ ବ୍ୟସ୍ତ ରହିଲେ ନେତାଙ୍କୁ ଖୁସି କରିବାରେ ଓ ତାଙ୍କ ନିର୍ଦ୍ଦେଶରେ ଚଳିବାରେ। ସବୁ ଅଫିସରଙ୍କର ମୋବାଇଲ୍ ଫୋନ୍ ଅଛି ଏବଂ ଲ୍ୟାଣ୍ଡ ଲାଇନ୍ ଅଛି। ପରୀକ୍ଷା ସ୍ୱରୂପ ପାଠକେ ଫୋନ୍ କରିପାରନ୍ତି। ମୋବାଇଲ ଫୋନ୍ କେହି ଧରିବେ ନାହିଁ। ଲ୍ୟାଣ୍ଡ ଲାଇନ୍ ଉଠେଇବ ଜଣେ ପିଅନ ଓ ତାଙ୍କୁ ଯଦି ପଚାରିବେ 'ସାର୍ ଅଛନ୍ତି'? ହଁ କି ନାହିଁ ନକହି ସିଏ ପଚାରିବ 'ଆପଣ କିଏ କହୁଛନ୍ତି?' ଆପଣ ନିଜର ପରିଚୟ ଦେବା ପରେ ସେ କହିବ 'ଦେଖୁଛି'। ଅଫିସର ତ କୌଣସି ମହୀଶୂର ରାଜପ୍ରାସାଦରେ ରହୁନାହାଁନ୍ତି ସେ ଦେଖୁଛି କହିବାର ମାନେ କ'ଣ? ଅର୍ଥାତ୍ ଅଫିସର ଚାହିଁଲେ ସେ ଫୋନ୍ ଉଠେଇବେ ନହେଲେ ସେ କହିବେ ସେ ବାହାରେ ଅଛନ୍ତି। ମୁଁ ଡି.ଜି ପଦରୁ ଅବସର ନେବାର ୫ ବର୍ଷ ପରେ ଥରେ ଜଣେ ଏସ୍‌ପିଙ୍କୁ ଫୋନ୍ କଲି ସକାଳ ୯ଟାରେ ଓ ସେଇ ଡ୍ରିଲ୍ ଆପଣ କିଏ କହୁଛନ୍ତି, ମୁଁ ଦେଖୁଛି ଇତ୍ୟାଦି। ତା'ପରେ କହିଲେ ଯେ ସାର୍ ବେଡ଼ରୁମ୍‌କୁ ଚାଲି ଗଲେଣି। ତାଙ୍କୁ ଡାକିବା କଷ୍ଟ। ଥରେ ଜଣେ ମୁଖ୍ୟମନ୍ତ୍ରୀ ଜଣେ ଜିଲ୍ଲାପାଳଙ୍କ ପାଖକୁ ଫୋନ୍ କରିଥିଲେ ରାତ୍ର ୧୧ଟାରେ। ପିଅନ କହିଲା ସେ ଶୋଇପଡ଼ିଲେଣି ତାଙ୍କୁ ଡିଷ୍ଟର୍ବ କରିବା ଉଚିତ୍ ନୁହେଁ। ଏସବୁ ହେଲେ ସାଧାରଣ ଲୋକଙ୍କର ସରକାରୀ କର୍ମଚାରୀଙ୍କ ପ୍ରତି ଭୟ ରହିବ କିନ୍ତୁ ଭକ୍ତି କାହିଁକି ରହିବ? ଆମ ସମୟର ଏସ୍‌ପିମାନେ କଡ଼ା ନିର୍ଦ୍ଦେଶ ଦେଇଥିଲେ ଅନ୍ୟ କେହି ଫୋନ୍ ଉଠେଇବେନି ସେ ନିଜେ ଫୋନ୍ ଉଠେଇବେ। କିଛି କଷ୍ଟ ହୁଏନାହିଁ। ମୋ' ଚାକିରି କାଳ ମଧ୍ୟରେ ମୁଁ ନିଜେ ଫୋନ୍ ଉଠେଇଛି ଓ ଏବେ ମଧ୍ୟ ଉଠାଉଛି। ଆମ ସରକାରୀ କର୍ମଚାରୀଙ୍କର ସମୟ ଅଛି କିନ୍ତୁ ଧୈର୍ଯ୍ୟ ନାହିଁ। ଗର୍ବ ତାଙ୍କର ଏବଂ ସର୍ବସାଧାରଣଙ୍କ ମଧ୍ୟରେ ଏକ ଉଚ୍ଚ ପାଚେରୀ ଠିଆ କରିଛି। ସାମାଜିକ ଅନୁଷ୍ଠାନ, ଗଣମାଧ୍ୟମ ଯେମିତି ଦିନକୁ ଦିନ ସକ୍ରିୟ ହେଉଛନ୍ତି ଏଥିରୁ ପୂର୍ବାଭାଷ ମିଳୁଛି ଯେ ଦିନେ ନା ଦିନେ ଏଇ ପାଚେରୀ ବର୍ଲିନ୍ ପାଚେରୀର ଦଶା ଭୋଗିବ।

ପାଠକେ କ୍ଷମା କରନ୍ତୁ ମୁଁ ଭାବପ୍ରବଣ ହୋଇ ବହୁତ ଲେଖି ପକେଇଲି ଓ ଭିଜିଲାନ୍‌ସ କଥା କହିବା ପାଇଁ ଭୁଲିଗଲି। ଭିଜିଲାନ୍‌ସର ମୁଖ୍ୟ ଭାବେ ମୁଁ ରହିଲି ପ୍ରାୟ ୨ ବର୍ଷ ସାତ ମାସ। ଏଇ ସମୟ ମଧ୍ୟରେ ଅନେକ ମନ୍ତ୍ରୀ, ଚିଫ୍ ସେକ୍ରେଟେରୀ ପାହ୍ୟାର ଆଇଏଏସ୍ ଅଫିସର, ବଡ଼ ବଡ଼ ଫରେଷ୍ଟ ଓ ପୋଲିସ ଅଫିସର, କୁଳପତି, ପବ୍ଲିକ୍ ସର୍ଭିସ୍ କମିଶନର, ଉଚ୍ଚାଧିକାରୀଙ୍କ ବିରୁଦ୍ଧରେ ତଦନ୍ତ କରାଗଲା।

ଅଫିସରେ ଫଟୋ ମରାଯାଇଥାଏ ପୂର୍ବ ଅଧିକାରୀମାନଙ୍କର। ମୁଁ ସବୁବେଳେ ଦୃଷ୍ଟି ପକାଏ ଶ୍ରୀ ରାଜେନ୍ଦ୍ର ମୋହନ ପଟ୍ଟନାୟକଙ୍କ ଫଟୋକୁ ଓ ଟେବୁଲ୍‌ରେ ଥୋଇଥିବା ପ୍ରଭୁ ଜଗନ୍ନାଥଙ୍କ ଫଟୋକୁ। ରାଜେନ୍ଦ୍ର ମୋହନ ପଟ୍ଟନାୟକଙ୍କ ପାଖରୁ ନୀରବ ବାର୍ତ୍ତା ମିଳେ 'ନିର୍ଭୟ ଏବଂ ନିରପେକ୍ଷ ହୁଅ।' ପ୍ରଭୁ ଜଗନ୍ନାଥ କହନ୍ତି ଅବାଟରେ ଯାଅନାହିଁ। ଆମ ସମୟରେ ଭିଜିଲାନ୍‌ସ ତଦନ୍ତ କରିବାରେ କେସ୍ ଫଇସଲା କରିବାରେ ଅତୀତର ସମସ୍ତ ରେକର୍ଡ଼କୁ ଟପିଗଲା। ଇଂଲଣ୍ଡ ସରକାରଙ୍କର ଡିଏଫ୍‌ଆଇଡ଼ି ଭିଜିଲାନ୍‌ସର କାର୍ଯ୍ୟକୁ ଉଚ୍ଚ ପ୍ରଶଂସା କରି ଆମ ସମୟରେ ତର୍ଜମା କଲା ଏବଂ ପ୍ରଶଂସା କରି ରିପୋର୍ଟ ଦେଲା। ଗୁଜୁରାଟ, ଆନ୍ଧ୍ର ଏବଂ ତାମିଲନାଡୁରୁ ଟିମ୍ ଆସି ଦେଖିଲେ ଓଡ଼ିଶାରେ କିଭଳି କାମ ହେଉଛି। ଅଧିକାଂଶ ଦିନ ଖବରକାଗଜ ଟିଭିରେ ଭିଜିଲାନ୍‌ସର ଧରପଗଡ଼ ବାହାରିଲା ଓ ସେଥିରେ କେତେକ ତଳିଆ ପୋଲିସ ଅଫିସର ମଧ୍ୟ ଧରାପଡ଼ିବାର ଦେଖାଦେଲା। ସେଥିପାଇଁ ଡି.ଜି ଅଫିସ୍‌ର ଅନେକ ମୋ' ଉପରେ ବହୁତ କ୍ଷୁବ୍ଧ ହେଲେ। ମୋତେ ଓ ମୋ' ସହକର୍ମୀ ଗୋପାଳ ନନ୍ଦ, ତ୍ୟାଗ ରାଜନ ଓ ସତ୍ୟଜିତ୍ ମହାନ୍ତିଙ୍କୁ ବହୁତ ସମାଲୋଚନା ଶୁଣିବାକୁ ପଡ଼ିଲା।

ଥରେ ଖବର ଆସିଲା ଯେ ଓଡ଼ିଶାରୁ ଗୋରୁ ଗାଡ଼ି ଯାଉଛି ବେଙ୍ଗଲକୁ ଓ ବାଟରେ ମୁତି ଥାନାରେ ସେମାନେ ଦକ୍ଷିଣା ଦେଇ ଦେଇ ଯାଉଛନ୍ତି। ସତ୍ୟତା ପରୀକ୍ଷା କରିବା ପାଇଁ ଗୋଟିଏ ଗୋରୁ ଗାଡ଼ିରେ ସାଧା ପୋଷାକରେ ଜଣେ ଭିଜିଲାନ୍‌ସ ଅଫିସର ବସିଲେ ଓ ଆଉ ଗୋଟିଏ ଟିମ୍ ପ୍ରାଇଭେଟ୍ କାର୍‌ରେ ପିଛା କଲେ। ଦେଖାଗଲା ଯେ ପ୍ରତ୍ୟେକ ଥାନା ଆଗରେ ଜଣେ କନେଷ୍ଟବଳ ଠିଆ ହୋଇଥାଏ। ଗାଡ଼ି ଅଟକେ। ଡ୍ରାଇଭର ୫୦୦ ଟଙ୍କାଟିଏ ବଢ଼େଇ ଦିଏ ଓ କନେଷ୍ଟବଳ ଏକ ଟିପା ଖାତାରେ ନମ୍ବରଟା ଟିପନ୍ତି। ଏଇଟା ଥିଲା ମାସିକିଆ। ବଡ଼ଚଣା ଥାନାରେ କେହି କନେଷ୍ଟବଳ ଠିଆ ହୋଇନଥିଲେ ଓ 'ସଚ୍ଚା' ଡ୍ରାଇଭର ବ୍ୟସ୍ତ ହୋଇ ଭିଜିଲାନ୍‌ସ ଅଫିସର (ସେ ଯାଇଥିଲେ ପ୍ୟାସେଞ୍ଜର ହିସାବରେ)ଙ୍କୁ କହିଲା 'କାମ କରି ଥକି ଯାଇଛନ୍ତି ଶୋଇପଡ଼ିଛନ୍ତି ବୋଧେ।' ଡ୍ରାଇଭର ଗଲେ ଥାନାକୁ, ପଛରେ ଭିଜିଲାନ୍‌ସ ଅଫିସର। ଥାନା ବାରଣ୍ଡାରେ ତକିଆ ପକେଇ ସିପେହୀ ବାବୁ ଶୋଇଥାନ୍ତି ଓ ଡ୍ରାଇଭର ବାବୁ

ତକିଆ ତଳେ ୫୦୦ ଟଙ୍କା ଗୁଞ୍ଜି ଦେଇ ଆସିଲେ। ଚଣ୍ଡିଖୋଲ ପାଖରେ ଆରଟିଓ ଅଫିସ ବାଲା ଗାଡ଼ିକୁ ଅଟକେଇଲେ ଆଇନ୍ କାନୁନ୍ ଦର୍ଶେଇ ବହୁତ ଧମକେଇଲେ ଓ ହଜାରେ ଟଙ୍କା ପାଇବା ପରେ ଆଇନ୍‌କୁ ଉପେକ୍ଷା କରି ଗାଡ଼ି ଛାଡ଼ି ଦେଲେ। ସେଇଭଳି ପାଣିକୋଇଲି ଓ ଅନ୍ୟାନ୍ୟ ସ୍ଥାନରେ ଦକ୍ଷିଣା ଦେଇ ଗାଡ଼ି ପହଞ୍ଚିଲା ଭଣ୍ଡାରୀପୋଖରୀରେ। ଏଇଠି ଦେୟ ପରିମାଣ ଥିଲା ୨୦୦୦ ଟଙ୍କା। ରାତି ଅଧରେ ଖବରପାଇବାରୁ ମୁଁ କହିଲି ଥାନା ଏବଂ ସେ ଅଫିସରଙ୍କର ଘର ସର୍ଚ୍ଚ କର। ଥାନାରୁ ବାହାରିଲା ତିନି ଲକ୍ଷରୁ ଊର୍ଦ୍ଧ୍ୱ ଟଙ୍କା ଓ ଘରୁ ବାହାରିଲା ପ୍ରାୟ ସାତ ଲକ୍ଷ। ପଚରା ଉଚୁରା କରିବାରୁ ସେ ଅଫିସର କହିଲେ ବହୁତ ଉପର ପାହ୍ୟାକୁ ପଇସା ଦେବାକୁ ପଡୁଛି। କେତେ ଉଚ୍ଚ କହିଲେ ନାହିଁ।

ତା' ଆରଦିନ ମୋ'ଠାରୁ ସିନିୟର ଜଣେ ଅଫିସର ମୋତେ ଫୋନ୍ କଲେ 'ଯୁଦ୍ଧଂ ଦେହି' ଭାଷାରେ। 'ତମେ ପୋଲିସ ବିଭାଗକୁ ବଦନାମ କରିବା ପାଇଁ କ'ଣ ପ୍ରୋଗ୍ରାମ କରିଛ ? ମୁଁ ଚିଫ୍ ମିନିଷ୍ଟରଙ୍କ ପାଖରେ କମ୍ପ୍ଲେନ୍ ଦେବି।' 'କମ୍ପ୍ଲେନ୍ କରିବାର ସ୍ୱାଧୀନତାକୁ ପ୍ରୟୋଗ କର' କହି ଫୋନ୍ ରଖିଦେଲି। ମୋର ଯାହା ମନେପଡୁଛି ମୁଁ ଏ ବିଷୟରେ ମୁଖ୍ୟମନ୍ତ୍ରୀଙ୍କୁ କହିଥିଲି କିନ୍ତୁ ସେ ଡି.ଜି ଶ୍ରୀ ନିମାଇଁ ଚରଣ ପାଢ଼ୀଙ୍କ ସାଙ୍ଗେ କଥାବାର୍ତ୍ତା ହେଲେ କି ନାହିଁ ମୁଁ ଜାଣିନାହିଁ। ଏ ଘଟଣା ପରେ ମୋତେ ବିଶିଷ୍ଟ ତାରକା ଅନୁପମ ଖେର୍ ଚିଠି ଲେଖି ଧନ୍ୟବାଦ ଜଣେଇଲେ। ସେ ଜୀବଜନ୍ତୁଙ୍କ ପ୍ରତି ନିଷ୍ଠୁର ବ୍ୟବହାର ବିରୁଦ୍ଧରେ ସଂଗ୍ରାମ ଚଳେଇଛନ୍ତି।

୨୦୦୧ କି ୨୦୦୨ ମସିହାରେ କେତେ ଜଣ ପୋଲିସ ଅଫିସର ଓ ଆଇଏଏସ୍ ଅଫିସରଙ୍କ ବିରୁଦ୍ଧରେ ଭିଜିଲାନ୍‌ସ ତଦନ୍ତ କରାଯିବାରୁ ଅନେକ ଶତ୍ରୁ ସୃଷ୍ଟି ହୋଇଥିଲେ। ଜଣେ ଅଫିସର ବର୍ଷରେ ଏଗାର ମାସ ୨ ଦିନ ଛୁଟିରେ ରହିଲେ କାମ କଲେ ମାତ୍ର ୨୮ ଦିନ। ତେଣୁ ତାଙ୍କ ଉପରିସ୍ଥ ଅଫିସର ଗୁପ୍ତ ଚରିତ୍ର ପଞ୍ଜିକାରେ ଲେଖିଲେ 'ଯେହେତୁ ବର୍ଷରେ ସେ ମାତ୍ର ୨୮ ଦିନ କାର୍ଯ୍ୟ କରିଛନ୍ତି ତେଣୁ ଏବର୍ଷ ପାଇଁ ଗୁପ୍ତ ଚରିତ୍ର ପଞ୍ଜିକାରେ କିଛି ମନ୍ତବ୍ୟ ଦିଆଯାଇପାରିବ ନାହିଁ।' କିନ୍ତୁ ତାଙ୍କ ଉପର ଅଫିସର (ଜଣେ ସିନିୟର ଆଇ.ଏ.ଏସ. ଅଫିସର) ମନ୍ତବ୍ୟ ଦେଲେ ଯେ ସେ ସବୁକ୍ଷେତ୍ରରେ ପାରଦର୍ଶିତା ଦେଖେଇଛନ୍ତି ଏବଂ ପଦୋନ୍ନତି ପାଇଁ ନିହାତି ଯୋଗ୍ୟ। ଏହି ପ୍ରକାରେ ସେ ପଦୋନ୍ନତି ପାଇଲେ। ଉକ୍ତ ଆଇ.ଏ.ଏସ. ଅଫିସର ଚାକିରି ଆରମ୍ଭରୁ ଛୋଟ ବଡ଼ ସବୁରକମ ଦୁର୍ନୀତିରେ ଲିପ୍ତ ଥାଆନ୍ତି। ଆଉ ଜଣେ ଆଇ.ଏ.ଏସ. ଅଫିସର ପଦୋନ୍ନତି ପାଇବାକୁ ଯାଉଥିବା ଅଫିସରଙ୍କ ଗୁପ୍ତ ଚରିତ୍ର ପଞ୍ଜିକାରେ ମୋଟା ଅଙ୍କ ପାଇଲେ ଭଲ ବୋଲି ଲେଖୁଥିଲେ ନହେଲେ ଖରାପ ଲେଖୁଥିଲେ। ଏମାନଙ୍କ ଠାରୁ

ଆହୁରି ବଡ଼ ଚୋର ଅଛନ୍ତି ଯେଉଁମାନେ ଓଡ଼ିଶା ବାହାରେ ଘ' ବଗିଚା ଓ ବିଭିନ୍ନ ଶିଳ୍ପରେ ପୁଞ୍ଜି ନିବେଶ କରିଛନ୍ତି। ପଇସା ସଂଗ୍ରହ କରିବାରେ ଆଇ.ପି.ଏସ୍. ଅଫିସର ଆଇ.ଏ.ଏସ୍. ଓ ଆଇ.ଏଫ.ଏସ୍. ଅଫିସରଙ୍କ ସହ ସମକକ୍ଷ ନୁହଁନ୍ତି। ସାଧୁତା ନୁହେଁ ସୁଯୋଗ ଅଭାବରୁ। ୨୦୦୧-୨୦୦୨ ମସିହାରେ ବହୁସଂଖ୍ୟାରେ କନେଷ୍ଟବଲ ନିଯୁକ୍ତ ହେଲେ ଓ ଜଣେ ଅତିରିକ୍ତ ଡି.ଜି., ୨ ଜଣ କମାଣ୍ଡାଣ୍ଟ ବେନିୟମ ଭାବେ ଅନେକଙ୍କୁ ନିଯୁକ୍ତ କଲେ ବୋଲି ଅଭିଯୋଗ ମିଳିଥିଲା ଏବଂ ତା'ର ତଦନ୍ତ ହେଲା। ଆଉ ଜଣେ ଆଇ.ଜି. ପାହ୍ୟାର ଅଫିସରଙ୍କ ବିଷୟରେ ତଦନ୍ତ ଚାଲିଥିଲା। ସେଇ ସମୟରେ ପୂର୍ବତନ କେନ୍ଦ୍ରମନ୍ତ୍ରୀ ଦିଲ୍ଲୀପ ରାୟ ଓ ପୂର୍ବତନ ପ୍ରଭାବଶାଳୀ ମନ୍ତ୍ରୀ ବିଜୟ ମହାପାତ୍ରଙ୍କ ନାଁରେ ଭିଜିଲାନ୍ସ କେସ୍ ହୋଇଥିଲା। ପରେ ମନ୍ତ୍ରୀ ନଳିନୀ ମହାନ୍ତି, ମନ୍ତ୍ରୀ କମଳା ଦାସ, ମନ୍ତ୍ରୀ ପ୍ରଶାନ୍ତ ନନ୍ଦଙ୍କ ନାଁରେ ମଧ୍ୟ କେସ୍ ହେଲା। ଯଦିବା କେସ୍ ହେଲା ତାଙ୍କୁ ଗିରଫ କରିବା କିମ୍ବା ଘର ଖାନତଲାସ କରିବା ପ୍ରସ୍ତାବରେ ମୁଁ ରାଜି ହେଲିନାହିଁ। ମୋର ଯୁକ୍ତି ଥିଲାଯେ ଯେହେତୁ ଆବଶ୍ୟକ କାଗଜପତ୍ର ଅଫିସରୁ ମିଳୁଛି ତେବେ ଘର ଖାନ୍‌ତଲାସୀ କରିବା ଦରକାର କ'ଣ? ଦ୍ୱିତୀୟରେ ଅଭିଯୁକ୍ତମାନେ ପଳେଇ ଯିବାର ସମ୍ଭାବନା ନାହିଁ ଓ ସାକ୍ଷୀମାନଙ୍କୁ ପ୍ରଭାବିତ କରିପାରିବେ ନାହିଁ। ତେଣୁ ଗିରଫ ହେବା ଆଦୌ ଦରକାର ନାହିଁ। ଏଥିପାଇଁ ଅନେକ କ୍ଷୁବ୍ଧ ହେବା ସ୍ୱାଭାବିକ। ରାଜନୀତିରେ ବ୍ୟକ୍ତିଗତ ବିବାଦ ହୁଏ ଓ ପୂର୍ବତନ ସରକାରଙ୍କ ବିରୁଦ୍ଧରେ ତଦନ୍ତ କମିଶନ ବସାଇବା, ଭିଜିଲାନ୍ସ, ସି.ବି.ଆଇ. ତଦନ୍ତ କରେଇବା କିଛି ନୂଆ କଥା ନୁହେଁ। ସରକାରଙ୍କ ଲିଖିତ ଆଦେଶ ମାନିବାକୁ ପଡ଼ିବ। କିନ୍ତୁ ଆଇନ ଓ ବିବେକକୁ ଉପେକ୍ଷା କରାଯାଇପାରିବ ନାହିଁ।

ଥରେ ମୋତେ କେତେଜଣ ପ୍ରସ୍ତାବ ଦେଲେ ଯେ ଏକାଦିନେ ଦୁଇଜଣ ଆଇ.ଏ.ଏସ୍, ଦୁଇଜଣ ଆଇ.ପି.ଏସ୍ ଓ ଦୁଇଜଣ ଆଇ.ଏଫ.ଏସ ଅଫିସରଙ୍କୁ ଗିରଫ କରି କୋର୍ଟକୁ ପଠେଇ ଦେଲେ ସାରା ଦେଶରେ ଚାଞ୍ଚଲ୍ୟ ଖେଳିଯିବ। ମୋର ବିନମ୍ର ମତ ଥିଲା ଯେ ଭିଜିଲାନ୍ସ କେସ୍‌ରେ ଗିରଫ କରାଯାଏ ହେଲେ ପ୍ରମାଣ ଆବଶ୍ୟକତା ଅନୁସାରେ ହେବ, ସରକାରଙ୍କର ବିଜ୍ଞାପନ ପାଇଁ ନୁହେଁ। ମୁଁ ଦେଖିଲି ଏଇଭଳି ମତ ବିଭେଦ ଓ ମତାନ୍ତର ମନାନ୍ତର ଆଡ଼କୁ ଯିବ ତେଣୁ ଭାରତ ସରକାରଙ୍କୁ କହି ଡେପୁଟେସନରେ ଚାଲିଯିବା ଭଲ। ମୁଁ ଅତିରିକ୍ତ ଡି.ଜି. ପାହ୍ୟାରେ ଥିଲି, ଓଡ଼ିଶାରେ ରହିଲେ ମାତ୍ର ୧୧ ମାସ ପାଇଁ ଡି.ଜି. ହୋଇପାରିବି। ମୋତେ ଡି.ଜି. ପାହ୍ୟାରୁ ବଞ୍ଚିତ କରିବା ପାଇଁ ତିନୋଟି ଡି.ଜି. ପଦବୀରୁ ଗୋଟିଏ ପଦବୀକୁ କାଟିଦିଆଗଲା। ତେଣୁ ବାଦବିବାଦ ପରିସ୍ଥିତିରେ ରହିବା ଅପେକ୍ଷା କଷ୍ଟରେ ହେଉ ପଛେ ଦିଲ୍ଲୀକୁ ଜିନିଷ ପତ୍ର

ନେଇଯିବା ପାଇଁ ମନସ୍ଥ କଲି ଓ ଭାରତ ସରକାର ଯେତେବେଳେ ଡେପୁଟେସନରେ ଯିବା ପାଇଁ ସ୍ୱୀକୃତି ପତ୍ର ମାଗିଲେ ମୁଁ ତୁରନ୍ତ ଦେଇଦେଲି। ପ୍ରାୟ ୨ ମାସ ପରେ ମୋତେ ଭାରତ ସରକାରଙ୍କର ଜଣେ ଜଏଣ୍ଟ ସେକ୍ରେଟେରୀ ପଚାରିଲେ 'ଡି.ଜି. ସି.ଆଇ.ଏସ୍.ଏଫ୍. ପଦବୀ ପାଇଁ ଆପଣ ଇଚ୍ଛୁକ ହେଲେ ଆପଣଙ୍କ ନାଁ ବିଚାରକୁ ନିଆଯିବ।' ମୁଁ ସାଙ୍ଗେ ସାଙ୍ଗେ ହଁ କରିଦେଲି। ସାତୋଟି ନାଁ ଗଲା ଉଚ୍ଚସ୍ତରୀୟ କମିଟିକୁ ଓ ସେମାନେ ମୋତେ ମନୋନୀତ କଲେ। ଯେଉଁଦିନ ଫାଇଲ୍ ଆସିଲା ଡି.ଜି. ନିମାଇଁ ଚରଣ ପାଢ଼ୀଙ୍କର ପରମ ବନ୍ଧୁ ଚିଫ୍ ସେକ୍ରେଟେରୀ ଦେବୀ ପ୍ରସାଦ ବାଗ୍‌ଚୀ ମୋତେ ଫୋନ୍‌ରେ ପଚାରିଲେ 'ଆପଣଙ୍କୁ ଭାରତ ସରକାର ଡି.ଜି. ସି.ଆଇ.ଏସ.ଏଫ ଭାବରେ ପୋଷ୍ଟିଂ କରିବାକୁ ଯାଉଛନ୍ତି ଆପଣ ରାଜି ତ?' ମୋତେ ଚିଠି ଲେଖି ପଚାରିବା ପରିବର୍ତ୍ତେ ଏତେ ବଡ଼ ଗୁରୁତ୍ୱପୂର୍ଣ୍ଣ କଥା ସେ ଟେଲିଫୋନ୍‌ରେ କାହିଁକି ପଚାରୁଥିଲେ ଜାଣିପାରିଲି ନାହିଁ, କିନ୍ତୁ ମୁଁ ସାଙ୍ଗେ ସାଙ୍ଗେ ହଁ କରିଦେଲି। ଫାଇଲ୍ ହାତେ ହାତେ ଗଲା ଚିଫ୍ ମିନିଷ୍ଟରଙ୍କ ପାଖକୁ ଓ ଅଧ ଘଣ୍ଟାଏ ପରେ ସେ ପଚାରିଲେ ଆପଣ ଭାରତ ସରକାରଙ୍କ ଅଧୀନକୁ ଯିବା ପାଇଁ ଚାହୁଁଛନ୍ତି, କାହିଁକି? କହିଲି ମୁଁ ଯିବା ମାତ୍ରେ ଡି.ଜି. ହୋଇଯିବି ଏଠି ରହିଲେ ଅତି କମ୍‌ରେ ଦୁଇବର୍ଷ ଡେରି ହେବ। ପୁଣିଥରେ ପଚାରିଲେ 'ଆପଣ ଯିବା ପାଇଁ ଚାହୁଁଛନ୍ତି'? ମୁଁ ପୁଣି ହଁ କଲି। ସେ ଦସ୍ତଖତ କରି ଫାଇଲ ଚିଫ୍ ସେକ୍ରେଟେରୀଙ୍କ ପାଖକୁ ପଠେଇ ଦେଲେ। ଖବର ସାଙ୍ଗେ ସାଙ୍ଗେ କଟକକୁ ଚାଲିଗଲା, ତିନି ଚାରି ଜଣ ଅତି ବରିଷ୍ଠ ପୋଲିସ ଅଧିକାରୀ କଟକ କ୍ଲବକୁ ଗଲେ ଉତ୍ସବ ପାଳନ କରିବା ପାଇଁ। ମୋର ଜଣେ ଅତି ପରିଚିତ ଓ ଶୁଭେଚ୍ଛୁଙ୍କୁ ଜଣେ ପୋଲିସ ଅଫିସର (ମୋଠାରୁ ସିନିୟର) ହସି ହସି କହିଲେ ସାର୍ ସେ ବିପିନକୁ ମୁଁ ବିଦା କରିଦେଲି। 'ତାଙ୍କଠାରୁ ଖବରପାଇ ସେ ଭଦ୍ରଲୋକ ଉତ୍ତର ଦେଲେ ଯିବାପାଇଁ ସେ ସମ୍ମତି ଦେଲା, ତୁମେ କେମିତି ବିଦା କଲ?'

## ଦିଲ୍ଲୀ ଦରବାରର ଡାକରା

ମୁଁ ଯେଉଁ ପଦବୀରେ ଗଲି ତାହା ଥିଲା ଭାରତ ସରକାରଙ୍କର ସେକ୍ରେଟେରୀ ପାହ୍ୟାର, ରାଜ୍ୟ ଡି.ଜି. ପୋଲିସ ପାହ୍ୟାର ଉପରେ। ତଥାପି ପ୍ରଚାର ହେଲା ବିପିନ ମିଶ୍ରଙ୍କୁ ରାଜ୍ୟରୁ ବାହାର କରିଦିଆଗଲା। ପ୍ରତିବର୍ଷ ୧୦୦ ରୁ ଅଧିକ ଆଇ.ପି.ଏସ୍. ଅଫିସରଙ୍କୁ ଭାରତ ସରକାର ବିଭିନ୍ନ ପାହ୍ୟା ପାଇଁ ବିଚାର କରନ୍ତି। ଶତକଡ଼ା ୧୫ ଭାଗ ଡି.ଜି. ପାହ୍ୟା ପାଇଁ ଯୋଗ୍ୟ ବୋଲି ଘୋଷଣା କରାଯାଏ। ମୁଁ ସେଇ ଅଳ୍ପ କେତେଜଣଙ୍କ ମଧ୍ୟରେ ଥିଲି। ଭାରତ ସରକାରଙ୍କ ଡି.ଜି. ପାହ୍ୟାକୁ ଯିବା ପାଇଁ ବହୁତ ଅଫିସର ଧାଁ

ଧପଡ଼ କରନ୍ତି । କିନ୍ତୁ ମୋ' ଭାଗ୍ୟ ଭଲ ଯେ ସେତେବେଳର ହୋମ୍ ସେକ୍ରେଟେରୀ ଓ କ୍ୟାବିନେଟ୍ ସେକ୍ରେଟେରୀ ମୋ' ରେକର୍ଡ଼ ଦେଖି ମୋତେ ସମର୍ଥନ କଲେ ଓ ଉପପ୍ରଧାନମନ୍ତ୍ରୀ (ଶ୍ରୀ ଆଡ଼ୱାଣୀ) ଅନୁମୋଦନ କଲେ । ପ୍ରଧାନମନ୍ତ୍ରୀଙ୍କର ମଞ୍ଜୁର ପରେ ଭାରତ ସରକାରଙ୍କର ଚିଠି ଆସିଲା । ଡି.ଜି. ପୋଷ୍ଟ ତ ଛାଡ଼ ଭାରତ ସରକାରଙ୍କୁ ଆଇ.ଜି. ପାହ୍ୟାରେ ଯିବା ମଧ କଷ୍ଟ । ଅଥଚ କେତେ ଖବରକାଗଜରେ ବାହାରେ ଯେ 'ଅମୁକଙ୍କୁ କେନ୍ଦ୍ରକୁ ଠେଲି ଦିଆଗଲା' । କାଉ ବସିଲା, ବେଲ ପଡ଼ିଲା ଓ କାଉ ସବୁଆଡ଼େ ପ୍ରଚାର କଲା ତା' ଓଜନ ସମ୍ଭାଳି ନପାରି ବେଲଟା ପଡ଼ିଗଲା । ସେଇଭଳିଆ କଥା । ଏକଦା ମୁଁ ହସ୍ତକ୍ଷେପ ନକରିଥିଲେ ସେ ଚାକିରି ହରେଇଥାନ୍ତେ, ସେଇ ଆଇ.ପି.ଏସ. ଅଫିସର (ସେତେବେଳେ ଅତିରିକ୍ତ ଡି.ଜି.) ମୋ' ବିଷୟରେ ଅନେକ କଟୁ ମନ୍ତବ୍ୟ ଦେଲେ । ତାଙ୍କର ଧାରଣା ଥିଲା ଯେ ତାଙ୍କ ବିରୁଦ୍ଧରେ ଭିଜିଲାନ୍ସ ତଦନ୍ତ ମୁଁ କରେଇଛି । ମୋର ନିରୀହ ଉତ୍ତର ହେଉଛି - ସରକାରଙ୍କ ଠାରୁ ନିର୍ଦ୍ଦେଶ ଆସିଲା ତେଣୁ ତଦନ୍ତ ହେଲା । ଧରିନିଆଯାଉ ମୁଁ ତଦନ୍ତ ନିଜଆଡୁ କଲି କିନ୍ତୁ ମୁଁ କହିଥିଲି କି ପଇସା ଖାଅ ବୋଲି ? ବରିଷ୍ଠ ପୋଲିସ ଅଫିସରଙ୍କର ମୋ' ପ୍ରତି ତତ୍କାଳିକ ମନୋଭାବ ଦେଖି କେହି ଜଣେ ଆଇ.ପି.ଏସ୍ ଅଫିସର ମୋତେ ସୌଜନ୍ୟମୂଳକ ଟେଲିଫୋନ୍ ମଧ କଲେନାହିଁ । ମୋର ମନେପଡ଼େ ୧୯୭୨ ମସିହା କଥା । ଆଇ.ଜି. ପୋଲିସ ଶ୍ରୀ ବ୍ରଜବିହାରୀ ମିଶ୍ର ପଦୋନ୍ନତି ପାଇ ଭାରତ ସରକାରଙ୍କ ଅଧୀନକୁ ଡି.ଜି. ହିସାବରେ ଗଲେ । ତାଙ୍କୁ ଜଣେ ପରେ ଜଣେ ଅଫିସର ବିଦାୟ ଦେବା ପାଇଁ ଭୋଜିର ଆୟୋଜନ କଲେ ଓ ଯେଉଁଦିନ ସେ ଟ୍ରେନ୍‌ରେ ଗଲେ, ପୋଷାକ ପିନ୍ଧି ପରବର୍ତ୍ତୀ ଆଇଜି ଷ୍ଟେସନରେ ଥିଲେ ଓ ସମସ୍ତ ପୋଲିସ ଅଫିସରଙ୍କୁ ନିର୍ଦ୍ଦେଶ ଥିଲା ପୋଷାକ ପିନ୍ଧି ଆସି ଷ୍ଟେସନରେ ରହିବା ପାଇଁ, କାରଣ ସେତେବେଳେ ଜଣାଥିଲା ଯେ ବ୍ରଜବିହାରୀ ମିଶ୍ର ଦିଲ୍ଲୀରେ ହିଁ ଅବସର ନେଲେ । ମୁଁ ଯେତେବେଳେ ଦିଲ୍ଲୀ ଗଲି ମୁଁ ଏଇ ଧାରଣା ନେଇଯାଇଥିଲି ଯେ ମୁଁ ଦିଲ୍ଲୀରେ ଅବସର ନେଇ ଓଡ଼ିଶାକୁ ଫେରିବି । ଡି.ଜି. ଅଫିସରୁ ମଧ କେହି ଜଣେ ମୋତେ ଫୋନ୍ କଲେନାହିଁ । ଘରକୁ ଡାକି ଖାଇବାକୁ ଦେବା ତ ଭିନ୍ନ । ଯିବା ପୂର୍ବଦିନ ମୁଁ ଯାଉଛି ବୋଲି କହିବା ପାଇଁ ଡି.ଜି.ଙ୍କୁ ଫୋନ୍ କଲି, ସେ ନଥିଲେ ଓ ତାଙ୍କଠାରୁ କୌଣସି ଫେରନ୍ତା ଫୋନ୍ ପାଇଲି ନାହିଁ । ତାଙ୍କ ଷ୍ଟାଫ୍ ଅଫିସର ସୁଚିତ ଦାସଙ୍କୁ ଫୋନ୍ କଲି ସେ ବି ନଥିଲେ । ତାଙ୍କ ଠାରୁ ବି କିଛି ଫୋନ୍ ଆସିଲା ନାହିଁ । ମୋ' ସ୍ଥାନରେ କାହାକୁ ନିଆଯିବ ସେଥିପାଇଁ ନାନାଦି ଯୋଜନା ଚାଲିଥିଲା । ଦୁଇଜଣଙ୍କ ନାଁ ଗଲା ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯଦିଓ ସେ ଦୁଇଜଣଙ୍କ ନାଁରେ ଭିଜିଲାନ୍ସ ତଦନ୍ତ ଚାଲିଥାଏ । ପୁଣି ଚିଫ୍ ସେକ୍ରେଟେରୀ ବାଗ୍‌ଚୀ ଲେଖିଥାନ୍ତି 'ଯଦି ଏ ଦୁଇଜଣଙ୍କ

ନାଁ ଗ୍ରହଣ ନକରାଯାଏ ତେବେ ଡି.ଜି. ପୋଲିସ ତାଙ୍କ ଦାୟିତ୍ୱ ସହିତ ଭିଜିଲାନ୍ସ ମୁଖ୍ୟ ମଧ୍ୟ ହୁଅନ୍ତୁ।' ମୁଁ ମତ ଦେଲି ଯେ ଆଇ.ଜି. ପାହ୍ୟାର ହେଲେ ମଧ୍ୟ ଭିଜିଲାନ୍ସର ମୁଖ୍ୟ ହେବା ପାଇଁ ଶ୍ରୀ ଗୋପାଳ ନନ୍ଦ ହିଁ ଯୋଗ୍ୟ ଏବଂ ଶେଷରେ ସେଇକଥା ହିଁ ଗ୍ରହଣ କରାଗଲା। ଗୋପାଳ ନନ୍ଦଙ୍କ ସ୍ଥାନରେ ଆଉ ଯଦି କିଏ ହୋଇଥାନ୍ତେ ତେବେ ଭିଜିଲାନ୍ସ ବଡ଼ ବଡ଼ ହାକିମଙ୍କୁ ଡରି କେସ୍‌ଗୁଡ଼ିକୁ ନଷ୍ଟ କରିଥାନ୍ତା।

ମୋତେ ବିମାନ ବନ୍ଦରକୁ ଛାଡ଼ିବା ପାଇଁ ଆସିଥିଲେ ଦୁଇ ତିନି ଜଣ ଭିଜିଲାନ୍ସ ଅଫିସର ଦୁଇ ତିନି ଜଣ ଆଇ.ଏ.ଏସ୍. ଅଫିସର, ଜିଲ୍ଲାଜଜ୍ ଓ ତିନି ଚାରିଜଣ ସାମ୍ବାଦିକ। ଆଗରୁ ଜିନିଷ ପଠେଇ ଦେଇଥିଲି। ଯେଉଁଦିନ ପହଞ୍ଚିବି ତା' ଆରଦିନ ସକାଳେ ଦାୟିତ୍ୱ ନେବି।

ସି.ଆଇ.ଏସ୍.ଏଫ୍ ଅଫିସରଙ୍କୁ କହିଦେଇଥିଲି ଯେ ମୋତେ ବିମାନ ବନ୍ଦରକୁ ଗେଷ୍ଟ ହାଉସ ନେବା ପାଇଁ କେବଳ ଜଣେ ଅଫିସର ଆସିବେ କାରଣ ଅଯଥା ଭିଡ଼ ପସନ୍ଦଯୋଗ୍ୟ ନୁହେଁ ଓ ଯାତ୍ରୀମାନେ ଅସୁବିଧାରେ ପଡ଼ିବେ। ସି.ଆଇ.ଏସ୍.ଏଫ୍.ରେ ଖାତିରଦାରି ବହୁତ। ଜଣେ ଡି.ଜି. ଥିଲେ ସେ କୋଚିନ୍‌ରୁ ଦିଲ୍ଲୀ ଆସୁଥିଲେ ବମ୍ବେ ଦେଇ। ବମ୍ବେ ବିମାନ ବନ୍ଦରରେ ବିମାନଟି ପ୍ରାୟ ଏକ ଘଣ୍ଟା ରହେ ଓ ସେଇ ସମୟରେ ବମ୍ବେ ସ୍ଥିତ ତିନି ଚାରି ଜଣ ସିନିୟର ସି.ଆଇ.ଏସ.ଏଫ. ଅଫିସର ବିମାନରେ ପ୍ରବେଶ କରି ତାଙ୍କୁ ପୁଷ୍ପଗୁଚ୍ଛ ନଦେଲେ ସେ ବିବ୍ରତ ହୋଇଯାନ୍ତି। ଆଉ ଜଣେ ଡି.ଜି. ସରକାରୀ ଗେଷ୍ଟ ହାଉସରେ ନରହି ପଞ୍ଚତାରକା ହୋଟେଲ୍‌ରେ ରହିବା ପାଇଁ ପସନ୍ଦ କରନ୍ତି ଏବଂ ସରକାରୀ କମ୍ପାନୀମାନଙ୍କୁ କହି ତା'ର ବନ୍ଦୋବସ୍ତ କରାଯାଏ। ଏମିତି ଅଳ୍ପ କେତେଜଣଙ୍କୁ ଛାଡ଼ିଦେଲେ ବାକି ସମସ୍ତେ ଦକ୍ଷତା ଓ ସଚ୍ଚୋଟତାର ସହିତ କାର୍ଯ୍ୟ କରିଛନ୍ତି। ଆମେ ଓଡ଼ିଆ ଲୋକ, ସାହାଯ୍ୟ କରିବା ପାଇଁ କୌଣସି ପ୍ରଭାବଶାଳୀ ମନ୍ତ୍ରୀ କି ଏମ୍.ପି. ନାହାନ୍ତି ତେଣୁ ନିର୍ଭର କରିବାକୁ ପଡ଼େ ଦକ୍ଷତା, ସଚ୍ଚୋଟତା, ବିବେକ ଓ କଲମ ଉପରେ। କେତେକ ବଡ଼ ବଡ଼ ଅଫିସର ଓ ମନ୍ତ୍ରୀ ବିଭିନ୍ନ ଲବି (ପଞ୍ଜାବୀ, ମାଡ୍ରାସୀ, ବିହାରୀ, ବଙ୍ଗାଳୀ, କାୟସ୍ଥ)ଙ୍କୁ ଆଖିବୁଜା ସାହାଯ୍ୟ କରି ବଦନାମ ହୋଇଛନ୍ତି।

ସି.ଆଇ.ଏସ୍.ଏଫ୍ ସମେତ ଅନ୍ୟାନ୍ୟ ଫୋର୍ସ ଯଥା ବି.ଏସ.ଏଫ., ସି.ଆର.ପି. ଇତ୍ୟାଦି ଫୋର୍ସରୁ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟର ଅଫିସରମାନେ ବହୁତ ଅନଧିକାର ସୁଯୋଗ ନିଅନ୍ତି। ମୁଁ ସି.ଆଇ.ଏସ.ଏଫ.ର ଡି.ଆଇ.ଜି ଥିବା ସମୟରେ (୧୯୮୬-୯୧) ଜଣେ ହୋମ୍ ସେକ୍ରେଟେରୀ ଭାଷଣ ଦେବା ଅବସରରେ ଉପଦେଶ ଦେଲେ ମାନବ ସମ୍ବଳ ଅମୂଲ୍ୟ, ତା'ର ଅପବ୍ୟୟ କରନ୍ତୁ ନାହିଁ। ସେମାନଙ୍କୁ କେବଳ ସରକାରୀ କାର୍ଯ୍ୟରେ

ନିଯୋଜିତ କରନ୍ତୁ। କୌଣସି ବେସରକାରୀ କିମ୍ୱା ବ୍ୟକ୍ତିଗତ କାର୍ଯ୍ୟରେ ନିଯୋଜିତ କଲେ ତାହା ସରକାରୀ ଧନର ତୋଷାରପାତ ଭଳି ଦୋଷ ହେବ। ଖୁବ୍ ଭଲ ଓ ଶିକ୍ଷଣୀୟ କଥା କିନ୍ତୁ ଅଧିକାଂଶ ଉପଦେଷ୍ଟାଙ୍କ ଆଭିମୁଖ୍ୟ ହେଉଛି ଉପଦେଶଟା ଅନ୍ୟମାନେ ପାଳନ କରିବା ପାଇଁ, ସେଇଟା କ'ଣ ନିଜ ପାଇଁ? ହୋମ୍ ସେକ୍ରେଟେରୀଙ୍କ ସାରଗର୍ଭକ ଭାଷଣର କିଛିଦିନ ପରେ ଏକ ଜରୁରୀ ବାର୍ତ୍ତା ପାଇଲି ଯେ ଆପଣଙ୍କ ରାଉରକେଲାର ବଢ଼େଇଙ୍କୁ ଦିଲ୍ଲୀ ପଠାନ୍ତୁ ତିନି ମାସ ପାଇଁ। ଏତେ ବଡ଼ ୟୁନିଟ୍, ସବୁଦିନେ କିଛି ନା କିଛି ମରାମତି କାମ ଦରକାର। ଦିଲ୍ଲୀରେ ଦୁଇଟି ବଢ଼େଇ ଥାଉ ଥାଉ ପୁଣି କାହିଁକି ଦରକାର ପଡ଼ିଲା? ନିଜ ଅକ୍ଷମତା ପ୍ରକାଶ କରିବାରୁ ଜଣେ ଡି.ଆଇ.ଜି ଫୋନ୍ କରି କହିଲେ 'ସାର୍ ବିରୋଧ କରନ୍ତୁ ନାହିଁ। ବଢ଼େଇ ନିହାତି ଦରକାର।' ବାଧ ହୋଇ ବଢ଼େଇକୁ ପଠେଇଲି। ଚାରି ମାସ ପରେ ବଢ଼େଇ ଫେରି ଆସି କହିଲା 'ହୋମ୍ ସେକ୍ରେଟେରୀଙ୍କ ଘର ତିଆରି ହେଉଥିଲା। ସି.ଆଇ.ଏସ୍.ଏଫ୍. ଦେଲା କାଠ ମିସ୍ତ୍ରୀ ଓ ଘର ତିଆରି ପରିଚାଳନା କରିବା ପାଇଁ ଜଣେ ବି.ଏସ୍.ଏଫ୍ ଅଫିସର ଆସିଲେ।' ଏ ଭଦ୍ରଲୋକ ମଝିରେ ମଝିରେ ଇଂରେଜି ଖବରକାଗଜକୁ ମୂଲ୍ୟବାନ ଲେଖା ପଠାଉଥିଲେ ଓ ତାଙ୍କର ଅଧିକାଂଶ ଲେଖାରେ ସାଧୁତା ଉପରେ ବେଶ୍ ଯୋର ଦେଉଥିଲେ।

ଆମେ ଦେଖିଲୁ ୨୦୦୨ ମସିହାର ଦିଲ୍ଲୀ। ତା' ସାଙ୍ଗେ ଦେଖିଲୁ ଦିଲ୍ଲୀକୁ ଘେରିଥିବା ତିନୋଟି ଉପସହର - ଗୁରଗାଓଁ, ନଏଡ଼ା ଓ ଫରିଦାବାଦ୍। କଟକ ବଦଳେ ପନ୍ଦର କୋଡ଼ିଏ ବର୍ଷରେ ଥରେ, ଭୁବନେଶ୍ୱର ୨ ବର୍ଷରେ, ନଏଡ଼ା, ଗୁରଗାଓଁ ଓ ଫରିଦାବାଦ୍ ପ୍ରତିଦିନ। ସବୁଦିନ ଚାଲିଛି ଘର କାମ, ବଡ଼ ବଡ଼ ଅଟ୍ଟାଳିକା, ମଧ୍ୟମ ଧରଣର ଶିଳ୍ପ। କଲିକତାରେ ସି.ପି.ଏମ ଓ ଶ୍ରମିକମାନଙ୍କ ପ୍ରାଦୁର୍ଭାବ ପାଇଁ ବହୁ ବ୍ୟବସାୟୀ ପଳେଇ ଆସିଲେ ନଏଡ଼ା, ଗୁରୁଗାଓଁ ଓ ଫରିଦାବାଦ୍‌କୁ। ହରିୟାଣା ଓ ଉତ୍ତରପ୍ରଦେଶ ସରକାରଙ୍କ ସାହାଯ୍ୟରେ ଗଢ଼ି ଉଠିଲା ନୂଆ ଶିଳ୍ପ କେନ୍ଦ୍ର। ଓଡ଼ିଶା ଅଫିସର ଓ ହରିୟାଣା ଅଫିସରଙ୍କୁ ତୁଳନା କରି ମୋତେ ଜଣେ ବ୍ୟବସାୟୀ କହୁଥିଲେ 'ସାର୍ ହରିୟାଣା ଅଫିସର ପକ୍‌କା ଓ ଖୋଲାମନ। କେତେ ପଇସା ନେବେ ଏକାଥରକେ କହିଦେବେ ଓ ପଇସା ନେଲେ କାମ ଏକାଥରକେ କରିଦେବେ। କିନ୍ତୁ ଓଡ଼ିଶା ଅଫିସରଙ୍କୁ ଦୂରୁ ଜୁହାର। ପଇସା ନେବେ କି ନ ନେବେ ତା'ର କୌଣସି ଇସାରା ଦେବେନାହିଁ। ପୁଣି ପଇସା ନେବା ସତ୍ତ୍ୱେ କାମ କରିବେ ନାହିଁ ଓ କୈଫିୟତ ଦେବେ ଉପରୁ ମନା ହେଇ ଫେରି ଆସିଲା ମୁଁ କ'ଣ କରିବି? ଆପଣଙ୍କ ରାଜ୍ୟରେ ଯେତିକି ଉନ୍ନତି ହୋଇଛି ତାଠାରୁ ବହୁତ ଅଧିକ ଉନ୍ନତି ହୁଅନ୍ତା ଯଦି ଅଫିସର ଓ ମନ୍ତ୍ରୀ ଠିକ୍

ରୁହନ୍ତେ ।' ସେ ଭଦ୍ରଲୋକ ତାମିଲନାଡୁର ମନ୍ତ୍ରୀମାନଙ୍କୁ ପସନ୍ଦ କରୁଥିଲେ । ତାଙ୍କ କହିବା କଥା ଯେ 'ତାମିଲନାଡୁର ମନ୍ତ୍ରୀମାନେ ଖୁବ୍ ଦକ୍ଷ ଓ ସଚ୍ଚୋଟ । କାମ କରିଦେବି କହିଲେ ପାରୁପର୍ଯ୍ୟନ୍ତ ଚେଷ୍ଟା କରିବେ, ନହୋଇପାରିଲେ ନିଜେ ଡାକି ଟଙ୍କା ଫେରେଇ ଦେବେ । ଆପଣଙ୍କ ଓଡ଼ିଶା ମନ୍ତ୍ରୀ ସେଇଆ କରିବେ କି ? ଦରଖାସ୍ତ ଦେବା ପୂର୍ବରୁ ତାଙ୍କର ଟଙ୍କା ଦରକାର ଅଥଚ କାମ କରିପାରିବେ କି ନାହିଁ ସେ ବିଷୟରେ ଦୃଢ଼ ପ୍ରତିଶ୍ରୁତି କେବେ ଦିଅନ୍ତି ନାହିଁ ।'

ଦିଲ୍ଲୀରେ ଏଇଭଳି ଲୋକଙ୍କ ସାଙ୍ଗରେ ଦେଖାହୁଏ । ଦେଖାହୁଏ ମନ୍ତ୍ରୀ, ଏସ୍.ପି. ଓ ସିନିୟର ଅଫିସରଙ୍କ ସାଙ୍ଗରେ । ଦରବାରୀ ସଂସ୍କୃତି ସରକାରୀ କଳରେ ବେଶ୍ ଚାଲେ । ଏଇଠୁ ନିର୍ଦ୍ଦେଶ ଯାଏ କେଉଁ ପ୍ରଦେଶରେ କିଏ ମୁଖ୍ୟମନ୍ତ୍ରୀ ହେବେ, କିଏ କେଉଁ ଦଳର ନେତା ହେବ । କେତେକ ପ୍ରାଦେଶିକ ଦଳକୁ ଛାଡ଼ିଦେଲେ ରାଜନୀତି ଏବଂ ପ୍ରଶାସନର ରାଣୀମାଛିମାନେ ଦିଲ୍ଲୀରେ ଥାଆନ୍ତି । ଏମିତି କେତୋଟି ରାଣୀମାଛିଙ୍କୁ ଦର୍ଶନ କରିବାର ସୁଯୋଗ ମିଳିଲା । ଭାଗ୍ୟକୁ କେହି ଦଂଶନ କରିନାହାନ୍ତି ।

ମୁଁ ଦାୟିତ୍ୱ ନେବା ସମୟରେ ସି.ଆଇ.ଏସ.ଏଫରେ ଫୋର୍ସ ସଂଖ୍ୟା ଥିଲା ପ୍ରାୟ ଲକ୍ଷେ ପାଞ୍ଚ ହଜାର । ୧୯୮୬ରୁ ୧୯୯୧ ମଧ୍ୟରେ ମୁଁ ଯେଉଁ ସି.ଆଇ.ଏସ.ଏଫ ଦେଖିଥିଲି ବର୍ତ୍ତମାନର ସି.ଆଇ.ଏସ.ଏଫ ତା'ଠାରୁ ବହୁଗୁଣରେ ଉନ୍ନତ । ପ୍ରାରମ୍ଭିକ ଅବସ୍ଥାରେ ସି.ଆଇ.ଏସ.ଏଫଙ୍କ ସଂଖ୍ୟା ଏତେ ବଢ଼ିଗଲା ଯେ ଖୋଲାବଜାରରୁ ଉପଯୁକ୍ତ ପ୍ରାର୍ଥୀ ମନୋନୟନ କରି ତାଲିମ୍ ଦେଇ କାର୍ଯ୍ୟରେ ନିୟୋଜନ କରିବାର ସମୟ ନଥିଲା । ତେଣୁ ସାମରିକ ବାହିନୀ ଓ ଅର୍ଦ୍ଧ ସାମରିକ ବାହିନୀରୁ ବିଭିନ୍ନ ପାହ୍ୟାର ଲୋକଙ୍କୁ ନେବା ପାଇଁ ସି.ଆଇ.ଏସ.ଏଫ ବାଧ ହେଲା । ତା' ବ୍ୟତୀତ ଯେଉଁ ଶିଳ୍ପ ମାନଙ୍କର ସୁରକ୍ଷା ଦାୟିତ୍ୱ ସି.ଆଇ.ଏସ.ଏଫକୁ ଦିଆଗଲା ସେମାନଙ୍କର ନିଜର ସୁରକ୍ଷା ବାହିନୀ ଥିଲେ ଓ ତାଙ୍କ ମଧ୍ୟରୁ ବହୁତ ଅଳ୍ପ ତାଲିମ୍‌ପ୍ରାପ୍ତ ଥିଲେ ଏବଂ ସମସ୍ତେ ଶ୍ରମିକ ସଂଘର ସଦସ୍ୟ ଥିଲେ । ତେଣୁ ଧର୍ମଘଟ କରିବା ଓ ସ୍ଲୋଗାନ ଦେବା ତାଙ୍କ ଅଭ୍ୟାସରେ ପଡ଼ିଯାଇଥିଲା । ସେମାନଙ୍କୁ ନିଆଗଲା । ଆର୍ମିରୁ ଯେଉଁମାନେ ଆସିଲେ ସେମାନେ ଅନ୍ୟ କିସମର ଟ୍ରେନିଂ ପାଇ ଆସିଥିଲେ । ତେଣୁ ସି.ଆଇ.ଏସ୍.ଏଫ୍ ମାନଦଣ୍ଡରେ ଦେଖିଲେ ସେମାନେ ଅଯୋଗ୍ୟ ଥିଲେ । ଶିଳ୍ପାନୁଷ୍ଠାନମାନଙ୍କର ଶ୍ରମିକମାନଙ୍କର ଅଭ୍ୟାସ ହେଲା ସାମାନ୍ୟ କଥାରେ ପ୍ରତିବାଦ ଓ ବିକ୍ଷୋଭ ପ୍ରଦର୍ଶନ କରିବା । ଧୈର୍ଯ୍ୟର ସହ ସେମାନଙ୍କୁ ମୁକାବିଲା କରିବା ଦରକାର । ଯେଉଁ ସି.ଆଇ.ଏସ୍.ଏଫ୍ କର୍ମଚାରୀ ଶିଳ୍ପାନୁଷ୍ଠାନରୁ ଆସିଥିଲେ ସେମାନଙ୍କ ସହାନୁଭୂତି ଶ୍ରମିକମାନଙ୍କ ପାଇଁ ଥିଲା । ସୈନ୍ୟ ବିଭାଗରୁ ଆସିଥିବା ଅଧିକାରୀମାନେ ସାମାନ୍ୟ କଥାରେ ହାତ ଉଠେଇ ଦେଉଥିଲେ । ତା'ଛଡ଼ା

ନିକଟବର୍ତ୍ତୀ ଆର୍ମି କ୍ୟାଣ୍ଟିନ୍‌ରୁ ମଦ ବୋତଲ ଆଣି ନିଜେ ପିଇବା ଓ ଅନ୍ୟକୁ ପିଏଇବା ଥିଲା ଆଉ ଏକ ବଦଭ୍ୟାସ । ଏ ସମସ୍ତଙ୍କୁ ନେଇ କାମ କରିବା କେତେ କଷ୍ଟ ତାହା ଅନୁଭବି ହିଁ ଜାଣେ। ୧୯୯୫ ମସିହା ଆଡ଼କୁ ଏମାନଙ୍କ ମଧ୍ୟରୁ ଅଧିକାଂଶ ଅବସର ନେଲେଣି। ଅନ୍ୟାନ୍ୟ କେତେକ ଅର୍ଦ୍ଧ ସାମରିକ ଅଫିସର ନିଜ ସଂସ୍ଥାକୁ ଫେରିଗଲେଣି ଓ ସି.ଆଇ.ଏସ୍.ଏଫ୍‌ର ଅଫିସରମାନେ କମାଣ୍ଡାଣ୍ଟ ସ୍ତରକୁ ଆସିଗଲେଣି। ସମୟ ଥିଲା, କେତେକ ସି.ଆଇ.ଏସ୍.ଏଫ୍ ଅଫିସରଙ୍କୁ ପରିଚୟ ପଚାରିଲେ ମୁଁ ସି.ଆଇ.ଏସ୍.ଏଫ୍‌ର ନକହି ମୁଁ ଆର୍ମି (ବି.ଏସ୍.ଏଫ୍ ମଧ୍ୟ ହୋଇପାରେ) ଓ ବର୍ତ୍ତମାନ ସି.ଆଇ.ଏସ୍.ଏଫ୍‌ରେ କାମ କରୁଛି ବୋଲି କହୁଥିଲେ। ଅନୁଷ୍ଠାନ ପ୍ରତି ଆନୁଗତ୍ୟ ଓ ସମ୍ମାନର ଅଭାବ ହେଲେ କାମ କରିବାର ଉତ୍ସାହ କମିଯାଏ ଓ ଦକ୍ଷତା ହ୍ରାସ ପାଏ।

୨୦୦୨ ମସିହା ବେଳକୁ ସି.ଆଇ.ଏସ.ଏଫରେ କେବଳ ନିଜ ବିଭାଗର ଅଫିସର୍ ଓ ଡେପୁଟେସନରେ ଆସିଥିବା ଆଇ.ପି.ଏସ୍ ଅଫିସର ଥିଲେ। ସି.ଆଇ.ଏସ୍.ଏଫ୍ ପାଇଁ ଆସିଷ୍ଟାଣ୍ଟ କମାଣ୍ଡାଣ୍ଟ ପଦବୀ ପାଇଁ ସିଧାସଳଖ ନିଯୁକ୍ତି ହେଉଥିଲା। ଯେହେତୁ ସେମାନେ ସିଭିଲ ସର୍ଭିସ୍ ପରୀକ୍ଷା ଦେଇ ଆସିଥିଲେ ଓ ସଫଳ ତାଲିକାରେ ସ୍ଥାନ ତଳେ ଥିଲା, ଆଇ.ଏ.ଏସ୍, ଆଇ.ପି.ଏସ୍ ନହୋଇପାରି ସି.ଆଇ.ଏସ.ଏଫ କିମ୍ବା ଆର.ପି.ଏଫ୍ ଚାକିରି ପାଉଥିଲେ। ସେମାନଙ୍କ ମଧ୍ୟରୁ ଅନେକଙ୍କ ବଦ୍ଧ ଧାରଣା ଯେ ଶିକ୍ଷା ଓ ଜ୍ଞାନ ଦୃଷ୍ଟିରୁ ସେମାନେ ଆଇ.ଏ.ଏସ ଓ ଆଇ.ପି.ଏସଙ୍କ ସାଙ୍ଗରେ ସମକକ୍ଷ, ଦୁର୍ଭାଗ୍ୟବଶତଃ କିଛି କମ୍ ମାର୍କ ମିଳିବାରୁ ସି.ଆଇ.ଏସ୍.ଏଫ୍ ଅଫିସର ହେବା ପାଇଁ ବାଧ୍ୟ ହେଲେ। ଅଳ୍ପ କେତେଜଣ ପରସ୍ପର ମଧ୍ୟରେ ସଂଯୋଗର ଆଇ.ପି.ଏସ ହଟାଓ ନିବେଦନ ବିଭିନ୍ନ ସାଂସଦମାନଙ୍କୁ କରୁଥିଲେ। ମୁଁ କାର୍ଯ୍ୟଭାର ଗ୍ରହଣ କରିବା ପରେ ହୋମ ସେକ୍ରେଟେରୀ କମଳ ପାଣ୍ଡେଙ୍କୁ ଦେଖାକଲି। ସେ ୬୪ ମସିହାରେ ଆଇ.ପି.ଏସ ପାଇଥିଲେ, ୬୫ ମସିହାରେ ଆଇ.ଏ.ଏସ ପରୀକ୍ଷାରେ ପ୍ରଥମ ହୋଇଥିଲେ। ବିଚକ୍ଷଣ ଅଫିସର; କିନ୍ତୁ କ୍ଷଣକୋପୀ। ମୋ' ଉପରେ ତାଙ୍କର ବହୁତ ସଦିଚ୍ଛା ଥିଲା। ସି.ଆଇ.ଏସ.ଏଫର ସମସ୍ୟା କ'ଣ ସେ ମୋତେ ଏମିତି ବୁଝେଇଲେ ଯେ ମୁଁ ଆଶ୍ଚର୍ଯ୍ୟ ହୋଇଗଲି। ସେ ମୋତେ କହିଲେ ଯେ ଆପଣଙ୍କର ମୁଖ୍ୟ ସମସ୍ୟା ହେଲା ସିଧାସଳଖ ଭାବେ ନିଯୁକ୍ତି ପାଇଥିବା ଆସିଷ୍ଟାଣ୍ଟ କମାଣ୍ଡାଣ୍ଟମାନଙ୍କୁ ସମ୍ଭାଳିବା। ଦ୍ୱିତୀୟ ହେଲା ଦିଲ୍ଲୀ ଏୟାରପୋର୍ଟର ସୁରକ୍ଷା ଦାୟିତ୍ୱ ସି.ଆଇ.ଏସ.ଏଫଙ୍କୁ ଦେବାର ନିଷ୍ପତ୍ତିକୁ କାର୍ଯ୍ୟକାରୀ କରାଯାଇ ପାରୁନାହିଁ। ସେଥିପାଇଁ ଆପଣଙ୍କୁ ଚେଷ୍ଟା କରିବା ପାଇଁ ପଡ଼ିବ। ତୃତୀୟ ହେଲା ସି.ଆଇ.ଏସ.ଏଫ ବଢ଼ିଚାଲିଛି ଅଥଚ ବାସସ୍ଥାନ ଯୋଗାଇ ପାରୁନାହୁଁ। ଚତୁର୍ଥ ହେଲା ଟ୍ରେନିଂର ମାନ ବଢ଼ାଇବାକୁ

ପଡ଼ିବ। ଏମିତି କେତେଗୁଡ଼ିଏ କଥା ସେ କହିଲେ ଏବଂ ମୁଁ ଦେଖିଲି ସବୁ କଥା ସତ । ଘଣ୍ଟାଏ ମିଟିଂ ପରେ ସେ ମୋତେ ଦୁଆରବନ୍ଧ ପର୍ଯ୍ୟନ୍ତ ଛାଡ଼ିବା ପାଇଁ ଆସିଲେ କିନ୍ତୁ ସାତ ଦିନ ପରେ ତାଙ୍କ ପାଇଁ ସୁସମ୍ବାଦ ଆମ ପାଇଁ ଦୁଃସମ୍ବାଦ ମିଳିଲା ଯେ ସେ କ୍ୟାବିନେଟ୍ ସେକ୍ରେଟେରୀ ପଦକୁ ଉନ୍ନୀତ ହେଲେ ଓ ତାଙ୍କ ସ୍ଥାନରେ ସଂସ୍କୃତି ମନ୍ତ୍ରଣାଳୟର ସଚିବ ଓ ଗୁଜୁରାଟ କ୍ୟାଡ଼ରର ଏନ୍ ଗୋପାଳ ସ୍ୱାମୀ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟର ସଚିବ ହେଲେ। ସେ ନରେନ୍ଦ୍ର ମୋଦିଙ୍କ ସମୟରେ ଗୁଜୁରାଟର ଚିଫ୍ ସେକ୍ରେଟେରୀ ଥିଲେ ଓ କେନ୍ଦ୍ରକୁ ଡେପୁଟେସନରେ ଆସିଥିଲେ।

କାର୍ଯ୍ୟଭାର ଗ୍ରହଣ କରିବା ମାତ୍ରେ ମୋ ଅଫିସରମାନେ ବାରମ୍ବାର ପ୍ରସ୍ତାବ ଦେଲେ ଯେ ମୁଁ ବିଭିନ୍ନ ୟୁନିଟ୍ ବୁଲି ଦେଖିବା କଥା। ସେତେବେଳେ ଏନ୍ ପନଓ୍ୱାର (ଓଡ଼ିଶା କ୍ୟାଡ଼ରର) ସଦରମହକୁମାରେ ଡି.ଆଇ.ଜି ଥିଲେ। ମୁଁ ବାଲେଶ୍ୱର ଡି.ଆଇ.ଜି ଥିଲାବେଳେ ସେ ଭଦ୍ରକ ଏ.ଏସ୍.ପି ଥିଲେ। ଅତି ଦକ୍ଷ ସଚ୍ଚୋଟ ଓ ସତ୍ୟବାଦୀ ଅଫିସର। ମୋତେ କାହିଁକି ବାରମ୍ବାର ଗସ୍ତରେ ଯିବା ପାଇଁ ଅଫିସରମାନେ କହୁଛନ୍ତି ପଚାରିବାରୁ ସେ କହିଲେ ଯେ ସଦରମହକୁମାର ଅଫିସରମାନେ ଏଇଆ ଚାହାଁନ୍ତି। ଆପଣ ଗସ୍ତରେ ଗଲେ ସେମାନେ ଶାସନ କରିବେ। ମନ୍ତ୍ରଣାଳୟର କେତେକ ଅଫିସରଙ୍କୁ ଗାଡ଼ି, ଅର୍ଡ଼ର୍ଲୀ ଦେଇ ତୁଷ୍ଟ କରି ରଖିଛନ୍ତି ତେଣୁ ଏମାନେ ଯାହା ଚାହିଁବେ ତାହା ହେବ। ଡି.ଜି. ସାର ଏଠି ରହିଲେ ତାଙ୍କ ପାଇଁ କଣ୍ଟା। ଗସ୍ତରେ ଗଲେ ବିରାଟ ଆୟୋଜନ ହେବ, ଖୁସି କରିବା ପାଇଁ। ସବୁ ରକମ ବନ୍ଦୋବସ୍ତ କରାଯିବ। ଏମିତି ଖୁସି କରିବେ ଯେ ଆପଣ ଦିଲ୍ଲୀରେ ନରହି ସବୁବେଳେ ବୁଲିବା ପାଇଁ ଚାହୁଁଥିବେ। ଜଣେ ଡି.ଜି. ଇଣ୍ଡିଆନ୍ ଏୟାରଲାଇନ୍ସ୍‌ରେ ଯାଆନ୍ତି (ସରକାରୀ ନିର୍ଦ୍ଦେଶ ଥିଲା ଯେ ସେମାନେ କେବଳ ଇଣ୍ଡିଆନ ଏୟାର ଲାଇନ୍‌ସରେ ଯାଇପାରିବେ) ଓ ତାଙ୍କ ସ୍ତ୍ରୀ କେବଳ ପ୍ରାଇଭେଟ୍ ଏୟାରଲାଇନ୍ସ୍‌ରେ ଯିବେ। ବନ୍ଦୋବସ୍ତରେ ସାମାନ୍ୟ ତ୍ରୁଟି ହେଲେ ସାହେବ କିଛି କହିବା ପୂର୍ବରୁ ମେମ୍ ସାହେବ ଅଫିସରଙ୍କ ଛାଲ ବୁହେଇ ଦେବେ। ଏସବୁ ଶୁଣି ମୁଁ ନିଷ୍ପତ୍ତି କଲି ପ୍ରଥମେ ମାସେ ୨ ମାସ ସଂସ୍ଥାକୁ ଭଲଭାବେ ଦେଖେ ଓ ଅଫିସରମାନଙ୍କୁ ଭଲଭାବେ ଜାଣେ ତା'ପରେ ଗସ୍ତରେ ଯିବି।

ଗୋଟିଏ କଥା ପ୍ରଥମେ ମୋ' ଦୃଷ୍ଟିରେ ପଡ଼ିଲା ଯେ ଦଳେ ସି.ଆଇ.ଏସ୍.ଏଫ୍ ସଦସ୍ୟ ବିନା କାମରେ ଖାଲି ବୁଲୁଛନ୍ତି ପଚାରିଲେ ଜଣାପଡ଼ିଲା ଯେ ଏମାନେ ହେଲେ ଖେଳାଳୀ ଦଳ। ଯେହେତୁ ଫୁଟ୍‌ବଲ୍, କବାଡ଼ି କିମ୍ବା ହକି ଖେଳୁଛନ୍ତି ଇନ୍ଦ୍ର ଚନ୍ଦ୍ର ମାନୁ ନାହାଁନ୍ତି। କୁସ୍ତି ଦଳ ବିଷୟରେ ଅଭିଯୋଗ ମିଳିଲା। ଯଦି କେହି କାହାର ଘର ଭଡ଼ା ନେଇ ଛାଡ଼ିଲା ନାହିଁ ଏମାନେ ପଇସା ନେଇ ଭଡ଼ାବାଲାଙ୍କୁ ଜବରଦସ୍ତ ବାହାର

କରିଦେଉଥିଲେ। ଏ ଦଳକୁ ଭାଗ ଭାଗ କରି ଆସାମ, କେରଳ, ତାମିଲନାଡୁ ପ୍ରଭୃତି ବିଭିନ୍ନ ସ୍ଥାନକୁ ପଠେଇ ଦେଲି । ଦିଲ୍ଲୀରେ କେବଳ ଗୋଟିଏ ଟିମ୍ ରହିଲା। ଭୀଷଣ ପ୍ରତିବାଦ ହେଲା, କେତେଜଣ ଏସ୍.ପି. ଦେଖାକରି ଆଦେଶ ପରିବର୍ତ୍ତନ କରିବା ପାଇଁ ପ୍ରବର୍ତ୍ତେଇଲେ କିନ୍ତୁ ମୋ' ଆଦେଶ ରହିଲା ଓ ଖେଳାଳୀମାନେ ବ୍ୟାଟାଲିୟନରେ ରହିବା ଦ୍ୱାରା ଶୃଙ୍ଖଳିତ ହେଲେ ଓ ଖେଳର ମାନ ବଢ଼ିଲା।

ଦିଲ୍ଲୀ ବିମାନ ବନ୍ଦରର ସୁରକ୍ଷା ଦାୟିତ୍ୱ ନେବା ପାଇଁ ବିମାନ ଚଳାଚଳ ମନ୍ତ୍ରଣାଳୟ ଓ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟର ଆଦେଶ ନେଇ ଆସିଲି। ଦିଲ୍ଲୀ ପୋଲିସ ଓ ଉପରାଜ୍ୟପାଳଙ୍କର ଅଫିସ କ୍ଷୁବ୍ଧ ହେଲେ। ଉପ ରାଜ୍ୟପାଳ (ଜଣେ ଅବସରପ୍ରାପ୍ତ ଆଇ.ଏ.ଏସ୍) ମୋତେ ମିଟିଂକୁ ନିମନ୍ତ୍ରଣ କଲେ। ସେଇଠାରେ ଦିଲ୍ଲୀର ପୋଲିସ କମିଶନର ଓ ଆଉ ଜଣେ ସିନିୟର ଅଫିସର (ବୋଧହୁଏ ଚିଫ୍ ସେକ୍ରେଟେରୀ) ଭୀଷଣ ପ୍ରତିବାଦ କଲେ। ସେମାନଙ୍କ ଯୁକ୍ତି ଥିଲା ଯେ ସି.ଆଇ.ଏସ.ଏଫ୍ ଏ କାମ କରିପାରିବ ନାହିଁ ଓ ମୋର ଉତ୍ତର ଥିଲା ଯେ ବମ୍ବେ, କଲିକତା, ଚେନ୍ନାଇ, ହାଇଦ୍ରାବାଦ, ବାଙ୍ଗାଲୋର ବିମାନ ବନ୍ଦରର ସୁରକ୍ଷା ଯଦି ଆମେ କରିପାରୁଛୁ ତେବେ ଦିଲ୍ଲୀ କାହିଁକି କରିପାରିବୁ ନାହିଁ? ବହୁ ଯୁକ୍ତି ତର୍କ ପରେ ଉପରାଜ୍ୟପାଳ ରାଜିହେଲେ ଯେ ଦିଲ୍ଲୀ ପୋଲିସ ହଟିବ ଓ ତା' ସ୍ଥାନରେ ସି.ଆଇ.ଏସ.ଏଫ ମୁତୟନ ହେବ। ଦିଲ୍ଲୀ ବିମାନ ବନ୍ଦରର ସୁରକ୍ଷା ଦାୟିତ୍ୱରେ ସି.ଆଇ.ଏସ.ଏଫ ରହିବା ଆମ ବାହିନୀ ପ୍ରତି ଥିଲା ଏକ ସମ୍ମାନର ପ୍ରଶ୍ନ ଓ ଏହାର ସମାଧାନ କରାଯାଇ ପାରିଥିବାରୁ ସମସ୍ତେ ଖୁସି ହେଲେ।

ସେକ୍ରେଟେରୀଏଟ୍ ଓ ଅନ୍ୟାନ୍ୟ କେତେକ ଅଟ୍ଟାଳିକାର ସୁରକ୍ଷା ଦାୟିତ୍ୱ ଥିଲା ସି.ଆଇ.ଏସ୍.ଏଫ୍‌ର । ସେ ସମୟରେ ସଂସ୍କୃତି ମନ୍ତ୍ରଣାଳୟର ମନ୍ତ୍ରୀ ଜଗମୋହନ ଜିଦ୍ ଧରିଲେ ଯେ ସୈନ୍ୟବାହିନୀ ଲାଲ୍‌କିଲ୍ଲା ଛାଡ଼ନ୍ତୁ। ୧୮୫୭ (ପ୍ରଥମ ସ୍ୱାଧୀନତା ଯୁଦ୍ଧରେ)ରେ ଇଷ୍ଟ ଇଣ୍ଡିଆ କମ୍ପାନୀ ଲାଲ୍‌କିଲ୍ଲା ଆକ୍ରମଣ କରି ବାଦ୍‌ସାହା ବାହାଦୁର ଶାହାଙ୍କୁ ଗିରଫ କରି ନେଇଗଲେ। ଲାଲ୍‌କିଲ୍ଲା ମଧ୍ୟରେ ଥିବା କେତେକ ଅଟ୍ଟାଳିକା ଧ୍ୱଂସ କଲେ ଓ ସେଇଦିନରୁ ୨୦୦୪ ମସିହା ପର୍ଯ୍ୟନ୍ତ ସୈନ୍ୟବାହିନୀ ତାକୁ ଦଖଲ କରି ରଖିଥିଲେ। ସୈନ୍ୟବାହିନୀର ଜେନେରାଲ ମାନେ ସାଉଥ୍ ବ୍ଲକରେ ବସନ୍ତି ଅଥଚ ଲାଲ୍‌କିଲ୍ଲାକୁ ନିଜର ସଦରମହକୁମା ବୋଲି କହୁଥିଲେ। ଜଗମୋହନ ଯେଉଁ କାର୍ଯ୍ୟରେ ଲାଗନ୍ତି ସେ ଛାଡ଼ନ୍ତି ନାହିଁ। ସେ ସରକାରଙ୍କ ଠାରୁ ନିଷ୍ପତ୍ତି କରେଇ ଆଣିଲେ ଯେ ଆର୍ମି ଲାଲ୍‌କିଲ୍ଲା ଛାଡ଼ିବ। ସେ ମୋତେ ଓ ଦିଲ୍ଲୀ ପୋଲିସ କମିଶନରଙ୍କୁ ଡକେଇଲେ ଏ ବିଷୟରେ ଆଲୋଚନା କରିବା ପାଇଁ। ଆରମ୍ଭରୁ କହିଦେଲେ ଯେ ଲାଲ୍‌କିଲ୍ଲା ସୁରକ୍ଷା ଦାୟିତ୍ୱ ସି.ଆଇ.ଏସ୍.ଏଫ୍‌କୁ ଦିଆଯିବ, ସେ ବିଷୟରେ ଯୁକ୍ତି କରିବାର ନାହିଁ। ପୋଲିସ

କମିଶନର କହିଲେ ସି.ଆଇ.ଏସ୍.ଏଫ୍ ଲାଲ୍‌କିଲ୍ଲା ଦାୟିତ୍ୱରେ ରହୁ। ଟ୍ୟାକ୍ସିଷ୍ଟାଣ୍ଡ, ବସ୍‌ଷ୍ଟାଣ୍ଡ ଦାୟିତ୍ୱରେ ଦିଲ୍ଲୀ ପୋଲିସ ରହିବ। ମୁଁ ସାଙ୍ଗେ ସାଙ୍ଗେ ହଁ କଲି କାରଣ ଟ୍ରାଫିକ୍ ପରିଚାଳନା ସି.ଆଇ.ଏସ.ଏଫର ତାଲିମ୍ କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ନଥିଲା। ମୁରୁକି ହସା ଦେଇ ଶ୍ରୀ ଜଗମୋହନ ରାଜି ହେଲେ। ଆଉ ଏକ ଯୋଜନା ହାତକୁ ନେବା ପାଇଁ ଚେଷ୍ଟା କଲି, ତାହା ଥିଲା ସୁବର୍ଣ୍ଣ ଚତୁର୍ଭୁଜର ସୁରକ୍ଷା ଦାୟିତ୍ୱ। ପ୍ରଧାନମନ୍ତ୍ରୀ ବାଜପେୟୀ ମହାଶୟଙ୍କ ସ୍ୱପ୍ନ, ସାରା ଭାରତରେ ବିଶାଳ ରାସ୍ତା କରାଯିବ। ମୁଁ ଦେଖିଲି ଯେ ଶହ ଶହ କୋଟି କୋଟି ଟଙ୍କାର ସମ୍ପତ୍ତି ରାସ୍ତା କଡ଼ରେ ପଡ଼ିରହିବ, ଯେହେତୁ ଏ ସମ୍ପତ୍ତି କେନ୍ଦ୍ର ସରକାରଙ୍କର ତା'ର ସୁରକ୍ଷା ଦାୟିତ୍ୱ ସି.ଆଇ.ଏସ୍.ଏଫ୍ ନେବା ଉଚିତ୍। ସ୍ୱରାଷ୍ଟ୍ର ମନ୍ତ୍ରଣାଳୟ ଓ ଗମନା ଗମନ ମନ୍ତ୍ରଣାଳୟ ମୋତେ ସମର୍ଥନ କଲେ କିନ୍ତୁ କେତେକ ରାଜ୍ୟ ବିରୋଧ କଲେ। ସେମାନଙ୍କ ଯୁକ୍ତି ଥିଲା ଯେ ଆଇନ୍ ଶୃଙ୍ଖଳା ଓ ଅପରାଧ ନିରାକରଣ ଦାୟିତ୍ୱ ତାଙ୍କର। ତେଣୁ ପ୍ରସ୍ତାବଟି ଅଟକି ଗଲା; କିନ୍ତୁ ଅନ୍ୟ ଏକ ପ୍ରସ୍ତାବ ଦେଇ ମୁଁ ସଫଳ ହେଲି।

ପୂର୍ବରୁ ପ୍ରାକୃତିକ ବିପର୍ଯ୍ୟୟ ଦାୟିତ୍ୱ କୃଷି ବିଭାଗର ଥିଲା। କାରଣ ମରୁଡ଼ି ଓ ବଢ଼ିରେ କୃଷି କ୍ଷତିଗ୍ରସ୍ତ ହେଉଥିଲା। କିନ୍ତୁ ବଢ଼ି, ବାତ୍ୟା, ଭୂମିକମ୍ପ, ବିସ୍ଫୋରଣ ଇତ୍ୟାଦିରେ କୃଷି ବିଭାଗର ନିଜର ବାହିନୀ ନଥିଲେ ଓ ବାହିନୀ ଦେଇଥିଲେ ମଧ୍ୟ ତା'ର ପରିଚାଳନା କରିପାରିନଥାନ୍ତେ। ତେଣୁ ଏ ଦାୟିତ୍ୱ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟକୁ ଆସିଲା ଓ ସାଙ୍ଗେ ସାଙ୍ଗେ ଚାରୋଟି ବ୍ୟାଟାଲିୟନ ମଞ୍ଜୁର କରାଗଲା। ସେଥିମଧ୍ୟରୁ ୨ଟି ବ୍ୟାଟାଲିୟନ ସି.ଆଇ.ଏସ.ଏଫକୁ ମିଳିଲା ଓ ମୁଁ ପ୍ରସ୍ତାବ ଦେଲି ଯେ ଗୋଟିଏ ବ୍ୟାଟାଲିୟନ ଓଡ଼ିଶାରେ ରହିବ ଓ ଅନ୍ୟଟି ତାମିଲନାଡୁରେ । ନିକଟ ଅତୀତରେ ସୁନାମି ହୋଇଥିଲା ଓ ତାମିଲନାଡୁ ପ୍ରସ୍ତାବଟା ଗ୍ରହଣ କରାଗଲା କିନ୍ତୁ ଓଡ଼ିଶା ପାଇଁ ପ୍ରତିବାଦ। ଏଇ ବ୍ୟାଟାଲିୟନ ପାଇଁ ଉଭୟ ବେଙ୍ଗଲ ଓ ଆନ୍ଧ୍ରପ୍ରଦେଶ ଦାବି କଲେ ଓ ମୁଁ ମନ୍ତ୍ରଣାଳୟକୁ ଜଣେଇଲି ଯେହେତୁ ଆନ୍ଧ୍ରପ୍ରଦେଶ, ଓଡ଼ିଶା ଓ ବେଙ୍ଗଲ ଏହାର ଦାବିଦାର। ତେଣୁ ଏହା କେନ୍ଦ୍ର ସ୍ଥଳ (ଓଡ଼ିଶା)ରେ ରହିବା କଥା। ତାହାହେଲେ ଉଭୟ ପ୍ରଦେଶର ଆବଶ୍ୟକତା ପୂରଣ ହୋଇପାରିବ। ଦ୍ୱିତୀୟରେ ଓଡ଼ିଶାରେ ବାରମ୍ବାର ବଢ଼ି କିମ୍ବା ବାତ୍ୟା ହେଉଛି ଯାହାକି ଆନ୍ଧ୍ର ଓ ବେଙ୍ଗଲ ଠାରୁ ବହୁତ ଅଧିକ। ଏଇ ପ୍ରସ୍ତାବ ଆଗତ ହେବା ପରେ ଓଡ଼ିଶା ସରକାରଙ୍କ ଠାରୁ ଏକ ନକରାତ୍ମକ ସୂଚନା ମିଳିଲା, ଓଡ଼ିଶା ସରକାରଙ୍କର ଫାଇଲରେ ଆଦେଶ ହେଲା ଯେ ସି.ଆଇ.ଏସ.ଏଫଙ୍କ ଠାରୁ ଟଙ୍କା ମଗାଯାଉ। ଏକ ଉଚ୍ଚ ସ୍ତରୀୟ କମିଟିରେ ମୋତେ ଅପମାନ ସୂଚକ ମନ୍ତବ୍ୟ ଶୁଣିବାକୁ ମିଳିଲା। "ହଁ ସେ ରାଜ୍ୟରେ ଦାରିଦ୍ର୍ୟ ଉତ୍କଟ, କଳାହାଣ୍ଡିରେ ଛୁଆ ବିକ୍ରି ହେଉଛନ୍ତି,

ସୁନ୍ଦରଗଡ଼ରୁ ଛକରାଣୀ ରପ୍ତାନି କରାଯାଉଛି। ତେଣୁ ଟଙ୍କା ଯଦି ମାଗୁଛନ୍ତି ଦେଇଦିଅ।" ମୁଁ ସଙ୍ଗେ ସଙ୍ଗେ ଓଡ଼ିଶା ଆସି ସରକାରଙ୍କ ସଙ୍ଗେ କଥାବାର୍ତ୍ତା କଲି ଓ ମୁଣ୍ଡଳି ପାଖରେ ଶହେ ଏକର ଜମି ମାଗଣା ଦେବେ ବୋଲି ପ୍ରତିଶ୍ରୁତି ଦେବାରୁ ୩୭ କୋଟି ଟଙ୍କା ମଞ୍ଜୁର କରାଇଲି। ସେହି ସମୟରେ ରାଜସ୍ଥାନର ଦେଓଲି ଓ ମୁଣ୍ଡଳୀ ଟ୍ରେନିଂ ସେଣ୍ଟର ନାଁ ଯଥାକ୍ରମେ ରାଣାପ୍ରତାପ ଟ୍ରେନିଂସେଣ୍ଟର ଓ ଖାରବେଳ ଟ୍ରେନିଂ ସେଣ୍ଟର ରଖିବା ପାଇଁ ମଞ୍ଜୁର କରେଇଲି।

ସରକାର ନ୍ୟାସନାଲ ସିକ୍ୟୁରିଟି ଗାର୍ଡ୍ ଗଠନ କରିଥିଲେ ସନ୍ତ୍ରାସବାଦଙ୍କ ମୁକାବିଲା କରିବା ପାଇଁ। ଏହା ଏକ ଶୃଙ୍ଖଳିତ ଓ ଦକ୍ଷ ବାହିନୀ ଓ ସବୁବେଳେ ଦଳେ ଫୋର୍ସ ପ୍ରସ୍ତୁତ ହୋଇଥାନ୍ତି ପରିସ୍ଥିତିର ମୁକାବିଲା କରିବା ପାଇଁ। ଦୁର୍ଭାଗ୍ୟବଶତଃ ସେମାନଙ୍କ ମଧ୍ୟରୁ ଅନେକଙ୍କୁ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଓ କେତେଜଣ ଅଫିସରଙ୍କର ସୁରକ୍ଷା ଦାୟିତ୍ୱରେ ରଖାଗଲା। ଏହା ଏକ ଅମୂଲ୍ୟ ମାନବ ସମ୍ପଦର ଅପଚୟ ହେଉଥିବାରୁ ସରକାର ନିଷ୍ପତ୍ତି ନେଲେ ଏ ଦାୟିତ୍ୱ ସି.ଆଇ.ଏସ.ଏଫକୁ ଦିଆଯିବ। ଏଥିପାଇଁ କେନ୍ଦ୍ରୀୟ ସୁରକ୍ଷା ବାହିନୀ, ଇଣ୍ଡୋ ତିବ୍ବତୀୟ ସୀମାନ୍ତ ସୁରକ୍ଷା ବାହିନୀଙ୍କ ପକ୍ଷରୁ ଚେଷ୍ଟା ଚାଲିଥିଲା; କିନ୍ତୁ ସେମାନଙ୍କ ଅଫିସରମାନଙ୍କ ଭାଷାରେ 'ସାଲା ଓଡ଼ିଆ ୟେ ବି ମାର୍‌ଲିୟା।' ଦିଲ୍ଲୀରେ ଓଡ଼ିଆମାନେ ହେଲେ ବଣ ମଣିଷ, କେହି ଜଣେ ଓଡ଼ିଆ ଯଦି କୌଣସି ବିଷୟରେ କୃତିତ୍ୱ ହାସଲ କଲା ଭ୍ରୁକୁଞ୍ଚନ ହୁଏ ଅନ୍ୟମାନଙ୍କର।

ପ୍ରାକୃତିକ ବିପର୍ଯ୍ୟୟ ମୁକାବିଲା ଓ ଭି.ଆଇ.ପି.ମାନଙ୍କର ସୁରକ୍ଷା ପାଇଁ ସ୍ୱତନ୍ତ୍ର ତାଲିମ୍ ଆବଶ୍ୟକ, ସେଥିପାଇଁ ବିଦେଶରୁ ତାଲିମ୍‌ଦାତାମାନଙ୍କୁ ଅଣାଗଲା ହାଇଦ୍ରାବାଦ୍‌କୁ ଓ ସେମାନଙ୍କ ଠାରୁ ଟ୍ରେନିଂ ପାଇ ସି.ଆଇ.ଏସ.ଏଫ ଅଫିସର ଏବଂ ଜୱାନମାନେ ଆତ୍ମବିଶ୍ୱାସ ସହିତ ବ୍ୟାଟାଲିୟନକୁ ଗଲେ।

ଭି.ଆଇ.ପି.ମାନଙ୍କ ସୁରକ୍ଷା ଦାୟିତ୍ୱ ପାଇଁ ତିନୋଟି ସ୍ୱତନ୍ତ୍ର ସଂସ୍ଥା ଅଛନ୍ତି। ଭି.ଆଇ.ପିମାନେ ମଧ୍ୟ ବିଭିନ୍ନ କିସମର। ୱାଇ, ଜେଡ୍ ଓ ଜେଡ୍ ପ୍ଲସ୍। ପ୍ରଧାନମନ୍ତ୍ରୀ ଓ ବହୁତ କମ୍ ଜଣଙ୍କର ସୁରକ୍ଷା ଦାୟିତ୍ୱ ଦିଆଯାଇଛି ଏସ୍‌ପିଜିକୁ ଯାହାର ମୁଖ୍ୟ ଜଣେ ଅତିରିକ୍ତ ଡି.ଜି.। ଆଉ କେତେଜଣ ଅଧିକାରୀ ଓ ଅଫିସରଙ୍କର ସୁରକ୍ଷା ଦାୟିତ୍ୱ ନେଇଥିଲା ଏନ୍.ଏସ୍.ଜି ଓ ସେମାନଙ୍କ ମଧ୍ୟରେ ସୋନିଆଗାନ୍ଧି ଥିଲେ। ଅଧିକାଂଶ ଅଧିକାରୀଙ୍କ ସୁରକ୍ଷା ଦାୟିତ୍ୱ ସି.ଆଇ.ଏସ୍‌ଏଫ୍‌କୁ ଦିଆଗଲା। ଅଧିକାରୀ, ବିମାନବନ୍ଦର ଓ ସରକାରୀ ଅଟ୍ଟାଳିକା (ବିଶେଷତଃ ନର୍ଥ ବ୍ଲକ, ସାଉଥ୍ ବ୍ଲକ, ତିଳକ ଭବନ, ଲାଲ କିଲ୍ଲା) ଇତ୍ୟାଦି ସୁରକ୍ଷାର ଦାୟିତ୍ୱ ବହୁତ, ଅଭିଯୋଗ ମଧ୍ୟ ବହୁତ। ଅନେକ ଏମ୍‌ପି ଥାଆନ୍ତି ଯେଉଁମାନେ ଭାବନ୍ତି ଯେ ସୁରକ୍ଷା ଦାୟିତ୍ୱରେ ଥିବା କର୍ମୀମାନେ ତାଙ୍କୁ ନିଶ୍ଚୟ

ଜାଣିବା କଥା। ପରିଚୟ ପତ୍ର ମାଗିବା ମାତ୍ରେ ରାଗରେ ପଞ୍ଚମ। 'ମୋତେ ଆପଣ ଚିହ୍ନି ନାହାଁନ୍ତି କାହିଁକି ପରିଚୟ ପତ୍ର ମାଗି ସମୟ ନଷ୍ଟ କରୁଛନ୍ତି?' 'ବିଚରା କନେଷ୍ଟବଳ କିମ୍ବା ହେଡ୍ କନେଷ୍ଟବଳ କେମିତି ବା ଉତ୍ତର ଦେବ ଯେ ଦିଲ୍ଲୀରେ ୮ ଶହ ପାଖାପାଖି ଏମ୍‌ପି ଗୋଡ଼ିଟିଏ ଉପରକୁ ଫୋପାଡ଼ି ଦେଲେ କେହି ଜଣେ ଏମ୍‌ପିଙ୍କ ଦେହରେ ପଡ଼ିବ। ପୁଣି ସବୁ ଏମ୍‌ପି ଅମିତାଭ ବଚନ କି ରାଜେଶ ଖାନ୍ନା ନୁହଁନ୍ତି ଯେ ସମସ୍ତେ ଜାଣିବେ। କିନ୍ତୁ ଯୁକ୍ତିତର୍କ କରି ଲାଭ ନାହିଁ। ଦୁଃଖ ପ୍ରକାଶ କରିଦେଲେ ହେଲା। ଏଇ ନେତାମାନଙ୍କର କ୍ରୋଧ ଦିଆସିଲି କାଠିପରି। ଫୁର୍ କିନା ଜଳେ, ଦୁଃଖ ପ୍ରକାଶ କରିବା ମାତ୍ରେ ଲିଭିଯାଏ। ଥରେ ଜଣେ ଏମ୍‌ପି ହାଇଦ୍ରାବାଦ ବିମାନ ବନ୍ଦରକୁ ଗଲେ, ସାଙ୍ଗରେ ଦଶ ବାରଜଣ ସମର୍ଥକ। ସେମାନଙ୍କ ଟିକେଟ୍ ନାହିଁ କି ପାସ୍ ନାହିଁ। ୨୦ ଟଙ୍କା ଦେଲେ ପାସ୍ ମିଳିବ; କିନ୍ତୁ ଭାରତବର୍ଷରେ ବଡ଼ଲୋକଙ୍କର ମାଗଣା ସିନେମା କିମ୍ବା ସର୍କସ ଦେଖିବା ବିନା ଟିକେଟ୍‌ରେ ବିମାନ ବନ୍ଦରରେ ପଶିବା, ଟ୍ରାଫିକ୍ ନିୟମକୁ ଉପେକ୍ଷା କରିବା ଧାଡ଼ି ନମାନି ସିଧାସଳଖ ପଶିଯିବା ଅଭ୍ୟାସ ଅଛି। ହାଇଦ୍ରାବାଦରେ ସମର୍ଥକମାନେ ନେତାଙ୍କୁ ଜିନ୍ଦାବାଦ କହିବାରେ ଏତେ ବ୍ୟସ୍ତ ଥିଲେ ଯେ ସୁରକ୍ଷା କର୍ମୀଙ୍କର ପ୍ରତିବାଦ ତାଙ୍କ କାନରେ ପଡ଼ିଲା ନାହିଁ। ସେମାନେ ଏମ୍‌ପିଙ୍କୁ ଛାଡ଼ି ବାକି ସମସ୍ତଙ୍କୁ ରୋକି ଦେଲେ। ଏମ୍‌ପି ଜିଦ୍ ଧରିଲେ ଯେ ସମର୍ଥକମାନେ ବିମାନ ବନ୍ଦରରେ ପଶିବେ। ଟିକେଟ୍ ନଥିଲେ କ'ଣ ହେଲା? ସି.ଆଇ.ଏସ୍.ଏଫ୍‌ର ଜଣେ ଅଫିସର ମନା କରିବାରୁ ଚଟାଣରେ ଧାରଣା ଦେଇ ବସି ପଡ଼ିଲେ। ମୁଁ ଦିଲ୍ଲୀରେ ଜଣେ ଦାନ୍ତ ଡାକ୍ତରଙ୍କ ପାଖକୁ ଯାଇଥିଲି। ତା' ପରଦିନ ସକାଳେ ମୁଁ ହାଇଦ୍ରାବାଦ ଯିବି ଓ ସ୍ୱତନ୍ତ୍ର ବିମାନରେ ଶ୍ରୀଯୁକ୍ତ ଆଡ଼୍‌ୱାଣୀ ଯିବେ। ହାଇଦ୍ରାବାଦ୍‌ରେ ଆନ୍ଧ୍ର ପୋଲିସ୍‌ର ଏକାଡ଼େମୀ ପରିଦର୍ଶନ କରି କେନ୍ଦ୍ର ଶିଳ୍ପ ନିରାପତ୍ତାବାହିନୀର ଏକାଡ଼େମୀକୁ ଆସିବେ ଓ ମୁଁ ତାଙ୍କୁ ସ୍ୱାଗତ କରିବି। ଏମିତି କାର୍ଯ୍ୟକ୍ରମ ଥିବା ସମୟରେ ଜଣେ ଏମ୍‌ପି ଧାରଣାରେ ବସିବା ଖବରକୁ ଗଣମାଧ୍ୟମ କି ରୂପ ଦେଇଥାନ୍ତା କେଜାଣି? ଏମ୍‌ପି ଶ୍ରୀଯୁକ୍ତ ଆଡ଼୍‌ୱାଣୀଙ୍କୁ ଫୋନ୍ କରି ଜଣାଇଲେ ଯେ ତାଙ୍କ ସମର୍ଥକମାନଙ୍କୁ ଅପମାନ ଦିଆଗଲା ଓ ତାଙ୍କ ଅଫିସ୍ ମୋତେ ଏକଥା ଜଣେଇ ଦେବାରୁ ମୁଁ ହାଇଦ୍ରାବାଦର ସିନିୟର କମାଣ୍ଡାଣ୍ଟ ସାକ୍‌ସେନାଙ୍କ ସାଙ୍ଗେ କଥା ହେଲି। ସାକ୍‌ସେନା ଧୀରସ୍ଥିର ଓ ଦକ୍ଷ ଅଫିସର। ସେ ଏମ୍‌ପିଙ୍କ ସାଙ୍ଗେ କଥା ହେବାରୁ ଏମ୍‌ପି କହିଲେ 'ହେଲା ମୋ' ସମର୍ଥକମାନେ ଭୁଲ୍ କଲେ କିନ୍ତୁ ଆପଣଙ୍କ ତରଫରୁ କେହି ଜଣେ ଅଫିସର ମୋତେ ରିସିଭ୍ କଲେନାହିଁ କାହିଁକି?' କମାଣ୍ଡାଣ୍ଟ ଦୁଃଖ ପ୍ରକାଶ କରିବାରୁ କୋପ ଶାନ୍ତ ହେଲା ଓ କମାଣ୍ଡାଣ୍ଟଙ୍କୁ ପ୍ରଶଂସା କରି ସେ ମୋତେ ଫୋନ୍ କଲେ। ଏଇଭଳି କେତେକ ଅପ୍ରୀତିକର ପରିସ୍ଥିତି ହୁଏ ଭିଆଇପିଙ୍କ

ସୁରକ୍ଷାରେ । ଯେହେତୁ ଏ ଦାୟିତ୍ୱ ମୋ' ସମୟରେ ଅଣାଗଲା ସେମାନଙ୍କୁ ନିର୍ଦ୍ଦିଷ୍ଟ ନିୟମାବଳୀ ଦେବାର ଦାୟିତ୍ୱ ବି ଆମର ଥିଲା। ମୁଁ କଡ଼ା ନିର୍ଦ୍ଦେଶ ଦେଇଥିଲି ଯେ ଭି.ଆଇ.ପିଙ୍କର ଫାଇଲ୍ ବ୍ୟାଗ୍ ଆଟାଚି ଓ କୌଣସି ବ୍ୟକ୍ତିଗତ ଜିନିଷ ଧରିବ ନାହିଁ। କାରଣ ଥିଲା ସ୍ପଷ୍ଟ, ଯଦି ସିକ୍ୟୁରିଟି ଅଫିସର ଆଟାଚି ଧରି ବୁଲିଲା ତେବେ ସେ କି ସୁରକ୍ଷା ଦେବ ? ଦ୍ୱିତୀୟରେ ଭି.ଆଇ.ପିଙ୍କ ପାଖରେ କୌଣସି ସୁରକ୍ଷା କର୍ମଚାରୀ ତିନି ମାସରୁ ଅଧିକା ରହିବେ ନାହିଁ। ଏମାନେ ମାସ ମାସ ବର୍ଷ ବର୍ଷ ଧରି ନେତାଙ୍କ ପାଖରେ ରହିଲେ ବିଶୃଙ୍ଖଳିତ ହେବେ, ସୁରକ୍ଷା ଦେବା କୌଶଳ ଭୁଲିଯିବେ ଓ ରାଜନୀତି ଶିଖିବେ। ଥରେ ରାଜନୀତି ଶିଖିଲେ ତା'ର ଆନୁସଙ୍ଗିକ ବଦଳି ଇତ୍ୟାଦି କହି ପଇସା ସଂଗ୍ରହ କରିବାର ଦକ୍ଷତା ହାସଲ କରିବେ। କିନ୍ତୁ ସୁରକ୍ଷା ପାଉଥିବା ବଡ଼ ବଡ଼ ଲୋକମାନେ ସୁରକ୍ଷା କର୍ମୀଙ୍କୁ ଛାଡ଼ିବାକୁ ନାରାଜ । ଯିଏ ରହିଲା ସିଏ ରହିଲା। ଅନେକ ରାଜ୍ୟରେ ମୁଖ୍ୟମନ୍ତ୍ରୀମାନଙ୍କର ମଧ୍ୟ ଏ କୁ-ଅଭ୍ୟାସ ଅଛି। ତାଙ୍କ ପାଇଁ ସୁରକ୍ଷା ଦେବା ଗୌଣ; କିନ୍ତୁ ଅନୈତିକ କାର୍ଯ୍ୟରେ ସାହାଯ୍ୟ କରିବା ମୁଖ୍ୟ। ଷ୍ଟେନୋ, ପିଏ, ଡ୍ରାଇଭର, ସୁରକ୍ଷାକର୍ମୀଙ୍କ ପ୍ରାଦୁର୍ଭାବ ବହୁତ।

ବହୁତ ଦିନ ତଳେ ମୁଁ ଗୋଟିଏ ଜିଲ୍ଲାରେ ଏସ୍‌ପି ଥିଲାବେଳେ ମୁଖ୍ୟମନ୍ତ୍ରୀ ବ୍ୟୋମଯାନରେ ଆସିଥିଲେ। ସେ ରୁମ୍ ଭିତରେ ଲଞ୍ଚ ଖାଇଲେ। ବାରଣ୍ଡାରେ ଏକ ସ୍ୱତନ୍ତ୍ର ଟେବୁଲ୍‌ରେ କଲେକ୍ଟର, ମୁଁ, ଏସ୍‌ଡିଓ, ଡିଏସ୍‌ପି ଓ ସ୍ପେଶାଲ ବ୍ରାଞ୍ଚ ଡିଏସ୍‌ପି ଖାଇଲୁ। ଅନ୍ୟାନ୍ୟ କର୍ମଚାରୀଙ୍କ ସହିତ ମୁଖ୍ୟମନ୍ତ୍ରୀଙ୍କର ସୁରକ୍ଷା ଅଫିସର (କନେଷ୍ଟବଳରୁ ଉଠି ଉଠି ଡ୍ରିଲି ସବ୍‌ଇନ୍‌ସ୍ପେକ୍ଟର ପାହ୍ୟା ପର୍ଯ୍ୟନ୍ତ ଯାଇଥିଲେ) ଆଉ ଏକ ସ୍ଥାନରେ ଟେବୁଲ୍ ଚୌକିରେ ବସିଲେ। କିନ୍ତୁ କଥାଟାକୁ ସେ ସହଜରେ ଗ୍ରହଣ କଲେନାହିଁ। ଜଣେ ସବ୍‌ଇନ୍‌ସ୍ପେକ୍ଟର ପାହ୍ୟାର ଅଫିସର ଡିଏସ୍‌ପିଙ୍କ ସାମ୍ନାରେ ବସିବ ନାହିଁ। ଠିଆ ହୋଇ ରହିବ। କିନ୍ତୁ ଏ ଭଦ୍ରଲୋକଙ୍କ ଇଚ୍ଛା ସେ କଲେକ୍ଟର, ଏସ୍‌ପିଙ୍କ ସହିତ ଲଞ୍ଚ ଖାଇଥାନ୍ତେ। ତାଙ୍କୁ ଅନ୍ୟ ଟେବୁଲରେ ବସାଇବାରୁ ପ୍ରତିବାଦ ସ୍ୱରୂପ ସେ ଲଞ୍ଚ ଖାଇଲେ ନାହିଁ। 'ମୁଁ ବହୁତ ଜିଲ୍ଲାରେ ବହୁତ ବଡ଼ ବଡ଼ ଲୋକଙ୍କ ସାଙ୍ଗରେ ଖାଇଛି' ବୋଲି ଦୃଢ଼ ସ୍ୱରରେ ଘୋଷଣା କଲେ। ତା' ସଙ୍ଗେ ସଙ୍ଗେ ମନ୍ତବ୍ୟ ଦେଲେ ଯେ ଏ ଜିଲ୍ଲାର ଅଫିସରମାନେ ଭଦ୍ରାମି ଶିଖି ନାହାଁନ୍ତି। କେହି ତାଙ୍କୁ ବାଧା ଦେଲେନାହିଁ। ବିଚରା କଲେକ୍ଟର ତାଙ୍କୁ ଯାଇ ଅନୁରୋଧ କଲେ ତଥାପି ସେ ମନାକଲେ। ବାମନ ଋଣପା ଚଢ଼ି ନିଜକୁ ଡ଼େଙ୍ଗା ମନେ କଲା ଭଳି ଏକଥା। ପରେ ଏକ ଜିଲ୍ଲାରେ ସେ ମୋ' ଅଧିନରେ କାମ କଲେ। ସେତେବେଳେ ପ୍ରଶ୍ନ ପଚାରିଲେ ଉତ୍ତର ଦେବାରେ ପାଟି ଖନି ମାରିଯାଉଥିଲା। ପ୍ରଭାବ ବଢ଼ିଗଲେ ମଣିଷ ନିଜର ଭାରସାମ୍ୟ ହରାଏ। ଏଭଳି

ଉଦାହରଣ ବହୁତ ଦେବାକୁ ମିଳେ। ମୁଁ ଏସ୍‌ପି ଥିଲା ବେଳେ ଡି.ଆଇ.ଜି ଅଫିସର ଜଣେ କ୍ଲର୍କ ଫୋନ୍ କରି କ'ଣ ବିପିନ ବାବୁ ସବୁ ଭଲ ବୋଲି ପଚାରିଥିଲେ। ଅଳ୍ପ କିଛି ବର୍ଷ ପରେ ସେ ଉଦ୍ଧତ କ୍ଲର୍କ ମୋ' ଅଧିନରେ କାମ କଲେ। ସେତେବେଳକୁ ତାଙ୍କ ନାଁରେ ୨ଟା ପ୍ରୋସିଡ଼ିଂ ଓ ମୋତେ ଅନୁରୋଧ କଲେ କୋହଳ କରିବାକୁ। ସେତେବେଳେ ମୁଁ ବିପିନବାବୁ ବଦଳରେ ହଜୁର ହୋଇଗଲି। ଏ ଲୋକଟି ଡି.ଆଇ.ଜିଙ୍କ ପ୍ରିୟ ହୋଇଥିବାରୁ ଉତ୍ପାତ ହେଉଥିଲା।

ଏଇସବୁ କଥା ମନେ ଥିବାରୁ ମୁଁ ଆଦେଶ ଦେଲି ତିନି ମାସରେ ସୁରକ୍ଷା କର୍ମୀ ତା' ମନକୁ ଫେରି ଆସିବେ ଓ ମୁଁ ଥିବା ପର୍ଯ୍ୟନ୍ତ ଆଦେଶ କାର୍ଯ୍ୟକାରୀ ହେଲା।

ମୁଁ ଦେଖିଲି ଯେ ସିଆଇଏସଏଫକୁ ଶକ୍ତିଶାଳୀ କରିବାକୁ ହେଲେ ଟ୍ରେନିଂ ମଜଭୁତ କରିବାକୁ ପଡ଼ିବ। ବିଭିନ୍ନ ଟ୍ରେନିଂ ସ୍କୁଲ ଓ କଲେଜ ଯାଇ ତାଲିମର ମାନ ବୃଦ୍ଧି କରିବା ପାଇଁ ଚେଷ୍ଟା କଲୁ। ସେଣ୍ଟ୍ରାଲ ପି.ଡବ୍ଲ୍ୟୁ.ଡି ଡି.ଜିଙ୍କ ସଙ୍ଗେ ସାକ୍ଷାତ କରି ସି.ଆଇ.ଏସ୍.ଏଫ୍ ପାଇଁ ହେଉଥିବା ଘରଗୁଡ଼ିକର ନିର୍ମାଣ ତ୍ୱରାନ୍ୱିତ କରାଗଲା। ଓଡ଼ିଶା ପରି ଦିଲ୍ଲୀରେ କାର୍ଯ୍ୟଶୈଳୀ। କାଗଜ କଲମ ଓ ପ୍ରସ୍ତାବର ଆବଶ୍ୟକତା ଓ ଗୁରୁତ୍ୱ ଅପେକ୍ଷା ବିଭିନ୍ନ ଅଧିକାରୀଙ୍କ ସହିତ ବ୍ୟକ୍ତିଗତ ସମ୍ପର୍କ ବେଶି କାମ ଦେଉଥିଲା। ଏସବୁ କରିବାରେ ଆଇଏଏସ ଅଫିସରମାନେ ପାରଙ୍ଗମ କାରଣ ସେମାନେ ସମସ୍ତଙ୍କୁ ଚିହ୍ନନ୍ତି ଓ ସାହାଯ୍ୟ କରନ୍ତି। ଜଣେ ଆଇପିଏସ ଅଫିସର ପକ୍ଷେ ତାହା କରିବା କଷ୍ଟ। ସେଥିପାଇଁ ବ୍ୟକ୍ତିଗତ ସମ୍ପର୍କ ରଖିବାକୁ ପଡ଼େ। ଅନେକ ସମୟରେ ମଧ୍ୟଶ୍ରେଣୀୟ ଅଫିସର ଯଥା ଆଇଜି, ଡି.ଆଇ.ଜି ସାଲ୍ୟୁଟ୍ - କ୍ଷୁଧାର୍ଥ ସେକ୍ରେଟେରୀ, ଜଏଣ୍ଟ ସେକ୍ରେଟେରୀଙ୍କୁ ଦେଖାକରି ସାଲ୍ୟୁଟ୍‌ଟିଏ ମାରିଦେଲେ ପ୍ରସ୍ତାବଗୁଡ଼ିକ ତପ୍ତ ବୈତରଣୀ ପାର ହୋଇଯାନ୍ତି। ଜଣେ ଜଣେ ମନ୍ତ୍ରୀଙ୍କର ଦରକାର ଯେ ସି.ଆଇ.ଏସ୍.ଏଫର ଜଣେ ଅଫିସର ଏରୋପ୍ଲେନ୍ ପର୍ଯ୍ୟନ୍ତ ଛାଡ଼ିବା ପାଇଁ ଯାଆନ୍ତୁ। ସେସବୁ ନକଲେ ପ୍ରସ୍ତାବଗୁଡ଼ିକ ଉପରେ ବହୁତ ପ୍ରତିକୂଳ ମନ୍ତବ୍ୟ ହୁଏ। ତେଣୁ ବୃହତ ସ୍ୱାର୍ଥ ରକ୍ଷା ପାଇଁ ଅଳ୍ପ ପରିମାଣରେ ଆତ୍ମ ସମ୍ମାନକୁ ହରାଇବାକୁ ପଡ଼େ। ଜଏଣ୍ଟ ସେକ୍ରେଟେରୀ ଓ ଡାଇରେକ୍ଟରଙ୍କୁ ରୋଷେୟା ଦିଆଯାଇଥାଏ, ସେମାନେ ବିଭାଗର ପ୍ରସ୍ତାବ ଉପରେ କାଳି ଛିଟା ପକାଇବା ମାତ୍ରେ କୁକ୍ ବେମାର ପଡ଼ିଯାଇ ଘରକୁ ଯାଇପାରେ ନାହିଁ। ଘରେ ତାଙ୍କ ମେମ୍‌ସାହେବ୍‌ଙ୍କ ମାର୍ ନମାର୍ ପ୍ରତିକ୍ରିୟା ଦେଖି (ମୁଁ କିଟି ପାର୍ଟିକୁ ଯିବି ନା ତୁମ ରୋଷେଇ କରୁଥିବି ?) ବିଚରା ଅଫିସରଟି ଆଇ.ଜି. କିମ୍ବା ଡି.ଆଇ.ଜିଙ୍କୁ ବିନୟ ଅନୁରୋଧ କରେ କାହାକୁ ପଠେଇବା ପାଇଁ। ପ୍ରତି ବଦଳରେ ଫାଇଲ୍‌କୁ ତୁରନ୍ତ ପଠେଇବା ପାଇଁ ଅନୁରୋଧ ପାଏ ଏବଂ ତୁରନ୍ତ କରିଦିଏ। ଆମ କର୍ମଚାରୀମାନେ ନିଜକୁ ପବ୍ଲିକ୍ ସର୍ଭେଣ୍ଟ ନକହି ଗଭର୍ଣ୍ଣମେଣ୍ଟ ସର୍ଭେଣ୍ଟ

କହନ୍ତି, କିନ୍ତୁ ଗଭର୍ଣ୍ଣମେଣ୍ଟ ହେଉ କି ପବ୍ଲିକ୍ ହେଉ ସେମାନଙ୍କ ସ୍ୱାର୍ଥ ଅପେକ୍ଷା ନିଜ ସ୍ୱାର୍ଥ ଏମାନେ ବେଶି ଜଗନ୍ତି। ତା' ସାଙ୍ଗେ ମ୍ୟାଡ଼ାମ୍‌ଙ୍କର କ୍ରୋଧର ବାରୋମିଟରଟାକୁ ସଦାବେଳେ ଅନେଇଥାନ୍ତି।

ଥରେ ହରିୟାନା ମୁଖ୍ୟମନ୍ତ୍ରୀଙ୍କ ଠାରୁ ନିମନ୍ତ୍ରଣ ଆସିଲା ଭିଓ୍ୱାନୀରେ ସର୍ବଭାରତୀୟ ପୋଲିସ ଖେଳ ପ୍ରତିଯୋଗିତାରେ ଅନ୍ୟତମ ଅତିଥି ଭାବେ ଯୋଗଦେବା ପାଇଁ। ମୁଁ ଜାଣେ ଯେ ଏଭଳି ପ୍ରତିଯୋଗିତାରେ ବିଭିନ୍ନ ରାଜ୍ୟରୁ ଆସିଥିବା ୧୦୦ ଦୁଇଶହ ଜଣ ପ୍ରତିଯୋଗୀ କେବଳ ଥାଆନ୍ତି ଓ ସାରା ଷ୍ଟାଡ଼ିୟମ୍‌ରେ କୁଆ ଉଡ଼ନ୍ତି। ହରିୟାନା ପୋଲିସର ଫୋର୍ସ ଆସି ଆମ ଦୁଇଜଣ (ମୁଁ ଓ ମୋ' ସ୍ତ୍ରୀ)ଙ୍କୁ ସକାଳୁ ନେଇଗଲେ। ବାଟରେ ଯେତେ ପୋଲିସ ଷ୍ଟେସନ ପଡ଼ିଲା ସବୁଠାରେ ଥାନାବାବୁ ଥାନା ଆଗରେ ଠିଆ ହୋଇ ସମ୍ମାନ ଦେଖାଇଲେ। ଆଉ ଏକ ସ୍ଥାନରେ ଆଇ.ଜି, ଏ.ଆଇ.ଜି, ଏସ୍.ପି ଜଳଯୋଗର ବନ୍ଦୋବସ୍ତ କରିଥିଲେ। ଏସବୁ ଦେଖି ମୁଁ ପ୍ରମାଦ ଗଣିଲି ମହାଭାରତରେ ନିଜ ଅଜାଣତରେ ଦୁର୍ଯ୍ୟୋଧନଙ୍କର ବିପୁଳ ସମ୍ବର୍ଦ୍ଧନା ଗ୍ରହଣ କରି ଶେଷରେ ନିଜ ଭଣଜାମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ଶଲ୍ୟ ବାଧ ହେବା ପରି ମୁଁ ହେବିନାହିଁ ତ ? ଭାବିଲି ,ମୋ' ପାଖରେ ହରିୟାଣା ସରକାରଙ୍କ କାମ କ'ଣ ? ଭିଓ୍ୱାନିରେ ପହଞ୍ଚିବା ପରେ ଷ୍ଟାଡ଼ିୟମରେ ପଶିବା କାଠିକର ପାଠ ହେଲା। ଗେଟ୍‌ର ପଚାଶ ଗଜ ଦୂରରୁ ଆମ ଗାଡ଼ିକୁ ଅଟକେଇ ଶଙ୍ଖ ଫୁଙ୍କି ପେଁକାଳି ବଜେଇ ଆମକୁ ନିଆଗଲା। ଦୁଇପଟେ ଠିଆ ହୋଇଥିବା ଝିଅମାନେ ପୁଷ୍ପ ବୃଷ୍ଟି କଲେ। ମୁଖ୍ୟମନ୍ତ୍ରୀଙ୍କ ପୁଅ ଓ ଡି.ଜି ଶ୍ରୀ ଶର୍ମା ସ୍ୱାଗତ କଲେ। ଷ୍ଟାଡ଼ିୟମ ସାରା ଅନେଇଲି, ସୋରିଷ ପକାଇବା ପାଇଁ ଜାଗା ନାହିଁ। ଅନେକ ଷ୍ଟାଡ଼ିୟମ ଛାତ ଉପରେ ବସିଥାନ୍ତି କାରଣ ସେଦିନ କୁସ୍ତି ପ୍ରତିଯୋଗିତା ହେବାର ଥିଲା। ହରିୟାଣାବାସୀଙ୍କର କୁସ୍ତି ପ୍ରତି ଏଭଳି ସମ୍ମାନ ଓ ଆଦର ଯୋଗୁଁ ତାଙ୍କ ପ୍ରଦେଶରୁ ଅନେକ ଅନ୍ତର୍ଜାତୀୟ ସ୍ତରରେ ସମ୍ମାନିତ ହୋଇଛନ୍ତି। ଖେଳ ସରିବା ପରେ ପୋଲିସ ଲାଇନ୍‌ରେ ହେଲା ଭୋଜି। ସେଠି ମଧ୍ୟ ରାଜକୀୟ ସମ୍ମାନ। ରାତି ଅଢ଼େଇଟା ବେଳେ ଘରକୁ ଫେରିଲୁ। ପରେ ବୁଝିଲି ଯେ ହରିୟାଣା ସରକାରଙ୍କ କୌଣସି ସ୍ୱାର୍ଥ ନଥିଲା, ସେମାନେ ସି.ଆଇ.ଏସ୍.ଏଫ୍‌ରେ ଖେଳ ପ୍ରତି ଉତ୍ସାହ ଦେଉଥିବା ଦେଖି ମୋତେ ପ୍ରଶଂସିତ କରିବା ପାଇଁ ଚାହୁଁଥିଲେ।

ଦିଲ୍ଲୀରେ ବିଭିନ୍ନ ବାହିନୀର ଜନ୍ମ ଦିବସ ପାଳନ କରାଯାଏ ସୁଦୃଶ୍ୟ ପ୍ୟାରେଡ଼ ଓ ରାତିରେ ଡିନର କରି। ସି.ଆଇ.ଏସ୍.ଏଫ୍‌ର ମଧ୍ୟ କରାଗଲା ମାର୍ଚ୍ଚ ୮ ତାରିଖରେ। ଶ୍ରୀଯୁକ୍ତ ଆଡ଼ୱାଣୀ ଆସିଲେ ମୁଖ୍ୟଅତିଥି ହୋଇ ଓ କ୍ୟାବିନେଟ୍ ସେକ୍ରେଟେରୀଙ୍କ ସମେତ ବହୁ ଉଚ୍ଚ ପଦାଧିକାରୀ ଆସିଥିଲେ। ଏଥର ଆମର ପ୍ୟାରେଡ଼ ପରେ ବିଭିନ୍ନ

କୌଶଳ ନୂତନ ଢ଼ାଞ୍ଚାରେ କରିଥିଲୁ। ଅପହରଣ ହୋଇଥିବା ଏକ ବିମାନରୁ ଯାତ୍ରୀମାନଙ୍କୁ ଉଦ୍ଧାର କରିବା ଓ ଜଣେ ଭି.ଆଇ.ପିଙ୍କୁ ଆତତାୟୀଙ୍କ କବଳରୁ ଉଦ୍ଧାର କରିବାର ନମୁନା ପ୍ରଦର୍ଶନ କରାଗଲା। ଉପ ପ୍ରଧାନମନ୍ତ୍ରୀ ଆଡ଼ଓ୍ୱାଣୀଜୀ ବହୁତ ଖୁସି ହେଲେ ଓ ଯେତେବେଳେ ସାମ୍ବାଦିକମାନେ ପଚାରିଲେ 'ସିଆଇଏସଏଫ ଯାହା ଦେଖାଉଛି ପ୍ରକୃତରେ କ'ଣ ସେଇଆ କରିପାରିବ?' ଆଡ଼ଓ୍ୱାଣୀ ମହାଶୟ ଉତ୍ତର ଦେଲେ ଯା'ଠାରୁ ବେଶି ଭଲ କରିବ। ଏଇ ସମୟରେ ଥରେ ଆଡ଼ଓ୍ୱାଣୀଙ୍କ ଅଫିସରୁ ଫୋନ୍ ଆସିଲା ଯେ ଆଡ଼ଓ୍ୱାଣୀ ସାହେବ ସିଆରପିଏଫ୍ ପ୍ୟାରେଡ୍ ପାଇଁ ହେଲିକପ୍ଟରରେ ଯିବେ ଆପଣ ଆସିଲେ ଭଲ ହୁଅନ୍ତା। ମୁଁ ହେଲିପ୍ୟାଡ଼ରେ ଅପେକ୍ଷା କଲି। ଆଡ଼ଓ୍ୱାଣୀଜୀ ହେଲିକପ୍ଟରରେ ପଶିବା ପରେ ମୁଁ ପଶିଲି। ମୋତେ ଦେଖି ସେ ସାମାନ୍ୟ ହସିଲେ କିନ୍ତୁ କିଛି କଥାବାର୍ତ୍ତା କଲେନାହିଁ। ସ୍ୱଭାବତଃ ସେ ଖୁବ୍ କମ୍ କଥାବାର୍ତ୍ତା କରନ୍ତି। ଡିଜି ମାନଙ୍କ ସଙ୍ଗେ କଥାବାର୍ତ୍ତା ହେବା ବେଳେ ନାଁ ଧରି ଡାକିଲେ ଜୀ ଯୋଡ଼ନ୍ତି ଯଥା ମିଶ୍ରଜୀ, ଶର୍ମାଜୀ ଇତ୍ୟାଦି। ବେଳେ ବେଳେ ତାଙ୍କ ଘରେ ସୁନ୍ଦରାକାଣ୍ଡ ପଢ଼ାହେବା, ଭକ୍ତି ସଙ୍ଗୀତ ବୋଲା ହେବାର ଆୟୋଜନ ହୁଏ ଓ ସେଥିପାଇଁ ନିମନ୍ତ୍ରଣ ମିଳେ। ମୁଁ ଥରେ ଦୁଇଥର ଯାଇଛି। ଆଡ଼ଓ୍ୱାଣୀ ସାହେବଙ୍କ ସାଙ୍ଗରେ ହେଲିକପ୍ଟରରେ ଯିବା ଓ ଥରେ ଦୁଇଥର ତାଙ୍କ ଘରକୁ ଯିବାରେ ଅନେକ ଅଫିସରଙ୍କୁ ଅନୁମାନ ଓ ସନ୍ଦେହର ଇନ୍ଧନ ଯୋଗାଇଲା। ହଠାତ୍ ମୁଁ ଦେଖିଲି ଯେ ସି.ବି.ଆଇର ଅଫିସରମାନେ ଜଣେ ପରେ ଜଣେ ଦେଖା କରିବା ପାଇଁ ଆସୁଛନ୍ତି। ଏ ଅହେତୁକ ଭକ୍ତିର କାରଣ ଜାଣିବା ପାଇଁ ଚାହିଁବାରୁ ମୋତେ ଜଣେ କହିଲେ ଯେ ମୁଁ ନିଶ୍ଚିତ ସି.ବିଆ.ଇ ଡାଇରେକ୍ଟର ହେବି। ସି.ବି.ଆଇ ଡାଇରେକ୍ଟର ଓ ଡିଜି ସି.ଆଇ.ଏସ୍.ଏଫ୍ ଏକା ପାହ୍ୟାର ଓ ଏକା ଦରମା, ସିଆଇଏସ୍ଏଫ୍‌ରେ ଖାକି ପୋଷାକ, ଗାର୍ଡ଼, ବିଗୁଲ ଓ ସାଲ୍ୟୁଟ୍ ଅଛି ଓ ସିବିଆଇରେ ଥଣ୍ଡ ଅଛି ଅନ୍ୟକୁ ଖୁମ୍ପିବା ପାଇଁ। ଖୁମ୍ପୁଥିବା ସଂସ୍ଥାକୁ ଲୋକେ ଭୟରୁ ଢାତ ସମ୍ମାନ କରନ୍ତି। କିନ୍ତୁ ମୋର ସିବିଆଇକୁ ଯିବାରେ କୌଣସି ଆଗ୍ରହ ନଥିଲା, କାହିଁକି ଅଯଥାରେ ସରକାରଙ୍କର ଘାତକ ପଦବାଚ୍ୟ ହେବି? ଓଡ଼ିଶାରେ ଭିଜିଲାନ୍ସ୍ ମୁଖ୍ୟ ହୋଇ ଏଭଳି ଅପବାଦ ଥରେ ପାଇ ସାରିଲିଣି ତେଣୁ ସରକାର ଯଦି ମନୋନୟନ କରିବେ ବାଧ ହୋଇ ଯିବି କିନ୍ତୁ ହାଇଁ ପାଇଁ ହେବିନାହିଁ।

ନକ୍ସଲାଇଟସ୍, ଉଲଫା ଦ୍ୱାରା ଆକ୍ରାନ୍ତ ହୋଇଥିବା ସ୍ଥାନ ଓ କାଶ୍ମୀରରେ ମଧ୍ୟ ସିଆଇଏସଏଫ ଥିଲେ। ସିଆଇଏସଏଫ ଗାର୍ଡ଼ମାନଙ୍କୁ ନିର୍ଦ୍ଦେଶ ଥିଲା ଯେ ପାଖରେ ଏକେ୪୭ ରଖି ଶୋଇବେ। ବିପଦ ସଂକେତ ମିଳିଲା ମାତ୍ରେ ଯିଏ ଯେଉଁ ଅବସ୍ଥାରେ ଥିବେ ସେଇ ଅବସ୍ଥାରେ ଉଠି ଲଢ଼େଇ କରିବେ ନହେଲେ ପାଗ ଭିତୁ ଭିତୁ ଉକିରି

ବରଖାସ୍ତ ଅବସ୍ଥା ହେବ। ଆସାମର ଦୁଲିଆଜାନ ପାଖରେ ସରକାରଙ୍କର ବଡ଼ ବଡ଼ ଅଏଲଡ଼ିପୋ, ତାକୁ ଜଗିଥାଏ ସିଆଇଏସ୍ଏଫ୍। ଉଲଫାମାନେ ଚାହିଁଲେ ସେ ଡିପୋକୁ ଉଡ଼େଇ ଦେବା ପାଇଁ। ଉଡ଼େଇ ଦେଇଥିଲେ ଶହ ଶହ କୋଟି ଟଙ୍କା କ୍ଷତି ହୋଇଥାନ୍ତା। ବହୁ ଧନ ଜୀବନ ନଷ୍ଟ ହୋଇଥାନ୍ତା। ଉଲ୍‌ଫାମାନଙ୍କର ବୁଦ୍ଧି ବହୁତ, ସେମାନେ କର୍ମଚାରୀମାନଙ୍କୁ ନେଇ ଆସୁଥିବା ବସ୍‌କୁ ଅକ୍ତିଆର କରି ସମସ୍ତଙ୍କ ମୋବାଇଲ ଫୋନ୍ ଛଡ଼ାଇ ନେଲେ ଓ ବସ୍‌କୁ ନେଲେ ଡିପୋ ଆଡ଼କୁ। ଆମର ଆଦେଶ ଥିଲା ବ୍ରହ୍ମା ଆସିଲେ ମଧ ଗାଡ଼ି ଚେକ୍ କରି ଛାଡ଼ିବ ଓ ଗାଡ଼ି ଚେକ୍ ନହେଲା ପର୍ଯ୍ୟନ୍ତ ଗେଟ୍ ଖୋଲିବ ନାହିଁ। ଯେମିତି ବସ୍ ଗେଟ୍ ପାଖରେ ପହଞ୍ଚିଲା ଜଣେ ହାବିଲଦାର ଗଲା ଚେକ୍ କରିବା ପାଇଁ ଓ ବସ୍ ଭିତରେ ଥିବା ଉଲ୍‌ଫାମାନେ ତାଙ୍କୁ ଗୁଳିରେ ଉଡ଼େଇ ଦେଇ ବନ୍ଧୁକ ଧରି ଦୌଡ଼ିଲେ ଗେଟ୍ ଖୋଲିବା ପାଇଁ କିନ୍ତୁ ସେଣ୍ଟ୍ରି ଏକାକୀ ମୁକାବିଲା କଲା। ଏମିତି ଗୁଳି ବର୍ଷଣ କଲା ଯେ ସେମାନେ ଆଉ ଗେଟ୍ ପାଖକୁ ଆସିପାରିଲେ ନାହିଁ। କିନ୍ତୁ ଗୁଳି ମାଡ଼ରୁ ସେ ବିରତ ହେଲା ଯେତେବେଳେ ତା' ପାପୁଲିରେ ଗୋଟିଏ ଗୁଳି ବାଜିଲା। ଇତି ମଧ୍ୟରେ ଅନ୍ୟ ସିଆଇଏସଏଫ ସୁରକ୍ଷା କର୍ମୀମାନେ ଯିଏ ଯାହା ପୋଷାକ ପିନ୍ଧି (ଅଣ୍ଡରଓ୍ୱେର, ଲୁଙ୍ଗି ଇତ୍ୟାଦି) ବିଭିନ୍ନ ସୁରକ୍ଷିତ ସ୍ଥାନରୁ ଉଲ୍‌ଫାଙ୍କ ଉପରେ ଗୁଳି ବର୍ଷଣ କଲେ। ଉଲ୍‌ଫାମାନେ ଅଏଲ୍ ଡିପୋକୁ ଉଡ଼େଇବେ କ'ଣ ଆପେ ବଞ୍ଚିଲେ ବାପର ନାଁ। ବନ୍ଧୁକ ଫୋପାଡ଼ି ଡିଆଁ ମାରିଲେ। ପରେ ଜଙ୍ଗଲ ମଧ୍ୟରୁ ତିନୋଟି ଶବ ମିଳିଲା। ସିଆଇଏସଏଫର ସେଣ୍ଟ୍ରି ସମେତ ଅନ୍ୟାନ୍ୟମାନେ ମେଡ଼ାଲ ପାଇଲେ।

ଏଭଳି ସଂସ୍ଥାର ମୁଖ୍ୟ ହେବା ସମ୍ମାନର କଥା। ମୁଁ ଅନେକଗୁଡ଼ିଏ ସବ୍‌ଇନ୍‌ସପେକ୍ଟର ପୋଷ୍ଟକୁ ଇନ୍‌ସପେକ୍ଟର, ଇନ୍‌ସପେକ୍ଟର ପୋଷ୍ଟକୁ ଆସିଷ୍ଟାଣ୍ଟ କମାଣ୍ଡାଣ୍ଟ, ଆସିଷ୍ଟାଣ୍ଟ କମାଣ୍ଡାଣ୍ଟରୁ କମାଣ୍ଡାଣ୍ଟ, ଅଧିକ ଡିଆଇଜି ପଦବୀ ସୃଷ୍ଟି କରିବା ପାଇଁ ପ୍ରସ୍ତାବ ଦେଇଥିଲି। ଉଦେଶ୍ୟ ଥିଲା ଯେ ବିଭାଗର ଅଫିସରମାନେ ପଦୋନ୍ନତି ପାଆନ୍ତୁ। ଏହାକୁ କେତେଜଣ ପସନ୍ଦ କଲେ କିନ୍ତୁ କଥାଟା ଆଉ କେତେ ଜଣଙ୍କୁ ଭଲ ଲାଗିଲା ନାହିଁ। ମୋତେ ଜଣେ ଅବସରପ୍ରାପ୍ତ ଡିଜି କହିଲେ କାହିଁକି ଏମାନଙ୍କୁ ଏତେ ଚକୋଲେଟ୍ ଖୁଆଉଛନ୍ତି, ଅବସର ନେଲାପରେ ଏମାନେ ଆପଣଙ୍କ ମୁହଁକୁ ଅନେଇବେ ନାହିଁ। ତାଙ୍କ ଧାରଣା ଅମୂଳକ ଥିଲା। ୨୦୦୩ ମସିହାରେ ମୁଁ ସିଆଇଏସ୍ଏଫ୍ ଛାଡ଼ିଲି, ଆଜି ପର୍ଯ୍ୟନ୍ତ ମୁଁ ସିଆଇଏସ୍ଏଫ୍‌ର ସବୁସ୍ତରର କର୍ମଚାରୀଙ୍କ ଠାରୁ ଖାତିର୍ ପାଉଛି। ଦିଲ୍ଲୀ ଗଲେ ସିଆଇଏସ୍ଏଫ୍ ଗେଷ୍ଟ ହାଉସ୍‌ରେ ରହେ, ସେମାନଙ୍କର ବ୍ୟବହାର ଏମିତି ଯେ ମୋତେ ଲାଗେ ମୁଁ ନିଜ ଘରେ ରହିଛି।

ସିଆଇଏସ୍‌ଏଫ ବାହିନୀ ପାଇଁ ଆହୁରି କିଛି ଯୋଜନା କରିଥିଲି। ଅନେକ କନେଷ୍ଟବଳ, ହାବିଲଦାର ଓ ତଳିଆ କର୍ମଚାରୀଙ୍କ ପିଲାମାନେ ମେଧାବୀ ହୋଇଥିଲେ ମଧ୍ୟ ଶିକ୍ଷାରେ ବେଶି ଆଗେଇ ପାରୁନଥିଲେ। ବିଶେଷତଃ ମେଡ଼ିକାଲ୍, ଇଞ୍ଜିନିୟରିଂ ପାଇଁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇପାରୁନଥିଲେ। ଆଜିକାଲି ହେଲା ଟ୍ୟୁସନ୍ ଓ କୋଚିଂର ଯୁଗ। ଯିଏ ଭଲ କୋଚିଂ ପାଇଲା ସେ ଆଗେଇ ଚାଲିଲା। ସଭିଲ୍ ସର୍ଭିସ୍ ପରୀକ୍ଷା ପାଇଁ ବହୁତ ପିଲା ଦିଲ୍ଲୀରେ ମାଟି କାମୁଡ଼ି ପଡ଼ି ରହନ୍ତି। କେବଳ ଭଲ କୋଚିଂ ପାଇଁ ଓ ସଫଳ ମଧ୍ୟ ହୁଅନ୍ତି। ସେତେବେଳେ ରାଜସ୍ଥାନର କୋଟାରେ ଇଞ୍ଜିନିୟରିଂ ପାଇଁ ଖୁବ୍ ଭଲ କୋଚିଂ ଦିଆଯାଉଥିଲା। ମୁଁ ଚାହୁଁଥିଲି ସେଇ ପାଖରେ ଏକ ବ୍ୟାଟାଲିୟନ କରି ସମଗ୍ର ଫୋର୍ସର ମେଧାବୀ ପିଲାଙ୍କ ପାଇଁ ଏକ ହଷ୍ଟେଲ୍ ତିଆରି କରିବା ପାଇଁ। ପିଲାମାନେ ହଷ୍ଟେଲ୍‌ରେ ରହିଥାନ୍ତେ, ଖାଇବା ଖର୍ଚ୍ଚ ଶସ୍ତା ପଡ଼ିଥାନ୍ତା ଓ କୋଚିଂ ଖର୍ଚ୍ଚରୁ ଶତକଡ଼ା ୨୫ ୱେଲଫେୟାର ପାଣ୍ଠିରୁ ଦିଆଯାଇଥାନ୍ତା। ଆଉବି ଯୋଜନା କରିଥିଲି ଯେ, ସାକେତ୍‌ରେ ଏକ ହଷ୍ଟେଲ୍ କରିବା ପାଇଁ ଓ ସିଆଇଏସଏଫର ଯେଉଁ ପିଲାମାନେ ସିଭିଲ୍ ସର୍ଭିସ୍ ଦେଇଥାନ୍ତେ ସେମାନେ ସେ ହଷ୍ଟେଲରେ ମାଗଣାରେ ରହିଥାନ୍ତେ।

ମୁଁ ଗୋଟିଏ ଟିମ୍ ଧରି ଯାଇଥିଲି ଇସ୍ରାଏଲ୍, ସେ ଦେଶର ବିମାନଘାଟି ଓ କେତେକ ଗୁରୁତ୍ୱପୂର୍ଣ୍ଣ ସ୍ଥାନର ସୁରକ୍ଷା ବ୍ୟବସ୍ଥା ଅନୁଧ୍ୟାନ କରିବା ପାଇଁ। ଇସ୍ରାଏଲ ସରକାର ଆମମାନଙ୍କୁ ନିମନ୍ତ୍ରଣ କରିଥିଲେ ଓ ସମସ୍ତ ଖର୍ଚ୍ଚ ମଧ୍ୟ ବହନ କରିଥିଲେ। ସେ ଦେଶର ଲୋକଙ୍କର ଚାଲିଚଳଣ, ଆଚାର ବ୍ୟବହାର ଯେକୌଣସି ବିଦେଶୀଙ୍କୁ ଆଶ୍ଚର୍ଯ୍ୟ କରିଦେବ। ଏମିତି ଏକ ଦେଶ ଯେ ଯେଉଁଠାରେ ମୋଟା ଓ ଅଳସୁଆ ଲୋକଙ୍କ ସ୍ଥାନ ନାହିଁ। ସେମାନଙ୍କୁ କେହି ଚାକିରି ଦେବେନାହିଁ। ସ୍କୁଲ୍ ଶିକ୍ଷା ପରେ ସମସ୍ତେ ଚାରି ବର୍ଷ କଲେଜ ଶିକ୍ଷା ସମେତ ମିଲିଟାରୀ ଶିକ୍ଷା ପାଇବା ପାଇଁ ବାଧ୍ୟ! ଚାରି ବର୍ଷ ପରେ ଯେଉଁମାନେ ଯୋଗ୍ୟ ଓ ଉତ୍ସୁକ ସେମାନଙ୍କୁ ସାମରିକ ବାହିନୀରେ ନିଯୁକ୍ତି ଦିଆଯିବ। ଯେଉଁମାନେ ବେସାମରିକ କ୍ଷେତ୍ରରେ କାର୍ଯ୍ୟ କରିବେ ବା ଅଧିକ ଶିକ୍ଷା ପାଇବେ ସେମାନେ ପ୍ରତି ୬ ମାସରେ ଥରେ ସାମରିକ ବାହିନୀରେ ରିପୋର୍ଟ କରିବେ ଓ ୧୫ ଦିନ ଟ୍ରେନିଂ ପାଇବେ। ଯଦି କେହି ଅକ୍ଷମ ବୋଲି ଜଣାପଡ଼ିଲା ତାକୁ ଚାକିରିରୁ ତଡ଼ି ଦିଆଯିବ।

ଆମମାନଙ୍କର ଗାଇଡ୍ (ଜଣେ ଉଚ୍ଚ ସ୍ତରର ଅଫିସର) ଥରେ ଗୋଟିଏ ସ୍ଥାନକୁ ନେଇଗଲେ, କୁଆଡ଼େ ବୋଲି ପଚାରିବାରୁ କହିଲେ 'ସାର୍, ଦେଖି ସାରନ୍ତୁ ଆମେ ପରେ କହିବୁ।' ଉଚ୍ଚ ଫାଟକ ଖୋଲା ହେବାରୁ ଆମେ ଭିତରକୁ ଗଲୁ, ଜଣା ପଡୁଥାଏ ଯେ କେତେଗୁଡ଼ିଏ ଆପାର୍ଟମେଣ୍ଟରେ ଅନେକ ଫ୍ଲାଟ୍। ଗୋଟିଏ ଆପାର୍ଟମେଣ୍ଟରେ ପଶି

ଦେଖିଲୁ ରିଡ଼ିଂ ରୁମ୍‌ରେ ଅନେକ ଖବରକାଗଜ ଓ ବହି ପଢ଼ୁଛନ୍ତି । କେହି କେହି ଜିମ୍‌ରେ ବ୍ୟାୟାମ କରୁଛନ୍ତି ଓ ଗୋଟିଏ ରୁମ୍‌ରେ ବିଲିୟାର୍ଡ୍ ଖେଳା ଯାଉଛି । ନିଶ୍ଚିତ ହେଲୁ ଯେ ବହୁତ ପଇସା ଦେଇ ଅନେକ ଲୋକ ଫ୍ଲାଟ୍ କିଣିଛନ୍ତି ଓ ଆରାମରେ ରହୁଛନ୍ତି । ଏ ଧାରଣା ଦୃଢ଼ୀଭୂତ ହେଲା କାରଣ ସବୁ ରୁମ୍‌ଗୁଡ଼ିକ ଶୀତତାପ ନିୟନ୍ତ୍ରିତ । ଫେରିଲା ପରେ ମୁଁ ପଚାରିଲି ଭଲ ଫ୍ଲାଟ୍‌ରେ ଲୋକମାନେ ରହୁଛନ୍ତି ତ ଦେଖିବାର କ'ଣ ଥିଲା ? ଇସ୍ରାଏଲ୍‌ର ଅଫିସର୍ କହିଲେ ସାର୍ 'ଆପଣ ଜେଲ୍‌ଖାନା ଦେଖି ଫେରିଲେ ।' ଆଉ ଗୋଟିଏ ସ୍ଥାନ ଦେଖେଇଲେ ସେ । ଅନେକ ଆପାର୍ଟମେଣ୍ଟ । କେତେକ ଆପାର୍ଟମେଣ୍ଟରେ କେବଳ ବୟସ୍କ ଓ ଛୋଟ ପିଲାମାନେ, କେତେଗୁଡ଼ିକରେ ମଧ୍ୟ ବୟସ୍କ ଓ ବୟସ୍କା ଓ ବାକିଗୁଡ଼ିକରେ ଯୁବକ ଯୁବତୀ, ବାଳକ ବାଳିକା ରହନ୍ତି । ଏମାନେ ଏକ କବୁତ୍ (ସମବାୟ ଅନୁଷ୍ଠାନ) କରି ରହିଛନ୍ତି । ସମସ୍ତଙ୍କ ପରିଶ୍ରମର ଫଳ ଗୋଟିଏ ଆକାଉଣ୍ଟରେ ରହେ । ଅଳ୍ପ କେତେ ପ୍ରତିଶତ ନିଜ ନିଜ ଆକାଉଣ୍ଟରେ ରଖିବେ । ଇସ୍ରାଏଲର ଏକ କବୁତ୍ ବା ସମବାୟ ସଂସ୍ଥା ପୃଥିବୀର ଯେକୌଣସି ସମବାୟ ସଂସ୍ଥା ପାଇଁ ଆଦର୍ଶ ।

ଦେଖିସାରି ଫେରୁଛୁ, ଗାଇଡ଼ଙ୍କୁ କହିଲି କାର୍‌ରେ ଲାଗିଥିବା ରେଡ଼ିଓ ବଜାଇବା ପାଇଁ । କିଛି ଖବର ଇଂରେଜିରେ ଶୁଣିଲା ପରେ ଗାଇଡ଼ ଷ୍ଟେସନ ବଦଳେଇ ଦେଲେ ଓ ଗୀତ ଭାସି ଆସିଲା ଲତା ମଙ୍ଗେସକରଙ୍କର ପଚାଶ ମସିହା ପୂର୍ବର ମହଲ ଚଳଚ୍ଚିତ୍ରର ବିଖ୍ୟାତ ହିନ୍ଦୀ ସଙ୍ଗୀତ 'ଆୟେଗା ଆନେୱାଲା ।' ଆଶ୍ଚର୍ଯ୍ୟ ପ୍ରକାଶ କରିବାରୁ ଅଫିସର ଜଣକ କହିଲେ 'ଇସ୍ରାଏଲରେ ଇସ୍ରାଏଲି ବୋଲି କେହି ନାହାଁନ୍ତି । ଆମେ ସମସ୍ତେ ବାହାରୁ ଆସିଛୁ । ଅଧିକାଂଶ ଜର୍ମାନୀ, ଋଷିଆ, ପୋଲାଣ୍ଡ, ଆମେରିକା ଓ ଇଂଲଣ୍ଡରୁ । ଭାରତରୁ ଆସିଛନ୍ତି ୬୫ ହଜାର । ତାଙ୍କ ସ୍ୱରରେ କୃତଜ୍ଞତା ଥିଲା, ଯେତେବେଳେ ସେ କହିଲେ କେବଳ ଆଜି ନୁହେଁ ୨୦୦୦ ବର୍ଷ ତଳେ ଆପଣଙ୍କ ଦେଶ ଧର୍ମ ନିରପେକ୍ଷ ଥିଲା, ଆପଣଙ୍କ ସଂସ୍କୃତି ଧର୍ମ ନିରପେକ୍ଷତା ଆପଣଙ୍କୁ ଦେଇଛି ଆପଣଙ୍କ ସମ୍ବିଧାନ ନୁହେଁ । ୨୦୦୦ ବର୍ଷ ତଳେ ଇହୁଦୀମାନେ କୋଚିନ୍ ଓ ପାଖ ଆଖ ରାଜ୍ୟ (ଆଜିର କେରଳ)ରେ ଆଶ୍ରୟ ପାଇଥିଲେ । ଅନେକ ଇହୁଦୀ ଉତ୍ତରପୂର୍ବ ରାଜ୍ୟରେ ଥିଲେ ଆଉ କେତେକ ବମ୍ବେ ଓ ଗୋଆରେ । ସେମାନେ ଆସ୍ତେ ଆସ୍ତେ ଚାଲି ଆସୁଛନ୍ତି ତାଙ୍କ ଜନ୍ମଭୂମିକୁ କାରଣ ଜେରୁଜେଲମ ଥିଲା ଆମର ଓ ଆମକୁ କେତେବେଳେ ରୋମାନ୍ ଓ କେତେବେଳେ ମୁସଲମାନମାନେ ତଡ଼ି ଦେଇଥିଲେ । ଏବେ ଆମେ ଫେରିଆସିଛୁ ଓ ଭାରତୀୟମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ଚ୍ୟାନେଲ୍ ଅଛି ।'

ସେ ଦେଖେଇଲେ ଚାଷ ଜମି ଯେଉଁଠିକୁ କୃଷକମାନେ ଗାଡ଼ି ଚଲେଇ ଆସନ୍ତି, ଚାଷ କରନ୍ତି ଓ ଫେରି ଯାଆନ୍ତି। ସେମାନେ ସମସ୍ତେ ଥାଇଲାଣ୍ଡ ଓ ଫିଲିପାଇନ୍‌ସର। ଯେଉଁ ସମୟରେ କୃଷକ ଦରକାର ଥିଲେ ଓ ଭାରତ ପାଇଁ ଦ୍ୱାର ଉନ୍ମୁକ୍ତ ଥିଲା କିନ୍ତୁ ଆମ ଦେଶ ସେତେବେଳେ ଇସ୍ରାଏଲକୁ ସ୍ୱୀକୃତି ଦେଇନଥିବାରୁ କେହି ଆସିପାରିଲେ ନାହିଁ।

ଯୁଆଡ଼େ ଦେଖିବ ରାସ୍ତା ଦୁଇ ପାଖେ ସେଉ ଓ କେନ୍ଦୁ ପରି ଏକ ଫଳ। କୌଣସି ଗଛ ଆଠ ଫୁଟ୍‌ରୁ ଅଧିକ ଉଚ୍ଚ ନୁହେଁ। ଇସ୍ରାଏଲ୍ ଏକ ଶୁଷ୍କ ଦେଶ ଯେଉଁଠି ପାଣି ଟୋପେ ମିଳେ ନାହିଁ। ତୁର୍କୀ ଓ ଫ୍ରାନ୍ସରୁ ଲକ୍ଷ ଲକ୍ଷ ପାଣି ବୋତଲ କିଣାଯାଇ ଅଣାଯାଏ। ଦୁଗ୍ଧ ବୋତଲରୁ ପାଣି ବୋତଲ ଦାମ୍ ବେଶି। ଅନ୍ୟାନ୍ୟ କାର୍ଯ୍ୟ ନିତ୍ୟ ବ୍ୟବହାର ଓ ଜଳସେଚନ ପାଇଁ ଜୋର୍ଡ଼ାନ ନଦୀରୁ ପାଣି ନିଆଯାଇ ତାକୁ ସଫାକରି ବ୍ୟବହାର କରାଯାଏ। ଗଛରେ ପାଣି ଦିଆଯାଏ ଛୁଞ୍ଚ ମୁନରୁ ପାଣି ବାହାରିଲା ପରି। ସେମାନେ କହିଲେ ଆପଣଙ୍କ ଦେଶରେ ଯେତିକି ପାଣି ଦିଆଯାଏ ସେଥିରୁ ଏକ ଦଶାଂଶ ଦେଲେ ମଧ୍ୟ ଗଛ ପାଇଁ ଯଥେଷ୍ଟ। ସପେଟା ଓ କେନ୍ଦୁକୁ ସଙ୍ଗମ କରାଇ ଏକ ଫଳ ସୃଷ୍ଟି କରାଯାଇଛି ତାହାର ରଙ୍ଗ କେନ୍ଦୁପରି ହଳଦିଆ ଓ ଭିତର ସପେଟା ପରି ରସାଳ ଓ ସ୍ୱାଦ, ଉଭୟ କେନ୍ଦୁ ଓ ସପେଟା ପରି। ଆମ ଦେଶରେ ଏଭଳି ଯଦି ଫଳ ଚାଷ କରାଯାଇପାରନ୍ତା ତେବେ ଅନେକ ଲୋକ ଉପକୃତ ହୋଇପାରନ୍ତେ।

ଆମେ ଗଲୁ ହାଇଫା ବିଶ୍ୱ ବିଦ୍ୟାଳୟ ଦେଖିବା ପାଇଁ। ସେ ବିଶ୍ୱ ବିଦ୍ୟାଳୟ ଶିକ୍ଷା ଏତେ ଉନ୍ନତ ଯେ ଅଧ୍ୟାପକ ଓ ଛାତ୍ରମାନେ ମିଶି ଏକ କୃତ୍ରିମ ଉପଗ୍ରହ କରିପାରିଥିଲେ। ସେଇଠାରେ ଗାଇଡ୍ ଜଣକ କିଛି ସମୟ ପାଇଁ ଓହ୍ଲେଇ ଯାଇ ଆମକୁ କହିଲେ ବୁଲାବୁଲି କରି ଆସନ୍ତୁ ଘଣ୍ଟେ ମଧ୍ୟରେ ଏଇଠି ଥିବି। ଆମେ ଚାହିଁଲୁ ଦେଖିବା ପାଇଁ ବାହାଇ କେନ୍ଦ୍ର, ବାହାଇର ପ୍ରବର୍ତ୍ତକ ଏକଦା ଇସ୍ରାଏଲ ଆସିଥିଲେ ବୋଲି କୁହାଯାଏ। ଅନେକ ସମୟ ଖୋଜିଲା ପରେ ନପହଞ୍ଚି ପାରିବାରୁ ଜଣେ ଭଦ୍ରଲୋକଙ୍କୁ ପଚାରିଲୁ। ଯେହେତୁ ଡ୍ରାଇଭର ହାଇଫା ସହର କେବେ ଆସିନଥିଲେ, ଉକ୍ତ ଭଦ୍ରଲୋକ ଗ୍ୟାରେଜ୍‌ରୁ ଗାଡ଼ି ବାହାର କଲେ, ଗାଡ଼ି ଚଲେଇ ପ୍ରାୟ ୧୦ କି.ମି. ଦୂରରେ ଥିବା ବାହାଇ କେନ୍ଦ୍ରରେ ପହଞ୍ଚେଇଲେ। ତାଙ୍କୁ ଧନ୍ୟବାଦ ଦେବାରୁ ପ୍ରତ୍ୟୁତ୍ତରରେ କହିଲେ 'ଭାରତୀୟମାନେ ଖୁବ୍ ଭଲ ଓ ବାଜପେୟୀ ବହୁତ ବଡ଼ଲୋକ (ଏ ଗ୍ରେଟ୍ ମ୍ୟାନ୍)।'

ଆମେ ମଧ୍ୟ ଯାଇଥିଲୁ ଜେରୁଜେଲମ ଯେଉଁଠାରେ ଇହୁଦୀମାନଙ୍କର ବିଖ୍ୟାତ କାନ୍ଥ ଅଛି ଓ ଯାହାକୁ ପ୍ରତିଦିନ ହଜାର ହଜାର ଭକ୍ତ ପୂଜା କରନ୍ତି। ଆଉ ଏକ ପବିତ୍ର ସ୍ଥାନ ଅଛି ଯେଉଁଠାରେ ଯିଶୁ କୃଶବଦ୍ଧ ହୋଇଥିଲେ। ଅନ୍ୟ ଏକ ସ୍ଥାନ ଅଛି ଯେଉଁଠାରେ ମହମ୍ମଦ ଘୋଡ଼ା ଚଢ଼ି ସ୍ୱର୍ଗ ଯାଇଥିଲେ। ତିନୋଟି ଧର୍ମ ଯେଉଁମାନଙ୍କର

ମୂଳ ପ୍ରତ୍ୟେକଙ୍କ ସାଙ୍ଗେ ସମ୍ପୃକ୍ତ, ସେମାନଙ୍କର ପବିତ୍ର ପୀଠ ହେଲା ଜେରୁଜେଲମ୍। ଆମକୁ ରାସ୍ତାରେ ସାବଧାନ ସହିତ ଯିବାକୁ ପଡ଼ିଲା, ଇସ୍ରାଏଲର ଅନ୍ୟାନ୍ୟ ସହର ପରି ଏଠାରେ ଶୃଙ୍ଖଳା ନାହିଁ। ବମ୍ବେ କିମ୍ବା କଲିକତାର ହାଟ ପରି ଦୋକାନୀ ହାତ ଟାଣିନେଇଯିବେ। କିଣିବା ପାଇଁ ମୂଲଚାଲ, ଉଚ୍ଚ ସ୍ୱରରେ କଥାହେବା, ପଛରେ ଗୋଡ଼େଇବା 'କମ୍ ଭେରି ଚିପ୍' ବୋଲି ଡାକିବା ଆମ୍ଭମାନଙ୍କୁ କିଛି ସମୟ ପାଇଁ ଭାରତ ବର୍ଷକୁ ଫେରେଇନେଲା। ଆମେ ଗୋଟିଏ ରେସ୍ତୋରାଁରେ ମଧ୍ୟାହ୍ନ ଭୋଜନ କଲୁ। ମାସକ ତଳେ ସେଇ ରେସ୍ତୋରାଁ ଉପରେ ସନ୍ତ୍ରାସବାଦୀମାନେ ରକେଟ୍ ମାଡ଼ କରିଥିଲେ। ଏ ବିଷୟରେ ପଚାରିବାରୁ ଗାଇଡ଼ କାନ୍ଧକୁ ସଂକୁଚି କରି କହିଲେ 'ସେମିତି ହୁଏ, ଡରିଲେ ଆମେ ଚଳିପାରିବୁ ନାହିଁ।' ମଧ୍ୟାହ୍ନ ଭୋଜନ ପରେ ଗଲୁ ଲବଣ ସମୁଦ୍ର ଦେଖିବା ପାଇଁ। ବାଟରେ ପରିସ୍ରା ଲାଗିବାରୁ ମୂତ୍ରତ୍ୟାଗ କଲୁ ତା' ସଙ୍ଗେ ଅଢ଼େଇ ଡଲାର ଦେଲୁ। ଆମ ଦେଶ ହୋଇଥିଲେ ରାସ୍ତା କଡ଼ ଯଥେଷ୍ଟ ହୋଇଥାନ୍ତା। ଲବଣ ସମୁଦ୍ର କିମ୍ବା ମୃତ ସମୁଦ୍ର ଏକ ହ୍ରଦ ଯାହାର ପାଣି ଏତେ ଲବଣାକ୍ତ ଯେ ସେଥିରେ ମାଛ ସମେତ କୌଣସି ଜୀବ ନାହାଁନ୍ତି। ପୁଣି ଏତେ ବହଳ ଯେ ଜଣେ ଚେଷ୍ଟା କଲେ ମଧ ବୁଡ଼ି ପାରିବ ନାହିଁ। ଆମେ ହ୍ରଦ ପାଣିରେ ଶୋଇଲୁ, ଫଟୋ ଉଠେଇଲୁ। ମୁଣ୍ଡରେ ପାଣି ଛିଞ୍ଚିଲୁ। କିଛି ସମୟ ପରେ ଦେହ କୁଣ୍ଡେଇ ହେଲା। ଗାଇଡ଼ ନେଇଗଲେ ଗାଧୁଆ ଘରକୁ। ପୁରୁଷ ଓ ମହିଳାଙ୍କ ପାଇଁ ଅଲଗା ଗାଧୁଆ ଘର। ସେଇଠି ଦେଖିଲୁ ସମସ୍ତେ ସମ୍ପୂର୍ଣ୍ଣ ଉଲଗ୍ନ ହୋଇ ଗାଧୋଉଛନ୍ତି। ମୁଁ ଅଣ୍ଡରୱେୟାର ପିନ୍ଧି ଗାଧୋଇବା ଦେଖି ପାଖରେ ଗାଧୋଉଥିବା ଜଣେ ଭଦ୍ରଲୋକ ଦେଖି ପଚାରିଲେ 'ଭାରତୀୟ, ହିନ୍ଦୁ? ' ହଁ କହିବାରୁ କହିଲେ 'ହଁ ସେଇଥିପାଇଁ। କ୍ଷମା କରିବେ ଆପଣମାନେ ଟିକିଏ ଲାଜକୁରା।' ଓଦା ଅଣ୍ଡରୱେୟାରକୁ ଫୋପାଡ଼ି ପୋଛାପୋଛି ହୋଇ ଆସିଲୁ। ଫେରୁଛି ପଛରୁ ଶୁଭିଲା ବେସରମ୍ (ନିର୍ଲଜ)। ବୁଲିପଡ଼ି ଅନେଇ ଦେଲା ବେଳକୁ ୨ ଜଣ ଭାରତୀୟ ମହିଳା। ବିଚାରିମାନେ ସେଭଳି ଦୃଶ୍ୟ ନିଷୟ ଦେଖିଛନ୍ତି। ମୁଁ ବୁଲିପଡ଼ି ପଚାରିଲି କ'ଣ ହେଲା ଓ ସେମାନେ ମୁଣ୍ଡ ପୋତି କହିଲେ ନାଇଁ ନାଇଁ ସେମିତି କିଛି ନୁହେଁ।

ସେଦିନ ଫେରି ଆସିଲୁ ତେଲ୍‌ଅଭିଭ ସହର ହୋଟେଲ୍‌କୁ। ରାତିରେ ଗୋଇନ୍ଦା ବିଭାଗର ମୁଖ୍ୟ ଆମକୁ ଡିନର ଦେଲେ ଅନ୍ୟ ଏକ ହୋଟେଲ୍‌ରେ ଯାହାର ନାଁ ମହାରାଜା। ନାଁ ମହାରାଜା କିନ୍ତୁ ମାଲିକ ହେଉଛନ୍ତି ଇସ୍ରାଏଲି। ଆମକୁ ଯେ ଖାଦ୍ୟ ପରସୁଥିଲେ ସେ ଖଣ୍ଡି ଖଣ୍ଡି ହିନ୍ଦୀ କହୁଥିଲେ। ପଚାରିବାରୁ ଜଣାପଡ଼ିଲା ଯେ ସେ ବିଶ୍ୱ ବିଦ୍ୟାଳୟରେ ଦର୍ଶନ ବିଭାଗରେ ଏମ୍‌ଏ ପଢ଼ୁଛନ୍ତି। ଛୁଟି ହୋଇଥିବାରୁ ହୋଟେଲ୍‌ରେ କାମ କରି କିଛି ରୋଜଗାର କରୁଛନ୍ତି। ପଇସା ହେଲେ ରାଜସ୍ଥାନ ବୁଲି ଯିବେ ଓ

ସେଇଟା ହେବ ଭାରତକୁ ତାଙ୍କର ତୃତୀୟ ଗସ୍ତ। ଦେଖିବାକୁ ଖୁବ୍ ସୁନ୍ଦର ଓ ପିନ୍ ପିନ୍ ପତଳା। ଗୋଇନ୍ଦା ମୁଖ୍ୟ ବୁଝେଇ କହିଲେ ଯେ ଘଣ୍ଟେ ମଧ୍ୟରେ ସେ ଦେଶରେ ୬୫ ଲକ୍ଷ ପୁରୁଷ, ସ୍ତ୍ରୀ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇପାରିବେ। ଏ ଦେଶବାସୀଙ୍କୁ ଧନ୍ୟ। ପୃଥିବୀର ମ୍ୟାପରେ ଦେଖିଲେ ବିନ୍ଦୁ ଭଳିଆ ଦିଶିବ କିନ୍ତୁ ସାହସିକତା, ବିଦ୍ୟା ଓ ବ୍ୟବସାୟରେ ଅଦ୍ୱିତୀୟ। ଇରାକ୍, ଇରାନ୍, ସାଉଦିଆରବିଆ, କୁଏତ, ଲେବାନନ୍, ସିରିଆ, ପାକିସ୍ତାନ ଇତ୍ୟାଦି ବହୁ ମୁସଲମାନ ରାଜ୍ୟ ସହିତ ସନ୍ତ୍ରାସବାଦୀମାନେ ଅନେଇ ବସିଛନ୍ତି ଇସ୍ରାଏଲ୍‌କୁ ମୂଳପୋଛ କରିଦେବା ପାଇଁ। ତଥାପି ଇସ୍ରାଏଲ ନିର୍ଭୟର ସହିତ ମୁଣ୍ଡ ଟେକି ରହିଛି। ଏଇଠି ଲୋକମାନେ ହସି କଥା ହୁଅନ୍ତି, ସାହାଯ୍ୟ କରିବା ପାଇଁ ହାତ ବଢ଼ାନ୍ତି, ସକାଳୁ ହୋଟେଲ୍ ଝରକାରେ ମୁଁ ଦେଖେ ହଜାର ହଜାର ଲୋକ ରାସ୍ତାରେ ଧାଉଁଛନ୍ତି। ଉଦ୍ଦେଶ୍ୟ ନିଜକୁ ଫିଟ୍ ରଖିବେ। ଥରେ ମୁଁ ଗାଇଡ୍‌କୁ କହିଲି 'ଆପଣଙ୍କ ଦେଶରେ କେବଳ ମୁଁ ଗୋଟିଏ ଦୋଷ ତ୍ରୁଟି ଦେଖୁଛି। ଏଠାରେ ଅପରାଧ କମ୍, ମଦ ପିଇ ମାତାଲ ହେବା ଦୃଷ୍ଟାନ୍ତ ମଧ୍ୟ ବହୁତ କମ୍ କିନ୍ତୁ ବହୁତ ଜାଗାରେ ଖାଲି ଧୂଆଁ ଓ ଧୂଆଁ - ସିଗାରେଟ୍‌ର। ବନ୍ଦ କରି ହୁଅନ୍ତାନି ?' ଚିନ୍ତିତ ହୋଇ ସେ କହିଲେ 'ଆପଣ ଠିକ୍ କହୁଛନ୍ତି ସାର୍। କିନ୍ତୁ ଆପଣ ଖୁସି ହେବେ ଯେ ସିଗାରେଟ୍ ପିଆ ବହୁତ କମି ଯାଇଛି, କଡ଼ା ଆଇନ୍ ନୁହେଁ ସରକାରଙ୍କ ବିଜ୍ଞାପନ ଓ ଉପଦେଶ ଯୋଗୁ। ଆମେ କାର୍ଯ୍ୟକ୍ରମ ରଖିଛୁ ସ୍କୁଲ୍ ସ୍ତରରେ ବନ୍ଦ କରିବା ପାଇଁ କାରଣ କୁଅଭ୍ୟାସ ସ୍କୁଲ୍ ବେଳରୁ ଆରମ୍ଭ ହୁଏ। ଏବେ ବହୁ ପରିମାଣରେ ସଫଳ ହୋଇଥିବାରୁ ଭବିଷ୍ୟତରେ ସିଗାରେଟ୍ ପିଆ ବହୁ ପରିମାଣରେ କମିଯିବ।'

ସିଆଇଏସଏଫରେ ଥିଲାବେଳେ ଇଂଲଣ୍ଡ ଗସ୍ତରେ ମଧ୍ୟ ଯାଇଥିଲି। ସାଙ୍ଗରେ ଥିଲେ ସ୍ତ୍ରୀ। ଲଣ୍ଡନରେ ଓହ୍ଲାଇ ଗାଡ଼ିରେ ଗଲୁ ବର୍ମିଂହାମ୍ ଯେଉଁଠାରେ ହେଉଥିଲା ଆନ୍ତର୍ଜାତିକ ସୁରକ୍ଷା ପ୍ରଦର୍ଶନୀ। ଏକ ୨୬ ଜଣିଆ ଟିମ୍‌ର ନେତା ହୋଇ ମୁଁ ଯାଇଥିଲି। ମୋର କେତେଜଣ ବନ୍ଧୁ ବର୍ମିଂହାମ୍‌ର ପାଖ ଆଖରେ ରହୁଥିବା କିଛି ଭାରତୀୟଙ୍କୁ ଖବର ଦେଇଥିଲେ; ସେଥିମଧ୍ୟରୁ ଜଣେ ଦିନେ ଆସି ଆମକୁ ତାଙ୍କ ଘରକୁ ନେଇଗଲେ। ସେ ବର୍ମିଂହାମ୍ ପାଖରେ ଏକ ଛୋଟିଆ ସହରରେ ରହୁଥିଲେ। ତାଙ୍କର ଦୁଇ ମହଲା କୋଠା, ଘରକୁ ଲାଗି ଶଳାଙ୍କର ମଧ୍ୟ ଦୁଇ ମହଲା କୋଠା। ଭିଣେଇ ହେଲେ ବୃତିରେ ବଢ଼େଇ ଓ ଶଳା ହେଲେ ବସ୍ ଡ୍ରାଇଭର। ନରେନ୍ଦ୍ର ସିଂ ଆସିଥିଲେ ଜଣେ ସାଧାରଣ ବଢ଼େଇ ଭାବରେ। ଏବେ ଛୋଟ କାଠ କାରଖାନାଟିଏ କରିଛନ୍ତି। ସମସ୍ତ ଶ୍ରମିକ ହେଲେ ଗୋରା। ଭାରତୀୟଙ୍କୁ ନ ନେଇ ଗୋରାଙ୍କୁ କାହିଁକି ରଖିଛନ୍ତି ପଚାରିବାରୁ କହିଲେ 'ଭାରତୀୟ ପାଇବି କେଉଁଠୁ ? ସମସ୍ତଙ୍କ ନିଜର ବ୍ୟବସାୟ କିମ୍ବା ଚାକିରି। ଶନିବାର

ରବିବାର ଦିନ କଲେଜ ପିଲା ଆସନ୍ତି କାରଣ ଗୋରାମାନେ ଶୁକ୍ରବାର ସନ୍ଧ୍ୟାରେ ଛୁ ମାରନ୍ତି। ତା'ଛଡ଼ା ସେ ମୁରୁକି ହସି କହିଲେ ଏମାନେ ଆମକୁ ଶାସନ କରୁଥିଲେ, ଏବେ ପ୍ରତିଦିନ ଧାଡ଼ି ବାନ୍ଧି ଠିଆ ହୋଇ ମୋ' ହାତରୁ ମଜୁରୀ ନେଉଛନ୍ତି। ଖୁସି ଲାଗିବନି ?' ମୁଁ ମୁଣ୍ଡ ଟୁଙ୍ଗାରିଲି। ଏଇ ସହରରେ ଯୁଆଡ଼େ ଦେଖିଲେ ଖାଲି ଭାରତୀୟ ଓ ପାକିସ୍ତାନୀ। ବିଭିନ୍ନ ପ୍ରକାର ଷ୍ଟୋର ଯଥା ଲକ୍ଷ୍ମୀ, ଇଣ୍ଡିଆନ୍, ଗୁଜୁରାଟ ଇତ୍ୟାଦି। ପାକିସ୍ତାନ, ବାଂଲାଦେଶୀ ଓ ଶ୍ରୀଲଙ୍କା ଲୋକ ହୋଟେଲ୍ ଖୋଲିଲେ ନିଜ ଦେଶ ନାଁ ନଲେଖି ଇଣ୍ଡିଆନ୍ ଲେଖନ୍ତି। ପାକିସ୍ତାନୀମାନେ ଜାଣନ୍ତି ତାଙ୍କ ଦେଶର ନାଁ ଲେଖିଲେ କେହି ଗ୍ରାହକ ଆସିବେନି।

ପ୍ରଦର୍ଶନୀ ସରିବା ପରେ ଗ୍ଲସିଷ୍ଟର ସହରକୁ ଗଲୁ। ଅଗ୍ନି ନିର୍ବାପକ ଶିକ୍ଷା ଦେଉଥିବା ଏଇ ସର୍ବୋଚ୍ଚ ଅନୁଷ୍ଠାନରେ ପୃଥିବୀର ବିଭିନ୍ନ ଦେଶରୁ ବିଶେଷତଃ ଏସିଆରୁ ଅନେକ ଅଫିସର ଆସି ଟ୍ରେନିଂ ପାଆନ୍ତି। ଟ୍ରେନିଂର ମାନ ଅତ୍ୟନ୍ତ ଉନ୍ନତ। ମୁଁ ସମସ୍ତଙ୍କ ଠାରୁ ସିନିୟର ହୋଇଥିବାରୁ ସ୍ୱାଗତ ଭାଷଣ ଦେଇଥିଲି ଓ ଋଷିଆରୁ ଆସିଥିବା ଜଣେ ଅଫିସର (ମେଜର ଜେନେରାଲ ପାହ୍ୟାର) ଧନ୍ୟବାଦ ଦେଇଥିଲେ। ଏ ସ୍କୁଲ୍‌ର ଅଗ୍ନିନିର୍ବାପକ ସେବାର କନେଷ୍ଟବଲମାନେ ଟ୍ରେନିଂ ପାଆନ୍ତି, ସମସ୍ତେ ଅତି କମ୍‌ରେ ଗ୍ରାଜୁଏଟ୍। ଯେହେତୁ ଅନ୍ୟ କୌଣସି ସ୍ତରରେ ନିଯୁକ୍ତି ଦିଆଯାଏ ନାହିଁ କନେଷ୍ଟବଳ (ଫାୟାରମ୍ୟାନ୍)ମାନଙ୍କ ମଧ୍ୟରେ ଜଣେ ସର୍ବୋଚ୍ଚ ସ୍ଥାନକୁ ଯିବ। ଅନୁଷ୍ଠାନର ଡାଇରେକ୍ଟର ମୋତେ ଗର୍ବର ସହ କହିଲେ ମୁଁ ବି ଏକଦା ଜଣେ ଫାୟାରମ୍ୟାନ୍ ଥିଲି।

ଗ୍ଲସିଷ୍ଟରରୁ କାର୍‌ରେ ଫେରିଲୁ ଲଣ୍ଡନ। ବାଟରେ ଗଲୁ ସେକ୍ସପିୟରଙ୍କ ଜନ୍ମସ୍ଥାନ ଦେଖିବାକୁ। ଗାଇଡ୍ ଦରକାର ପଡ଼ିଲେ ନାହିଁ, ସେକ୍ସପିୟରଙ୍କ ବିଷୟରେ ମୋତେ ବୁଝେଇ ଚାଲିଲେ ଡ୍ରାଇଭର ମ୍ୟାକ୍। ବାଟରେ ଯେତେ ଦୁର୍ଗ, ରାଜପ୍ରାସାଦ ପଡ଼ିଲା ସବୁ ବିଷୟରେ ଆମକୁ ବୁଝେଇଲେ। ସେ ଏମ୍.ଏ ପାସ୍ କରି ଗାଡ଼ି କିଣି ଡ୍ରାଇଭର ହୋଇଛନ୍ତି। କାରଣ ପଚାରିବାରୁ କହିଲେ 'ସ୍ୱାଧୀନତା'। ମୋତେ ଛୁଟି ଦରଖାସ୍ତ ଦେବାକୁ ପଡ଼ିବ ନାହିଁ, ମଝିରେ ମଝିରେ ବୁଲିବା ପାଇଁ ଯାଏ। ଯୋଜନା କରୁଛି ତିବ୍ବତ ଯିବା ପାଇଁ, ଦେଖାଯାଉ ଚାଇନା ସରକାର କ'ଣ କହୁଛନ୍ତି ସେମାନେ ଭାରି ସନ୍ଦେହୀ, ତାଙ୍କ ପାଇଁ ସମସ୍ତ ବିଦେଶୀ ହେଉଛନ୍ତି ଗୁପ୍ତଚର।' ଲଣ୍ଡନ ସହରରେ ପଶିବା ପୂର୍ବରୁ ଟେମ୍‌ସ ନଦୀ ଦେଖିଲୁ। ଏଠି ଏତିକି ଅଣ ଓସାରିଆ, ତାକୁ ନଦୀ ବୋଲି କେମିତି କହୁଛନ୍ତି ଆମେ ଆଶ୍ଚର୍ଯ୍ୟ ହେଲୁ। ନଦୀ କୂଳରେ ଠିଆ ହୋଇ ଫଟୋ ଉଠେଇଲୁ। ଫଟୋ ଉଠେଇବା ପରେ ମ୍ୟାକ୍ ପାଟିକଲା 'ଇଣ୍ଡିଆନ୍ ବୋଟ୍'। ବନ୍ଧା ହୋଇଥିବା ପ୍ରାୟ ୧୦୦ ବୋଟ୍ ମଧ୍ୟରେ ଗୋଟିଏ ବୋଟ୍‌କୁ ସିଏ ଆଙ୍ଗୁଠି ଦେଖାଇଲେ। ଆମେ

ସାଙ୍ଗେ ସାଙ୍ଗେ ଫଟୋ ଉଠାଇଲୁ ମହାନଦୀ ନାମିତ ଏଇ ବୋଟ୍‌ର। ବୋଟ୍‌ରେ ଚଢ଼ିବା ପାଇଁ ଇଚ୍ଛା ପ୍ରକାଶ କରିବାରୁ ମ୍ୟାକ୍ ବାରଣ କଲା 'ମାଲିକର ବିନା ଅନୁମତିରେ ବୋଟ୍‌ରେ ଚଢ଼ିବା ଉଚିତ୍ ହେବନାହିଁ । ସେ ଠିକ୍ କହୁଥିଲେ, ଆମ ଦେଶ ହୋଇଥିଲେ 'ଚାଲମ କିଏ ଦେଖୁଛି' କହି ପଶିଥାନ୍ତେ। କିନ୍ତୁ ଏଇଠି ଶୃଙ୍ଖଳା ବେଶୀ ଓ ଶୃଙ୍ଖଳା ପାଇଁ ଏମାନେ ଏତେ ଦିନ ପର୍ଯ୍ୟନ୍ତ ତିଷ୍ଠି ରହିପାରିଛନ୍ତି।

ଆଜିକାଲି ମାନବିକ ଅଧିକାର ବିଷୟରେ ବହୁତ ଚର୍ଚ୍ଚା ହେଉଛି। ଅନେକ ଅଭିଯୋଗପତ୍ର ଆୟୋଗକୁ ଯାଉଛି। ଚାଳିଶ ପଚାଶ ବର୍ଷ ତଳେ ମାନବିକ ଅଧିକାର କହିଲେ ବୁଝାହେଉଥିଲା କେହି ଅଯଥାରେ ଗିରଫ ହେବ ନାହିଁ, କାହାକୁ ନିର୍ଯାତନା ଦିଆଯିବ ନାହିଁ। କାହାକୁ ନିଜ ସମ୍ପତ୍ତିରୁ ବଞ୍ଚିତ କରାଯିବ ନାହିଁ ଇତ୍ୟାଦି। ମାନବିକ ଅଧିକାର 'କରାଯିବ ନାହିଁ'ରେ ସୀମିତ ରହିଥିଲା, ଏବେ 'କରାଯିବ'କୁ ଉନ୍ନୀତ ହୋଇଛି, ଯଥା ସମସ୍ତଙ୍କୁ ଶିକ୍ଷା ଦିଆଯିବ, ସ୍ୱଚ୍ଛ ଜଳ ଏବଂ ପବନ ଦିଆଯିବ, ଖାଦ୍ୟ ଦିଆଯିବ ଇତ୍ୟାଦି। ମାନବିକ ଅଧିକାରର ଇତିହାସ ବହୁତ ପ୍ରାଚୀନ କିନ୍ତୁ ପ୍ରଥମ ଦଲିଲ ତଥା ରାଜିନାମା ସ୍ୱାକ୍ଷରିତ ହୋଇଥିଲା ପ୍ରାୟ ଆଠ ଶହ ବର୍ଷ ତଳେ। ସେ ଏମିତି ଏକ ସମୟ ଥିଲା ଯେତେବେଳେ ରାଜାଙ୍କୁ କୁହାଯାଉଥିଲା ଭଗବାନଙ୍କ ପ୍ରତିନିଧି, ସେ କେବଳ ରାଜ୍ୟର ପ୍ରଭୁ ନଥିଲେ, ପ୍ରଜାଙ୍କର ଧନ ଜୀବନ ମଧ୍ୟ ଥିଲା ତାଙ୍କର ବ୍ୟକ୍ତିଗତ ସମ୍ପତ୍ତି। ରାଜାଙ୍କର ରୋଷ ଚକ୍ଷୁ ପଡ଼ିଲେ ମୁଣ୍ଡ ଗଡ଼ି ଯାଉଥିଲା ଅଥଚ ୧୨୧୫ ମସିହାରେ ଇଂଲଣ୍ଡର ଏକ ସ୍ଥାନରେ କେତେକ ଜମିଦାର ଓ ପ୍ରଜା ଏକତ୍ରୀତ ହୋଇ ରାଜାଙ୍କୁ ଡକେଇଲେ। ସୈନ୍ୟବାହିନୀ ସହାୟତା ନଦେବାରୁ ରାଜା ବାଧ୍ୟ ହୋଇଗଲେ ଓ ପ୍ରଜାଙ୍କ ସହିତ ଏକ ଚୁକ୍ତିନାମା କଲେ। ଏହାକୁ ଜନ୍ ମାଗ୍ନାକାଁଟା କୁହାଯାଏ ଓ ଏହା ଲଣ୍ଡନ ମ୍ୟୁଜିୟମରେ ଏପର୍ଯ୍ୟନ୍ତ ଅଛି। ଏହି ଚୁକ୍ତିନାମା କହେ ଯେ ବିନା ବିଚାରରେ କାହାକୁ ଦଣ୍ଡ ଦିଆଯିବ ନାହିଁ କିମ୍ବା ସମ୍ପତ୍ତିରୁ ବଞ୍ଚିତ କରାଯିବ ନାହିଁ।' ଆଠ ଶହ ବର୍ଷ ତଳର ଏହି ଜନ ଜାଗରଣ ମନରେ ଜାତ କରେ ଖାଲି ବିସ୍ମୟ ଓ ପ୍ରଶଂସା। ଦେଖିବା ପାଇଁ ଚାହିଁଲି ଏହି ପବିତ୍ର ସ୍ଥାନକୁ ଓ କହିବା ମାତ୍ରେ ମ୍ୟାକ୍ ଆନନ୍ଦରେ ଉତ୍ତେଜିତ ହୋଇ କହିଲେ 'ଓଃ ରୁନିମେଡ଼୍, ଆପଣ ଦେଖିବା ପାଇଁ ଚାହୁଁଛନ୍ତି ? ଏଇ ପାଖରେ।'

ଛୋଟ ପଡ଼ିଆଟିଏ, ଏବେ ବି ସଂରକ୍ଷିତ ହୋଇଅଛି। ଇଂରେଜମାନେ ଅତୀତକୁ ବହୁତ ସମ୍ମାନ ଦିଅନ୍ତି। ୪୦୦ ବର୍ଷ ତଳେ ପାର୍ଲିଆମେଣ୍ଟ ହାଉସ ଅଫ୍ କମନସ୍ (ଆମ ଲୋକସଭା ସଦୃଶ)ରେ ଗୋଟିଏ ଚୌକିର ହାତ ଭାଙ୍ଗିଗଲା। ହାତ ଭଙ୍ଗା ଚୌକିଟି ମରାମତି ନକରାଯାଇ ଏବେ ବି ବ୍ୟବହୃତ ହେଉଛି। ମ୍ୟାକ୍ ଆମକୁ ଦେଖେଇଲେ ପୁରୁଣା ୱିମ୍ବିଲି ଷ୍ଟାଡ଼ିୟମ ଯେଉଁଠି ୧୯୬୬ ମସିହାରେ ଅନ୍ତର୍ଜାତୀୟ ଫୁଟ୍‌ବଲ୍

ଟୁର୍ଣ୍ଣାମେଣ୍ଟରେ ଫାଇନାଲ୍ ଖେଳ ଇଂଲଣ୍ଡ ଓ ବ୍ରାଜିଲ ମଧ୍ୟରେ ହୋଇଥିଲା। ଇଂଲଣ୍ଡର ଏକ ଟାଣୁଆ ଟିମ୍ ପରାସ୍ତ ହେଲା କେବଳ ବିଶ୍ୱ ବିଖ୍ୟାତ ପେଲେଙ୍କ ପାଇଁ । କ୍ରିକେଟ୍ ବିଷୟରେ ଆଲୋଚନା ହେବାରୁ ମ୍ୟାକ୍‌ଙ୍କ ମତ ଥିଲା 'ଗାଭାସ୍କର ଓ ତେନ୍ଦୁଲକର ଭଲ ଖେଳାଳୀ କିନ୍ତୁ ତାଙ୍କଠୁ କପିଲଦେବ ଭଲ। ତେନ୍ଦୁଲକର ଗାଭାସ୍କର ସ୍କୋର କରନ୍ତି କିନ୍ତୁ କପିଲଦେବ ମ୍ୟାଚ ଜିଣନ୍ତି।' ମ୍ୟାକ୍ ନିଜେ ଜଣେ ଭଲ କ୍ରିକେଟ୍ ଖେଳାଳୀ ଥିଲେ। ଏମିତି କଥା ହେଉ ହେଉ ପହଞ୍ଚିଲୁ ଓ୍ୱିମ୍ବିଲିରେ ମୋ ଶଳାଙ୍କ ଘରେ। ସାଙ୍ଗରେ ଧରିଛୁ ୪ଟି ବ୍ୟାଗ୍। ବର୍ମିଂହାମ୍‌ରେ ମୋ ଅନିଚ୍ଛା ସତ୍ତ୍ୱେ ସ୍ତ୍ରୀ କିଣି ପକାଇଲେ ଗୁଡ଼ାଏ ଜିନିଷ। ଆଟାଚି ଏମିତି ଭାରି ହେଲା ଯେ ଗଡ଼େଇ ଗଡ଼େଇ ନେଇ ହେବ ସିନା କିନ୍ତୁ ୨ ମହଲାକୁ ଟେକି ନେବୁ କେମିତି ? ଘରଟା ୨ ମହଲା ବିଶିଷ୍ଟ ଫ୍ଲାଟ୍ ଓ ଯେତେ ବୟସ ହେଲେ ମଧ୍ୟ ଲୋକମାନେ ଲିଫ୍ଟ ଆବଶ୍ୟକ କରନ୍ତି ନାହିଁ। ମୋ ଅସହାୟତା ଜାଣିପାରି ମ୍ୟାକ୍ ଆଟାଚିଗୁଡ଼ିକ ଟେକି ଆଣିଲେ ୨ ମହଲାକୁ। ତାଙ୍କୁ ଡାକିଲି କଫି ପିଇବା ପାଇଁ। ମନା କଲେ। ଆସୋସିଏସନର ନିର୍ଦ୍ଦେଶ ଯେ କର୍ତ୍ତବ୍ୟ କରୁଥିବା ସମୟରେ ଗ୍ରାହକ ଠାରୁ ପ୍ରାପ୍ୟ ଛଡ଼ା ଆଉ କିଛି ନେବନାହିଁ।

ଲଣ୍ଡନ ବୁଲିଥାନ୍ତୁ ଭଲଭାବେ, ତା'ପରେ ଯାଇଥାନ୍ତୁ ବେଲଜିୟମ, ଫ୍ରାନ୍‌ସ ଓ ହଲାଣ୍ଡ କିନ୍ତୁ ବମ୍ବେ ଏୟାରପୋର୍ଟରେ ଜଣେ ସିଆଇଏସଏଫର କନେଷ୍ଟବଳ ଜଣେ ଡ଼େପୁଟି କମାଣ୍ଡାଣ୍ଟଙ୍କୁ ବିମାନବନ୍ଦରରେ ରାଇଫଲରେ ଗୁଳି କରି ମାରି ସାତ ଜଣ ମହିଳା କନେଷ୍ଟବଳଙ୍କୁ ପଣବନ୍ଦୀ କରି ରଖିବାର ଖବର ବିବିସିରେ ଦେଖିଲି। ଏଣୁ ୟୁରୋପ ଗସ୍ତ ବାତିଲ କରି ଦିଲ୍ଲୀ ନଫେରି ବମ୍ବେ ଫେରିଲି। ସେ ବିଷୟରେ ପରେ ଲେଖିବି।

ସିଆଇଏସ୍‌ଏଫ୍ ପାଇଁ ବହୁତ ସ୍ୱପ୍ନ ଦେଖିଥିଲି କିନ୍ତୁ ସବୁ ସ୍ୱପ୍ନ ପାଇଁ ରାତି ଯଥେଷ୍ଟ ନଥିଲା। ମୋତେ ହୋମ ସେକ୍ରେଟେରୀ ଗୋପାଳ ସ୍ୱାମୀ ଡାକି କହିଲେ 'କ୍ୟାବିନେଟ୍ ସେକ୍ରେଟେରୀ ଓ ମୁଁ କଥାବାର୍ତ୍ତା ହୋଇଛୁ। ଆମେ ଚାହୁଁଛୁ ଆପଣ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟର ସ୍ୱତନ୍ତ୍ର ସଚିବ ହୁଅନ୍ତୁ। ଆପଣଙ୍କ ଦାୟିତ୍ୱରେ ରହିବ ପୋଲିସ, ଆଭ୍ୟନ୍ତରୀଣ ଶୃଙ୍ଖଳା ଓ କାଶ୍ମୀର। ସବୁଠାରୁ ବେଶୀ ଗୁରୁତ୍ୱପୂର୍ଣ୍ଣ ହେଲା କାଶ୍ମୀର, ତେଣୁ ସେ ବିଷୟରେ କିଛି ପଢ଼ାପଢ଼ି କରନ୍ତୁ। ପନ୍ଦର ଦିନ ପରେ ଜଏନ୍ କରିବେ। କଥାଟାକୁ ଗୁପ୍ତ ରଖନ୍ତୁ।' ମୁଁ କହିଲି 'ମୁଁ କେନ୍ଦ୍ର ସରକାରଙ୍କର ଅଧୀନରେ କାମ କରିଛି ସତ ଦିଲ୍ଲୀରେ କାମ କରିନାହିଁ। ସ୍ୱତନ୍ତ୍ର ସଚିବ ହେଲେ ବିଭିନ୍ନ ମନ୍ତ୍ରଣାଳୟ ସହିତ ସମନ୍ୱୟ ରଖିବାକୁ ପଡ଼ିବ। ଆପଣ କ'ଣ ଭାବୁଛନ୍ତି ଯେ ଏଇଟା ମୋ'ଦ୍ୱାରା ସମ୍ଭବ ହେବ ?' ସେ କହିଲେ ସେ ବିଷୟରେ ମୋର ସମ୍ପୂର୍ଣ୍ଣ ବିଶ୍ୱାସ ଅଛି। ଆପଣ ଓଡ଼ିଶା ସରକାରଙ୍କର ଘରୋଇ ବିଭାଗର ସ୍ୱତନ୍ତ୍ର ସଚିବ ଥିଲେ ଓ ମୁଁ କେତେଜଣଙ୍କୁ ଆପଣଙ୍କ ବିଷୟରେ ପଚାରିଛି ଓ ସେମାନଙ୍କର

ଆପଣଙ୍କ ବିଷୟରେ ଭଲମତ। ଦ୍ୱିତୀୟରେ ଆପଣ ସିଆଇଏସ୍ଏଫ୍‌ରେ ଖୁବ୍ ଭଲ କାମ କରିଛନ୍ତି। ବମ୍ବେ ଘଟଣା ଶୁଣି ନିଜ ଆଡୁ ଫେରିଆସି ଯେଭଳି ଭାବେ ପରିସ୍ଥିତିର ମୁକାବିଲା କଲେ ସେଥିରେ ଆମ୍ଭେମାନେ ଖୁସି । ଆପଣ ରାଜି ହେଲେ ଆମେ ଆଡ୍‌ୱାଣୀ ସାହେବଙ୍କୁ ଫାଇ୍ଲ ପଠାଇଦେବୁ। ମୁଁ ହଁ କଲି ଓ ଠିକ୍ ସମୟରେ ଆଦେଶ ଆସିଗଲା। ଜଣେ ଦୁଇଜଣ ଡି.ଜି. ବିସ୍ମିତ ହେଲେ ଓ ପଚାରିଲେ 'କାହିଁକି ହଁ କଲେ ?' ଡିଜି ପୋଷ୍ଟ ଛାଡ଼ି କିଏ ଯାଏ ?' ମନେ ମନେ ହସିଲି। ଏମାନଙ୍କ ସଂସାର ବିଗୁଲ୍ ସାଲ୍ୟୁଟ୍, ଜୀ ହଜୁରରେ ସୀମିତ। ମୋ' ଅଭିଜ୍ଞତା, ଯେତେବେଳେ ମୁଁ ପୋଲିସ ବିଭାଗର ବାହାରେ କାମ କରିଛି ଯଥା ଡ଼େପୁଟି କମିଶନର ଟ୍ରାନ୍ସପୋର୍ଟରୁ ଆରମ୍ଭ କରି ଏକ କର୍ପୋରେସନର ଚେୟାରମ୍ୟାନ୍ ମୋତେ କିଛି ଅଡୁଆ ଲାଗିନାହିଁ। ନିୟମ କାନୁନ୍ ଅଲଗା ହୋଇପାରେ, ପରମ୍ପରା ଭିନ୍ନ ହୋଇପାରେ କିନ୍ତୁ ଲୋକ ଚରିତ୍ର ସବୁଠି ସମାନ। ପ୍ରଶାସନରେ ଉଚ୍ଚ ସ୍ଥାନକୁ ଗଲେ ନିଜକୁ ବହୁତ କମ୍ କାମ କରିବାକୁ ପଡ଼େ, ଅନ୍ୟମାନଙ୍କ ଦ୍ୱାରା କାମ କରେଇବାକୁ ପଡ଼େ। ଅନ୍ୟମାନଙ୍କ ଦ୍ୱାରା କାମ କରେଇବାର କଳା ଯେଉଁମାନେ ଜାଣିଛନ୍ତି ସେମାନେ ସଫଳ ହୋଇଛନ୍ତି। କେତେକ କହନ୍ତି 'ମୁଁ କଲି' କିନ୍ତୁ ତାଙ୍କ ଠାରୁ ବେଶି ସଫଳ ହୁଅନ୍ତି ସେଇମାନେ ଯେଉଁମାନେ କୁହନ୍ତି 'ଆମେ କଲୁ'। ଜିଜ୍ଞାସା, ପରିଶ୍ରମ, ନିରପେକ୍ଷତା ଓ ସାଧାରଣଜ୍ଞାନ ଥିଲେ ଯେକୌଣସି କର୍ତ୍ତବ୍ୟ କରିହେବ। ମୋତେ କୁହାଯାଇଥିଲା ଉପରେ ଆଇଏଏସ ଅଫିସର ଓ ତଳେ ଆଇଏଏସ ଅଫିସ କେହି ତୁମକୁ ସହଯୋଗ କରିବେ ନାହିଁ। ତୁମେ ଏକଘରିଆ ହୋଇଯିବ। ଏମିତି ଅନେକଗୁଡ଼ିଏ ମନ୍ତବ୍ୟ ଶୁଣି ଯେତେବେଳେ ସ୍ୱତନ୍ତ୍ର ଭାବେ ଯୋଗଦାନ କଲି ଦେଖିଲି ବାଡ଼ ସେପାଖ ଘାସ ବେଶି ଘଞ୍ଚ, ବେଶି ସବୁଜ।

ସିଆଇଏସ୍ଏଫ୍ ଅଫିସର ଓ ଜୱାନମାନେ ବଡ଼ ଦୁଃଖିତ ହେଲେ। କୁଢ଼ କୁଢ଼ ଦରଖାସ୍ତ ପଡ଼ିଲା ବଦଳି ଗୁହାରି ନେଇ। ସମସ୍ତଙ୍କର ଆଶା ଯେ ଯିବା ପୂର୍ବରୁ ଆମ ସାହେବ ଆମ ଦୁଃଖ ଶୁଣିଯିବେ; କିନ୍ତୁ ଥରେ ବଦଳି ଆଦେଶ ପାଇବା ପରେ ଏ ସମସ୍ତ ଦରଖାସ୍ତକୁ ବିଚାରକୁ ନେବା ଅନୁଚିତ। ତେଣୁ ମୋ' ପରବର୍ତ୍ତୀ ଅଫିସରଙ୍କୁ ତୁରନ୍ତ ଦେଖାଇବା ପାଇଁ ଫାଇଲ୍‌ରେ ଆଦେଶ ଦେଲି। ବିଦାୟ ସମ୍ବର୍ଦ୍ଧନା ପାଇଁ ବହୁ ସ୍ଥାନରୁ ନିମନ୍ତ୍ରଣ ଆସିଲା। ସମସ୍ତେ ଜାଣିଥିଲେ ମୁଁ ସିଆଇଏସ୍ଏଫ୍ ଛାଡୁଛି ସବୁଦିନ ପାଇଁ। ତିରିଶ ତାରିଖରେ ବିଦାୟ ନେଲି ଏକ ପ୍ୟାରେଡ଼ ପରେ। ଘରକୁ ଆସି ପୋଷାକ ବଦଳେଇଲି ଓ ସ୍ତ୍ରୀଙ୍କୁ କହିଲି ଶେଷ ଥର ପାଇଁ ଖାକି ପୋଷାକ ପିନ୍ଧିଲି। ଏଇଠି ଅବସର ନେଇ ଓଡ଼ିଶା ଯିବା।

ସ୍ୱରାଷ୍ଟ୍ର ମନ୍ତ୍ରଣାଳୟର ସ୍ୱତନ୍ତ୍ର ସଚିବ ହାତରେ ବହୁତ ଚାବି - ମେଡ଼ାଲ, ପଦୋନ୍ନତି, ବଦଳି, କେନ୍ଦ୍ରକୁ ଡ଼େପୁଟେସନ, ବିଦେଶ ଟ୍ରେନିଂ ଇତ୍ୟାଦି। ଓଡ଼ିଶାରେ

ଯେଉଁ ଆଇପିଏସ୍ ଅଫିସରମାନେ ମୋ' ଓଡ଼ିଶା ଛାଡ଼ି ଆସିବାରେ ଟେଲିଫୋନ୍‌ଟିଏ କରିନଥିଲେ ସେମାନେ ଘନ ଘନ ଫୋନ୍ କଲେ, ଦିଲ୍ଲୀ ଆସିଲେ ଦେଖା କଲେ। ଅନେକ ମୁହଁରେ ଗୋଟିଏ କଥା 'ସାର୍ ଆମେ ଆପଣଙ୍କୁ ମିସ୍ କରୁଛୁ।' ଯାହାହେଉ ସିଆଇଏସ୍‌ଏଫ୍‌ରେ ଥିଲାବେଳେ ନକଲେ ମଧ୍ୟ ମୁଁ ଯେତେବେଳେ ସ୍ୱତନ୍ତ୍ର ସଚିବ ହେଲି ସେମାନେ ନିଜର ବିରହ - ଯନ୍ତ୍ରଣା ଜଣାଇଲେ।

ମୋ' ଅଧୀନରେ ଥିଲେ ୫ ଜଣ ଜଏଣ୍ଟ ସେକ୍ରେଟେରୀ ଓ ସମସ୍ତେ ଆଇଏଏସ୍ । ସେଥିରୁ ଜଣେ ମଣିପୁରର ଚିଫ୍ ସେକ୍ରେଟେରୀ ପଦବୀ ଛାଡ଼ି ଆସିଥିଲେ ଜଏଣ୍ଟ ସେକ୍ରେଟେରୀ ହୋଇ। ବାକି ଚାରିଜଣ ଆଇଏଏସ୍‌ରେ ଖୁବ୍ ସିନିୟର ଥିଲେ। ପ୍ରତ୍ୟେକ ଜଏଣ୍ଟ ସେକ୍ରେଟେରୀଙ୍କ ଅଧିନରେ ଦୁଇଜଣ ଡ଼େପୁଟି ସେକ୍ରେଟେରୀ କିମ୍ବା ଡାଇରେକ୍ଟର କିମ୍ବା ଉଭୟ। ସେମାନଙ୍କ ମଧ୍ୟରୁ ଜଣେ ଥିଲା ଆୟକର ବିଭାଗର, ଜଣେ ରେଳବାଇ ବିଭାଗର, ଜଣେ କଷ୍ଟମସ ବିଭାଗର ଓ ଆଉ ଜଣେ ସେଣ୍ଟ୍ରାଲ ସେକ୍ରେଟେରିଏଟ୍ ସର୍ଭିସ୍ ଆଉ ବାକି ସମସ୍ତେ ଆଇଏଏସ୍। ମୋତେ ସାହାଯ୍ୟ କରିବା ପାଇଁ କାଶ୍ମୀର ଦାୟିତ୍ୱରେ ଥିଲେ ଦୁଇଜଣ ଜଏଣ୍ଟ ସେକ୍ରେଟେରୀ। ଜଣେ ଥିଲେ କାଶ୍ମୀରର ଆଭ୍ୟନ୍ତରୀଣ ସୁରକ୍ଷା ଦାୟିତ୍ୱର ଓ ଆଉ ଜଣେ ଥିଲେ ଉନ୍ନୟନ ପାଇଁ। କାଶ୍ମୀରର ଉନ୍ନୟନ ପାଇଁ କେନ୍ଦ୍ରର ଯାହା ସାହାଯ୍ୟ ଦେବା କଥା ତା' ଉପରେ ନଜର ଦେବା ପାଇଁ ସ୍ୱତନ୍ତ୍ର ସଚିବଙ୍କ ଅଧିନରେ ଏକ କମିଟି ହୋଇଥିଲା। ପ୍ରତ୍ୟେକ ମନ୍ତ୍ରଣାଳୟର ଅତିରିକ୍ତ ସଚିବ କିମ୍ବା ଯୁଗ୍ମ ସଚିବ ଆସୁଥିଲେ ମିଟିଂ ପାଇଁ ଓ ପ୍ରଧାନ ମନ୍ତ୍ରୀଙ୍କ ଦପ୍ତରରୁ ଯୁଗ୍ମ ସଚିବ ଜର୍ଣ୍ଣେଲ ସିଂହ ଆସୁଥିଲେ ନଜର ରଖିବା ପାଇଁ। ଯୋଗ ଦେବାର ତିନି ଚାରି ଦିନ ପରେ ଗଲି କାଶ୍ମୀର, ଏକ ସ୍ୱତନ୍ତ୍ର ବିମାନରେ। ସ୍ୱରାଷ୍ଟ୍ର ମନ୍ତ୍ରଣାଳୟ ଅଧିନରେ ଦୁଇଟି ପ୍ଲେନ୍ ଓ ସ୍ୱତନ୍ତ୍ର ସଚିବଙ୍କ ବ୍ୟବହାର ପାଇଁ ଅନେକ ସମୟରେ ଦିଆଯାଏ। ମୁଁ ଓ ମୋ ସ୍ତ୍ରୀ ଗଲୁ ଶ୍ରୀନଗର। ସାମରିକ ବିମାନଘାଟିରେ ଓହ୍ଲେଇଲୁ । ସାଙ୍ଗରେ ଥା'ନ୍ତି ଜଏଣ୍ଟ ସେକ୍ରେଟେରୀ। ସେ ଆଗ ଦୁଆର ପାଖକୁ ଚାଲିଗଲେ ଓ କହିଲେ 'ଦେଖନ୍ତୁ ସମସ୍ତେ ଅପେକ୍ଷା କରିଛନ୍ତି ଆପଣଙ୍କୁ।' ପ୍ରଥମ ଗସ୍ତ ସମ୍ବର୍ଦ୍ଧନା କରିବା ପାଇଁ ଆସିଥିଲେ ଅତିରିକ୍ତ ମୁଖ୍ୟ ଶାସନ ସଚିବ, ଡି.ଜି, ଅତିରିକ୍ତ ଡି.ଜି, ବି.ଏସ୍.ଏଫ୍ ଆଇ.ଜି, ଶ୍ରୀନଗର ଆଇ.ଜି, ଆର୍ମୀର ମେଜର ଜେନେରାଲ, କମିଶନର ଡି.ଆଇ.ଜି, କଲେକ୍ଟର ଓ ଏସ୍‌ପି। ଚିଫ୍ ସେକ୍ରେଟେରୀଙ୍କ ଦପ୍ତରରୁ ଆସିଥିଲେ ଜଣେ ଡ଼େପୁଟି ସେକ୍ରେଟେରୀ ଜଣେଇବା ପାଇଁ ଯେ ରାତିରେ ଚିଫ୍ ସେକ୍ରେଟେରୀ ସ୍ୱାଗତମ୍ - ରାତ୍ର ଭୋଜନର ବନ୍ଦୋବସ୍ତ କରିଛନ୍ତି। ଆମେ ବସିଲୁ ଗୋଟିଏ ବୁଲେଟ୍ ପ୍ରୁଫ୍ ଗାଡ଼ିରେ। ଆଗରେ ପଛରେ ଓ ଦୁଇ ସାଇଡ୍‌ରେ ଚାରୋଟି ଗାଡ଼ି

ସୁରକ୍ଷା ଦେଇ ନେଇଗଲା ଗେଷ୍ଟ ହାଉସକୁ। ସରକାରୀ ଗେଷ୍ଟ ହାଉସର ସ୍ୱତନ୍ତ୍ର ରୁମ୍ ଯେଉଁଠି ସେ ସମୟରେ ଭଡ଼ା ଲାଗୁଥିଲା ୨୫୦୦୦ ଟଙ୍କା। କାଶ୍ମୀର ସରକାରଙ୍କ ଅତିଥି ଭାବେ ରହିଲୁ। ମୁଁ ଗଲି ମିଟିଂକୁ। ଜଣେ ମହିଳା ଡିଏସ୍‌ପି ସ୍ତ୍ରୀଙ୍କୁ ନେଇଗଲେ ଡାଲ ଲେକ୍ ଦେଖେଇବା ପାଇଁ। ସବୁଠି ପୋଲିସ୍ ବିଏସ୍‌ଏଫ୍ କିମ୍ବା ସୈନ୍ୟବାହିନୀ, କିନ୍ତୁ ଲୋକ ଚଲିଛନ୍ତି ନିର୍ଭୟରେ। ଦୋକାନ ବଜାର ଖୋଲା। ଲୋକେ ଠିଆ ହୋଇ ଗପ ସପ ହସ ଖୁସି କରୁଛନ୍ତି। ସନ୍ତ୍ରାସବାଦ ସାମୟିକ ଭୟ କିମ୍ବା ଉତ୍ତେଜନା ସୃଷ୍ଟି କରେ କିନ୍ତୁ ସାଧାରଣ ଜୀବନ ପୂର୍ବାବସ୍ଥାକୁ ଫେରିଆସେ। ଦିନର ଖୁବ୍ ହସ ଖୁସିରେ ଗଲା। ତା' ପରଦିନ ଚିଫ୍ ସେକ୍ରେଟେରୀ ବ୍ଲୋରିଆଙ୍କ ସାଙ୍ଗେ କିଛି ଆଲୋଚନା କରି ପୂର୍ବାହ୍ଣରେ ଫେରିଆସିଲୁ। ପାଇଲଟ ଥିଲେ ଓଡ଼ିଆ, ଆକାଶରୁ ଦେଖେଇଲେ ଅମରନାଥ ଓ ବୈଷ୍ଣୋଦେବୀ। ତା' ସାଙ୍ଗେ ପାକିସ୍ତାନର ଏକ ସହର ଦିଶୁଥାଏ। ପାଇଲଟ୍‌ଙ୍କୁ କହିଲି ପ୍ଲେନ୍‌କୁ ଆଉ ଟିକିଏ ପାଖକୁ ନେଇ ଯାଆନ୍ତୁ। କିନ୍ତୁ ସେ ମନା କଲେ। ସୀମାନ୍ତର ୧୫ ମାଇଲ୍ ଭିତରକୁ ଗଲେ ସେପଟୁ ରକେଟ୍ ଆକ୍ରମଣ ହେବାର ସମ୍ଭାବନା ଥାଏ। ସେ କହିଲେ ଯେ ବିଏସ୍‌ଏଫ୍ ପ୍ଲେନ୍ ଯେତେବେଳେ ଶ୍ରୀନଗର ଯାଏ ପାକିସ୍ତାନୀ ସୈନ୍ୟବାହିନୀ ଜାଣନ୍ତି ଯେ ସ୍ୱତନ୍ତ୍ର ସଚିବ ଯାଉଛନ୍ତି। ମୋର ଏଇ ଶ୍ରୀନଗର ଗସ୍ତ ସମୟରେ ଯେଉଁ ମିଟିଂ ହୋଇଥିଲା ସେ ବିଷୟରେ ପାକ୍ ଅଧିକୃତ କାଶ୍ମୀର ଖବରକାଗଜରେ ବାହାରିଲା 'ଭାରତର ନୂତନ ସ୍ୱତନ୍ତ୍ର ସଚିବଙ୍କ ଗସ୍ତ। ଆହୁରି ଅଧିକ ନିରୀହ କାଶ୍ମୀରବାସୀ କତଲ ହେବେ।'

ଯେଉଁ ସୀମା ଚିହ୍ନଟ ହୋଇଛି ସେଠାରେ ଆମ ତରଫରୁ ବିଏସ୍‌ଏଫ୍ ଓ ପାକିସ୍ତାନ ତରଫରୁ ରେଞ୍ଜର ରହନ୍ତି କିନ୍ତୁ ନିୟନ୍ତ୍ରଣ ରେଖା (ଏଲ୍‌ଓସି)ରେ ଉଭୟ ତରଫରୁ ସୈନ୍ୟବାହିନୀ ରହନ୍ତି। ପାକିସ୍ତାନୀ ରେଞ୍ଜରଙ୍କ ବିଷୟରେ ମୋର ଏକ ମଧୁର ଅଭିଜ୍ଞତା ଅଛି। ସିଆଇଏସଏଫରେ ଥିଲାବେଳେ ଅମୃତସରର ବିମାନ ବନ୍ଦରର ସୁରକ୍ଷା ବନ୍ଦୋବସ୍ତର ସମୀକ୍ଷା କରିବା ପାଇଁ ଯାଇଥିଲି। ସେଇ ଅବସରରେ ଆମେ ସ୍ୱାମୀ ସ୍ତ୍ରୀ ଗଲୁ ବିଶ୍ୱ ପ୍ରସିଦ୍ଧ ଶିଖ୍‌ମାନଙ୍କ ସ୍ୱର୍ଣ୍ଣ ମନ୍ଦିର। ସେଇଠିକୁ ହଜାର ହଜାର ଲୋକ ଯାଆନ୍ତି ଦର୍ଶନ କରନ୍ତି ମାଗଣା ସେବା କରନ୍ତି (କରସେବା) ଓ ଲଙ୍ଗର (ଭୋଜନାଳୟ)ରେ ଖାଆନ୍ତି। ଆମେ ଦୁଇଜଣ ବାସନ ମାଜି କରସେବା କଲୁ ଓ ଆମକୁ ମନ୍ଦିର ତରଫରୁ ସ୍ୱତନ୍ତ୍ର ଭେଟି ଦିଆଯାଇଥିଲା। ଉପରଓଳି ଯିବା କଥା ୱାଘା ସୀମାନ୍ତକୁ, ଯେଉଁଠାରେ ଉଭୟ ଭାରତ, ପାକିସ୍ତାନର ପତାକା ଅବତରଣ କରାଯାଏ। ସେ ଏକ ସୁଦୃଶ୍ୟ କାର୍ଯ୍ୟକ୍ରମ। ଦୁଇପଟେ ବସିଥାନ୍ତି ହଜାର ହଜାର ଲୋକ। ଏପଟେ ଭାରତ ମାତାକି ଜୟ ସେପଟେ ପାକିସ୍ତାନ ଜିନ୍ଦାବାଦର ସ୍ଲୋଗାନ୍। ପତାକା ଅବତରଣ କରାଯାଏ ଠିକ୍ ୫ଟା

ବେଳେ, କେତେକ କାରଣରୁ ଆମେ ପ୍ରାୟ ୧୨ ମିନିଟ୍ ଡ଼େରିରେ ପହଞ୍ଚିଲୁ। କିନ୍ତୁ ଉଭୟ ସୀମାବଳ ଓ ପାକିସ୍ଥାନ ରେଞ୍ଜର୍ସ ମୋତେ ଅପେକ୍ଷା କରିଥିଲେ। ପହଞ୍ଚିବା ମାତ୍ରେ କାର୍ଯ୍ୟକ୍ରମ ଆରମ୍ଭ ହେଲା। କାର୍ଯ୍ୟକ୍ରମ ସରିବା ପରେ ଉଭୟପକ୍ଷ ଲୋକ ସୀମାନ୍ତ ରେଖାକୁ ଛୁଇଁ ଫେରିଗଲେ। ସମସ୍ତେ ସମସ୍ତଙ୍କୁ ହାତ ହଲଉଥାନ୍ତି, କେହି କେହି କହୁଥାନ୍ତି ହିନ୍ଦୁସ୍ଥାନୀ ପାକିସ୍ଥାନୀ ଭାଇ ଭାଇ। ସମସ୍ତେ ଗଲାପରେ ଆମେ ଦୁଇଜଣ ଗଲୁ ବିଏସ୍‌ଏଫ୍ ଅଫିସରଙ୍କ ସହିତ। ଆଶ୍ଚର୍ଯ୍ୟ ହେଲୁ ଯେ ଏତେ ବଡ଼ ପକ୍କା ତୋରଣ, ଏତେ ବଡ଼ ଲୌହ ଫାଟକ ଅଥଚ ଭାରତ ପାକିସ୍ଥାନକୁ ବିଭକ୍ତ କରୁଛି ଆଣ୍ଠୁଏ ଉଚ୍ଚାର ତାରବାଡ଼। ମୁଁ ଯାଇ ଠିଆ ହେଲି ଗୋଟିଏ ପଥର ପାଖରେ ଯାହାର ପୂର୍ବ ପଟରେ ଲେଖାଯାଇଛି ଭାରତ ଓ ପଶ୍ଚିମ ପଟେ ପାକିସ୍ଥାନ। ସେପାଖେ ଠିଆ ହୋଇଥାନ୍ତି ଜଣେ ପାକିସ୍ଥାନୀ ଅଫିସର। ମୋତେ ସାଲ୍ୟୁଟ୍ କଲେ ଓ ସାଲ୍ୟୁଟ୍ ଗ୍ରହଣ କରି ଆମେ ହ୍ୟାଣ୍ଡସେକ୍ କଲୁ। ଆମ ଦୁଇ ହାତର ଫୁଟେ ତଳେ ସୀମାନ୍ତର ତାର ବାଡ଼। ବାଁ ପାଖକୁ ସେମାନଙ୍କ ବାରାକ୍ ଓ ଆମର ବାରାକ୍ - ଦୂରତା ମାତ୍ର ୫୦ ରୁ ୬୦ ଗଜ। ଆମ ଅଫିସର ବାରଣ୍ଡାରେ ଠିଆ ହୋଇ ଦେଖିଲି ଯେ ପାକିସ୍ଥାନ ପଟୁ ଦୁଇଟି କୁକୁର ବାଡ଼ ଡ଼େଇଁ ଆସିଲେ ଆମ ପଟକୁ। ଏପଟେ ପିଣ୍ଡାରେ ଠିଆ ହୋଇଥିବା କୁକୁରଟିଏ ତାକୁ ଦେଖି ଭୁକିବା ପରିବର୍ତ୍ତେ ଶୁଙ୍ଘିଲା ଓ ଚାଟିଲା। ପଚାରିବାରୁ କମାଣ୍ଡାଣ୍ଟ କହିଲେ 'ସେମାନେ ଏମିତି ଆସନ୍ତି ଓ ଯାଆନ୍ତି ଓ ଆମ କୁକୁର ସେପଟକୁ ଯାଆନ୍ତି ଓ ବାରାକ୍‌ରୁ କିଛି ଖାଇ ଫେରିଆସନ୍ତି। ଭାବିଲି ଏଇ କୁକୁରଙ୍କ ପରି ଯଦି ଆମେ ହୋଇଥାନ୍ତେ ତେବେ କାରଗିଲ୍ ଯୁଦ୍ଧ ହୋଇନଥାନ୍ତା।

ସେଇକଥା ମୁଁ ପାଇଲଟଙ୍କୁ କହୁଥିଲି। ତାଙ୍କ ଉତ୍ତର ଥିଲା ଯେ ସାଧାରଣ ମଣିଷ କାହିଁକି ଚାହିଁବ ଯୁଦ୍ଧ ହେଉ? ପାକିସ୍ଥାନର ସାଧାରଣ ସୈନିକ ମଧ୍ୟ ଚାହେଁ ନାହିଁ ଯୁଦ୍ଧ ହେଉ। ସଂଘର୍ଷ ଚାହୁଁଛନ୍ତି ପାକିସ୍ଥାନର ନେତା, ସେନାପତି ଓ ମୁଲ୍ଲାମାନେ।

ଦିଲ୍ଲୀରେ ପହଞ୍ଚିଲା ବେଳକୁ ଆମେ କ୍ଳାନ୍ତ। ଯାହାହେଉ ଶ୍ରୀନଗର ଦେଖା ହୋଇଗଲା। ମୋତେ ବାରମ୍ବାର ଯିବାକୁ ପଡ଼ିବ। ସେଥିପାଇଁ ନିଜକୁ ପ୍ରସ୍ତୁତ କରିରଖିଲି। ସିଆଇଏସ୍‌ଏଫ୍ ଠାରୁ ଏହା ଏକ ଭିନ୍ନ ଅଭିଜ୍ଞତା। ସିଆଇଏସ୍‌ଏଫ୍‌ରେ କେବଳ ନିଜ କର୍ମଚାରୀଙ୍କ ଠାରୁ ସମ୍ମାନ ମିଳେ, ଏଇଠି ବିଭିନ୍ନ ବିଭାଗରୁ ସମ୍ମାନ ମିଳୁଥିଲା। କିନ୍ତୁ ସମ୍ମାନଟା ବଡ଼ କଥା ନୁହେଁ, ଆତ୍ମସନ୍ତୋଷ ବଡ଼ କଥା। ସ୍ୱତନ୍ତ୍ର ସଚିବ ଭାବରେ ମୁଁ ବହୁତ ଆତ୍ମସନ୍ତୋଷ ପାଇଛି।

ସବୁଦିନେ ହାରାହାରି ଦୁଇ ତିନିଟା ମିଟିଂ। ମାସରେ ଥରେ ମିଟିଂ ହୁଏ ଡାଇରେକ୍ଟର ଆଇବି, ଡାଇରେକ୍ଟର 'ର', ଡିରେକ୍ଟର ଜେନେରାଲ ମିଲିଟାରି

ଅପରେସନ, ଡିରେକ୍ଟର ଜେନେରାଲ ମିଲିଟାରି ଇଣ୍ଟେଲିଜେନ୍ସି, ଡି.ଜି. ବି.ଏସ୍.ଏଫ୍‌ଙ୍କୁ ନେଇ। ପ୍ରଥମ ମିଟିଂକୁ ଡିରେକ୍ଟର ଜେନେରାଲ ମିଲିଟାରୀ ଅପରେସନ ଓ ଡିରେକ୍ଟର ଜେନେରାଲ ମିଲିଟାରୀ ଇଣ୍ଟେଲିଜେନ୍ସି ଆସିଥିଲେ। ତା'ପରେ ସେମାନେ ତାଙ୍କର ଦ୍ୱିତୀୟ ସ୍ଥାନ ଅଧିକାରୀଙ୍କୁ ପଠାଇଲେ ଯାହାକି ପରମ୍ପରା ଅନୁସାରେ ଚଳିଆସୁଥିଲା। ସେହିପରି ବିଷୟ ଅନୁସାରେ ଆଇବିର ସ୍ୱତନ୍ତ୍ର ଡାଇରେକ୍ଟର ଓ 'ର'ର ଅତିରିକ୍ତ ଡାଇରେକ୍ଟର ଆସୁଥିଲେ। ବିଭିନ୍ନ ବିଷୟରେ ଆଲୋଚନା କରାଯାଉଥିଲା ଓ ଯାହା ନିଷ୍ପତ୍ତି ନିଆହେଉଥିଲା ତାହା ଅତ୍ୟନ୍ତ ଗୋପନୀୟ ରଖାଯାଉଥିଲା। କାଶ୍ମୀର ସମ୍ବନ୍ଧରେ ସ୍ୱତନ୍ତ୍ର ଆଲୋଚନା କରାଯାଉଥିଲା ଓ ସେଥିରେ ଉକ୍ତ ଅଧିକାରୀମାନଙ୍କ ସମେତ କାଶ୍ମୀରର ଡି.ଜି. କିମ୍ବା ଅତିରିକ୍ତ ଡି.ଜି. ଯୋଗଦେଉଥିଲେ। ବିଭିନ୍ନ ମନ୍ତ୍ରଣାଳୟର ଛୋଟ ଗ୍ରୁପ କରି କାଶ୍ମୀରର ଉନ୍ନୟନ ବିଷୟରେ ମଧ୍ୟ ଆଲୋଚନା ହେଉଥିଲା।

ସ୍ୱତନ୍ତ୍ର ସଚିବ ଭାବେ ଯୋଗଦେବା ପରେ ଅନେକ ଦେଶର ରାଷ୍ଟ୍ରଦୂତମାନେ ସୌଜନ୍ୟମୂଳକ ସାକ୍ଷାତ ପାଇଁ ଆସିଥିଲେ। ଆମେରିକା, ଚାଇନା, ପାକିସ୍ତାନ କିମ୍ବା ଋଷିଆର ରାଷ୍ଟ୍ରଦୂତମାନେ ଆସିନଥିଲେ କିନ୍ତୁ ଇଂଲଣ୍ଡ, ୟୁରୋପୀୟ ୟୁନିୟନରେ ପ୍ରତିନିଧି (ସେତେବେଳେ ଇଟାଲୀର ରାଷ୍ଟ୍ରଦୂତ), ଆରବ ଦେଶର ପ୍ରତିନିଧି (ସେତେବେଳେ ଓମାନର ରାଷ୍ଟ୍ରଦୂତ) ପ୍ରଭୃତି ଆସିଥିଲେ। ଇସ୍ରାଏଲର ଦକ୍ଷିଣ ପୂର୍ବ ଏସିଆର ଦାୟିତ୍ୱରେ ଥିବା ସିନିୟର ଅଫିସର ଜଣେ ଆସିଥିଲେ। ୟୁରୋପ, ଇଂଲଣ୍ଡର ରାଷ୍ଟ୍ରଦୂତମାନେ ପଚାରୁଥିଲେ ଯେ କାଶ୍ମୀରକୁ ଅଧିକ କିଛି ସ୍ୱାୟତ୍ତ ଶାସନ ଦେଲେ କେମିତି ହୁଅନ୍ତା ? ବିଭିନ୍ନ ରାଜ୍ୟର ଡି.ଜି. ଓ ହୋମ୍ ସେକ୍ରେଟେରୀମାନେ ଆସନ୍ତି। ଏହି ସମୟ ଭିତରେ ବହୁତ ଲୋକଙ୍କ ସାଙ୍ଗେ ପରିଚୟ ହୋଇଗଲା।

ଏକ ରବିବାର ଦିନ ସକାଳ ପ୍ରାୟ ସାଢ଼େ ଆଠଟା। ହଠାତ୍ କଣ୍ଟ୍ରୋଲ୍ ରୁମ୍‌କୁ ଖବର ଆସିଲା ଯେ ଜେଟ୍ ଏୟାର ଲାଇନ୍‌ର ଏକ ବିମାନରେ ସନ୍ତ୍ରାସବାଦୀ ପଶିଯାଇଛନ୍ତି ଓ କେତେକ ସୁରକ୍ଷା କର୍ମୀ ପ୍ଳେନ୍‌କୁ ଘେରି ରହିଛନ୍ତି। ଏଭଳି ଅବସ୍ଥାରେ ଦରକାର ପଡ଼େ ନ୍ୟାସନାଲ ସିକ୍ୟୁରିଟି ଗାର୍ଡ଼। ଯଦି ସନ୍ତ୍ରାସବାଦୀମାନେ ଏକ ପ୍ଳେନ୍‌କୁ ଅପହରଣ କରିଛନ୍ତି ସେମାନଙ୍କ କୌଣସି ଗ୍ରୁପ୍ ପାର୍ଲାମେଣ୍ଟ, ସେକ୍ରେଟେରୀଏଟ୍, ରାଷ୍ଟ୍ରପତି ଭବନ ମଧ୍ୟ ଆକ୍ରମଣ କରିପାରନ୍ତି। ହୋମ୍ ସେକ୍ରେଟେରୀ ଓ ମୁଁ ଜଏଣ୍ଟ ସେକ୍ରେଟେରୀ ମାନଙ୍କୁ ଡକେଇ ସେକ୍ରେଟେରୀଏଟ୍ ଗଲୁ। ବିଭିନ୍ନ ସ୍ଥାନର ସରକାରୀ ସଂସ୍ଥାକୁ ସତର୍କ କରିବା ଓ ଦୃଷ୍ଟି ଦେବା ପାଇଁ ଜଏଣ୍ଟ ସେକ୍ରେଟେରୀମାନଙ୍କୁ ନିର୍ଦ୍ଦେଶ ଦେଇ ମୁଁ ଦିଲ୍ଲୀ ବିମାନ ବନ୍ଦରକୁ ଗଲି। ପହଞ୍ଚିଲା ପରେ ଜଣାପଡ଼ିଲା ଯେ, ବିମାନ ପରିବହନ ମନ୍ତ୍ରଣାଳୟ ତରଫରୁ ସିକ୍ୟୁରିଟି ଡ୍ରିଲ୍ କରାଯାଉଥିଲା। ଏଭଳି ଡ୍ରିଲ୍ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟର ଅଗୋଚରରେ କରିବା ଉଚିତ୍ ନଥିଲା।

ଥରେ ଓମାନର ରାଷ୍ଟ୍ରଦୂତ ଦେଖାକଲେ। ତାଙ୍କ ଦେଶର ଜଣେ ପ୍ରଫେସର ଭାରତ ବୁଲିବା ପାଇଁ ଆସିଥିଲେ, ଫେରିଲା ବେଳକୁ ଦିଲ୍ଲୀ ବିମାନ ବନ୍ଦରରେ ସିଆଇଏସଏଫ ସୁରକ୍ଷା ବାହିନୀ ତାଙ୍କ ବ୍ୟାଗ୍‌ରେ ପିସ୍ତଲର ଗୁଳିର ଖୋଳଟିଏ ପାଇଲେ। ଯେହେତୁ ଏହା ଆଇନ୍ ବହିର୍ଭୂତ ସେମାନେ ଦିଲ୍ଲୀ ପୋଲିସକୁ ଜଣାଇଦେଲେ ଓ ଦିଲ୍ଲୀ ପୋଲିସ ତାଙ୍କୁ ଗିରଫ କରି ନେଇଗଲା। ତାଙ୍କ ରାଷ୍ଟ୍ରଦୂତ ଜାଣିଲା ବେଳକୁ ସେ ହାଜତରେ। ଯେହେତୁ ସେ ମୋତେ ପୂର୍ବରୁ ଦେଖା କରିଥିଲେ ମୋତେ ଫୋନ୍ କରି ଅଫିସ୍‌କୁ ଆସିଲେ। ରାଷ୍ଟ୍ରଦୂତ ବଡ଼ ବିଚଳିତ ଜଣାପଡୁଥିଲେ। କାରଣ ଉକ୍ତ ପ୍ରଫେସର ଏକଦା ତାଙ୍କର ଶିକ୍ଷକ ଥିଲେ। ସେ ହଲପର ସହିତ କହିଲେ ଯେ ଉକ୍ତ ପ୍ରଫେସରଙ୍କର ଲାଇସେନ୍‌ସ ଅଛି, ସେ ରିଭଲଭର ଏବଂ ଗୁଳି ନିଜ ଘରେ ଛାଡ଼ିଦେଇ ଆସିଛନ୍ତି। କିନ୍ତୁ ଭୁଲ୍ କ୍ରମେ ବ୍ୟବହୃତ ହୋଇଥିବା ଏକ ଗୁଳିର ଖୋଳଟି ରହିଯାଇଛି। ସେ ଜୋରଦେଇ କହିଲେ ଏହା ଏକ ଭୁଲ୍ କିନ୍ତୁ ଅପରାଧ ନୁହେଁ। ତାଙ୍କୁ ବୁଝେଇଲି ଯେ ଭୁଲ୍ ହେଉ କି ଅବହେଳା ହେଉ ଏହା ଅପରାଧର ସଂଜ୍ଞା ମଧ୍ୟରେ ଆସୁଛି ଓ ତାଙ୍କୁ କେବଳ ବିଚାରାଳୟ ଛାଡ଼ିପାରିବ। ସେ ମୋତେ ବହୁତ ଅନୁରୋଧ କଲେ ସାହାଯ୍ୟ କରିବା ପାଇଁ ଓ ଏକଥା ବି କହିଲେ ଯେ ଆମ ଦୁଇ ଦେଶ ମଧ୍ୟରେ ସମ୍ପର୍କ ଏତେ ଭଲ କିନ୍ତୁ ଏଇ ଛୋଟିଆ ଘଟଣାଟି ପାଇଁ ଆମ ଦେଶରେ ତୀବ୍ର ପ୍ରତିକ୍ରିୟା ଦେଖାଯିବ, କାରଣ ଏ ପ୍ରଫେସରଙ୍କର ବହୁତ ଛାତ୍ର ବିଭିନ୍ନ ଉଚ୍ଚ ସ୍ଥାନରେ ପ୍ରତିଷ୍ଠିତ। ସେ କହି ଚାଲୁଥାନ୍ତି, ମୁଁ ଭାବୁଥାଏ କ'ଣ କରାଯାଇପାରେ। ଓମାନ ସାଙ୍ଗରେ ଆମର ସମ୍ପର୍କ ବହୁତ ଭଲ। ଆମ ଦେଶର ଅନେକ ଇଞ୍ଜିନିୟର, କୁଶଳୀ ଓ ଅଣକୁଶଳୀ ଶ୍ରମିକ ତାଙ୍କ ଦେଶରେ କାମ କରୁଛନ୍ତି ଓ କୋଟି କୋଟି ଟଙ୍କା ବୈଦେଶିକ ମୁଦ୍ରା ଉପାର୍ଜନ ହେଉଛି। ଚାହିଁଲେ ତାଙ୍କ ଦେଶ ଭାରତୀୟମାନଙ୍କୁ ଫେରାଇ ଦେଇ ପାକିସ୍ତାନୀମାନଙ୍କୁ ଦେଇପାରନ୍ତି। ଏଇ ଘଟଣାଟି ହେଉଛି, ଝିମିଟି ଖେଳ ପରି। ତାହାକୁ ମହାଭାରତ ହେବାକୁ ଦେବା ଉଚିତ ନୁହେଁ। ମୁଁ ରାଷ୍ଟ୍ରଦୂତଙ୍କୁ ଉପଦେଶ ଦେଲି କୌଣସି ବଡ଼ ଓକିଲଙ୍କୁ ଲଗେଇ ତାଙ୍କୁ ଜାମିନିରେ ନେଇ ଆସନ୍ତୁ ଓ ତାପରେ ମୋତେ ଦେଖା କରନ୍ତୁ। ଏ ବିଷୟରେ ହୋମ ସେକ୍ରେଟେରୀଙ୍କ ପାଖକୁ ଏକ ନୋଟ୍ କରି ପଠେଇ ଦେଲି ଓ ସେ ଲେଖିଲେ ଏହା ଏକ ସମ୍ବେଦନଶୀଳ ଘଟଣା ଓ ଆପଣ ଏହାର ସନ୍ତୋଷଜନକ ସମାଧାନ କରନ୍ତୁ। ଦୁଇଦିନ ପରେ ରାଷ୍ଟ୍ରଦୂତ ଆସିଲେ ଓ କହିଲେ ପ୍ରଫେସରଙ୍କୁ ଜାମିନ ହୋଇଗଲା। ଏଥର ସେ ଖୁବ୍ ଖୁସି ଜଣାପଡୁଥିଲେ ଓ ତାଙ୍କର ବିଶ୍ୱାସ ଥିଲା ଯେ ମୁଁ ତାଙ୍କୁ ସାହାଯ୍ୟ କରିବି। ମୋତେ କହିଲେ ଯଦି ଏଇ ଘଟଣାଟି ପ୍ରଫେସରଙ୍କ ବିରୁଦ୍ଧରେ ଯିବ ତେବେ ତାଙ୍କ ସମ୍ମାନ ସବୁଦିନ ପାଇଁ ଚାଲିଯିବ। ଦୁଇଦିନ ତଳେ ମୋତେ ଯେତେବେଳେ ଦେଖା

କରିଥିଲେ ସେ ଯିବା ପରେ ମୁଁ ପୋଲିସ କମିଶନରଙ୍କ ସାଙ୍ଗେ କଥାହେଲି। ଘଟଣାର ଗୁରୁତ୍ୱ ଓ ସମ୍ଭାବ୍ୟ ପ୍ରଭାବ ଉପଲବ୍ଧି କଲାପରେ ସେ କହିଲେ କିପ୍ରକାର ମୁଁ ସାହାଯ୍ୟ କରିପାରେ ଆପଣ କୁହନ୍ତୁ ସାର୍? ତାଙ୍କୁ କହିଲି ଜାମିନ୍ ଆବେଦନକୁ ସରକାରୀ ଓକିଲ ବିରୋଧ କରିବେ ନାହିଁ, ଦ୍ୱିତୀୟରେ ତିନିଦିନ ମଧ୍ୟରେ କେସ୍‌ର ଚାର୍ଜସିଟ୍ ଦାଖଲ ହେବ ଓ ଦାଖଲ ହେବା ପରେ କେସ୍‌କୁ ପ୍ରତ୍ୟାହାର କରାଯିବ। ଏସବୁ କରିବା ପାଇଁ ଚାରି ପାଞ୍ଚ ଦିନ ଲାଗିଲା ଓ ରାଷ୍ଟ୍ରଦୂତ ତାଙ୍କ ସାର୍‌ଙ୍କୁ ଧରି ମୋ' ପାଖକୁ ଆସିଲେ କୃତଜ୍ଞତା ଜଣେଇବା ପାଇଁ। ଅନେକ ସମୟ କଥାବାର୍ତ୍ତା ହେଲେ ଓ ତାଙ୍କ ଦେଶକୁ ଯିବା ପାଇଁ ବ୍ୟକ୍ତିଗତ ଭାବେ ନିମନ୍ତ୍ରଣ କଲେ ଓ କଥା ଛଳରେ ମୋର ଘର ଠିକଣା ବୁଝିନେଲେ। ସେ ଫେରିଯିବାର ଦୁଇଘଣ୍ଟା ପରେ ମୋ ସ୍ତ୍ରୀ ମୋତେ ଫୋନ୍ କରି କହିଲେ ଯେ ଓମାନ ଦୂତାବାସରୁ ଦୁଇଟା ପେଟି ଜଣେ ଅଫିସର ଆସି ଦେଇଯାଇଛନ୍ତି ଓ ଆମେ ଖୋଲିନାହୁଁ। ମୁଁ ଘରକୁ ଫେରିଆସି ପେଟି ଖୋଲିଲି - ଗୋଟିଏ ପେଟିରେ ଥିଲା ୧୨ଟି ମଦ ବୋତଲ। ଅତି ଦାମିକା ମଦ। ପୁରୁଣା ପିଇବାବାଲା କହନ୍ତି ଯେ ଏଭଳି ମଦ ଦୁର୍ଲ୍ଲଭ ଭାଗ୍ୟରେ ଥିଲେ ମିଳେ। ଅନ୍ୟ ପେଟିରେ ଥିଲା କିସ୍‌ମିସ୍, ପେସ୍ତା, ଖଜୁର ଓ ଅନେକ ଶୁଖିଲା ଫଳ। ଖଜୁରଗୁଡ଼ିକ ବେଶ୍ ମୋଟା ଓ ଆଙ୍ଗୁଠି ଲମ୍ବ। ସାଙ୍ଗେ ସାଙ୍ଗେ ଟେଲିଫୋନ୍‌ରେ ପିଏକୁ ଡିକ୍ଟେସନ ଦେଲି। ସେ ଚିଠିରେ ନମ୍ବର ପକେଇ ଲଫାପାରେ ପୂରେଇ ଘରକୁ ଆସିଲେ ଓ ମୁଁ ଦସ୍ତଖତ କଲାପରେ ମଦ ବୋତଲଗୁଡ଼ିକୁ ନେଇ ଓମାନ ଦୂତାବାସରେ ଫେରେଇ ଦେଇଆସିଲେ । ମୁଁ ରାଷ୍ଟ୍ରଦୂତଙ୍କୁ ଲେଖିଥିଲି 'ଆପଣଙ୍କର ସହୃଦୟତା ପାଇଁ ବହୁତ ଧନ୍ୟବାଦ କିନ୍ତୁ ମୁଁ ରକ୍ଷଣଶୀଳ ଲୋକ ହୋଇଥିବାରୁ ମଦ ପିଇବା ତ ଦୂରର କଥା ଆମ ଘରେ ମଦ ରହେନାହିଁ। ତେଣୁ ବଡ଼ ଦୁଃଖର ସହିତ ମଦ ବୋତଲଗୁଡ଼ିକ ଫେରେଇ ଦେଉଛି କିନ୍ତୁ ଖଜୁରୀ ଓ ଅନ୍ୟାନ୍ୟ ଶୁଖିଲା ଫଳକୁ ରଖୁଛି। ଆଶାକରେ ଆପଣ କ୍ଷମା କରିବେ।' ତା'ଆରଦିନ ରାଷ୍ଟ୍ରଦୂତ ପୁଣି ଆସି ଦେଖାକଲେ ଓ ଭାବବିହ୍ୱଳ ହୋଇ କହିଲେ 'ଆପଣଙ୍କ ଧାର୍ମିକ ଭାବନାକୁ ମୁଁ କଷ୍ଟ ଦେଇଥିବାରୁ କ୍ଷମା ମାଗୁଛି। ମୁଁ ଭାବିଥିଲି ଆପଣ ଗ୍ରହଣ କରିବେ କାରଣ ଅନେକ ଅଫିସର .... ଏତିକି କହି ସେ ଅଟକିଗଲେ ଓ କଥାକୁ ବାଆଁରେଇଦେଲେ। ଇଙ୍ଗିତ ଯଥେଷ୍ଟ ଥିଲା। ଅନେକ ବଡ଼ ବଡ଼ ଅଫିସର ବିଭିନ୍ନ ଦୂତାବାସର କର୍ମଚାରୀମାନଙ୍କ ସହିତ ସମ୍ପର୍କ ରକ୍ଷା କରନ୍ତି ଭଲ ମଦ ବୋତଲ ପାଇଁ। ଅଧିକାଂଶ ଦୂତାବାସ ଟିକସ ନଦେଇ ମଦ ବୋତଲ ଆଣନ୍ତି ଓ ଦଲାଲମାନଙ୍କୁ ବିକି ଦିଅନ୍ତି। ସେ ମଦ ବୋତଲର ନାଁ ଓ ବ୍ରାଣ୍ଡ୍ ଜଣେ ଓଡ଼ିଆ ଅଫିସରଙ୍କୁ କହିବାରୁ ସେ କହିଲେ 'ଧେତ୍, ଜାଣିଛ କେତେ ଟଙ୍କାର ମଦ? ଅତି କମ୍‌ରେ ଲକ୍ଷେ ଟଙ୍କା। ଯଦି ନ ପିଇଲ ଆମମାନଙ୍କୁ କାହାକୁ ଦେଇଦେଇଥାନ୍ତ। ତୁମେ କେବଳ ଚୂଡ଼ା ନୁହଁ ନାଲି ଚୂଡ଼ା।'

ଚୂଡ଼ା ହୁଏ କି ନାଲି ଚୂଡ଼ା ହୁଏ ପଦକ୍ଷେପଟି ଆମ ଦେଶ ସପକ୍ଷରେ ଗଲା । ଏଇ ଘଟଣାକୁ ମୁଁ ବର୍ତ୍ତମାନ ତୁଳନା କରୁଛି । ଆମେରିକାରେ ଥିବା ଆମର କନସଲ ଜେନେରାଲ ଶ୍ରୀମତୀ ଖୋବ୍ରାଗାଡ଼େଙ୍କ ବିରୁଦ୍ଧରେ ହୋଇଥିବା କେସ୍ । ସେ କେସ୍ ଏହିପରି ସମାଧାନ କରାଯାଇପାରିଥାନ୍ତା, ଚାର୍ଜସିଟ୍ ଦାଖଲ କରି ପ୍ରତ୍ୟାହାର କରାଯାଇପାରିଥାନ୍ତା । କିନ୍ତୁ ଭାରତରେ ଜନ୍ମ ହୋଇ ଆମେରିକୀୟ ହୋଇଥିବା ଜଣେ ଅଧିକାରୀ ଲାଗି ପଡ଼ିଛନ୍ତି ସେ ମହିଳାଙ୍କ ବିରୁଦ୍ଧରେ । ଘର ଢ଼ିଙ୍କି କୁମ୍ଭୀର ହେଲେ କାହାକୁ କହିବା ? ଓମାନର ପ୍ରଫେସରଙ୍କୁ ଛାଡ଼ିଦେବା ପରେ ସେ ଦେଶର ଖବର କାଗଜରେ ଆମ ଦେଶର ଶାସନକଳକୁ ପ୍ରଶଂସା କରି ସମ୍ପାଦକୀୟ ଲେଖାଗଲା ।

କିଛିଦିନ ପରେ ମୋତେ ଆମେରିକା ଯିବାକୁ ପଡ଼ିଲା । ଅନେକ ସିନିୟର ଅଫିସର (ଆଇପିଏସ, ଆଇଏଏସ୍ ଓ ଜଣେ ସେଣ୍ଟ୍ରାଲ ସେକ୍ରେଟେରୀ ସର୍ଭିସ୍)ଙ୍କୁ ନେଇଗଲି ଓ୍ୱାଶିଂଟନ୍‌କୁ । ବାଟରେ ଓହ୍ଲେଇଲୁ ନ୍ୟୁୟର୍କରେ । ସାଙ୍ଗରେ ଥିଲେ ସ୍ତ୍ରୀ । ଏୟାର ଇଣ୍ଡିଆର ପ୍ରଥମ ଶ୍ରେଣୀରେ ଶୋଇ ଶୋଇ ଯିବା ସତ୍ତ୍ୱେ ମଧ୍ୟ କ୍ଳାନ୍ତ ଲାଗୁଥାଏ । କାରଣ ୧୮ ଘଣ୍ଟାର ଯାତ୍ରା । ଆମ ପାଖରେ ବସିଥିଲେ ଓଡ଼ିଶାର ରାଜ୍ୟପାଳ ରାଜେନ୍ଦ୍ରନ ଓ ତାଙ୍କ ସ୍ତ୍ରୀ । ପୂର୍ବରୁ ଏୟାର ଇଣ୍ଡିଆ ଚେୟାରମ୍ୟାନ୍‌ଙ୍କୁ କୁହାଯାଇଥିଲା ଓ ତାଙ୍କ ନିର୍ଦ୍ଦେଶ ପାଇ ପାଇଲଟ୍ ଆସି ମୋ ସହ କଥାବାର୍ତ୍ତା କଲେ ଓ ଉପରକୁ ନେଇଗଲେ । ଦେଖିଲି ସବୁଆଡ଼େ ଖାଲି ଆକାଶ, ପ୍ଲେନ୍‌ଟି ଭାସି ଚାଲିଛି ଶୂନ୍ୟତା ଭିତରେ । ଇଞ୍ଜିନରୁ ଖାଲି ଶୁଭୁଥାଏ ଗୁଡ଼ାଏ କଥାବାର୍ତ୍ତା । ପାଇଲଟ ବୁଝେଇଲେ 'ପ୍ରତି ୧୫ ମିନିଟ୍‌ରେ ମୋତେ କିଛି ନା କିଛି କହିବାକୁ ପଡ଼ିବ ନହେଲେ ନିୟନ୍ତ୍ରଣ କକ୍ଷ ଭାବିବେ ଯେ ମୋର କିଛି ଅଘଟଣ ଘଟିଛି ।' ତଳକୁ ଅନେଇଲି କିଛି ଦିଶୁନାହିଁ, ଖାଲି ମେଘ । ପାଇଲଟ ବୁଝେଇଲେ 'କେମିତି ଦିଶିବ ? ଆମେ ୩୬୦୦୦ ଫୁଟ୍‌ରେ ଉଡୁଛୁ ।' ମୁଁ ପଚାରିଲି ବାହାରେ କେତେ ଥଣ୍ଡା ଓ ସେ କହିଲେ ଏତେ ଥଣ୍ଡା ଯେ ମରିବା ପାଇଁ ମିନିଟ୍‌ଏ ମଧ୍ୟ ଲାଗିବ ନାହିଁ । ନିଜ ସିଟ୍‌କୁ ଫେରି ଆସିଲି ଓ ଗଭର୍ଣ୍ଣର ରାଜେନ୍ଦ୍ରନଙ୍କ ସାଙ୍ଗେ କିଛି କଥାବାର୍ତ୍ତା ହେଲି । ମୁଁ ଡାଇରେକ୍ଟର ଭିଜିଲାନ୍ସ ଥିଲାବେଳେ ସେ ଅନେକ ଥର ଡକେଇଛନ୍ତି । ରାଜ୍ୟପାଳଙ୍କର ଜାଣିବାର କ୍ଷେତ୍ର ସୀମିତ ହେଲେ ମଧ୍ୟ ସେ ବହୁତ କିଛି ଜାଣିବା ପାଇଁ ଚାହୁଁଥିଲେ ଓ ମୁଁ ଅନିଚ୍ଛା ପ୍ରକାଶ କରୁଥିଲି । କିନ୍ତୁ ସେଦିନ ବେଶ୍ ଭଲ କଥାବାର୍ତ୍ତା ହେଲୁ । ସେ ଉପଦେଶ ଦେଲେ 'ଭାରତ ସରକାରଙ୍କ ଅଧୀନରେ କାମ କର ଭଲ ଲାଗିବ । ଏବେ ଭାରତ ସରକାରଙ୍କର ପ୍ରତିନିଧିତ୍ୱ କରି ଆମେରିକା ଯାଉଛ ଓଡ଼ିଶାରେ ଥିଲେ ତାହା ସମ୍ଭବ ହୋଇଥାନ୍ତା ?' ଆଉ କିଛି କଥାବାର୍ତ୍ତା ହୋଇ ନିଜ ସିଟ୍‌କୁ ଫେରିଲି ଓ କମ୍ବଳ ଘୋଡ଼ି ହୋଇ ଶୋଇଲି । ଶୋଇବା ମାତ୍ରେ ଚିନ୍ତା ଘାରିଲା ମୋ ମେଡ଼ିକାଲ ଇନ୍‌ସ୍ୟୁରାନ୍ସ କାଗଜ ପହଞ୍ଚିବ ତ ।

ଯେଉଁଦିନ ଆମେରିକା ଯିବାକଥା ସେଦିନ ଦିନ ୧୨ଟା ବେଳେ ପ୍ରଧାନମନ୍ତ୍ରୀଙ୍କ ଦପ୍ତରରୁ ଖବର ଆସିଲା ଯେ ପ୍ରଧାନମନ୍ତ୍ରୀ ମହାଶୟ ମୋତେ ଡାକିଛନ୍ତି ସନ୍ଧ୍ୟା ସାତଟାରେ ଦେଖା କରିବା ପାଇଁ। ରାତି ୧୨ଟା ସୁଦ୍ଧା ମୋତେ ବିମାନ ବନ୍ଦରରେ ପହଞ୍ଚିବାକୁ ପଡ଼ିବ । ଯଦି କୌଣସି କାରଣରୁ ପ୍ରଧାନମନ୍ତ୍ରୀଙ୍କ ଦପ୍ତରରେ ଘଣ୍ଟେ ୨ ଘଣ୍ଟା ଡେରି ହୋଇଗଲା ଏଥର ମଧ୍ୟ ଆମେରିକା ଯିବା ବନ୍ଦ ହେବ। ଥରେ ଏମିତି ବନ୍ଦ ହୋଇଥିଲା ମୁଁ ଡି.ଜି. ସିଆଏସଏଫ ଥିଲାବେଳେ। ଯେଉଁଦିନ ଯିବା କଥା ତା ପରଦିନ ପଡ଼ିଗଲା ପାର୍ଲାମେଣ୍ଟ କମିଟିର ମିଟିଂ। ଜଏଣ୍ଟ ସେକ୍ରେଟେରୀ ଫୋନ୍ କରି ଦୁଃସମ୍ବାଦଟି ଦେଲେ । ଆଉ କାହାକୁ ପଠେଇ ହେବକି ପଚାରିବାରୁ ସେ କହିଲେ ନାଇଁ ସାର୍, ସିବିଆଇ ଡାଇରେକ୍ଟର ସେଭଳି ପରିସ୍ଥିତିରେ ପଡ଼ି ଚିଠି ଲେଖିଥିଲେ କିନ୍ତୁ କମିଟି ଚେୟାରମ୍ୟାନ ଭୀଷଣ ବିରକ୍ତ ହୋଇ ମନାକଲେ। ହଁ, ଆପଣ ଚେୟାରମ୍ୟାନ୍ ପ୍ରଣବ ମୁଖାର୍ଜୀଙ୍କୁ ଯଦି କହିବେ ତାହାହେଲେ କିଛି ହୋଇପାରେ।' ପ୍ରଣବ ମୁଖାର୍ଜୀଙ୍କ ଘରକୁ ଫୋନ୍ କଲି, କିନ୍ତୁ ତାଙ୍କ ଦାନ୍ତ ଭୀଷଣ ବିନ୍ଧୁଥିବାରୁ ସେ ଶୋଇଥିଲେ କଥା ହୋଇପାରିଲି ନାହିଁ। ଟିକେଟ୍ କ୍ୟାନ୍‌ସେଲ୍ କରାଗଲା। ବାର ତେର ହଜାର ଟଙ୍କା ନଷ୍ଟ ହେଲା, ଏଥର ସେମିତି ହେବନାହିଁ ତ?

କାହିଁକି ପ୍ରଧାନମନ୍ତ୍ରୀ ଡାକୁଛନ୍ତି ତାହା ଅନୁମାନ କରି କାଶ୍ମୀର ବିଷୟରେ ଏକ ନୋଟ୍ ପ୍ରସ୍ତୁତ କରି ପଠେଇ ଦେଇଥିଲି। ପ୍ରଧାନମନ୍ତ୍ରୀଙ୍କ ଘରେ ପହଞ୍ଚିଲି ୬ଟା ୪୫ ମିନିଟ୍‌ରେ, ଦେଖିଲି ଅପେକ୍ଷା କରିଛନ୍ତି ରସଗୋତ୍ରା (ଅବସରପ୍ରାପ୍ତ ବିଦେଶ ସଚିବ), ଅଡ଼ମିରାଲ ନାୟାର (ଅବସରପ୍ରାପ୍ତ ଜଳ ବାହିନୀ ମୁଖ୍ୟ) ଓ ସାମ୍ବାଦିକ ଆର୍.କେ. ମିଶ୍ର। ସିଏ ତିନିଜଣ ଗୋଟିଏ ଦଳ କରିଥାନ୍ତି ଓ ଖସଡ଼ା ତିଆରି କରିଥିଲେ ଯେ କାଶ୍ମୀର ଛାଡ଼ି ଆସିଥିବା ପଣ୍ଡିତ (ବ୍ରାହ୍ମଣ)ଙ୍କ ପୁନଃ ସ୍ଥାପନ ପାଇଁ ଏକ ଫଣ୍ଡ ତିଆରି କରି ତାଙ୍କୁ ଦିଆଯାଉ କାରଣ କାଶ୍ମୀର ସରକାର ତାଙ୍କୁ ଅବହେଳା କରୁଛନ୍ତି। ଠିକ୍ ସାତଟା ବେଳେ ଭିତରୁ ଡକରା ଆସିଲା, ଆମେ ପଶିଲୁ, ସେପଟ ଦୁଆରୁ ବାଜପେୟୀ ମହାଶୟ ପଶିଲେ। ଧଳା କୁର୍ତ୍ତା ପାଇଜାମା ଓ କଳା ଜ୍ୟାକେଟ୍ ପିନ୍ଧା ବାଜପେୟୀ ମହାଶୟଙ୍କୁ ଦେଖିଲେ ଲାଗେ ଯେ ତାଙ୍କ ଦେହରୁ ଏକ ଜ୍ୟୋତି ବାହାରୁଛି। ଆମ୍ଭମାନଙ୍କୁ ଥଣ୍ଡା ପାନୀୟ ଦିଆଗଲା, ମୋ' ଗଳା ଖରାପ ଥିବାରୁ ମୁଁ ଟିକିଏ ପିଇ ରଖିଦେଲି। ବାଜପେୟୀ ମହାଶୟଙ୍କ ଦୃଷ୍ଟିରେ ପଡ଼ିଗଲା ଓ ପଚାରିଲେ 'ଥଣ୍ଡା ପିଇବାରେ କିଛି ଅସୁବିଧା କି' ଓ ମୁଁ ମୁଣ୍ଡ ଟୁଙ୍ଗାରିବାରୁ 'ଚ' ମଗେଇଲେ। ତା' ସାଙ୍ଗେ ଆସିଲା ଛେନା ପକୋଡ଼ା। ସେମାନଙ୍କ ତରଫରୁ ରସଗୋତ୍ର ଆରମ୍ଭ କଲେ, ନାୟାର ଓ ମିଶ୍ର କଥା ଯୋଡ଼ିଲେ। ପ୍ରଧାନମନ୍ତ୍ରୀ କିଛି ନକହି ମଝିରେ ମଝିରେ ମୋ ଆଡ଼କୁ ଅନଉଥିଲେ। ମୁଁ କିଛି

କହୁନଥିଲା। ସବୁ ଶୁଣିଲା ପରେ ପ୍ରଧାନମନ୍ତ୍ରୀ କହିଲେ ଆପଣମାନଙ୍କ କଥା ଶୁଣିଲି, ସ୍ୱତନ୍ତ୍ର ସଚିବଙ୍କ ନୋଟ୍ ବି ପଢ଼ିଛି। କିଛିଦିନ ପରେ ନିଷ୍ପତ୍ତି ଜଣେଇବି ସ୍ୱରାଷ୍ଟ୍ର ମନ୍ତ୍ରଣାଳୟ ମାଧ୍ୟମରେ। ସେତିକିରେ ମିଟିଂ ଶେଷ। ମିଟିଂ ସରିବା ପରେ ସେମାନେ ମୋତେ ପଚାରିଲେ ପୁଣି କେବେ ଦେଖାହେବ, ମୁଁ କହିଲି ପ୍ରଧାନମନ୍ତ୍ରୀଙ୍କ ଆଦେଶ ଆସୁ ମୁଁ ନିମନ୍ତ୍ରଣ କରିବି। କିଛିଦିନ ପରେ ସେମାନଙ୍କ ପ୍ରସ୍ତାବ ପ୍ରତ୍ୟାଖାନ ହୋଇ ଆସିଲା।

ବ୍ୟସ୍ତ ହୋଇ ପ୍ରଧାନମନ୍ତ୍ରୀଙ୍କ ବାସଭବନରୁ ଫେରିଲି ଓ ଖାଇ ପିଇ ଗଲୁ ବିମାନ ବନ୍ଦରକୁ। ସେଇ ବ୍ୟସ୍ତତା ମଧ୍ୟରେ ଆମ ଦୁଇ ଜଣଙ୍କର ମେଡ଼ିକାଲ୍ ଇନ୍‌ସୁରାନ୍ସ କାଗଜ ଛାଡ଼ି ଦେଇ ଆସିଲୁ। ବିମାନ ଛାଡ଼ିବାର ପ୍ରାୟ ଘଣ୍ଟେ ପରେ ମନେପଡ଼ିଲା। ଲଣ୍ଡନରେ ବିମାନ ରହିଲା ପ୍ରାୟ ଦୁଇ ଘଣ୍ଟା। ବିମାନରୁ ବାହାରି ଏୟାର ଇଣ୍ଡିଆର ମ୍ୟାନେଜରଙ୍କ ରୁମ୍‌ରେ ନିତ୍ୟକର୍ମ ସାରିଲୁ ଓ ଦିଲ୍ଲୀକୁ ଫୋନ୍ କରି ମୋ' ବ୍ୟକ୍ତିଗତ ସୁରକ୍ଷା ଅଫିସର ଅଗ୍ନିହୋତ୍ରୀକୁ କହିଲି ଘରଚାବି ଖୋଲି ଇନ୍‌ସୁରାନ୍ସ କାଗଜ ଆଣ ଓ ପ୍ଲେନ୍‌ରେ ୱାଶିଂଟନ୍ ପଠେଇଦିଅ। ହୋଟେଲ୍‌ର ଆଡ୍ରେସ୍ ବି ଦେଇଥିଲି। ଓହ୍ଲେଇଲୁ ନ୍ୟୁୟର୍କର ଜନ୍ ଏଫ୍. କେନେଡ଼ି ଏୟାରପୋର୍ଟରେ। ଏୟାରଇଣ୍ଡିଆର ମ୍ୟାନେଜର ଅରୁଣ କୁମାର ଟିର୍କି ସ୍ୱାଗତ କଲେ। ସେ ଆମ ପାଇଁ ଏୟାର ଇଣ୍ଡିଆ ତରଫରୁ ହୋଟେଲ ବନ୍ଦୋବସ୍ତ କରିଥିଲେ ଓ ହୋଟେଲ୍ ଯିବା ପାଇଁ ଗାଡ଼ିବି ମଗେଇଥିଲେ। ଟ୍ରଲିରେ ଆଟାଚି ଲୋଡ୍ ହୋଇଯିବ ଓ ପ୍ରଥମ ଥର ପାଇଁ ମୁଁ ଆବିଷ୍କାର କଲି ଟ୍ରଲି ପାଇଁ ପଇସା (ତିନି ଡଲାର) ଦେବା ପାଇଁ ପଡ଼ିବ। ପୁଣି ଟ୍ୟାକ୍ସିବାଲା ଟିପ୍‌ସ୍ ନେବ। ନଦେଲେ କଟମଟ କରି ଅନେଇବ। ଆମେ ଗଲୁ ରାମଦା ହୋଟେଲକୁ।

ଗଙ୍ଗା ଦାଶ ନାମକ ଜଣେ ଆଇଏଏସ ଅଫିସରଙ୍କ ପୁଅ ନ୍ୟୁୟର୍କରେ ଷ୍ଟେଟ୍ ବ୍ୟାଙ୍କର ମ୍ୟାନେଜର ଥିଲେ। ଗଙ୍ଗା ଆମ ସାଙ୍ଗରେ ଆଇପିଏସ୍ ଟ୍ରେନିଂ ନେଉଥିଲେ। ପରବର୍ଷ ଆଇଏଏସ ପାଇ ଆମ ଗହଣରୁ ବିଦାୟ ନେଲେ। କିନ୍ତୁ ତାଙ୍କ ଝିଅ ଆଇପିଏସ ପାଇ ଓଡ଼ିଶା ଆସିବାରୁ ମୋ ସାଙ୍ଗେ ଯୋଗସୂତ୍ରର ପୁନଃ ସ୍ଥାପନ ହେଲା। ଗଙ୍ଗା ଖବର ଦେଇଥାଏ ଅନିଲ୍‌କୁ ଓ ଅନିଲ ଆସିଥାନ୍ତା ବିମାନ ବନ୍ଦରକୁ କିନ୍ତୁ ତା'ର ଦେଖାନାହିଁ। ଏୟାରଇଣ୍ଡିଆ ମ୍ୟାନେଜର ଅରୁଣ ଟିର୍କୀ ବୁଝେଇଲେ 'ସାର୍ ନ୍ୟୁୟର୍କର ଟ୍ରାଫିକ୍ ବମ୍ବେ ଟ୍ରାଫିକ୍‌କୁ ଟପିଯିବ। ସେ ଭଦ୍ରଲୋକ ନିଶ୍ଚୟ ଆମ ଅଫିସକୁ ଆସିବେ ଓ ମୁଁ ତାଙ୍କୁ ହୋଟେଲ ନାଁ ବତେଇ ଦେବି। ଆପଣ ହୋଟେଲ ଟ୍ୟାକ୍ସିରେ ଚାଲିଯାଆନ୍ତୁ, ସେ ନିଶ୍ଚୟ ଆପଣଙ୍କ ପାଖରେ ପହଞ୍ଚିବେ।' ଅରୁଣ ଟିର୍କୀଙ୍କ ଘର ବୀରମିତ୍ରପୁର ପାଖରେ। ତାଙ୍କ ବାପା ହାଇଦ୍ରାବାଦରେ ଘର କରିଥିବାରୁ ସେ ହାଇଦ୍ରାବାଦୀ ହୋଇଗଲେ। ଓଡ଼ିଆ, ଶାଦ୍ରୀ, ହିନ୍ଦୀ ଓ ତେଲଗୁ ଭାଷାରେ ପାରଙ୍ଗମ। ତାଛଡ଼ା ଇଂଲିସ୍। ତାଙ୍କୁ ଫେରିବା ପ୍ରୋଗ୍ରାମ ବତେଇ ଦେଲି ଓ ସେସବୁ ପ୍ରସ୍ତୁତ କରି ରଖିବେ ବୋଲି କହିଲେ।

ହୋଟେଲ ରାମଦାର ରୁମ୍‌ରେ ପହଞ୍ଚୁ ପହଞ୍ଚୁ ଫାଇଁକରି ଖଟରେ ପଡ଼ିଗଲୁ । ଗୋଡ଼ ହାତ କଥା ମାନିବା ପାଇଁ ରାଜି ନୁହଁନ୍ତି । ମୁଣ୍ଡ ଖାଲି ଖାଲି । ଶୂନ୍ୟରୁ ଖସିଲା ଭଳି ଲାଗୁଥାଏ । ସେତେବେଳେ ସନ୍ଧ୍ୟା ୬, ଆମର ରାତି ଅଧ । ସେଇ ଲୁଗାପଟା ପିନ୍ଧି ଶୋଇପଡ଼ିଲୁ । ଘଣ୍ଟେ ପରେ ଫୋନ୍ ଆସିଲା, ଅଭ୍ୟର୍ଥନାକାରୀ ଫୋନ୍ କଲେ ସେ ମହିଳା ଜଣକ ସାତ ଆଠଟା ବାକ୍ୟ କହିଗଲେ କେବଳ କଫି ଛଡ଼ା ଆଉ କୌଣସି ଶବ୍ଦ ମୁଁ ବୁଝିପାରିଲି ନାହିଁ । ପରେ ଜାଣିଲି ସେ ମେକ୍ସିକାନ୍, ତାଙ୍କ ଉଚ୍ଚାରଣ ବୁଝିବା କଷ୍ଟ । ମୁଁ ଭାବିଲି ବୋଧେ କଫି ପଠାଇବା ପାଇଁ ଚାହୁଁଛନ୍ତି ମୁଁ ମନାକଲି ଓ ପୁଣି ଶୋଇପଡ଼ିଲି । ଅଧ ଘଣ୍ଟେ ପରେ ପୁଣି ଫୋନ୍, ଏଥର ବୁଝିଲି ଜଗା ଓ ରୋ । କାହିଁକି ବାରମ୍ବାର ଫୋନ୍ କରୁଛନ୍ତି ନବୁଝିପାରି ବିରକ୍ତି ହୋଇ କହିଲି ନୋ । ପାଞ୍ଚ ମିନିଟ୍ ପରେ ରୁମ୍‌ର ବେଲ୍ ବାଜିଲା । କବାଟ ଖୋଲି ଦେଲା ବେଳକୁ ଜଣେ ଅଜଣା ଭାରତୀୟ ଲୋକ । ତାଙ୍କ ଠାରୁ ସମ୍ପୂର୍ଣ୍ଣ ବିବରଣୀ ଶୁଣି ଆମେ ସ୍ୱାମୀ, ସ୍ତ୍ରୀ ହସି ହସି ବେଦମ୍ । ପ୍ରଥମ ଟେଲିଫୋନ୍‌ରେ ଭଦ୍ର ମହିଳା ଜଣକ କହିଲେ 'ଆପଣଙ୍କୁ ଦେଖା କରିବା ପାଇଁ ଜଣେ ଆସିଛନ୍ତି । କଫି ପିଉଛନ୍ତି, ତାଙ୍କୁ ଛାଡ଼ିବି କି ? ଦ୍ୱିତୀୟ ଥର କହିଲେ ଯେ ତାଙ୍କ ନାଁ ଜଗନ୍ନାଥ ରାଓ । ଏତେଗୁଡ଼ିଏ କଥା କହିଲେ ମୁଁ ବୁଝିଲି କଫି, ଜଗା ଓ ରୋ ।

ଅନିଲର ଅଫିସ୍‌ରେ ବହୁତ କାମ ପଡ଼ିବାରୁ ସେ ତା' ସାଙ୍ଗ ଜଗନ୍ନାଥ ରାଓଙ୍କୁ ନିଜ ଗାଡ଼ିରେ ପଠାଇଥିଲା । ଆମେ କ୍ଳାନ୍ତ ହେବା ଦେଖି ଜଗନ୍ନାଥ ରାଓ ଚା' ବନେଇଲେ । ଆମେ ପିଇଲା ପରେ ତାଜା ହେଲୁ । ତା'ପରେ ସେ ପ୍ରୋଗ୍ରାମ ବତେଇଲେ । ଆମେ ନ୍ୟୁୟର୍କ ସହର ବୁଲିବୁ । ରାତିରେ ସହରର ଆଲୋକ ବେଶ୍ ଆକର୍ଷକ । ମୁଁ କ୍ୟାମେରା ନେଇ ଯାଇଥିଲି ଓ ରାଜେନ୍ଦ୍ରନଙ୍କ ପରିବାର ଓ ଆମ ପରିବାରର ଫଟୋ ଜଣେ ପ୍ୟାସେଞ୍ଜର ଉଠେଇଥାନ୍ତେ କିନ୍ତୁ କୌଣସି କାରଣରୁ କ୍ୟାମେରା କାମ ଦେଲାନାହିଁ । ଆଉ ଏକ କ୍ୟାମେରା କିଣିବି ବୋଲି ପ୍ରସ୍ତାବ ଦେଲି କିନ୍ତୁ ଜଗନ୍ନାଥ କହିଲେ 'ମଉସା, ଅଯଥା କାହିଁକି ପଇସା ଖର୍ଚ୍ଚ କରିବେ, ୧୫ ଡଲାରରେ ୟୁଜ୍ ଆଣ୍ଡ୍ ଥ୍ରୋ କ୍ୟାମେରା ମିଳିବ । ୩୬ଟା ଫଟୋ ଉଠିବ ଖୁବ୍ ଭଲ ଫଟୋ ଓ ଦିଲ୍ଲୀ ଯାଇ ଆପଣ ତାକୁ ଧୋଇବେ ଓ କ୍ୟାମେରାକୁ ଫୋପାଡ଼ିଦେବେ । ୱାଶିଂଟନ୍‌ରେ ଏକ ମେଳା ହେଉଛି ଓ କ୍ୟାମେରା ଶସ୍ତାରେ ମିଳୁଛି, ସେଇଠୁ କିଣିବେ । ୧୫ ଡଲାର ଦେଲି ନେବା ପାଇଁ ମନା କଲେ । ଗୋଟିଏ ରାସ୍ତାକଡ଼ ଦୋକାନୀ ସାଙ୍ଗରେ ପାଞ୍ଚ ମିନିଟ୍ ପର୍ଯ୍ୟନ୍ତ ଖିଚ୍‌ଖିଚ୍ କଲାପରେ ସେ ୧୩ ଡଲାରରେ କ୍ୟାମେରା ଦେଲେ । ସେ ଜଣେ ସର୍ଦ୍ଦାର, କହିଲେ ଦେଶ୍ କା ଆଦ୍‌ମୀ ବୋଲି ଦେଇଦେଲି ନାଇଁ ତ ୧୫ ଡଲାର ତଳକୁ ମୁଁ ଯାଇନଥାନ୍ତି ।

କ୍ୟାମେରା ଧରି ଗଲୁ ବରଫ ଉପରେ ଖେଳ ଦେଖିବା ପାଇଁ। ସେତେବେଳକୁ ତୁଷାରପାତ ହୋଇନଥିଲା। ନଭେମ୍ବର ମାସ ମଝି ଭାଗ କାହିଁକି ହେବ? କିନ୍ତୁ ଏକ ବିରାଟ ପଡ଼ିଆରେ ବରଫ ବିଛା ହୋଇଛି, ଦିଶୁଛି ଗାଲିଚା ପରି ଓ ତା'ଉପରେ ଅନେକ ପୁରୁଷ ମହିଳା ସ୍ୱତନ୍ତ୍ର ଜୋତା ପିନ୍ଧି ସ୍କେଟିଂ କରୁଥାନ୍ତି ଓ ଦେଖଣାହାରୀ ତାଳିମାରୁଥାନ୍ତି। ରାସ୍ତା କଡ଼ରେ ଜଣେ ନଡ଼ା ବିଡ଼ା ବିକୁଥିଲେ ଦାମ୍ ପଚାରି ଜାଣିଲି ଗୋଟିଏ ବିଡ଼ା ୧୦ ଡଲାର (୪୦୦ ଟଙ୍କା)। ଆହୁରି ଆଶ୍ଚର୍ଯ୍ୟ ହେଲି ଯେତେବେଳେ ଜଣେ ଲୋକ ସାଇକେଲ, ରିକ୍ସାଟେ ଚଲେଇ ଚଲେଇ ଆସିଲା ତିନିଜଣ ବସିବେ ଓ ମାଇଲିଏ ଯିବା ଆସିବା ପାଇଁ ଜଣକୁ ୨୦ ଡଲାର। ଯଦି ଜଣେ ରିକ୍ସା ନେଇ ଚଳେଇବାକୁ ଚାହିଁବ ୫୦ ଡଲାର ଦେବ। ଜଗନ୍ନାଥ ରାଓର ଜଣେ ପରିଚିତ ଆମେରିକୀୟ ଲୋକ ଜୁଟିଲେ। ସେ ଜଗନ୍ନାଥ ରାଓକୁ ରିକ୍ସା କ'ଣ ବୁଝେଇବା ଆରମ୍ଭ କରିବାରୁ ରାଓ ଠୋ ଠୋ ହସିଲେ ଓ କହିଲେ ଯେ ଇଣ୍ଡିଆ ବୁଲିଯାଅ ଦେଖିବ ନଡ଼ା ମିଳୁଛି ଓ ସବୁଆଡ଼େ ରିକ୍ସା। ତା'ପରେ ଗଲୁ ଏକ ଭାରତୀୟ ରେଷ୍ଟୁରାଣ୍ଟକୁ। ବାଟରେ ଗାଡ଼ି ରଖି ଜଗନ୍ନାଥ ଦେଖେଇଦେଲେ ଦୁର୍ଘଟଣାର ଏକ ସ୍ଥାନ। ଗଣିଲି, ୧୪ଟା ଗାଡ଼ି ଦୁର୍ଘଟଣାଗ୍ରସ୍ତ ହୋଇଛନ୍ତି। କାରଣ ସୁସ୍ପଷ୍ଟ। ପ୍ରଥମ ଗାଡ଼ି ହଠାତ୍ ବ୍ରେକ୍ ମାରିଦେଇଛି ତାପରେ ଗୋଟିଏ ପରେ ଗୋଟିଏ ଗାଡ଼ି ପଛ ଆଡୁ ଧକ୍କା ମାରିଛନ୍ତି। ୨ ଜଣ ମୃତ ଅନେକ ଆହତ। ଆମେ ପହଞ୍ଚିବାର କିଛି ସମୟ ପୂର୍ବର ଘଟଣା, ଅତିଶୀଘ୍ର ଗାଡ଼ିକୁ ଉଠେଇନିଆଯିବ। ହଠାତ୍ ଜଗନ୍ନାଥ ରାଓ ପଚାରିଲା 'ମୁଁ ତେଲଗୁ ଲୋକ ମୋ' ନାଁ ଜଗନ୍ନାଥ କାହିଁକି ହେଲା ଆପଣ ତ ଜାଣିବା ପାଇଁ ଚାହିଁଲେ ନାହିଁ?' ମୁଁ କହିଲି 'ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି, ଆମ ଗଞ୍ଜାମ ଜିଲ୍ଲାରେ ଅନେକ ଲୋକ ଅଛନ୍ତି ଯାହାଙ୍କ ନାଁ ବାଲାଜୀ କିମ୍ବା ତିରୁପତି। ପୁରୀ ପଣ୍ଡା ନାମକ ଜଣେ ଓଡ଼ିଆ ତେଲଗୁ ବିଶେଷଜ୍ଞ ତେଲଗୁ ଭାଷାରେ ଏକ ସୁନ୍ଦର ପୁସ୍ତକ ଲେଖିଛନ୍ତି।' କିନ୍ତୁ ସେ କହିଲେ ମୋ' ପାଇଁ ସ୍ୱତନ୍ତ୍ର କାରଣ ଅଛି 'ଆମେ ଦୁଇ ଭାଇ ଜଟଣୀରେ ଜନ୍ମ ହୋଇଛୁ। ରେଲୱେ ସ୍କୁଲ୍‌ରେ ପାଠ ପଢ଼ିଛୁ, ତା'ପରେ କହିଲେ ଓଡ଼ିଆରେ। 'ମୁଁ ମଉସା କିଛି କିଛି ଓଡ଼ିଆ ଜାଣେ। ଆପଣମାନେ ବହୁତ ଭାଗ୍ୟବାନ ଲୋକ, ଜଗନ୍ନାଥଙ୍କ ଦେଶରେ ଜନ୍ମ ହୋଇଛନ୍ତି। ଓଡ଼ିଶାର ଲୋକ ଆସିଛନ୍ତି ଶୁଣି ମୋ' ବଡ଼ଭାଇ ଆପଣଙ୍କୁ କାଲି ଦେଖା କରିବା ପାଇଁ ଚାହୁଁଛନ୍ତି, ସମୟ ହେଲେ ତାଙ୍କ ଘରକୁ ଯିବା।'

ଏକ ଇଣ୍ଡିଆନ ରେସ୍ତୋରାଁରେ ପହଞ୍ଚିଲୁ, ଅନୀଲ ସେଇଠି ଅପେକ୍ଷା କରିଥିଲା। ଦିନସାରା ଖଟି କ୍ଲାନ୍ତ ଦିଶୁଥିଲେ ମଧ୍ୟ ଆମକୁ ଖୁସିରେ ପାଛୋଟି ନେଲା। ମୁଁ ମୋ' ସ୍ତ୍ରୀ ଓଡ଼ିଆରେ କଥା ହେଉଛୁ ଦେଖିଲୁ ଜଣେ ବିଅରର ଆମକୁ କାନଉଛି। ତାଠୁ ଜଣାଗଲା

ଯେ ହୋଟେଲର ମାଲିକ ଜଣେ ବାଂଲାଦେଶୀ ଓ ବିଅରର ହେଉଛି ଓଡ଼ିଆ କିନ୍ତୁ ମେଦିନାପୁରର। ରହିବା ଖାଇବା ମାଗଣା। ଭଲ ମଜୁରୀ (ଭାରତୀୟ ମଜୁରୀ ତୁଳନାରେ) ଓ ସେଥିପାଇଁ ଘରକୁ ପ୍ରଚୁର ଟଙ୍କା ପଠାଏ। ବଡ଼ ଗର୍ବର ସହିତ କହିଲା ମୁଁ ଇଂଲିସ୍ ବି ଭଲ ଜାଣେ। ନିଶ୍ଚୟ ହୋଇଥିବ। ଗ୍ରାହକମାନଙ୍କ ସାଙ୍ଗରେ କଥା ହୋଇ ହୋଇ ସେ ଇଂଲିସ୍ ଶିଖିଥିବେ।

ହୋଟେଲ୍‌କୁ ଫେରିଲା ବେଳକୁ ରାତି ୨ଟା। ସକାଳୁ ଉଠିଲୁ ୯ଟାରେ ଓ ୯.୨୦ ମିନିଟ୍ ବେଳକୁ ଜଗା ରାଓ ହାଜର। 'ଅଙ୍କଲ୍ ବିମାନବନ୍ଦରରେ ଆପଣଙ୍କୁ ପହଞ୍ଚିବାକୁ ପଡ଼ିବ ସନ୍ଧ୍ୟା ସାଢ଼େ ୪ଟା ସୁଦ୍ଧା। ତେଣୁ ଆଜିର ପ୍ରୋଗ୍ରାମ୍ ହେଲା ମୋ' ଘରେ ଜଳଖିଆ। ଜଣେ ସାଙ୍ଗ ଘରେ ଲଞ୍ଚ ଓ ସାଢ଼େ ତିନିଟାରେ ବଡ଼ ଭାଇଙ୍କ ଘର ଦେଇ ଆମେ ଯିବା ବିମାନବନ୍ଦରକୁ। ଅନୀଲ ଆଜି ଛୁଟି ନେଇଛି।'

ଜିନିଷ ପତ୍ର ପ୍ୟାକ୍ କରିଦେଲୁ। ହୋଟେଲ୍‌ବାଲା ଟିକେ ଆଶ୍ଚର୍ଯ୍ୟ ହେଲେ ଶୀଘ୍ର ଚାଲିଯାଉଥିବାରୁ, ସେବାରେ କିଛି ଅବହେଳା ହେଲାକି ପଚାରିଲେ। କିନ୍ତୁ ପ୍ରକୃତ କାରଣ ଜଣାଇବାରୁ ସନ୍ତୁଷ୍ଟ ହେଲେ। ଜଗା ରାଓଙ୍କ ଘରେ ପହଞ୍ଚିଲୁ। ସମୁଦାୟ ୨ ବଖରା ଘର ଡାଇନିଂ ଓ ବେଡ୍‌ରୁମ୍। ଅବଶ୍ୟ ସଲଗ୍ନ ଟଏଲେଟ୍। ସ୍ୱାମୀ ସ୍ତ୍ରୀ ଓ ଗୋଟିଏ ଛୁଆ। ମାଆ ପୁଅ ମୁଣ୍ଡିଆ ମାରିଲେ ଓ ଭଲ ଦୋସା ଉପମା ଖୁଆଇଲେ। ଅଳ୍ପ ସମୟ ପରେ ଅନୀଲ ଆସି ଦୋସା ଖାଇଲା। ତାପରେ ଗଲୁ ନ୍ୟୁୟର୍କ ବୁଲିବା ପାଇଁ। ପ୍ରଥମେ ଗଲୁ ରାଧାକୃଷ୍ଣ ମନ୍ଦିର। ସେ ମନ୍ଦିରରେ ଅନେକ ପାର୍ଶ୍ୱ ଦେବତା ଅଛନ୍ତି। ପୂଜକମାନେ ମନ୍ଦିର ପାଖରେ ଘର ପାଇଛନ୍ତି ଓ ସମସ୍ତଙ୍କର କାର୍। ସମସ୍ତେ ସଂସ୍କୃତ ଭାଷା ଓ ପୂଜା ପଦ୍ଧତି ୧୦ ବର୍ଷ ପଢ଼ି ଡିଗ୍ରୀ ହାସଲ କରି ଆସିଛନ୍ତି। ବ୍ରତ ଘର, ବାହାଘର, ଜନ୍ମଦିନ, ଗ୍ରହଶାନ୍ତି ଇତ୍ୟାଦି ପାଇଁ ଘରେ ଯାଇ ପୂଜା କରନ୍ତି। ମନ୍ଦିର ଟଙ୍କା ପାଏ ଓ ଅଧା ଦିଏ ପୂଜକଙ୍କୁ। ଦକ୍ଷିଣା ପୂଜକଙ୍କର। ମନ୍ଦିର ଭିତରେ ପଶି ଆମେ ଟିକିଏ କଥାବାର୍ତ୍ତା ହୋଇଛୁ କି ନାହିଁ ଜଣେ ପୂଜକ ଆମକୁ ଚିଆରିଲେ - 'ମନ୍ଦିର ହେଉଛି ଉପାସନା ପାଇଁ ଗପ ପାଇଁ, ନୁହେଁ।' ଆମେ ଚୁପ୍ ହେଲୁ। ତାପରେ ସେ ପୂଜା କଲେ। ଦକ୍ଷିଣା ଦେବାକୁ ନନେଇ ହୁଣ୍ଡି ଆଡ଼କୁ ଦେଖେଇଦେଲେ। ଏଭଳି ଅଭିଜ୍ଞତା ମୋର ରାମେଶ୍ୱର ଓ ମଲ୍ଲିକାର୍ଜୁନ ମନ୍ଦିରରେ ମଧ ହୋଇଥିଲା। ଆମ ଦେଶର ବାକି ସବୁ ମନ୍ଦିର କଥା ଭିନ୍ନ। ଦକ୍ଷିଣା ହାତରେ ଧରୁ ଧରୁ ଝିଟିପିଟି ପୋକକୁ ଗିଳିଲା ପରି ଟଙ୍କାଟା ପଣ୍ଡାଙ୍କ ହାତକୁ ପଳାଏ। ଏ କଳାରେ ପୁରୀ, ଗୟା, ବନାରସ, କଲିକତାର ଦକ୍ଷିଣ କାଳୀର ଅନେକ ପଣ୍ଡା ବେଶ୍ ଦକ୍ଷ।

ପୂଜା ସାରି ସହର ବୁଲିଲୁ। ମିଳିତ ଜାତିସଂଘ ଅଫିସ ଦେଖିଲୁ ଓ ଗଲୁ ଆନ୍ତର୍ଜାତୀୟ ବାଣିଜ୍ୟ ଅଫିସ। ୨୦୦୨ ମସିହାରେ ସନ୍ତ୍ରାସବାଦୀମାନେ ୨ଟି ଯାତ୍ରୀବାହୀ ବ୍ୟୋମଯାନ ଅପହରଣ କରି ବାଣିଜ୍ୟ ଅଫିସର ଦୁଇ ଅଟ୍ଟାଳିକାରେ ଧକ୍କା ମାରିଥିଲେ ଓ ସେ ୨ଟି ଧୂଳିସାତ୍ ହୋଇଗଲା। ଆଉ ଏକ ପ୍ଲେନ୍ ଯାଉଥିଲା ଆମେରିକାର ସୈନ୍ୟବାହିନୀର ଅଟ୍ଟାଳିକାକୁ ଧୂଳିସାତ କରିବା ପାଇଁ କିନ୍ତୁ ତା' ପୂର୍ବରୁ ଧ୍ୱଂସ ହୋଇଗଲା । ଦୈନିକ ହଜାର ହଜାର ସଂଖ୍ୟାରେ ପର୍ଯ୍ୟଟକ ଏହି ସ୍ଥାନକୁ ଦେଖିବା ପାଇଁ ଆସନ୍ତି। ଜଗନ୍ନାଥ ରାଓ ଗାଡ଼ି ରାସ୍ତା କଡ଼ରେ ରଖି ଆମକୁ ନେଇ ଯାଉଥିଲା ହଠାତ୍ ମାଡ଼ି ଆସିଲା ସାଢ଼େ ୬ ଫୁଟ ଉଚ୍ଚ ମୋଟାସୋଟା ଲୋକଟିଏ। କହିଲା ଗାଡ଼ି ଚାବି ଦିଅ ଓ ପାର୍କିଂପ୍ଲେସ୍ ପାଇଁ ୨୧ ଡଲାର। ଜଗନ୍ନାଥ ରାଓ ପାଇଁ ୨୧ ଟଙ୍କା କିନ୍ତୁ ଆମ ପାଇଁ ୮୦୦ ଟଙ୍କାରୁ ଅଧିକ। ମୁଁ କହିଲି ଆମେ ତ ମାତ୍ର ଅଧଘଣ୍ଟା ପାଇଁ ରହିବୁ କିନ୍ତୁ ସେ ଲୋକଟା ଗାଉଁ ଗାଉଁ ହୋଇ କହିଲା 'ଏକ ମିନିଟ୍ ରୁହ କିମ୍ବା ଆଠ ଘଣ୍ଟା ରୁହ ୨୧ ଡଲାର।' ଲୋକଟାର ତୁଣ୍ଡ ଭାରି ରୁକ୍ଷ। କିନ୍ତୁ ମୋତେ ଶୀତରେ ଥରିବା ଦେଖି ବାଁ ଆଡ଼କୁ ଆଙ୍ଗୁଠି ଦେଖାଇ କହିଲା ଭଲ ଗ୍ଲୋଭସ୍ ଓ ଟୋପି ମିଳୁଛି ଜଲ୍ଦି ପିନ୍ଧି ପକାଅ । ପ୍ରତ୍ୟେକ ଦାମ୍ ୫ ଡଲାର। ଆମ ଦୁଇଜଣଙ୍କ ୮୦୦ ଟଙ୍କା ଖର୍ଚ୍ଚ ହେଲା କିନ୍ତୁ ଶୀତରୁ ରକ୍ଷା ପାଇଗଲୁ। ଜଗା ରାଓଙ୍କ କହିବା କଥା ଯେ ନ୍ୟୁୟର୍କରେ ଏମିତି କେତେକ ସ୍ଥାନ ଅଛି ଯେଉଁଠି ଦିନବେଳେ ମଧ୍ୟ ଯିବା ବିପଦ। ସେ ଅଞ୍ଚଳରେ ବେଶି କଳା ଲୋକ ରହନ୍ତି। ଅଧିକାଂଶ ଗରିବ ଓ ବେକାର। ଛୁରୀ ଦେଖାଇ ଟଙ୍କା ଆଦାୟ କରିବା ଏକ ସାଧାରଣ ଘଟଣା। ପୁଣି ଅନେକ ନିଶାଗ୍ରସ୍ତ, ନିଶା ସେବନର ସମୟ ଆସିଗଲେ ଯଦି ନିଶା ନମିଳେ ସେମାନେ ପାଗଳ ପରି ହୋଇଯାନ୍ତି ଏବଂ ଆଖିବୁଜା ଆକ୍ରମଣ କରନ୍ତି। ତଥାକଥିତ କଳାମାନଙ୍କର ଉତ୍ପାତ ଯେତେ ପରିମାଣରେ କୁହାଯାଏ ଗୋରାମାନଙ୍କର ବିଷୟରେ ସେତେ କୁହାଯାଏନାହିଁ। ୱାଶିଂଟନ୍‌ରେ ଗୋଟିଏ ଦୋକାନରେ ଆମେ ଚକୋଲେଟ୍ କିଣୁଥିଲୁ। ଚାରି ପାଞ୍ଚଟା ଟୋକା (ସମସ୍ତେ ଗୋରା) ଭୁସ୍‌ଭାସ୍ ପଶିଲେ କିଛି ଚକୋଲେଟ୍ ରଖିଲେ ଓ ମେଞ୍ଚେ ଲେଖାଏଁ ପକେଟ୍‌ରେ ପୁରେଇ ଯିବାକୁ ବସିଛନ୍ତି ମହିଳା ଦୋକାନୀ (ପୂର୍ବ ପୁରୁଷ ଭାରତୀୟ) ଧମକେଇଲେ 'ଚକୋଲେଟ୍ ଥୋଇଦେଇ ଯିବ ନା ପୋଲିସକୁ ଡାକିବି ?' ସେତିକିରେ ସେମାନେ ଥଣ୍ଡା। ସୁନା ପିଲା ପରି ଚକୋଲେଟ୍ ସବୁ ଥୋଇଦେଇ ଗଲେ। ଆମେ ଭାରତୀୟମାନେ ଆମ ପୋଲିସକୁ ବହୁତ ସମାଲୋଚନା କରୁ। କଥାକଥାକେ ଲଣ୍ଡନ ପୋଲିସ ନାଁ ନେଉ। କାରଣ ଆମେ ବିଦେଶ ଦେଖିନାହୁଁ ଓ ସେଠିକାର ପ୍ରଶାସନ ଏବଂ ପୋଲିସକୁ। ମୋ' ଶଳା ଓଡ଼ିଶା ଆସିଥିଲେ, ୧୫ ଦିନ ପରେ ଲଣ୍ଡନ ଫେରିଲେ, ଦେଖିଲେ କବାଟ ଭଙ୍ଗା ଓ ଅନେକ

ଜିନିଷ ଚୋରି। ପୋଲିସରେ ଅଭିଯୋଗ କରିବାରୁ ପୋଲିସ କହିଲେ 'ଯେଉଁ ଯେଉଁ ଜିନିଷ ଚୋରି ହୋଇଛି ସେଗୁଡ଼ିକର କିଣିବା ରସିଦ୍ ଦେଖାଅ, ଦ୍ୱିତୀୟରେ ଚୋରି ଆପଣଙ୍କ ଅସାବଧାନତା ଯୋଗୁ ହେଲା।' ମୋ' ଶଳା ପଚାରିଲେ 'କେତେ ବଡ଼ ତାଲା ପକାଇଥିଲେ ଆପଣ ସାବଧାନତା କହିଥାନ୍ତେ। ଆପଣଙ୍କ ଘରେ କେତେ ବଡ଼ ତାଲା ପଡ଼ିଛି ଓ ଆପଣ ଯେଉଁ ଘଣ୍ଟା ପିନ୍ଧିଛନ୍ତି ତାର ରସିଦ୍ ଆପଣଙ୍କ ପାଖେ ଅଛି କି ?' ପୋଲିସ ଅଫିସର ଜଣକ ନିର୍ଲିପ୍ତ ଉତ୍ତର ଦେଲେ 'ଏସବୁ ପ୍ରଶ୍ନ ପଚରାଯିବ ଯଦି ମୋ' ଘରେ ଚୋରି ହୁଏ। ତେବେ ଆମେ ଚୋରି ବିଷୟରେ ଉଲ୍ଲେଖ କରିବୁ କେସ୍ କରିବୁ ନାହିଁ ଓ ଆପଣ ଇନ୍‌ସ୍ୟୁରାନ୍ସକୁ କ୍ଷତିପୂରଣ ମାଗନ୍ତୁ।' ଇନ୍‌ସ୍ୟୁରାନ୍ସ ବିଭାଗ ମଧ୍ୟ ସେଇଆ କହିଲା, 'ରସିଦ୍ ଦେଖାଅ।' କିଓ ବାବୁ ରସିଦ୍ କେଉଁଠୁ ମିଳିବ ? ଶଳା ଭାଉଜଙ୍କର ଗହଣା ତାଙ୍କ ବାପା କେଉଁ ସୁନାକର ଲେଙ୍କା କିମ୍ବା ଦିବାକର ନାୟକଙ୍କ ଠୁ କିଣିଥିବେ ତିରିଶ ବର୍ଷ ତଳେ। ସେ ଯଦି କେଉଁ ଚିରକୁଟି କାଗଜରେ ଲେଖି ଦେଇଥିବ ତାକୁ ରଖିଛି କିଏ ? ସେଇଭଳି ହାତ ଘଡ଼ି ଓ କ୍ୟାମେରା। ସେ କଥା ଛାଡ଼ନ୍ତୁ। ଆମ ପୋଲିସ ଭାରି ରୁକ୍ଷ ବୋଲି ଅଭିଯୋଗ ହୁଏ। କିନ୍ତୁ ଲୋକ ଟିଭିରେ ଦେଖନ୍ତି ଯେ ପୋଲିସ ଆସାମୀମାନଙ୍କୁ ନିଏ ହାତକଡ଼ି ନପକେଇ। ଆମେରିକାରେ କଥା କଥାକେ ହାତକଡ଼ି। ପୁରୁଷ ହେଉ କି ସ୍ତ୍ରୀ ହେଉ ଦୁଇ ହାତକୁ ମୋଡ଼ି ପଛରେ ହାତକଡ଼ି। ଆମ ଦେଶରେ କୌଣସି ପରିସ୍ଥିତିରେ ମଧ୍ୟ ମହିଳାମାନଙ୍କୁ ହାତକଡ଼ି ପକାଯାଏ ନାହିଁ। ଆମେ ଯାହାକୁ ରୁକ୍ଷ ବୋଲି କହୁ ଆମେରିକାରେ ତାହା ହେଉଛି ସାଧାରଣ ଘଟଣା।

ଜଗା ରାଓ ତାଙ୍କ ବଡ଼ ଭାଇଙ୍କ ସଙ୍ଗେ ଫୋନ୍‌ରେ କଥା ହେଲେ। ଆମେ ଲଞ୍ଚ ପରେ ତାଙ୍କ ଘରେ ପହଞ୍ଚିଲୁ। ମିଷ୍ଟର ସେଠ୍ ବୋଲି ଜଣେ ଅଳଙ୍କାର ଦୋକାନୀ (ଭାରତୀୟ) ଆମକୁ ଭଲ ଶାକାହାରୀ ଭୋଜନ ଦେଲେ। ତାଙ୍କର ଅଳଙ୍କାର ଦୋକାନ ଦେଖାଇଲେ। ସେ ଭଦ୍ରଲୋକଙ୍କର ଖୁବ୍ ଦାମିକିଆ ଏକ ଲିମୋଜିନ୍ କାର୍ ଅଛି। ସେ ପ୍ରତିଶ୍ରୁତି ଦେଲେ ଯେ ଫେରିଲା ବେଳେ ଲାଗୁଆଡ଼ିଆ ବିମାନବନ୍ଦରରୁ ଆଣି କେନେଡ଼ି ବିମାନବନ୍ଦରରେ ଆମକୁ ଛାଡ଼ିବେ।

ଜଗନ୍ନାଥ ରାଓଙ୍କ ବଡ଼ଭାଇ ଡକ୍ଟର ରାଓ ଓ ତାଙ୍କ ସ୍ତ୍ରୀ ଆମକୁ ପୋର୍ଟିକୋ ପାଖରେ ଅପେକ୍ଷା କରିଥିଲେ। ଡକ୍ଟର ରାଓ ପିନ୍ଧିଥାନ୍ତି ଶିଲ୍‌କ୍ ଓ ଗୈରିକ ରଙ୍ଗର ଧୋତି ଓ ଖୋଲା ଦେହରେ ଉତ୍ତରୀୟ। ଭଦ୍ରମହିଳାଙ୍କର ପ୍ରସାଧନ ଗୈରିକ ଶାଢ଼ି। ଉଭୟ ନମସ୍କାର କରିବା ପରିବର୍ତ୍ତେ ମୁଣ୍ଡିଆ ମାରିଲେ ଯେହେତୁ ଆମଠାରୁ ବୟସରେ ସାନ। ତାଙ୍କ ଘର ଦେଖିବା କଥା। ଘର ମଧ୍ୟରେ ବାଲାଜୀଙ୍କ ମନ୍ଦିର, ଅପରପାର୍ଶ୍ୱରେ ଛୋଟିଆ ସିନେମା ହଲ୍। ସାତ ଆଠ ବଖରା ଅତିଥି କକ୍ଷ। ଅତ୍ୟାଧୁନିକ ଓ ସୁସଜ୍ଜିତ। ଭାରତର ବହୁ

ପ୍ରତିଷ୍ଠିତ ଲୋକ ତାଙ୍କ ଘରେ ଅତିଥି ହୋଇଛନ୍ତି। ବହୁ ପ୍ରତିଷ୍ଠିତ ଆଶ୍ରମର ସ୍ୱାମୀମାନେ ରହିଛନ୍ତି। ଏକ ସ୍ୱତନ୍ତ୍ର ବଖରା ବୁଢ଼ୀ ମାଆଙ୍କ ପାଇଁ। ତାଙ୍କ ପାଇଁ ଅଲଗା ରୋଷେଇ ଓ ଚବିଶ ଘଣ୍ଟା ନର୍ସ। ତାଙ୍କୁ ଦେଖା କଲୁ। ରୁମ୍‌ରେ ଅଛି ଟି.ଭି., ଭିସିଆର, ଅନେକ ପୁରାଣ ପୁସ୍ତକ। ଟିଭିରେ ପୁରାଣ ଚଳଚ୍ଚିତ୍ର ଦେଖନ୍ତି। ମୋବାଇଲ୍ ଫୋନ୍ ଅଡୁଆ ଲାଗେ ବୋଲି ଲ୍ୟାଣ୍ଡଲାଇନ୍ ରଖାହୋଇଛି। ବର୍ଷରେ ୧୦ ମାସ ପୁଅ ପାଖରେ ରହନ୍ତି ଓ ୨ ମାସ ଗାଁକୁ ଯାଆନ୍ତି। ପୁଅ ବୋହୂ ସକାଳେ ଗାଧୋଇ ସାରି ପ୍ରଥମେ ଠାକୁର ପୂଜା କରନ୍ତି ତା'ପରେ ବୁଢ଼ୀଙ୍କୁ ମୁଣ୍ଡିଆ ମାରି ଆଶୀର୍ବାଦ ନିଅନ୍ତି। ଡକ୍ଟର ରାଓ ଜଣେ ବିଖ୍ୟାତ କ୍ୟାନ୍‌ସର ଡାକ୍ତର। ତାଙ୍କର ନିଜର ହସ୍‌ପିଟାଲ। ତାଙ୍କ ହସ୍‌ପିଟାଲ୍ ଲାବୋରୋଟାରୀରେ ଜଗନ୍ନାଥ ରାଓ ଚାକିରି କରନ୍ତି। ସେ ବି.ଏସ୍‌ସି. ପାଶ୍ କରି ଘରେ ବସିଥିଲେ। ବଡ଼ ଭାଇ ଡକେଇ ନେଇ ଟ୍ରେନିଂର ବନ୍ଦୋବସ୍ତ କରେଇଲେ ଓ ଚାକିରି ଦେଲେ। ଜଗନ୍ନାଥ ସେପର୍ଯ୍ୟନ୍ତ ବଡ଼ଭାଇଙ୍କ ଘରେ ରହୁଥିଲା। ଚାକିରି ପାଇଲା ପରେ ବଡ଼ଭାଇ କହିଲେ– ତୁ ଏକୁଟିଆ ରହିବା ଶିଖ। ଯଦି ବିପତ୍ତି ପଡ଼ିବ ତେବେ ମୁଁ ଅଛି। କିନ୍ତୁ ନିଜ ରୋଜଗାରରେ ନିଜକୁ ଚଳାଅ। ସେଥିପାଇଁ ଦେଖିଲି ଦୁଇଭାଇଙ୍କର ଆର୍ଥିକ ଅବସ୍ଥାର ପ୍ରଭେଦ। ଡକ୍ଟର ରାଓଙ୍କ ଘରେ ସବୁ ଜିନିଷ ଦାମିକିଆ। ଘର ବିରାଟ, ସ୍ଥାନ ବେଶ୍ ଲମ୍ବା ଚଉଡ଼ା। ବାଡ଼ିରେ ଲାଗିଛି ବହୁତ ଗଛ ଓ ଆଖି ନପହଞ୍ଚିଲା ପର୍ଯ୍ୟନ୍ତ ସ୍ଥାନ ତାଙ୍କର। ସେଥିରେ ଅଛି ଏକ ହ୍ରଦ। ଖରାଦିନେ ଅନେକ ଚଢ଼େଇ ଆସନ୍ତି ଓ ବୋଟ୍‌ରେ ବସି ଡକ୍ଟର ରାଓ ଚଢ଼େଇଙ୍କ ଫଟୋ ଉଠାନ୍ତି। ହ୍ରଦରେ ମାଛ ଜାଆଁଳ ଛାଡ଼ନ୍ତି କିନ୍ତୁ ଧରନ୍ତି ନାହିଁ। ଜଗନ୍ନାଥ କହୁଥିଲେ ଯେ ଡକ୍ଟର ରାଓ ଆନ୍ଧ୍ର ଓ ତାମିଲନାଡୁର ବିଭିନ୍ନ ଧାର୍ମିକ ଓ ଶିକ୍ଷାନୁଷ୍ଠାନକୁ ଅତି କମ୍‌ରେ ୪୦ ରୁ ୫୦ କୋଟି ଟଙ୍କା ଦାନ କରିସାରିଲେଣି । ଗୋଟିଏ ବୋଲି ଝିଅ, କଲେଜରେ ପାଠ ପଢ଼ୁଛି ଓ ଭାରତ ନାଟ୍ୟମ୍ ଶିଖୁଛି। ବେଳେ ବେଳେ କକେଇ, ଖୁଡ଼ୀଙ୍କ ଘରେ ରହିଯାଏ।

ଆମେ ଫେରିଲା ବେଳକୁ ପୁଣିଥରେ ଆମକୁ ମୁଣ୍ଡିଆ ମାରିଲେ। ମୋ' ସ୍ତ୍ରୀଙ୍କୁ ଗୋଟିଏ ଶାଢ଼ି ଓ ସିନ୍ଦୂର ଡବାଟିଏ ଦେଲେ। ଲାଗୁଆଡ଼ିଆ ବିମାନବନ୍ଦରରେ ପ୍ଲେନ୍‌କୁ ଅପେକ୍ଷା କରୁଥିବା ସମୟରେ ମୁଁ ଭାବୁଥାଏ ଭାରତ ବର୍ଷରେ ୨୨ଟି ଭାଷା ହେଲେ କ'ଣ ହେଲା ସମଗ୍ର ଭାରତ ଗୋଟିଏ ସଂସ୍କୃତିରେ ବନ୍ଧା।

ଲାଗୁଆଡ଼ିଆ ବିମାନ ବନ୍ଦରରେ ଯୋତା, ବେଲ୍ଟ, ମୋବାଇଲ ଫୋନ୍ ସମେତ ଆଟାଚିର ଏକ୍ସରେ କରାଗଲା। ମେଟାଲ ଡିଟେକ୍ଟର ମଧ୍ୟରେ ମୁଁ ପଶିଲା ବେଳେ ବହୁତ କମ୍ ଶବ୍ଦ ହେଲା କାରଣ ପକେଟ୍‌ରେ ଗୁଡ଼େଇ କରି ରଖାଯାଇଥିଲା ବୈଷ୍ଣୋଦେବୀଙ୍କର ଏକ ମୁଦ୍ରା। କିନ୍ତୁ ସ୍ତ୍ରୀ ପିନ୍ଧି ଥିଲେ ଚୁଡ଼ି, ଇୟରିଙ୍ଗ ଓ ଚେନ୍। ଏତେଗୁଡ଼ାଏ ଧାତବ ଦ୍ରବ୍ୟ

ତେଣୁ ବାଜିଲା ସାଇରନ୍ ଓ ତାଙ୍କୁ ଗୋଟିଏ ରୁମ୍‌କୁ ନେଇ ଜଣେ ମହିଳା ଅଫିସର ଭଲଭାବେ ତଲାସି କଲା। ପୁଣି ମିଷ୍ଟର ସେଠ୍ ଉପହାର ସ୍ୱରୂପ ଦେଇଥିବା ପିତ୍ତଳର ଏକ ମୂର୍ତ୍ତି ଆଟାଚିରେ ଥିବାରୁ ଆଟାଚିକୁ ଖୋଲାଗଲା, ମୂର୍ତ୍ତିକୁ ଆଉଥରେ ଏକ୍ସରେ କରାଗଲା।

ବିଶ୍ୱ ବାଣିଜ୍ୟ କେନ୍ଦ୍ରକୁ ସନ୍ତ୍ରାସବାଦୀମାନେ ଧ୍ୱଂସ କଲାପରେ ଆମେରିକା ସରକାର ଏକ ସ୍ୱତନ୍ତ୍ର ମନ୍ତ୍ରଣାଳୟ (ହୋମ୍‌ଲ୍ୟାଣ୍ଡ ସିକ୍ୟୁରିଟି) ଗଠନ କଲେ। ସବୁ ନିୟମ କଡ଼ାକଡ଼ି । ଯାହାକୁ ସାପ କାମୁଡ଼େ ତା' ମାଆ ପାଳଦଉଡ଼ିକୁ ଦେଖିଲେ ଡରେ । ଏଇ ଢ଼ଗଟି ଅକ୍ଷରେ ଅକ୍ଷରେ ସତ ବୋଲି ସେଦିନ ଉପଲବ୍ଧି କଲି। ଯାହାହେଉ ଆମକୁ ସିକ୍ୟୁରିଟି କ୍ଲିୟର କରିଦେଲା, ଆମକୁ ଦୁଃଖିତ ବୋଲି କହିଲେ। ବିମାନ ବନ୍ଦରର ସୁରକ୍ଷା କର୍ମଚାରୀମାନେ ଏଇଭଳି ଗୋଇଠା ମାରି ବିଷ୍ଟୁ କହନ୍ତି। ଜଣେ ଖାନ୍ନା ବୋଲି ଅଫିସର ଆମେରିକା ଯାଇଥିଲେ। ତାଙ୍କର ସବୁକିଛି ବାରମ୍ବାର ତନଖି କରାଗଲା କାରଣ ଘର ଭାରତରେ, ଖାନ୍ ଓ ଖାନ୍ନା ମଧ୍ୟରେ ତଫାତ୍ ସେମାନେ ବୁଝିପାରିନଥିଲେ ଓ ପାସ୍‌ପୋର୍ଟରେ ଧର୍ମ ଲେଖାହୁଏ ନାହିଁ।

ଜିନିଷ ଲୋଡ୍ କରିବା ସ୍ଥାନରେ ବସିଥାନ୍ତି ତିନୋଟି ଭାରତୀୟ ବଂଶଜ ଓ ଗୋଟିଏ ଆମେରିକୀୟ। ଏତେ ଲଗେଜ କାହିଁକି, ଏକ୍ସଟ୍ରା ଭଡ଼ା ଲାଗିବ ଇତ୍ୟାଦି କହିଲେ ଭାରତୀୟ ବାବୁ କିନ୍ତୁ ତାଙ୍କ ଦାୟିତ୍ୱରେ ଥିବା ଗୋରା ଲୋକଟି ଆମେ ଅନ୍ତର୍ଜାତୀୟ ଯାତ୍ରୀ ଓ ପ୍ରଥମ ଶ୍ରେଣୀ ଟିକେଟ୍‌ରେ ଆସିଥିବାରୁ ଅଧିକ ଓଜନର ଜିନିଷ ନେଇପାରିବେ ବୋଲି କହିବାରୁ ସେମାନେ ଆଉ ବାଧା ଦେଲେନାହିଁ। ଏଇ ତିନୋଟି ଭାରତୀୟଙ୍କର ବାପା ମାଆ ନିଶ୍ଚୟ ଭାରତରୁ ଆସିଥିବେ। ଏମାନେ ଆମେରିକାରେ ଜନ୍ମ ହୋଇଥିବାରୁ ଆମେରିକୀୟ ହୋଇଗଲେ। ଆବଶ୍ୟକତାରୁ ଅଧିକ ଦେଶଭକ୍ତି ଦେଖେଇ ହେଉଥିଲେ, ନୂଆ ପଠାଣ ବେଶି ପିଆଜ ଖାଇଲା ଭଳି।

ପ୍ରଥମ ଥର ପାଇଁ ସେ ଦେଶର ବିମାନ ସେବାର କଟୁ ଓ ତିକ୍ତ ସ୍ୱାଦ ଚାଖିଲୁ। ଆମ ଦେଶରେ ବିମାନରେ ପଶିଲା ମାତ୍ରେ ଥଣ୍ଡା ପାନୀୟ, ଚକୋଲେଟ୍ ପରେ ଖାଇବା ପାଇଁ ଓ ତା'ପରେ ଚା କିମ୍ବା କଫି ଦିଆଯାଏ। ଏୟାର ହୋଷ୍ଟେସ ଆସି ସୁବିଧା ଅସୁବିଧା ବୁଝନ୍ତି। ଏଇଠି କଥା ଅଲଗା। ପାଣି ଟୋପାଟେ କି ଲିଆଟେ ବି ଖାଇବା ପାଇଁ ଦେବେନାହିଁ। ଜଣେ ଏୟାର ହୋଷ୍ଟେସ ଦ୍ୱାର ମୁହଁରେ ଠିଆ ହୋଇ ହାଏ ହାଏ କହିଲା ପରେ ତା' କାମ ସରିଲା। ଆମେ ଦୁହେଁ ବସିଲୁ ଦୁଇ ପାଖରେ ଓ ମଝିରେ ଜଣେ ଆମେରିକାନ୍ ଲୋକ। ତାଙ୍କୁ ଅନୁରୋଧ କଲି ଝରକା ପାଖ ସିଟ୍‌କୁ ଚାଲିଯିବା ପାଇଁ ତାହେଲେ ଆମେ ଦୁଇଜଣ ପାଖାପାଖି ବସିଥାନ୍ତୁ କିନ୍ତୁ ମୋ' ଆଡ଼କୁ ନ ଅନେଇ ରୁକ୍ଷ ଭାବରେ କହିଲେ 'ନୋ'। ତଥାପି କହିଲି ଆମେ ସ୍ୱାମୀ ସ୍ତ୍ରୀ ଓ ସେ ଉତ୍ତର ଦେଲେ

ସେଇଆ ଜଣାପଡୁଛି। ଡାହାଣ ପାଖେ ୨ଟା ସିଟ୍ ଖାଲି ଥିଲା। ଏୟାର ହୋଷ୍ଟେସକୁ କହିବାକୁ ଭାବୁଥିଲି କିନ୍ତୁ କାଳେ ରୁକ୍ଷ ବ୍ୟବହାର ମିଳିବ ସେ ଭୟରେ ଚୁପ୍ ରହିଲି।

ୱାଶିଂଟନ୍‌ରେ ପାଛୋଟି ନେଲେ ଦୂତାବାସର ଜଣେ ମିନିଷ୍ଟର (ଅଫିସର, ମନ୍ତ୍ରୀ ନୁହଁନ୍ତି)। ତାଙ୍କ ଠାରୁ ଜଣାପଡ଼ିଲା ଯେ ଦୂତାବାସରେ ସାତ ଜଣ ମିନିଷ୍ଟର ଅଛନ୍ତି। ଦିନେ ଆମ ରାଷ୍ଟ୍ରଦୂତଙ୍କୁ ମୁଁ ଦେଖା କରିବି ବୋଲି କହିବାରୁ ସେ ସମୟ ଠିକ୍ କରି ଖବର ଦେବେ ବୋଲି କହିଲେ। ଆମକୁ ନେଇ ହୋଟେଲ ଏମ୍ବାସି ସୁଇଟ୍‌ସ୍ (ଚେଭିଚେଜ୍ ପ୍ୟାଭିଲିୟନ୍)ରେ ପହଞ୍ଚେଇ ଲେଖିଦେଲେ ଯେ ଆମର ସମସ୍ତ ଖର୍ଚ୍ଚ ଦୂତାବାସ ବହନ କରିବ। ମୋ ସାଙ୍ଗରେ ଯାଇଥିବା ଅଫିସରମାନେ ଆମେରିକା ସରକାରଙ୍କର ଅତିଥି; କିନ୍ତୁ ମୁଁ ସେକ୍ରେଟେରୀ ପାହ୍ୟାର ହୋଇଥିବାରୁ ଭାରତ ସରକାରଙ୍କ ନିୟମ ଅନୁସାରେ ସମସ୍ତ ଖର୍ଚ୍ଚ ଆମ ସରକାର ବହନ କରିବେ। ବାକି ଅଠର ଜଣଙ୍କର ଯିବା ଆସିବା ଖାଇବା ପିଇବା ରହିବା ଓ ଟ୍ରେନିଂ ଖର୍ଚ୍ଚ ଆମେରିକା ସରକାର ବହନ କରିବେ। ପାଠକମାନେ ଭାବନ୍ତୁ ନାହିଁ ଯେ ଏତଦ୍ୱାରା ଆମେରିକା ଭାରତକୁ ଅର୍ଥଦାନ କଲା। ହିସାବଟା ଦେଖନ୍ତୁ। ଆମର ଅଠର ଜଣ ଅଫିସରମାନଙ୍କ ପାଇଁ ଆମେରିକା ସରକାର ତାଙ୍କ ବିମାନ ସେବାର ଟିକେଟ୍ କିଣିଲେ, ସେମାନେ ରହିଲେ ଆମେରିକାର ହୋଟେଲରେ। ଟ୍ରେନିଂ ଦେଉଥିବା ବିଶେଷଜ୍ଞମାନଙ୍କୁ ଆମେରିକା ସରକାର ପଇସା ଦେଲା ତେଣୁ ସମସ୍ତ ପଇସା ଆମେରିକାରେ ହିଁ ରହିଲା। ବରଂ ସାଙ୍ଗରେ ୫୦୦ ଡଲାର ଲେଖା ଧରିଯାଇଥିବା ଆମ ଅଫିସରଗୁଡ଼ିକ ବିଭିନ୍ନ ଦ୍ରବ୍ୟ କିଣିବାରୁ ୯୦୦୦ ଡଲାର ଭାରତରୁ ଆମେରିକାକୁ ଗଲା।

ଆମ୍ଭମାନଙ୍କ ସୁବିଧା ଅସୁବିଧା ବୁଝିବା ପାଇଁ ଭାରତରେ ଥିବା ଆମେରିକା ଦୂତାବାସ ମାଇକେଲ ଜି ବଏସ୍ ନାମକ ଜଣେ ଡେ଼ପୁଟି କାଉନ୍‌ସିଲକୁ ପଠେଇଥିଲେ। ସେ ଆମକୁ ସବୁଆଡ଼େ ବୁଲେଇ ନେଉଥିଲେ। ବଜାର ସଉଦା କରଉଥିଲେ ଓ ହୋଟେଲରେ କିଛି ଅସୁବିଧା ହେଲେ ସେ କଥା ବୁଝୁଥିଲେ। ମୁଁ ପହଞ୍ଚିବାର ଦୁଇଦିନ ପରେ ସେ ହୋମ୍‌ଲ୍ୟାଣ୍ଡ ସିକ୍ୟୁରିଟିର ଦ୍ୱିତୀୟ ସ୍ଥାନରେ ଥିବା ଜେନେରାଲ ଟେଲର ନିମନ୍ତ୍ରଣ ଦେଲେ। ମୁଁ ସାଙ୍ଗରେ ଦୁଇଜଣ ଅଫିସର ନେବା ପାଇଁ କହିଲି। ମୋ' ଜଏଣ୍ଟ ସେକ୍ରେଟେରୀ (ଆମ କଥାବାର୍ତ୍ତାର ସାରାଂଶ ଟିପିବା ପାଇଁ) ଓ କାଶ୍ମୀରରୁ ଆସିଥିବା ଜଣେ ଆଇ.ଜି (ମୁକଦ୍ଦମ୍)। ବୟସ୍ ଗଲେ ବୁଝିବା ପାଇଁ, ସେ ବୋଧେ ଜାଣିବା ପାଇଁ ଚାହୁଁଥିଲେ କାଶ୍ମୀରର ଜଣେ ଆଇ.ଜି. ଗଲେ ଉଚିତ୍ ହେବ କି? କିନ୍ତୁ ପ୍ରତିବାଦ କଲେନାହିଁ। ଟେଲର ଥିଲେ ଜଣେ ସେନାପତି, ପରେ ଦୁଇଟି ରାଷ୍ଟ୍ରର ରାଷ୍ଟ୍ରଦୂତ। ତାଙ୍କୁ ଜେନେରାଲ ଟେଲର ଡାକିବା ପରିବର୍ତ୍ତେ ଆମ୍ବାସଡ଼ର ଟେଲର ଡାକିଲେ ଖୁସିହେବେ

ବୋଲି ବଏସ୍ କହିଲେ। ଟେଲରଙ୍କ ପାଇଁ କାଶ୍ମୀରରେ ତିଆରି ହୋଇଥିବା ଏକ କାଠର ସୂକ୍ଷ୍ମ କାର୍ଯ୍ୟ ନେଇ ଯାଇଥିଲୁ ଓ କାଶ୍ମୀରର ଆଇଜି ମୁକଦ୍ଦମ ତାହା ଦେବେ ବୋଲି ଠିକଣା ହେଲା। ଏସବୁ ମୁଁ ଜାଣି କରିଥିଲି।

ହୋମ୍‌ଲ୍ୟାଣ୍ଡ ସିକ୍ୟୁରିଟି ଅଫିସରେ ପହଞ୍ଚିଲୁ। ତାଙ୍କର ଜଣେ ଅଫିସର ଆମକୁ ଦ୍ୱାରବନ୍ଧ ପାଖେ ସ୍ୱାଗତ କଲେ ତଥାପି ଆମକୁ ଏବଂ ବଏସ୍‌ଙ୍କୁ ଭଲଭାବେ ଚେକ୍ କରାଗଲା। ବଏସ୍ କୈଫିୟତ ଦେଲେ ଯେ ପ୍ରତିଦିନ ଆମ୍ବାସଡ଼ର ଟେଲରଙ୍କୁ ମଧ୍ୟ ଚେକ୍ କରାଯାଏ। ତାଙ୍କ କହିବା କଥା ଯେ ଆମେ ଆପଣଙ୍କୁ ଚେକ୍ କରୁନାହୁଁ, ଆମେ ଆପଣଙ୍କ ଲୁଗାପଟାକୁ ଚେକ୍ କରୁଛୁ। ଆଜିକାଲି କଲମରେ ମଧ୍ୟ ବମ୍ ରଖାଯାଉଛି, କେହି ଜଣେ ଆପଣଙ୍କ ଅଜାଣତରେ ଆପଣ ଲେଖୁଥିବା କଲମ ପରି ଆଉ ଏକ କଲମରେ ବମ୍ ଭରି ରଖିଦେବ, ଆପଣ ଜାଣିପାରିବେନି।

ଆମ୍ବାସଡ଼ର ଟେଲର ହେଉଛନ୍ତି ଆସିଷ୍ଟାଣ୍ଟ ସେକ୍ରେଟେରୀ। ତାଙ୍କ ସେକ୍ରେଟେରୀ ହେଉଛନ୍ତି ମନ୍ତ୍ରୀ ପାହ୍ୟାର, ସେଇ ଅନୁପାତରେ ତାଙ୍କର ଗୁରୁତ୍ୱ। ବସିଥାନ୍ତି ଏକ ଛୋଟିଆ ରୁମ୍‌ରେ, ଉପକରଣ ବହୁତ କମ୍, ସାମନାରେ କମ୍ପ୍ୟୁଟର ଓ କାନ୍ଥରେ ଲାଗିଛି ବିରାଟ ସ୍କ୍ରିନ୍। ବୋତାମ ଚିପିଲେ ବହୁତ କିଛି ତଥ୍ୟ ଓ ଚିତ୍ର ଦିଶିବ। ଏତେ ବଡ଼ ଗୁରୁ ଦାୟିତ୍ୱ ବହନ କରିଥିବା ଅଧିକାରୀଙ୍କର ବାହ୍ୟାଡ଼ମ୍ବର ଶୂନ କହିଲେ ଚଳେ। ବେଶ୍ ଭଦ୍ର ଓ ମାର୍ଜିତ। ଭାରତର ସୁରକ୍ଷା ଓ କାଶ୍ମୀର ବିଷୟରେ କିଛି କଥାବାର୍ତ୍ତା ହେଲୁ। ସୁରକ୍ଷା ପାଇଁ ଯାହା ଟ୍ରେନିଂ ଦରକାର ଆମେ ଦେବୁ ବୋଲି ସେ କହିଲେ ଓ ମିଟିଂ ସରିଲା ପରେ ଦ୍ୱାରବନ୍ଧ ପର୍ଯ୍ୟନ୍ତ ଆସିଲେ ଛାଡ଼ିବା ପାଇଁ।

ଆଉ ଦିନେ ପ୍ରିନ୍‌ସିପାଲ ଆସିଷ୍ଟାଣ୍ଟ ଡ଼େପୁଟି ସେକ୍ରେଟେରୀ ସିସୋନ ମଧ୍ୟାହ୍ନ ଭୋଜନ ପାଇଁ ଡାକିଲେ। ସେଇଠି ମଧ୍ୟ ତାଙ୍କର ଲିଖିତ ଭାଷଣ ଓ ମୋର ଲିଖିତ ଭାଷଣ। ଟେଲରଙ୍କ ସବୁ କଥା ବୁଝି ହେଉଥିଲା। କିନ୍ତୁ ଏ ଭଦ୍ର ମହିଳାଙ୍କର ଅଧା କଥା ଅଦ୍ଭୁତ ଉଚ୍ଚାରଣ ପାଇଁ ଜଣାପଡୁନଥିଲା। ତେଣୁ ମାପିଚୁପି ଉତ୍ତର ଦେବା କଥା। ଜଣେ ଧଣ୍ଡା କହୁଥିବ ଓ ଶୁଭୁଥିବ ମେଣ୍ଢା। ତାକୁ କି ଉତ୍ତର ଦେବି ?

ଭାରତୀୟ ଦୂତାବାସକୁ ଗଲୁ। ଆମ୍ବାସଡ଼ର ଥିଲେ ଲଲିତେନ୍ଦ୍ର ମାନସିଂହ। ତଳ ମହଲାର ଗୋଟିଏ ରୁମ୍‌ରେ ଦେଖିଲୁ ପୂର୍ବ ଆମ୍ବାସଡ଼ରମାନଙ୍କ ଫଟୋ। କେଉଁଟା ବଡ଼ କେଉଁଟା ସାନ, କେଉଁଟା ସାମାନ୍ୟ ତଳେ କେଉଁଟା ସାମାନ୍ୟ ଉପରେ। ପାଖ ଗୋଟିଏ ରୁମ୍‌ରେ ଗଦା ହୋଇଥାଏ ଅସଂଖ୍ୟ ମାଗାଜିନ୍, ଅନେକଗୁଡ଼ାଏ ଚଟାଣରେ ବିଛା ହୋଇପଡ଼ିଥାଏ। ଟେବୁଲରେ ଧୂଳି। ବେଶି ସମୟ ଅପେକ୍ଷା କରିଥିଲେ ଆହୁରି କିଛି ଆବିଷ୍କାର କରିଥାନ୍ତୁ କିନ୍ତୁ ଖବର ପାଇବାରୁ ଉପର ମହଲାକୁ ଗଲୁ ଦେଖା କରିବା ପାଇଁ।

ଆମକୁ ଚା' ପରଷା ଗଲା ପେପର ଗ୍ଲାସରେ। କାଶ୍ମୀର ବିଷୟରେ ସେ କିଛି ଜାଣିବା ପାଇଁ ଚାହିଁଲେ ବିଶେଷତଃ ତିନି ଚାରି ହଜାର ସନ୍ତ୍ରାସବାଦୀଙ୍କୁ କାହିଁକି ୮୦ ରୁ ୯୦ ହଜାର ସୁରକ୍ଷା ବାହିନୀ ଦମନ କରିପାରୁନାହାଁନ୍ତି। ତାଙ୍କୁ ଉତ୍ତର ଦେଲି ଯେ ଅନେକ ସନ୍ତ୍ରାସବାଦୀ ଧରା ପଡୁଛନ୍ତି ଓ ମରୁଛନ୍ତି କିନ୍ତୁ ଦଶଟି ମହୁମାଛି ମାରିଲେ କ'ଣ ହେବ ଯେପର୍ଯ୍ୟନ୍ତ ରାଣୀ ମହୁମାଛି ଜୀବିତ ଓ ପାକିସ୍ତାନରେ ସୁରକ୍ଷିତ। ସେଥିପାଇଁ ଆମର ବୈଦେଶିକ ସେବାକୁ ଅଧିକ ତ୍ୱରାନ୍ୱିତ କରାଯାଉ। ସେଦିନ ରାତିରେ ଜଣେ ମିନିଷ୍ଟର ତାଙ୍କ ଘରକୁ ଖାଇବା ପାଇଁ ଡାକିଥିଲେ। ଖାଇସାରି ହାତ ଧୋଇବା ପାଇଁ ଚାହିଁବାରୁ ରୋଷେଇ ଘର ପାଖ ୱାଶିଂବେସିନ୍‌କୁ ଦେଖେଇ ଦେଲେ। ସେଇଠି ଝିଅଟିଏ ଠିଆ ହୋଇଥାଏ। ପଚାରିବାରୁ ଜଣାପଡ଼ିଲା ସୁନ୍ଦରଗଡ଼ର ଓ ଚାକରାଣୀ କାମ କରୁଛି। ଆମେରିକାରେ ମଧ୍ୟବିତ୍ତ ଲୋକ ମଧ୍ୟ ବିନା ଚାକରରେ ଚଳିଯାଆନ୍ତି କିନ୍ତୁ ଭାରତୀୟଙ୍କର ୨୪ ଘଣ୍ଟା ଚାକର ଚାକରାଣୀ ଦରକାର।

ମୋର ଚିନ୍ତା ଥିଲା ଯେ ମୁଁ ଟ୍ରେନିଂ ପରିଦର୍ଶନ ପାଇଁ ଯିବି ଦିନସାରା ସ୍ତ୍ରୀ କ'ଣ କରିବେ? କିନ୍ତୁ ସମସ୍ୟାର ସମାଧାନ ହୋଇଗଲା। ଟ୍ରେନିଂ ହେଉଥିଲା, ସେଇ ହୋଟେଲର ଏକ ରୁମ୍‌ରେ ସବା ତଳ ମହଲାରେ ଥିଲା ରେସ୍ତୋରାଁ। ସେଇଠି ଅଢ଼େଇ ଡଲାରରେ ଥାଇଲାଣ୍ଡର ଲଞ୍ଚ ମିଳୁଥିଲା। ଏତେ ପରିମାଣର ଯେ ଗୋଟିଏ ଲଞ୍ଚ ଦୁଇଜଣ ଖାଇବେ। ଆମେ ସେଇଆ କରୁଥିଲୁ।

ସକାଳେ ମିଳେ ସୁନ୍ଦର ଜଳଖିଆ। ସେ ରେସ୍ତୋରାଁର ମ୍ୟାନେଜର ହେଉଛନ୍ତି ଶ୍ରୀଲଙ୍କାର ଅଧିବାସୀ ମିଃ. ଆନନ୍ଦ। ବିହାରର ଆଇ.ଜି. ଗୌତମ (ପରେ ଡି.ଜି. ପୋଲିସ ହେଲେ) ଯେଉଁ ଗଛ ମୂଳେ ଭଗବାନ ବୁଦ୍ଧ ବସି ତପସ୍ୟା କରିଥିଲେ ତାର ଅନେକ ପତ୍ର ଲଫାପାରେ ଭର୍ତ୍ତି କରି ଆଣିଥିଲେ। ପତ୍ରର ମହାତ୍ମ୍ୟ ଲେଖା ହୋଇଥାଏ ଲଫାପାରେ। ଗୋଟିଏ ଲଫାପା ମୁଁ ଆନନ୍ଦଙ୍କୁ ଦେବାରୁ ସେ ତାକୁ ପାଞ୍ଚ ଦଶଥର ମୁଣ୍ଡରେ ଲଗେଇଲେ ଓ ଅନୁରୋଧ କଲେ ଯେ ତାଙ୍କର ୫ ଜଣ କର୍ମଚାରୀ ହେଉଛନ୍ତି ବୌଦ୍ଧ ଧର୍ମାବଲମ୍ବୀ ଓ ସେମାନଙ୍କୁ ମଧ୍ୟ ଦିଆଯାଉ। ଆମେ ଥିବା ପର୍ଯ୍ୟନ୍ତ ଆନନ୍ଦ ସବୁଦିନେ ରୁମ୍‌କୁ ମୋ' ସ୍ତ୍ରୀଙ୍କ ପାଇଁ ଲଞ୍ଚ ପଠାନ୍ତି, ପଇସା ଯାଚିବାରୁ ମନା କରି କହିଲେ 'ମ୍ୟାଡ଼ାମ୍, ମୋର ବ୍ୟକ୍ତିଗତ ଅତିଥି ତେଣୁ ପଇସା ଦିଅନ୍ତୁ ନାହିଁ।' ପବିତ୍ର ବୃକ୍ଷର ପତ୍ର ଯେଉଁଦିନ ଦେଲି ସେଦିନ ସନ୍ଧ୍ୟାରେ ଜଣେ ଆମେରିକାନ ମହିଳା ଆସିଲେ। ନାଁ କ୍ରିଷ୍ଟାବେଲା ସଲମନ / କାର୍ଯ୍ୟ ଥିଲା ସମସ୍ତ ଅତିଥିଙ୍କର ଚର୍ଚ୍ଚା ଠିକ୍ ହେଉଛି କି ନାହିଁ ତା'ର ତନଖି କରିବା। କ୍ରିଷ୍ଟାବେଲାଙ୍କ ବୟସ ୪୦ ପାଖାପାଖି ଦିଶନ୍ତି ବହୁତ କମ୍। ରୁମ୍‌କୁ ଆସି ପ୍ରଥମେ ସ୍ତ୍ରୀଙ୍କୁ କୁଣ୍ଢେଇ ପକେଇଲେ। ଚା' ଦେବାରୁ ଆନନ୍ଦରେ ପିଇଲେ ଓ କହିଲେ ଯେ ମୁଁ ଦୁଇବର୍ଷ

ହେଲା ଖ୍ରୀଷ୍ଟିୟାନ ଧର୍ମ ଛାଡ଼ି ବୌଦ୍ଧ ହୋଇଯାଇଛି। ଭୁଟାନ୍ ଓ ସିକିମ୍ ଯିବା ପାଇଁ ଚାହୁଁଛି। ତାଙ୍କୁ ଗୋଟିଏ ପବିତ୍ର ପତ୍ର ଦେଲି ଓ ତାର ମହାତ୍ମ୍ୟ ବୁଝାଇବାରୁ କି ଖୁସି । ଆମେ ଯେଉଁଦିନ ଆମେରିକା ଛାଡ଼ିଲୁ ସେ ହୋଟେଲର ପୋର୍ଟିକୋ ପର୍ଯ୍ୟନ୍ତ ଆସିଥିଲେ। ତାଙ୍କ ସ୍ୱାମୀ ତାଙ୍କୁ ଛାଡ଼ପତ୍ର ଦେଇଛନ୍ତି, ୧୪ ବର୍ଷର ଝିଅ ହଷ୍ଟେଲରେ ରହେ ତେଣୁ କ୍ରିଷ୍ଟାବେଲେ ଆପେ ଆପେ ବହୁତ ଦାୟିତ୍ୱ ମୁଣ୍ଡାନ୍ତି। ବଏସ୍‌ଙ୍କୁ ଅନୁରୋଧ କରି ସେ ଆମ ମାନଙ୍କ ସାଙ୍ଗରେ ବଜାର ସଉଦା କରିବା ପାଇଁ ଯାଆନ୍ତି। ବିମାନ ବନ୍ଦରରେ ବନ୍ଦର କର୍ମଚାରୀ ଓ ଜଣେ ସହଯାତ୍ରୀଙ୍କ ରୁକ୍ଷତାକୁ ମାନଦଣ୍ଡ ନକରି କ୍ରିଷ୍ଟାବେଲ, ବଏସ୍ ଓ ଜେନେରାଲ ଟେଲରଙ୍କ ବ୍ୟବହାରକୁ ମାନଦଣ୍ଡ କଲେ ଆମେରିକାର ବାସିନ୍ଦାଙ୍କ ଉପରେ ଆମମାନଙ୍କ ଧାରଣା ବଦଳିଯିବ।

ଦିନେ ଆନନ୍ଦ ତାଙ୍କ ଘରକୁ ଖାଇବା ପାଇଁ ଡାକିଲେ। ସନ୍ଧ୍ୟା ୬ଟା ବେଳେ ଆମ ଦୁଇଜଣଙ୍କୁ ନେଇଗଲେ ପୋର୍ଟିକୋକୁ। ପୋର୍ଟିକୋରେ ଠିଆ ହୋଇଥାଏ ବେଶ୍ ଲମ୍ବାଗାଡ଼ି। ଗାଡ଼ି ଚଳାଉଥିଲେ ତାଙ୍କ ଶ୍ରୀମତୀ। ସେ ମଧ୍ୟ ଶ୍ରୀଲଙ୍କାର। ଗାଡ଼ି ଭିତରେ ଥାଏ ଟେଲିଭିଜନ ଓ ରେଫ୍ରିଜିରେଟର। ଆନନ୍ଦଙ୍କ ଘର ୱାସିଂଟନ୍ ଠାରୁ ପ୍ରାୟ ୫୦ କ୍ରୁ ଷାଠିଏ ମାଇଲ। ମୋ' ସ୍ତ୍ରୀ ଆଗରେ ବସିଲେ, ମୁଁ ଓ ଆନନ୍ଦ ପଛରେ। ସେ ମୋତେ ବିଭିନ୍ନ ସ୍ଥାନ ଦେଖେଇ ଦେଉଥିଲେ। ଅତି ସନ୍ତର୍ପଣରେ ପଚାରିଲେ ମୁଁ ପିଆପିଇ କରେ କି ? ମୁଁ ନାହିଁ କରିବାରୁ ଆଶ୍ୱସ୍ତ ହେଲେ କାରଣ ତାଙ୍କ ଘରେ ପିଆପିଇ ଚଳେ ନାହିଁ।

ଆନନ୍ଦଙ୍କ ଘର ବେଶ୍ ପ୍ରଶସ୍ତ। ଘରେ ସ୍ୱାମୀ ସ୍ତ୍ରୀ ଓ ଲାବ୍ରାଡ଼ର କୁକୁରଟିଏ। କୁକୁରଟି ଆସିଲା ଓ ଶୁଙ୍ଘି ଦେଇ ଚାଲିଗଲା। ଅଳ୍ପ ସମୟ ପରେ ଗାଡ଼ିଟିଏ ଆସିଲା ଓ ଓହ୍ଲେଇ ପଡ଼ିଲେ ଗୈରିକ ବସ୍ତ୍ର ପରିହିତ ଲଣ୍ଡିତ ମୁଣ୍ଡ ଏକ ବୌଦ୍ଧ ସନ୍ୟାସୀ। ଆମେରିକାର ବୌଦ୍ଧ ସମ୍ପ୍ରଦାୟର ସଭାପତି - ଭାଦ୍ରେକେ - ଉପରତନ - ମହାଥେରା। ଆନନ୍ଦ ଏବଂ ତାଙ୍କ ସ୍ତ୍ରୀ ସାଷ୍ଟାଙ୍ଗ ପ୍ରଣିପାତ କଲେ। ଆମେ ନମସ୍କାର କଲୁ ଓ ତାଙ୍କୁ ଗୋଟିଏ ପବିତ୍ର ପତ୍ର ଦେବାରୁ ସେ ମୁଣ୍ଡରେ ତିନି ଥରି ଥର ଲଗେଇଲେ। 'ଆପଣମାନେ କେତେ ଭାଗ୍ୟବାନ, ଆପଣଙ୍କ ଦେଶରେ ଚାରୋଟି ଧର୍ମ ଜନ୍ମ ନେଇଛନ୍ତି ।' ମୁଁ କଥା ଯୋଡ଼ିଲି 'ହଁ। ଏବଂ ଏସିଆରେ ସବୁ ଧର୍ମ ଜନ୍ମ ଗ୍ରହଣ କରିଛନ୍ତି। ୟୁରୋପ ଓ ଆମେରିକାର ଲୋକମାନେ ନିଜକୁ ଅତ୍ୟନ୍ତ ସଭ୍ୟ ବୋଲି ମନେ କରୁଛନ୍ତି କିନ୍ତୁ ଏସିଆରେ ଜନ୍ମ ହୋଇଥିବା ଧର୍ମକୁ ଗ୍ରହଣ କରୁଛନ୍ତି।'

ଭାରତର ସଂସ୍କୃତି ପରମ୍ପରା ଇତିହାସ ବିଷୟରେ ଏକ ସୁଦୃଶ୍ୟ ପୁସ୍ତକ ପ୍ରକାଶ ହୋଇଛି ଯାହାର ଦାମ୍ ହେଉଛି ଅଢ଼େଇ ହଜାର ଟଙ୍କା। ୧୫ଟି ପୁସ୍ତକ ଆମେ ନେଇଥିଲୁ ଓ ପ୍ରତ୍ୟେକ ଟ୍ରେନିଂ ଦେଇଥିବା ବିଶେଷଜ୍ଞ ଓ ଆମର ଚର୍ଚ୍ଚା କରୁଥିବା

ଅଫିସରମାନଙ୍କୁ ଉପହାର ସ୍ୱରୂପ ଦେଲୁ। ଗୋଟିଏ ଉପହାର ପଠେଇଦେଲି ଆମେରିକାର ଏୟାର ଲାଇନ୍‌ର ଜଣେ ମ୍ୟାନେଜରଙ୍କ ପାଖକୁ। ମୁଁ ଇନ୍ସ୍ୟୁରାନ୍ସ କାଗଜ ଭୁଲ୍‌ରେ ଦିଲ୍ଲୀରେ ଛାଡ଼ି ଆସିଥିଲି। ମୋର ବ୍ୟକ୍ତିଗତ ସୁରକ୍ଷା ଅଫିସର ଅଗ୍ନିହୋତ୍ରୀ ଆମେରିକାନ୍ ଏୟାର ଲାଇନ୍‌ର ଅଫିସରେ ଦେଇ ଅନୁରୋଧ କଲେ ୱାଶିଂଟନ୍ ବିମାନବନ୍ଦରରେ ପହଞ୍ଚେଇ ଦେଇ ହୋଟେଲକୁ ଫୋନ୍ କରିବା ପାଇଁ। ମୋ' ଡ଼େପୁଟି ସେକ୍ରେଟେରୀ ଆସି କାଗଜ ଦେଇଯାଇଥାନ୍ତେ। କିନ୍ତୁ ସେ ଅଫିସର ଜଣକ ଏତେ ଭଦ୍ର ଯେ ନିଜେ ଆସି ହୋଟେଲରେ ଦେଇ ଗଲେ। ରୁମ୍‌ରେ ପହଞ୍ଚି ଆମେ ଦେଖିଲୁ ଟେବୁଲ୍‌ରେ ଥୁଆ ହୋଇଛି ଇନ୍ସ୍ୟୁରାନ୍ସ କାଗଜ ଓ ସେ ଭଦ୍ର ଲୋକଙ୍କ କାର୍ଡ଼।

ୱାଶିଂଟନ୍ ସହର ମୁଁ ଯେତିକି ବୁଲିଛି ମୋ'ଠାରୁ ବେଶି ବୁଲିଲେ ମୋ' ସ୍ତ୍ରୀ। ମୁଁ ଯିବା ବେଳକୁ ଜଣେ ଆଇଏଏସ୍ ଅଫିସର ଭଲ ଜ୍ୟାକେଟ୍‌ଟିଏ ଧାର ସ୍ୱରୂପ ଦେଲେ ଓ ତାଙ୍କର ଦୁଇ ତିନି ଜଣ ବନ୍ଧୁଙ୍କୁ ଖବର ଦେଇଥିଲେ ଆମ କଥା ବୁଝିବା ପାଇଁ। ସେମାନେ ଜଣେ ପରେ ଜଣେ ପାଳି କରି ଆସୁଥିଲେ। ସ୍ୱାମୀ ସ୍ତ୍ରୀ ଆସନ୍ତି, ମୋ' ସ୍ତ୍ରୀକୁ ନେଇ ବୁଲାବୁଲି କରାଇ ସନ୍ଧ୍ୟା ବେଳେ ହୋଟେଲ୍‌ରେ ଛାଡ଼ି ଦିଅନ୍ତି। ସେଥିରୁ ଜଣେ ଭଦ୍ରଲୋକ (ମିଷ୍ଟର ଯାଦବ)ଙ୍କ ସାଙ୍ଗେ ବନ୍ଧୁତା ସବୁଦିନ ପାଇଁ ରହିଗଲା। ସେ ଦିଲ୍ଲୀ ଆସିଲେ ଦେଖାକରନ୍ତି ଓ ସବୁବେଳେ କିଛି ନା କିଛି ଉପହାର ନେଇ ଆସନ୍ତି। ତାଙ୍କ ସ୍ତ୍ରୀଙ୍କ ପାଇଁ ଥରେ ସମ୍ବଲପୁରୀ ଶାଢ଼ିଟିଏ ଦେଲୁ ଓ ଶାଢ଼ିକୁ ଦେଖି ସେ କହିଲେ ଏ ତ ଓଡ଼ିଶାର ନୁହେଁ । ବହୁତ ପରିଶ୍ରମରେ ତାଙ୍କୁ ବୁଝେଇବାକୁ ପଡ଼ିଲା ଯେ ଶାଢ଼ି ଓଡ଼ିଶାର; କିନ୍ତୁ ଭାରତର ଅନେକ ସ୍ଥାନରେ ଏ ଶାଢ଼ିକୁ କପି କରାଯାଉଛି।

୨୩ ନଭେମ୍ବର ୨୦୦୩ରେ ଦିଲ୍ଲୀ ଫେରିଲି। ଫାଷ୍ଟକ୍ଲାସ୍‌ରେ ଶୋଇ ଶୋଇ ଆସିଲୁ ତଥାପି କ୍ଳାନ୍ତ ଲାଗିଲା। ଗୋଟିଏ ଦିନ ବିଶ୍ରାମ ନେଇ ତା' ଆରଦିନ ଅଫିସ ଗଲି । ଭାବିଥିଲି ଆମେରିକାର ଅନୁଭୂତି ବିଷୟରେ ଗୋଟିଏ ଛୋଟିଆ ବହି ଲେଖିବି କିନ୍ତୁ ଅଳସୁଆମୀ ପାଇଁ ଏ ପର୍ଯ୍ୟନ୍ତ ଲେଖିପାରୁନାହିଁ। ମନ ଖୁବ୍ ଖୁସି; କିନ୍ତୁ କିଏ ଜାଣିଥିଲା ଯେ ଏକ ଭୟଙ୍କର ବିପଦ ମାଡ଼ି ଆସୁଛି ବୋଲି।

ଦିଲ୍ଲୀ ପହଞ୍ଚିବା ପୂର୍ବରୁ ବମ୍ବେରେ ଝିଅ ଘରେ ଅଟକିଲୁ। ସେଇଠି ଥିବାବେଳେ ଦିଲ୍ଲୀରୁ ତିନି ଚାରି ଜଣ ବନ୍ଧୁଙ୍କ ପାଖରୁ ଫୋନ୍ ଆସିଲା। ସମସ୍ତଙ୍କର ଗୋଟିଏ କଥା ଯାହାହେଉ ଆପଣ ସିବିଆଇ ଡାଇରେକ୍ଟର ହେଉଛନ୍ତି। ଆପଣଙ୍କ ନାଁ ଯାଇଛି। ମୋର ପ୍ରତିକ୍ରିୟା ଥିଲା 'ଯାଇଥିବ। ହେଲେ ଭଲ ନହେଲେ ଭଲ।' ସିବିଆଇ ଡାଇରେକ୍ଟର ଦରମା ଓ ମୋ ଦରମା ସମାନ। ହେଲେ ମୁଁ ପ୍ରଥମ ଓଡ଼ିଆ ସିବିଆଇ ଡାଇରେକ୍ଟର ହୋଇଥାନ୍ତି। ଦିଲ୍ଲୀରେ ପହଞ୍ଚିବା ପରେ ମୋ' ଜଏଣ୍ଟ ସେକ୍ରେଟେରୀଙ୍କର ମଧ୍ୟ ସେଇ

ଗୋଟିଏ କଥା - ସାର୍ ଆପଣ ସିବିଆଇ ଡାଇରେକ୍ଟର ହେବେ ଆମମାନଙ୍କୁ ଛାଡ଼ି ଯିବାକୁ ପଡ଼ିବ। ଅନ୍ଧାର ବେଳା ଦେଖି ତିନି ଚାରି ଜଣ ସିବିଆଇ ଅଫିସର ଘରେ ଆସି ଦେଖା କଲେ। ଇତି ମଧ୍ୟରେ ଗୋଟିଏ ଦିନ ଦାନ୍ତ ଭୀଷଣ ବିନ୍ଧିଲା। ଦାନ୍ତ ଡାକ୍ତର କଷ୍ଟ କମେଇବା ପାଇଁ ବଟିକା ଦେଲେ ଓ ତା' ସାଙ୍ଗରେ କାଳେ ପେଟରେ ଏସିଡ଼୍ ଓ ଗ୍ୟାସ ସୃଷ୍ଟି ହେବ ଆଣ୍ଟାସିଡ଼୍ ଦେଲେ। କଷ୍ଟ ଲାଘବ ପାଇଁ ଯେଉଁ ଔଷଧ ଦେଇଥିଲେ ତାହା ଖୁବ୍ ଶକ୍ତିଶାଳୀ। କିନ୍ତୁ ପେଟରେ ଏସିଡ଼ିଟି କମେଇବା ପାଇଁ ଦେଇଥିବା ଔଷଧ ସେଇଟା ବୋଧହୁଏ ନକଲି। ତେଣୁ ମୋ' ପେଟଟା ହଠାତ୍ ଫୁଲିଗଲା। ଏତେ ବେଶୀ ଯେ କଥା କହିବାରେ କଷ୍ଟ ହେଲା। ଭାଗ୍ୟକୁ ଓଡ଼ିଶାର ବିଚକ୍ଷଣ ଡାକ୍ତର ବିଦ୍ୟୁତ୍ କୁମାର ଦାଶ ଯିଏ ମୋର ଅନ୍ତରଙ୍ଗ ବନ୍ଧୁ ସଞ୍ଜୀବ କୁମାର ହୋତାଙ୍କ ଶଳା ସେ ଆସି ତାଙ୍କ ବଡ଼ ଭାଇଙ୍କ (ବାଦଲ ଦାଶ, ଆଇଏଏସ୍‌ଙ୍କ ଘରେ ରହୁଥିଲେ। ବାଦଲର ଘର ମୋଠୁ ଗୋଟିଏ ଘର ଛାଡ଼ି। ଖବର ଦେବାରୁ ବିଦ୍ୟୁତ୍ ସାଙ୍ଗେ ସାଙ୍ଗେ ଆସିଗଲା। କିଛି ଔଷଧ ଲେଖିଦେଲା ଏବଂ ତୁରନ୍ତ ଇସିଜି କରିବା ପାଇଁ ଉପଦେଶ ଦେଲା। ସିଆଇଏସଏଫ ହସ୍ପିଟାଲକୁ ଖବର ଦେବାରୁ କମାଣ୍ଡାଣ୍ଟ (ଡ଼କ୍ଟର ରାଠୋର) ଆସି ଇସିଜି କଲେ। ଅବସ୍ଥା ଦେଖି ତୁରନ୍ତ ଏଏମ୍ଏସ୍‌ରେ ଆଡ଼ମିଶନ ପାଇଁ କହିଲେ। ମୋତେ କହିଲେ ନାହିଁ କିନ୍ତୁ ସ୍ତ୍ରୀଙ୍କୁ କହିଲେ ଅବସ୍ଥା ଗୁରୁତର। ସେ ଆମ୍ବୁଲାନ୍ସ ମଗେଇଲେ କିନ୍ତୁ ଦିଲ୍ଲୀ ଟ୍ରାଫିକ୍ ଏଭଳି କି ଆମ୍ବୁଲାନ୍ସକୁ ଅପେକ୍ଷା କଲେ ଯମଦୂତ ଆଗ ପହଞ୍ଚିଯିବ। ଅଫିସ ଆମ୍ବାସାଡ଼ର ଗାଡ଼ିରେ ବସି ହସ୍ପିଟାଲ ଗଲୁ। ପ୍ରତ୍ୟେକ ମିନିଟ୍ ମୁଁ ଭଗବାନଙ୍କୁ ଡାକୁଥାଏ ଜଲ୍‌ଦି ପହଞ୍ଚି ଯାଏକି, କାରଣ ପେଟ ଭିତରେ ଭୀଷଣ କଷ୍ଟ ଲାଗୁଥାଏ। ଡକ୍ଟର ରାଠୋର ଉପରାଷ୍ଟ୍ରପତି ଶ୍ରୀ ଶେଖାୱତଙ୍କର ବ୍ୟକ୍ତିଗତ ଚିକିତ୍ସକ ଥିଲେ। ତାଙ୍କର ପତିଆରା ଢ଼େର। ସାଙ୍ଗେ ସାଙ୍ଗେ ମୋତେ ଆଇସିୟୁକୁ ନିଆଗଲା। ବିଖ୍ୟାତ ଡାକ୍ତର ସୁବ୍ରତ ଆଚାର୍ଯ୍ୟ ଓ ଡକ୍ଟର ସରାୟା ମୋ' ଦାୟିତ୍ୱ ନେଲେ। ପରେ ଜଣାପଡ଼ିଲା ଯେ ପେଟରେ ରକ୍ତ ସ୍ରାବ ହୋଇ ରକ୍ତ ଜମାଟ ବାନ୍ଧି ଖାଦ୍ୟ ନଳୀକୁ ବନ୍ଦ କରିଦେଇଛି। ଆଇସିୟୁରେ ଯୁବ ଡାକ୍ତର ସ୍ୱତି ଜଣେ ସାଙ୍ଗର ପୁଅ, ଅନ୍ୟ ଜଣେ ମହିଳା ଡାକ୍ତରଙ୍କର ମଉସା ରାଜଗୋପାଳ ଓ ମୁଁ ଏକା ସଙ୍ଗେ ଆଇପିଏସ୍ ଟ୍ରେନିଂ ନେଇଛୁ ଓ ଗୋଟିଏ ରୁମ୍‌ରେ ରହୁଥିଲୁ। ସେମାନେ ମୋର ଯଥେଷ୍ଟ ସେବା କରିଛନ୍ତି।

ତା' ପରଦିନ ଡକ୍ଟର ସୁବ୍ରତ ଆଚାର୍ଯ୍ୟ ଏଣ୍ଡୋସ୍କୋପି କଲେ। ପାକସ୍ଥଳୀର ବିଭିନ୍ନ ସ୍ଥାନରେ ରକ୍ତ ଝରୁଥିଲା। କିନ୍ତୁ ସକାଳ ସୁଦ୍ଧା ମୁଁ ବିପଦ ମୁକ୍ତ ବୋଲି ଡକ୍ଟର ସରାୟା କହିଲେ। ୯ଟା ସୁଦ୍ଧା ମୁଁ ଏକ କ୍ୟାବିନ୍‌କୁ ଆସିଗଲି।

ଛୋଟିଆ କଥାଟିଏ ମନେପଡ଼େ। ଡକ୍ଟର ରାଠୋର ମୋ' ସ୍ତ୍ରୀଙ୍କୁ କହିଲେ 'ମ୍ୟାଡ଼ାମ୍ ସାଙ୍ଗେ ସାଙ୍ଗେ ୧୪ ହଜାର ଟଙ୍କା ଭରି ଦିଅନ୍ତୁ ନହେଲେ କ୍ୟାବିନ୍ ମିଳିବ ନାହିଁ ।' ମାସାନ୍ତ ଦରମାରୁ ବଞ୍ଚିତ ମାତ୍ର ୪ ରୁ ୫ ହଜାର ଟଙ୍କା। ୧୪ ହଜାର ମିଳିବ କେଉଁଠୁ? ଏଟିଏମ୍ ବ୍ୟବହାର କରିବା ଜାଣିନଥିଲେ ମୋ' ସ୍ତ୍ରୀ, ଏବେ ମଧ୍ୟ ଜାଣିନାହାଁନ୍ତି। ନିରୁପାୟ ହୋଇ ପୁଅକୁ ଫୋନ୍ କଲେ, ସେ ଥାଏ ହାଇଦ୍ରାବାଦ୍‌ରେ, ସାଙ୍ଗେ ସାଙ୍ଗେ ଟିକେଟ୍ କଲା ପହଞ୍ଚିବା ପାଇଁ, ତା' ସହିତ ଜଣେ ସାଙ୍ଗକୁ କହିଲା ତୁରନ୍ତ ହସ୍ପିଟାଲ ଆସି ତିରିଶ ହଜାର ଟଙ୍କା ନେବା ପାଇଁ। ସ୍ତ୍ରୀ କାଉଣ୍ଟରରୁ ପୋର୍ଟିକୋ ପର୍ଯ୍ୟନ୍ତ ବାରମ୍ବାର ଯାଉଥାନ୍ତି ଓ ଫେରୁଥାନ୍ତି, ଡକ୍ଟର ରାଠୋର ସାହାଯ୍ୟ କରିବା ପାଇଁ ଚାହିଁଲେ କିନ୍ତୁ ତାଙ୍କ ପକେଟ୍‌ରେ ମାତ୍ର ହଜାରେ ଟଙ୍କା। ସ୍ତ୍ରୀଙ୍କ ବ୍ୟାକୁଳତା ଦେଖି ଡ୍ରାଇଭର ଦେବେନ୍ଦ୍ର ସିଂ ପଚାରିଲା 'କ୍ୟା ହୁଆ ମ୍ୟାଡ଼ାମ୍?' ଅସହାୟତା ବୁଝିପାରି କାଉଣ୍ଟରକୁ ଗଲା, କାଉଣ୍ଟର ବନ୍ଦ ହେବା ଉପରେ କେବଳ ଆମକୁ ସେମାନେ ଅପେକ୍ଷା କରିଥିଲେ। ଆଉ ଦଶ ମିନିଟ୍ ଅପେକ୍ଷା କରନ୍ତୁ କହି ଦେବେନ୍ଦ୍ର ଜଣକଠୁ ମୋଟରସାଇକେଲ ମାଗିନେଲା ଓ ପାଖରେ ଜଣେ ପରିଚିତ ଦୋକାନୀଠୁ ତିରିଶ ହଜାର ଆଣି ଚାଲି ଆସିଲା। ହସ୍ପିଟାଲ୍‌ରେ ଟଙ୍କା ଭରିଦେଇ ବାକି ୧୬ ହଜାର ସ୍ତ୍ରୀଙ୍କ ହାତରେ ଗୋଞ୍ଜି ଦେଲା। ଠିକ୍ ସମୟରେ ବୁକ୍ ନକରିଥିଲେ ମୋତେ ୱାର୍ଡ଼ରେ ରହିବାକୁ ପଡ଼ିଥାନ୍ତା। ଅଧା ଘଣ୍ଟା ପରେ ପୁଅ ସନ୍ଦୀପର ସାଙ୍ଗ ବିନୀତ ତିରିଶ ହଜାର ଟଙ୍କା ଧରି ପହଞ୍ଚିଲା ଓ ଦେବେନ୍ଦ୍ରକୁ ତା' ଟଙ୍କା ଫେରେଇ ଦେଲୁ। ସିଆଇଏସଏଫ ଛାଡ଼ିବାର ୧୧ ବର୍ଷ ହୋଇଗଲାଣି, ଏବେ ମଧ୍ୟ ଦେବେନ୍ଦ୍ର ଫୋନ୍ କରେ।

ବହୁ ଶୁଭେଚ୍ଛୁ ଆସିଲେ, ହୋମ୍ ସେକ୍ରେଟେରୀ ଗୋପାଳ ସ୍ୱାମୀ ସମେତ ଓ ସେଇ ସମୟରେ ଖବର ମିଳିଲା ଯେ ମୋର ସିବିଆଇ ଡାଇରେକ୍ଟର ହେଲାନାହିଁ। ମୋଠାରୁ ବର୍ଷେ ଜୁନିୟର ଉମାଶଙ୍କର ମିଶ୍ର ସିବିଆଇ ଡାଇରେକ୍ଟର ହେଲେ। ଏଣେ ଚିକିତ୍ସା ଚାଲିଲା ପ୍ରାୟ ଏଗାର ଦିନ ପର୍ଯ୍ୟନ୍ତ। ଓଡ଼ିଶାର ଖବରକାଗଜମାନଙ୍କରେ ବାହାରିଲା ଯେ ମୁଁ ଗୁରୁତର ଭାବେ ପୀଡ଼ିତ। ତେଣୁ ଭଣଜା, ଭାଣେଜି, ପୁତୁରା, ଝିଆରୀ, ମୀନକେତନ କନେଷ୍ଟବଳ ବାହାରିଲେ ମୋତେ ଦେଖିବା ପାଇଁ। ବଡ଼ କଷ୍ଟରେ ସେମାନଙ୍କୁ ନିବୃତ୍ତେଇଲୁ। ଦିଲ୍ଲୀରେ ଅବସ୍ଥିତ ଜଣେ ଲେଖିକା ସିଆଇଏସଏଫର ଡିଆଇଜି ଭରଦ୍ୱାଜ ଓ ତାଙ୍କ ସ୍ତ୍ରୀ ଆଶା ଆମ ମନ୍ତ୍ରାଳୟର ଡାଇରେକ୍ଟର ଦୁର୍ଗାଶଙ୍କର ମିଶ୍ର ଆଇଏଏସ ପାଳି କରି ଜଗିଲେ। ଜଣେ ଡକ୍ଟର ଆସି କହିଲେ ରକ୍ତ ଜମାଟ ବାନ୍ଧି ଗୋଟିଏ ପଥର ଭଳି ହୋଇଯାଇଛି ସେଇଟା ଯଦି ଖଣ୍ଡ ଖଣ୍ଡ ନହୁଏ ତେବେ ଆମେ ଅପରେସନ୍ କରିବୁ। ଅଳ୍ପ ହସି ତାଙ୍କୁ କହିଲି ମୁଁ ଆପଣଙ୍କୁ ସେତିକି କଷ୍ଟ

ଦେବିନାହିଁ। ଦୁଇଦିନ ପରେ ସିଟି ସ୍କାନ କରିବାରୁ ଜଣାପଡ଼ିଲା ଯେ ସେ ଅବସ୍ଥା ଆଉନାହିଁ। ସେଦିନ ମୋତେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଫୋନ୍ କରି ସ୍ୱାସ୍ଥ୍ୟାବସ୍ଥା ବିଷୟରେ ପଚାରିଲେ ଓ ତାଙ୍କ ଦ୍ୱାରା କିଛି ହୋଇପାରିବ କି ବୋଲି ଜାଣିବାକୁ ଚାହିଁବାରୁ ମୁଁ ତାଙ୍କୁ ଧନ୍ୟବାଦ ଦେଇ କହିଲି ଯେ ମୁଁ ଡାକ୍ତରମାନଙ୍କର ସବୁରକମ ସହଯୋଗ ପାଉଛି।

ଏଏମ୍ଏସ୍‌ର ଚିକିତ୍ସା ପଦ୍ଧତି ଅଧିକାଂଶ ହସ୍ପିଟାଲ ଠାରୁ ଭିନ୍ନ। ଜଣେ ଡାକ୍ତର ଚିକିତ୍ସା କରିବେ ଓ ଗୋଟିଏ କମିଟି ତାକୁ ଅନୁଧ୍ୟାନ କରିବ। ରୋଗୀ ବିଷୟରେ ସମସ୍ତ କଥା ଜାଣି ପ୍ରେସ୍କ୍ରିପ୍‌ସନ୍‌ରେ ଲେଖିବେ। ମୋର ୮୬ ମସିହାରେ କଳା ଝାଡ଼ା ହୋଇଥିଲା। ୯୧ରେ ଆଉଥରେ ହେଲା। ମୋତେ କାମଳ ରୋଗ ହୋଇନାହିଁ। ଥରେ ମ୍ୟାଲେରିଆ ହୋଇଥିଲା। ଏମିତି ଅନେକ କଥା। ରାମାୟଣରୁ ମହାଭାରତ ପର୍ଯ୍ୟନ୍ତ ସବୁ ଲେଖାହୋଇଥିଲା। ଏଗାର ଦିନ ପରେ ହସ୍ପିଟାଲ୍‌ରୁ ଆସିଲି କିନ୍ତୁ ଡାକ୍ତରଙ୍କ ନିର୍ଦ୍ଦେଶ ଥିଲା ଯେ ପ୍ରତିଦିନ ଥରେ ଯାଇ ଦେଖା କରିବାକୁ ପଡ଼ିବ ଓ ଆଉ କିଛି ପରୀକ୍ଷା ଦରକାର। ଚାରି ପାଞ୍ଚ ଦିନ ପରେ ସୁବ୍ରତ ବାବୁ କହିଲେ ଆଉ ଚିକିତ୍ସା ଦରକାର ନାହିଁ। ଯେପର୍ଯ୍ୟନ୍ତ ଦିଲ୍ଲୀରେ ଅଛନ୍ତି କିଛି ଅସୁବିଧା ହେଲେ ମୋତେ ଫୋନ୍ କରିବେ ଓ ଓଡ଼ିଶା ଫେରିଗଲେ ଡକ୍ଟର ବିଦ୍ୟୁତ୍ ଦାଶଙ୍କର ପରାମର୍ଶ ନେବେ।

ଏକ ଭୀଷଣ ବିପଦ କଟିଗଲା। ଡାକ୍ତର ସନ୍ଦେହ କଲେ କଷ୍ଟ ନିବାରଣ ପାଇଁ ଯେଉଁ ଔଷଧ ଖାଉଥିଲେ ତାହା ଠିକ୍ ଥିଲା କିନ୍ତୁ ଆଣ୍ଟାସିଡ଼୍ ଟାବଲେଟ୍ ଥିଲା ନକଲି। ଦିଲ୍ଲୀ ପାଖ ଆଖ ଛୋଟ ସହରମାନଙ୍କରେ ବହୁ ନକଲି ଔଷଧ କାରଖାନା ଅଛି। ଦିଲ୍ଲୀରେ ମିଳୁଥିବା ଔଷଧରୁ ପ୍ରାୟ ୪୦ ଶତକଡ଼ା ନକଲି। ଅନେକ ଡାକ୍ତର ମଧ୍ୟ ନକଲି। ଜଣେ ଦାନ୍ତ ଡାକ୍ତର ପାଖରେ ଦାନ୍ତ ଦେଖେଇଲି, ସେ ଦାନ୍ତ ସଫା କଲାବେଳେ ଏଭଳି ଅସାବଧାନ ହେଲେ ଯେ ଦୁଇ ଦାନ୍ତର ବହିଃ ଆବରଣ ନଷ୍ଟ ହୋଇଗଲା ଓ ଦାନ୍ତ ସବୁଦିନ ପାଇଁ କଳା ହୋଇଗଲା। ପରେ ଏ ଲୋକ ପୋଲିସ ଦ୍ୱାରା ଗିରଫ ହେଲା, କାରଣ ସେ ଡାକ୍ତର ନୁହେଁ ଜଣେ ଡାକ୍ତରଙ୍କ ପାଖରେ କାମ କରୁଥିଲା। ସିବିଆଇ ଚିନ୍ତା ଗଲା, ମୃତ୍ୟୁ ମୁହଁରୁ ରକ୍ଷା ପାଇଲି, ପୁଣିଥରେ କାମରେ ଧ୍ୟାନ ଦେଲି। କାଶ୍ମୀର ସମସ୍ୟା ପ୍ରତି ବେଶି ଧ୍ୟାନ ଦେବାକୁ ପଡୁଥାଏ। ପାଠକମାନେ ମ୍ୟାପରେ ଯାହା ଦେଖନ୍ତି ପ୍ରକୃତ କାଶ୍ମୀର ତା'ଠାରୁ ବହୁତ ସାନ। ପଶ୍ଚିମ ପଟେ ଏକ ତୃତୀୟାଂଶ ପାକିସ୍ତାନ ମାଡ଼ି ବସିଛି ପୂର୍ବରେ ଲାଦାଖରେ ନବେହଜାର ବର୍ଗ କି.ମି. ଅଞ୍ଚଳ ଚାଇନା ମାଡ଼ିବସିଛି। ଧର୍ମ ଗୋଷ୍ଠୀ ସଂସ୍କୃତି ଓ ଭାଷା ଦୃଷ୍ଟିରୁ ତିନୋଟି କାଶ୍ମୀର। ପ୍ରଥମ ହେଲା ଜାମ୍ମୁ ଯେଉଁଠି ବେଶି ହିନ୍ଦୁ ଓ ଡ଼ୋଗ୍ରୀ। ତାପରେ ହେଲା କାଶ୍ମୀର ଉପତ୍ୟକା ଯେଉଁଠାରେ ଶତକଡ଼ା ୯୦ ଭାଗ ଉପରେ

ମୁସଲମାନ ଯେଉଁମାନଙ୍କ ମଧ୍ୟରୁ ଅଧିକାଂଶ ଶହ ଶହ ବର୍ଷ ତଳେ ମଧ୍ୟ ଏସିଆରୁ ଆସିଥିଲେ। ତୃତୀୟ କାଶ୍ମୀର ହେଲା ଲାଦାଖ ଯେଉଁଠି ଧର୍ମ ହେଉଛି ବୌଦ୍ଧ; କିନ୍ତୁ ଲୋକମାନେ ଇଣ୍ଡୋତିବ୍ବତୀୟ, ଯେବେ କିଛି ଗଣ୍ଡଗୋଳ ହୁଏ ସବୁ କାଶ୍ମୀର ଉପତ୍ୟକାରେ - ଜାମ୍ମୁରେ ନୁହେଁ କି ଲାଦାଖରେ ନୁହେଁ।

ଭାରତ ଯେତେବେଳେ ସ୍ୱାଧୀନ ହେଲା ସେତେବେଳେ ଦୁଇଟି ଅଞ୍ଚଳ ଥିଲା। ଇଂରେଜୀଙ୍କ ପ୍ରତ୍ୟକ୍ଷ ଭାବେ ଶାସିତ ଓ ପରୋକ୍ଷ ଭାବେ ଶାସିତ ଦେଶୀୟ ରାଜ୍ୟ। ବହୁତ ବଡ଼ ବଡ଼ ଦେଶୀୟ ରାଜ୍ୟ ଯଥା ହାଇଦ୍ରାବାଦ, ମହୀଶୂର, କାଶ୍ମୀର, ଗ୍ୱାଲିୟର, ପାଟିଆଲା, ଯୋଧପୁର, ଜୟପୁରର ମହାରାଜାମାନଙ୍କର ବହୁତ ପ୍ରଭାବ ଓ ସମ୍ମାନ ଥିଲା। ଇଂରେଜମାନେ ସମସ୍ତ ଦେଶୀୟ ରାଜାଙ୍କୁ (ପ୍ରଜାଙ୍କୁ ନୁହଁ) ପାକିସ୍ଥାନରେ ମିଶିବା କିମ୍ବା ଭାରତରେ ମିଶିବା ପାଇଁ ଆହ୍ୱାନ ଦେଲେ କିନ୍ତୁ ଅନେକ ଦେଶୀୟ ରାଜା ଚାହୁଁଥିଲେ ସ୍ୱାଧୀନ ହେବା ପାଇଁ। ତାହା ହୋଇଥିଲେ ଭାରତ ଖଣ୍ଡ ଖଣ୍ଡ ହୋଇଯାଇଥାନ୍ତା। ଏ ବିଷୟରେ ପଣ୍ଡିତ ନେହେରୁ ବେଳେ ବେଳେ ଅସ୍ଥିରମନା ହେଉଥିଲେ କିନ୍ତୁ ଲୌହ ମାନବ ସର୍ଦ୍ଦାର ପଟେଲଙ୍କ ଲକ୍ଷ୍ୟ ଥିଲା ଦେଶର ଏକତ୍ୱ। ରଜା ମହାରାଜାଙ୍କୁ ଡକେଇ ସେମାନଙ୍କୁ ଭାରତରେ ମିଶେଇଲେ, ହାଇଦ୍ରାବାଦର ନିଜାମ୍ ଓ ଜୁନାଗଡ଼ର ନବାବ (ଶାସକ ମୁସଲମାନ କିନ୍ତୁ ଅଧିକାଂଶ ପ୍ରଜା ହିନ୍ଦୁ) ଚାହୁଁଥିଲେ ପାକିସ୍ଥାନରେ ମିଶିବା ପାଇଁ। କିନ୍ତୁ ପ୍ରଜାମାନେ ବିଦ୍ରୋହ କଲେ ଓ ସୈନ୍ୟ ପଠାଇ ସର୍ଦ୍ଦାର ପଟେଲ ଉଭୟ ରାଜ୍ୟକୁ ଭାରତରେ ମିଶେଇଲେ। ବାକି ରହିଗଲା କାଶ୍ମୀର ଯେଉଁଠାରେ ରଜା ହେଉଛନ୍ତି ହିନ୍ଦୁ ଓ ଅଧିକାଂଶ ପ୍ରଜା ମୁସଲମାନ। ମହାରାଜା ହରିସିଂହ ଉଭୟ ପାକିସ୍ଥାନ ଓ ଭାରତ ସଙ୍ଗେ ସମ୍ପର୍କ ରଖୁଥିଲେ। ଭାଇସ୍‌ରାୟ ମାଉଣ୍ଟବେଟେନ୍ ଶ୍ରୀନଗର ଗଲେ ତାଙ୍କ ସଙ୍ଗେ କଥାବାର୍ତ୍ତା ହେବା ପାଇଁ; କିନ୍ତୁ ସେ ଆଲୋଚନା କକ୍ଷକୁ ଆସିଲେ ନାହିଁ ଅସୁସ୍ଥତାକୁ କାରଣ ଦେଖାଇ। ଏ ଘରେ ମାଉସୀ ସେ ଘରେ ପିଇସି ନୀତି ଗ୍ରହଣ କରିଥିବା ମହାରାଜା ହରିସିଂହ ପାକିସ୍ଥାନରେ ନମିଶିବାରୁ ପାକିସ୍ଥାନ ଆକ୍ରମଣ କଲା। ବାଧ୍ୟ ହୋଇ ହରିସିଂହ ଭାରତ ସଙ୍ଗେ ମିଶ୍ରଣ ଚୁକ୍ତି ଦସ୍ତଖତ କଲେ ଓ ଦୁଇଟି ବଡ଼ ବଡ଼ ବିମାନରେ ଭାରତୀୟ ସେନା ଶ୍ରୀନଗରରେ ଓହ୍ଲେଇ ଯୁଦ୍ଧ କଲେ। ସେତେବେଳେ ପାକିସ୍ଥାନୀ ସୈନ୍ୟମାନେ ଶ୍ରୀନଗର ଠାରୁ ମାତ୍ର ୧୨ ମାଇଲ୍ ଦୂରରେ ଥିଲେ, ଯଦି ଦିନେ ଡ଼େରି ହୋଇଥାନ୍ତା ତେବେ କାଶ୍ମୀର ସବୁଦିନ ପାଇଁ ପାକିସ୍ଥାନକୁ ଚାଲିଯାଇଥାନ୍ତା। ଏଇ ଯୁଦ୍ଧ ଥିଲା ବିଚିତ୍ର କାରଣ ଉଭୟ ସେନାବାହିନୀର ମୁଖ୍ୟ ଥିଲେ ଜଣେ (ଫିଲଡ୍ ମାର୍ଶାଲ ଅଚିନ୍ ଲେକ୍)। ଭାରତୀୟ ସୈନ୍ୟମାନେ ପାକିସ୍ଥାନୀ ସୈନ୍ୟମାନଙ୍କ ସଙ୍ଗେ ତୁମୁଳ ଯୁଦ୍ଧ କରି ସେମାନଙ୍କୁ ହଟେଇ ଚାଲିଲେ ଏବଂ ସମ୍ପୂର୍ଣ୍ଣ ହଟେଇ ଦେଇଥାନ୍ତେ କିନ୍ତୁ

ହଠାତ୍ ଅପନ୍ତରିଆ ଭାବେ ପଣ୍ଡିତ ନେହେରୁ ଜାତିସଂଘରେ ଫେରାଦ ହେଲେ। ଜାତିସଂଘ ଯୁଦ୍ଧ ବିରତି କରିବା ପାଇଁ ନିବେଦନ କଲା ଏବଂ ଆଲୋଚନା ହେବା ପୂର୍ବରୁ ପଣ୍ଡିତ ନେହେରୁ ଘୋଷଣା କଲେ ଯେ ଗଣ ଭୋଟ୍ ହେବ। ସାଧାରଣ ଲୋକଙ୍କ ଧାରଣା ଯେ ପାକିସ୍ତାନ ଗଣଭୋଟ୍ ଦାବି କରୁଥିଲା ତାହା ଠିକ୍ ନୁହେଁ। ପାକିସ୍ତାନୀ ସୈନ୍ୟକୁ ପୁରାପୁରି ନହଟେଇ ଜାତିସଂଘକୁ ଯିବା ଏବଂ ଗଣଭୋଟ ହେବ ବୋଲି ଘୋଷଣା କରିବା ଥିଲା ମସ୍ତବଡ଼ ଭୁଲ୍ ଯାହାପାଇଁ ଆମେ ଏବେ ମଧ ଘାଣ୍ଟି ହେଉଛୁ।

ମୁଁ କାଶ୍ମୀର ବିଷୟରେ ସମସ୍ତ ପୁରୁଣା ଫାଇଲ୍ ପଢ଼ିଲି। ଯେତିକି କଥା ଲେଖିହେବ ଲେଖୁଛି ବାକି ସମସ୍ତ ଉହ୍ୟ କରୁଛି। ସେ ସମୟରେ ଯୁଦ୍ଧ ବିଷୟରେ ଓଡ଼ିଶାବାସୀଙ୍କର ଭୁଲ୍ ଧାରଣା ଯେ ପ୍ରଥମେ ବିଜୁ ପଟ୍ଟନାୟକ ପ୍ଲେନ୍ ଚଳେଇ ସୈନ୍ୟକୁ ନେଇ ପହଞ୍ଚେଇଲେ। ଏହା ଗୁଜବ ଛଡ଼ା କିଛି ନୁହେଁ।

୧୯୫୨ ପରେ କାଶ୍ମୀରରେ ଯେତେ ନିର୍ବାଚନ ହୋଇଛି ଅଧିକାଂଶ ନିର୍ବାଚନରେ କିଛି ନା କିଛି ଦୋଷ ତ୍ରୁଟି। କେତେବେଳେ ଗଫଲତି ତ କେତେବେଳେ ବର୍ଜନ। ୨୦୦୨ ମସିହା ନିର୍ବାଚନ ଥିଲା ପ୍ରଥମ ନିର୍ବାଚନ ଯେଉଁଥିରେ କାଶ୍ମୀରବାସୀ ବହୁସଂଖ୍ୟାରେ ଆସି ଭୋଟ୍ ଦେଲେ ଓ ପ୍ରଥମ ଥର ପାଇଁ କାଶ୍ମୀରବାସୀ କହିଲେ 'ଆମ ସରକାର'। ସନ୍ତ୍ରାସବାଦ କମିଲା, ମୋ' ଭାଗ୍ୟ ଏତେ ଭଲ ଯେ ୨୦୦୩ ଓ ୨୦୦୪ (ମୁଁ ଥିବା ସମୟ)ରେ ମାତ୍ର ଅଳ୍ପ କେତୋଟି ହିଂସା ଘଟଣା ଘଟିଛି। ଅନେକ ହୋଟେଲ ମାଲିକ ହୋଟେଲ ତାଲା ପକେଇ ପଳେଇଥିଲେ। ସେମାନଙ୍କୁ ଫେରେଇ ଅଣାଗଲା। ବୋଟ୍ ବାଲାଙ୍କୁ ଋଣ ଦିଆଗଲା, ପାର୍ବତ୍ୟ ଅଞ୍ଚଳ ଲୋକଙ୍କୁ ଖଚର କିଣିବା ପାଇଁ ଆର୍ଥିକ 'ସହାୟତା ଦିଆଗଲା। କାଶ୍ମୀରର ମୁଖ୍ୟମନ୍ତ୍ରୀ ମୁଫ୍ତି ମହମ୍ମଦ ସୟଦ୍ ବହୁତ ଦକ୍ଷ, ସେ ଚିଫ୍ ସେକ୍ରେଟେରୀ ଓ ଡି.ଜି.ଙ୍କୁ ପୂର୍ଣ୍ଣ ସ୍ୱାଧୀନତା ଦେଇଥିଲେ। ମୋତେ ବେଶ୍ ଭଲପାଉଥିଲେ ଓ କହୁଥିଲେ ଆପଣ ଭାରତ ସରକାରଙ୍କ ଠାରେ ଆମର ପ୍ରତିନିଧି। ମୁଁ କାଶ୍ମୀର ଗଲେ ମୋତେ ରାଜକୀୟ ସମ୍ମାନ ମିଳୁଥିଲା। ଚିଫ୍ ସେକ୍ରେଟେରୀ ଡକ୍ଟର ବ୍ଲେରିୟା ଓ ଡି.ଜି. ଗୋପାଳ ଦାସଙ୍କ ସାଙ୍ଗରେ ମୋର ନିୟମିତ ସମ୍ପର୍କ ଥିଲା।

କିନ୍ତୁ ବେଳେ ବେଳେ ସମ୍ମାନ ଓ ଆନନ୍ଦ ହାସ୍ୟକର ପରିସ୍ଥିତିରେ ପହଞ୍ଚେ। ମୋର ଯେତେବେଳେ ବଦଳି ହେଲା ଓଡ଼ିଶା ସରକାରକୁ ମୁଁ କାଶ୍ମୀରର ମୁଖ୍ୟମନ୍ତ୍ରୀଙ୍କୁ ଫୋନ୍ କରି ଜଣେଇଲି। ସେ ଋହୁଁନଥିଲେ ମୁଁ ଓଡ଼ିଶା ଫେରିଯାଏ ବୋଲି; କିନ୍ତୁ ପରିସ୍ଥିତି ଜଣେଇଲା ପରେ କହିଲେ 'ଆମେ ଆପଣଙ୍କୁ ସେମିତି ଯିବା ପାଇଁ ଦେବୁନାହିଁ। ଆପଣଙ୍କୁ ଶ୍ରୀନଗର ଆସି ଫେୟାରୱେଲ ନେବାପାଇଁ ପଡ଼ିବ।' ଅଗତ୍ୟା ଶ୍ରୀନଗର ଗଲି । ଚିଫ୍ ସେକ୍ରେଟେରୀ, ଡିଜି, ଜେନେରାଲ ନିର୍ଭୟ ଶର୍ମା (ବର୍ତ୍ତମାନ ଅରୁଣାଚଳର

ରାଜ୍ୟପାଳ) ଓ ଅନ୍ୟାନ୍ୟ ଅଫିସର ମାନେ ଫେୟାରୱେଲ ଦେଲେ। ମୁଖ୍ୟମନ୍ତ୍ରୀଙ୍କ ଆସିବାର ଥିଲା କିନ୍ତୁ କୌଣସି କାରଣରୁ ଆସିପାରିଲେ ନାହିଁ। କିନ୍ତୁ ତା' ଆରଦିନ ସକାଳେ ତାଙ୍କ ଘରେ ପ୍ରାତଃ ଭୋଜନ କରାଗଲା। ଡି.ଜି. ସିଆରପି ଜ୍ୟୋତି ସିହ୍ନା ସିଆରପି ତରଫରୁ ଶ୍ରୀନଗରରେ ଫେୟାରୱେଲ ଦେଲେ। ସେ ମୋ' ସାଙ୍ଗରେ କ୍ଷିର ଭବାନୀ ମନ୍ଦିର ଓ ଅମରନାଥ ଗଲେ। ଅମରନାଥରେ ଦେଖିଲି ପୂଜକ ଘଣ୍ଟା ଘଣ୍ଟା ଧରି ବରଫ ଉପରେ ବସି ପୂଜା କରୁଛନ୍ତି। ଅଥଚ ପାଞ୍ଚ ମିନିଟ୍ ଠିଆ ହେବା ଆମ ପକ୍ଷରେ କଷ୍ଟ ଥିଲା। ଗାଡ଼ିରେ ମୁଁ ଗୁଲ୍‌ମାର୍ଗ ମଧ୍ୟ ଗଲି।

ମଜାର କଥା ଯେ ଶ୍ରୀନଗରରେ ଏକ ଝରଣା ଅଛି ଯାହାର ପାଣିରେ ଔଷଧୀୟ ଗୁଣ ଅଛି। ମୋଗଲ ବାଦଶାହାମାନଙ୍କ ପାଇଁ ଏଇଠୁ ପାଣି ଯାଉଥିଲା। ମୋ' ପାଇଁ ଡି.ଜି. କିଛି ପାଣିର ବନ୍ଦୋବସ୍ତ କଲେ। ତା'ଛଡ଼ା ପାଞ୍ଚ କେ.ଜି. ଚାଉଳ ପଠେଇଥିଲେ।

ଏମିତିତ ଦେଖିବାକୁ ଗଲେ କାଶ୍ମୀରର ଆରସିପୁର ଚାଉଳ ବାସୁମତି ଚାଉଳ ଠୁ ବହୁତ ଭଲ କିନ୍ତୁ ଯେଉଁ ଚାଉଳ ପଠେଇଥିଲେ ତାହା ନାଲସିଆ ଓ ବଜାରରେ ମିଳେନାହିଁ। ଅଳ୍ପ କେତେଜଣ ବଡ଼ଲୋକ ନିଜ ଜମିରେ ଚାଷ କରନ୍ତି ନିଜେ ଖାଇବା ପାଇଁ। ବିଶେଷତଃ ବିରିୟାନୀ ବନେଇବା ପାଇଁ। ସେ ଚାଉଳ ବନ୍ଧା ହୋଇ ଓଡ଼ିଶା ଆସିଲା। ଦୁଇ ତିନି ମାସ ପରେ ମନେପଡ଼ିବାରୁ ମୁଁ ଅର୍ଡ଼ର୍ଲିକୁ ପଚାରିଲି ଓ ଉତ୍ତର ମିଳିଲା 'ସାର୍ ସେ ବଗଡ଼ା ଭାତ ପାଇଁ ନାଲିଆ ଚାଉଳ ତ, ସେଗୁଡ଼ା କୁକୁରକୁ ଖୋଇଦେଇଛି। ସାହେବ କ'ଣ ସେଭଳି ଭାତ ଖାଇଥାନ୍ତେ?' ସେ ପାଣିକୁ ବି ନଳାରେ ଢାଳି ଦେଇଥିଲା।

ଧେତେରିକା ମୋ' ଭାଗ୍ୟରେ ନଥିଲା, କୁକୁରର ଭାଗ୍ୟରେ ଥିଲା। କିଛି ମାସ ପରେ ମୁଖ୍ୟମନ୍ତ୍ରୀଙ୍କ ସାଙ୍ଗରେ ଯାଇଥିଲି ମୁଖ୍ୟମନ୍ତ୍ରୀମାନଙ୍କ ମିଟିଂକୁ ଓ ମୁଫତି ସାହେବ ପଚାରିଲେ 'ଚାଉଳ କେମିତିକା ଲାଗିଲା?' ମୋ' କୁକୁର ତରଫରୁ ଉତ୍ତର ଦେଲି ଭାରି ବଢ଼ିଆ।

କେତୋଟି ବ୍ୟକ୍ତିଗତ ଅଭିଜ୍ଞତା କହିବି। ଦିନେ ଶ୍ରୀନଗରରେ ଅଫିସରମାନଙ୍କ ମିଟିଂ କରୁଛି ଜଣେ ଅଫିସର ଭିତରକୁ ପଶିଆସି ଆଡ଼ିସ୍‌ନାଲ୍ ଚିଫ୍ ସେକ୍ରେଟେରୀ ଓ ଡି.ଜି.ଙ୍କୁ କହିଲେ ଯେ ମୁଖ୍ୟମନ୍ତ୍ରୀଙ୍କର ଘର ପାଖରେ ଏକ ସପିଂ ମଲ୍‌ରେ ଟେରୋରିଷ୍ଟ ପଶିଯାଇଛନ୍ତି। ଡି.ଜି. ଓ ବିଏସ୍‌ଏଫ୍ ଆଇ.ଜି ସଙ୍ଗେ ସଙ୍ଗେ ଗଲେ, କିଛି ସମୟ ପରେ ମୁଁ ଗଲି। ରାସ୍ତାର ଗୋଟିଏ ପାଖରେ ମୁଖ୍ୟମନ୍ତ୍ରୀଙ୍କ ବାସସ୍ଥାନ, ଅନ୍ୟପାଖରେ ଛୋଟିଆ ସପିଂମଲ୍। ଦୁଇଜଣ ସନ୍ତ୍ରାସବାଦୀ ପଶିଗଲେ ଏବଂ ବଜାର ସଉଦା କରିବା ପାଇଁ ଆସିଥିବା ବ୍ୟକ୍ତିଙ୍କୁ ସଙ୍ଗେ ସଙ୍ଗେ ବାହାରି ଯିବା ପାଇଁ କହିଲେ। ଛତ୍ରଭଙ୍ଗ ଦେବାପାଇଁ

ସେମାନଙ୍କୁ ମିନିଟିଏ ବି ଲାଗିଲା ନାହିଁ। ତା'ପରେ ପୋଲିସ ଓ ବିଏସଏଫ ଘେରିଗଲେ। ମୁଁ ପହଞ୍ଚିଲା ବେଳକୁ ଫାଏରିଙ୍ଗ ସରିଲାଣି। ଯାହା ବିବରଣୀ ପାଇଲି ସେଥିରେ କାଶ୍ମୀର ପୋଲିସ ପ୍ରତି ମୋ' ସମ୍ମାନ ବଢ଼ିଗଲା। ସନ୍ତ୍ରାସବାଦୀଙ୍କ ଉଦ୍ଦେଶ୍ୟ ଥିଲା ମଲ୍‌ର ଛାତକୁ ଯାଇ ସେଇଠୁ ମୁଖ୍ୟମନ୍ତ୍ରୀଙ୍କ ଘର ଉପରେ ଗୁଳି ବର୍ଷଣ କରିଥାନ୍ତେ। କିନ୍ତୁ ପ୍ରଥମେ ପୋଲିସ ଓ ବିଏସଏଫଙ୍କ ମଧ୍ୟରେ ଯୁକ୍ତିତର୍କ ହେଲା ଯେ କିଏ ଯିବ। ବିଏସଏଫ ଆଗଭର ହଉଥିଲା କିନ୍ତୁ ପୋଲିସ କହିଲେ ଏଇଟା ଆମ କାମ। ଆପଣମାନେ ଏ ଅଞ୍ଚଳକୁ ଘେରି ଯାଆନ୍ତୁ ତାହାହେଲେ ଆଉ କେହି ପାଖକୁ ଆସିପାରିବେ ନାହିଁ। ପୋଲିସ ଘୁଶୁରୀ ଘୁଶୁରୀ ଆଗଉଥାନ୍ତି ଓ ଫାଇରିଙ୍ଗ କରୁଥାନ୍ତି। ସନ୍ତ୍ରାସବାଦୀଙ୍କ ପାଳଟା ଗୁଳି ଚାଳନାରେ ଦୁଇଜଣ ଆହତ ମଧ୍ୟ ହେଲେ। କିନ୍ତୁ ପୋଲିସ କୌଣସି ମତେ ବିଲ୍ଡିଂ ମଧ୍ୟରେ ପଶିଗଲେ ଓ ସାହସ ବାନ୍ଧି ପାହାଚରେ ଉପରକୁ ଚଢ଼ିଗଲେ। ଦୁଇ ସନ୍ତ୍ରାସବାଦୀ ଗୋଟିଏ ଗାଧୁଆ ଘରେ ପଶିଯାଇ ଭିତରୁ କବାଟ ବନ୍ଦ କରିଦେଲେ। ବାଧ୍ୟ ହୋଇ ପୋଲିସ ହ୍ୟାଣ୍ଡଗ୍ରେନେଡ୍ ଫୋପାଡ଼ିବାରୁ କବାଟ ଜଳିଗଲା ଓ ତା'ସଙ୍ଗେ ସନ୍ତ୍ରାସବାଦୀବି। ରାସ୍ତାର ଦୁଇକଡ଼େ ହଜାର ହଜାର ଲୋକ ଠିଆ ହୋଇ ଏ ଦୃଶ୍ୟ ଦେଖୁଥାନ୍ତି ସତେ ଯେମିତି ଭାରତ ପାକିସ୍ଥାନ ମଧ୍ୟରେ କ୍ରିକେଟ୍ ମ୍ୟାଚ୍ ହେଉଛି। ଜଣକୁ ପଚାରିଲି କ'ଣ ହେଉଛି ଓ ସେ କହିଲା ଭଲ ଲଢ଼େଇ ଚାଲିଛି, ସିକ୍ୟୁରିଟି ବାଲା ଜିତି ଯିବେ। ଦୁଇ ସନ୍ତ୍ରାସବାଦୀଙ୍କ ଅର୍ଦ୍ଧଦଗ୍ଧ ଶରୀରକୁ ପୋଲିସ ଘୋଷାରି ଘୋଷାରି ଆଣିଲା ବେଳେ କିଛି ଲୋକ ଓ ବହୁତ ସ୍କୁଲ୍ ପିଲା ତାଳି ମାରିଲେ। ଦଶ ବର୍ଷ ତଳେ ସନ୍ତ୍ରାସବାଦୀ ମଲେ ତାଙ୍କୁ ସହୀଦ କୁହାଯାଉଥିଲା ଏବେ ଆଉ ସେ ପରିସ୍ଥିତି ନାହିଁ। ଅଳ୍ପ ସମୟ ପରେ ପାକ୍ ଅଧିକୃତ କାଶ୍ମୀରର ରେଡ଼ିଓ କହିଲା ଯେ ଷଡ଼ଯନ୍ତ୍ର କରି ଅନେକ ଲୋକଙ୍କୁ 'କତଲ୍' କରାଗଲା ଓ ସେ ଷଡ଼ଯନ୍ତ୍ରକାରୀଙ୍କ ମଧ୍ୟରେ ମୋ' ନାଁ ଥିଲା। ମୁଁ କାର୍ଯ୍ୟଭାର ଗ୍ରହଣ କରିବାର ଅଳ୍ପ କିଛିଦିନ ପରେ ଖବର ଆସିଲା ଯେ ବୈଷ୍ଣୋଦେବୀ ମନ୍ଦିରକୁ ଯାଉଥିବା ଯାତ୍ରୀଙ୍କ ଉପରେ ବୋମା ମାଡ଼ ହୋଇଛି। ଉପପ୍ରଧାନମନ୍ତ୍ରୀ ସ୍ୱତନ୍ତ୍ର ବିମାନରେ ସାଙ୍ଗେ ସାଙ୍ଗେ ଯିବା ପାଇଁ ଆଦେଶ ଦେଲେ ଓ ରାଷ୍ଟ୍ରମନ୍ତ୍ରୀଙ୍କୁ ନେଇଯିବା ପାଇଁ କହିଲେ। ରାଷ୍ଟ୍ରମନ୍ତ୍ରୀ ଥିଲେ ସ୍ୱାମୀ ଚିନ୍ମୟାନନ୍ଦ। ଗୈରିକ ବସ୍ତ୍ରଧାରୀ ସ୍ୱାମିଜୀ ଉଚ୍ଚ ଶିକ୍ଷିତ, ନମ୍ର ମୃଦୁଭାଷୀ। ସେ ଓ ମୁଁ ବିମାନ ଘାଟିରେ ପହଞ୍ଚିଲା ବେଳକୁ ରକ୍ଷା ମନ୍ତ୍ରଣାଳୟର ରାଷ୍ଟ୍ରମନ୍ତ୍ରୀ ଚମନ ଲାଲ୍ ଆସିଗଲେ। ଚମନ ଲାଲ୍ ଜାମ୍ମୁର ଏମ୍‌ପି ଓ ବହୁ ଦିନର ବିଜେପି କର୍ମୀ। ସ୍ୱାମୀ ଚିନ୍ମୟାନନ୍ଦ ତାଙ୍କୁ ସମ୍ମାନ ଦେଖାଇବା ସ୍ୱାଭାବିକ।

ଜାମ୍ମୁରୁ ଯିବାକୁ ପଡ଼େ କଟରା ବୋଲି ଏକ ଛୋଟ ସହରକୁ ଓ ସେଇଠାରୁ ପଦଯାତ୍ରା କିମ୍ବା ଘୋଡ଼ା ଉପରେ ବସି ଭକ୍ତମାନେ ଯାଆନ୍ତି। ସ୍ଥାନେ ସ୍ଥାନେ ବିଶ୍ରାମ ଘର

ଅଛି ଓ ଅନେକ ସ୍ଥାନରେ ପାଣି ଓ ଜଳଖିଆ ମିଳେ। ବୈଷ୍ଣୋଦେବୀ ପର୍ବତର ପାଦ ଦେଶରେ ଗୁଲ୍‌ସନ୍ କୁମାରଙ୍କର ଏକ ବିରାଟ ଭୋଜନାଳୟ ଅଛି ଯେଉଁଥିରେ ଯେକୌଣସି ଯାତ୍ରୀଙ୍କୁ ମାଗଣାରେ ପୁରୀ ତରକାରୀ ହାଲୁଆ ଦିଆଯାଏ। ପାଖରେ ଆଉ ଏକ ଛୋଟ ପାହାଡ଼। ଯଦିବା ସୁରକ୍ଷା କର୍ମୀ ଥିଲେ ହେଲେ କାହା ମୁଣ୍ଡକୁ ଯୁଟିଲାନି ଯେ ପାହାଡ଼ ଉପରକୁ ଚଢ଼ି ଜଣେ ବୋମା ଫୋପାଡି ପାରେ। ସନ୍ତ୍ରାସବାଦୀ ସେଇଆ କଲେ। ବୋମା ଗୋଟିଏ ପଡ଼ିବା ପୂର୍ବରୁ ଫୁଟିଗଲା ଆଉ ଦୁଇଟା ଫୁଟିବାରୁ ଅନେକ ଲୋକ ଆହତ ହେଲେ। ଆଉ ବୋମା ପଡ଼ିଥାନ୍ତା; କିନ୍ତୁ ସୁରକ୍ଷା ବାହିନୀ ଗୁଳି ଚଳନା କରିବାରୁ ସେମାନେ ଛତ୍ରଭଙ୍ଗ ଦେଲେ। ଅବସ୍ଥା ପର୍ଯ୍ୟବେକ୍ଷଣ କରି ଆମେ ହସ୍ପିଟାଲ ଗଲୁ ଆହତଙ୍କୁ ଦେଖିବା ପାଇଁ। ସେଇଠେ ଦେଖାହେଲା ମୁଖ୍ୟମନ୍ତ୍ରୀ ମୁଫତି ସାହେବ ଓ ଉପମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ପଣ୍ଡିତଙ୍କ ସହିତ। ତା'ପରେ ଆମେ ମୁଖ୍ୟମନ୍ତ୍ରୀଙ୍କ ବାସଭବନକୁ ଯାଇ ଆଲୋଚନା କଲୁ।

କାଶ୍ମୀରରେ ଦୁଇଟା ରାଜଧାନୀ, ଶୀତ ଦିନେ ଜାମ୍ମୁ ଓ ବାକି ସବୁଦିନେ ଶ୍ରୀନଗର। ବହୁତ ଅଫିସରଙ୍କୁ ଉଭୟ ଜାମ୍ମୁ ଓ ଶ୍ରୀନଗରରେ କ୍ୱାର୍ଟର ମିଳିଛି। ସେତେବେଳେ ଅବଶ୍ୟ ରାଜଧାନୀ ଶ୍ରୀନଗର ଥିଲା। ଆମେ ସର୍କିଟ୍ ହାଉସ୍ ଫେରୁଛୁ ଏଇ ସମୟରେ ଫୋନ୍ ମିଳିଲା ଯେ ୫୦ ମାଇଲ୍ ଦୂର ଏକ ଆର୍ମି ବସତି ଉପରେ ସନ୍ତ୍ରାସବାଦୀମାନେ ଆକ୍ରମଣ କରୁଛନ୍ତି। ଖବରପାଇ ଚମନଲାଲ ସାହେବ ଉଛନ୍ନ ହେଲେ ଯିବା ପାଇଁ। ପଚାଶ କି.ମି. ବାଟ, ଗୋଟିଏ ପାଖରେ ପାହାଡ଼। ପାହାଡ଼ ଉପରେ ଠିଆ ହୋଇ ଜଣେ କିଏ ଗୁଳି ମାରିଲେ କଥା ଶେଷ। ପ୍ରାୟ ୧୨ଟାରେ ଲଞ୍ଚ ଖାଇଲୁ ଓ ଚମନଲାଲ ସ୍ୱାମୀ ଚିନ୍ମୟା ନନ୍ଦଙ୍କୁ କହିଲେ 'ଚାଲ ଯିବା'। ମୋତେ ମଧ୍ୟ ଡାକିଲେ କିନ୍ତୁ ମୁଁ ଅକ୍ଷମତା ପ୍ରକାଶ କଲି। ପ୍ରଥମ କଥା ହେଲା ଯେ ବୈଷ୍ଣୋଦେବୀ ଘଟଣା ଉପରେ ମୋତେ ସେଇ ସନ୍ଧ୍ୟା ସୁଦ୍ଧା ରିପୋର୍ଟ ଦେବା ପାଇଁ କୁହାଯାଇଛି ଓ ମୁଁ ଲଞ୍ଚ ଖାଇସାରି ରିପୋର୍ଟ ପ୍ରସ୍ତୁତ କଲି। ଦ୍ୱିତୀୟରେ ଏତେ ଲମ୍ବା ରାସ୍ତାରେ କୌଣସି ସୁରକ୍ଷା ବନ୍ଦୋବସ୍ତ କରାଯାଇନାହିଁ। ଯଦି ମନ୍ତ୍ରୀମାନଙ୍କ ଉପରେ ଆକ୍ରମଣ ହେବ ଭାରତ ସରକାର ମୋତେ ଦାୟୀ କରିଥାନ୍ତେ। ତା'ଛଡ଼ା ଆର୍ମୀ ଓ ସନ୍ତ୍ରାସବାଦୀଙ୍କ ମଧ୍ୟରେ ଲଢ଼େଇ ଚାଲିଛି, ମନ୍ତ୍ରୀ ଦୁଇଜଣ ଯାଇ କ'ଣ କରିବେ? ସ୍ୱାମୀ ଚିନ୍ମୟାନନ୍ଦ ବୁଝିଗଲେ କିନ୍ତୁ ମୋତେ କହିଲେ 'ମିଶ୍ରାଜୀ, ଚିମନଲାଲ ସାହେବ ମୋଠୁ ବହୁ ସିନିୟର ତେଣୁ ଆପଣ ତାଙ୍କୁ ବୁଝାନ୍ତୁ।' ମୁଁ ତାଙ୍କୁ ବୁଝେଇଲି ଯେ ଆର୍ମୀ ୟୁନିଟ୍ ସମ୍ମତି ଦେଲାପରେ ଆପଣ ଯିବେ। ସେମାନଙ୍କୁ ନପଚାରି ଯିବା ଉଚିତ୍ ନୁହେଁ। ଆପଣ ବରଂ କାଲି ଯାଆନ୍ତୁ। ସେ ବଡ଼ କଷ୍ଟରେ ରାଜି ହେଲେ। ମୁଁ ହିସାବ କଲି ଯେ ଚମନ ଲାଲ ସାହେବ ଯେତେବେଳେ ବାହାରୁଥିଲେ

ଯିବା ପାଇଁ ସେ ପ୍ରାୟ ୧ଟା୩୦ ମିନିଟ୍‌ରେ ଗନ୍ତବ୍ୟ ସ୍ଥାନରେ ପହଞ୍ଚୁଥାନ୍ତି। ଦେଢ଼ଟା ବେଳେ ଆର୍ମି ୟୁନିଟ୍‌ରେ କ'ଣ ହେଲା ପାଠକେ ଶୁଣନ୍ତୁ।

ଛରିଜଣ ସନ୍ତ୍ରାସବାଦୀ ଆର୍ମି ପୋଷାକ ପିନ୍ଧି ଗୋଟିଏ ଟ୍ରକ୍‌ରେ ଆସିଲେ ଓ ସେଣ୍ଟ୍ରି ଅଟକେଇବା ମାତ୍ରେ ତାକୁ ଗୁଳି କରି ମାରିଦେଲେ। ସେଠାରେ ଥିବା ଆଉ ଦୁଇଜଣ ସୈନିକଙ୍କୁ ମଧ୍ୟ ମାରିଦେଲେ। ତା'ପରେ ଦୌଡ଼ିଲେ ବାରାକ୍ ଆଡ଼କୁ। ସେଇଟା ଥିଲା ଖାଇବା ସମୟ ଓ ଖୁସିରେ ପଚାଶ ଷାଠିଏ ଜଣଙ୍କୁ ସେମାନେ ମାରିପାରିଥାନ୍ତେ କିନ୍ତୁ କେତେକ ସତର୍କ ସୈନିକ ସେମାନଙ୍କ ଉପରେ ଆକ୍ରମଣ କଲେ ଓ ତିନିଜଣ ସନ୍ତ୍ରାସବାଦୀ ମରିଗଲେ। ସୈନିକମାନେ ଜାଣିନଥିଲେ ଯେ କେତେଜଣ ସନ୍ତ୍ରାସବାଦୀ ଆସିଛନ୍ତି, ତେଣୁ ସେମାନେ ଭାବିଲେ ତିନିଜଣ ଆସିଥିଲେ ବୋଲି। ଖବରପାଇ ଜଣେ ମେଜର ଜେନେରାଲ ଓ ଜଣେ ବ୍ରିଗେଡ଼ିୟର ହେଲିକପ୍ଟରରେ ଆସିଲେ। ବ୍ରିଗେଡ଼ିୟର ଜଣକ ଟିକେ ମୋଟା। ସେମାନେ ଗୋଟିଏ ସ୍ଥାନରେ ଠିଆ ହୋଇ ଆଲୋଚନା କରୁଥାନ୍ତି। ହଠାତ୍ ଜଣେ ସନ୍ତ୍ରାସବାଦୀ ଲୁଚିଥିବା ସ୍ଥାନରୁ ବାହାରି ବୋମାଟିଏ ଫୋପାଡ଼ି ଦେଲା। ଦୂରରୁ ଦେଖିପାରି ଜଣେ ସୈନିକ ପାଟି କରିବାରୁ ମେଜର ଜେନେରାଲ କମାଣ୍ଡାଣ୍ଟ ଓ ଅନ୍ୟ ଅଫିସରମାନେ ଭୂଇଁ ଦେହରେ ଶୋଇ ପଡ଼ିଲେ। ବିଚରା ବ୍ରିଗେଡ଼ିୟର ସମୟ ନେଲେ ଓ ତାଙ୍କର ପ୍ରାଣଗଲା। ଗୁଳି ଚଳେଇବାରୁ ସନ୍ତ୍ରାସବାଦୀ ମଧ୍ୟ ମଲା। ଚମନଲାଲ୍ ସାହେବ ତରବରରେ ବାହାରିଥିଲେ ଠିକ୍ ଏଇ ସମୟରେ ପହଞ୍ଚୁଥାନ୍ତି ଓ ଅବସ୍ଥା କ'ଣ ହୋଇଥାନ୍ତା କେଜାଣି। ମୋତେ ସ୍ୱାମୀ ଚିନ୍ମୟାନନ୍ଦ କହିଲେ ଯେ ଆପଣଙ୍କ ପାଇଁ ଆମ ପ୍ରାଣ ରହିଗଲା।

ଜାମ୍ମୁରୁ ପ୍ରାୟ ଶ୍ରୀନଗର ପର୍ଯ୍ୟନ୍ତ ଲାଗିଛି ପର୍ବତ ମାଳା ପିର୍‌ପଞ୍ଜାର। ପର୍ବତରେ ରହନ୍ତି ବନ୍‌ଜାର ଓ ବକ୍ରିବାଲା। ପାହାଡ଼ର ବିଭିନ୍ନ ସ୍ଥାନକୁ କାଟି ପଥରରେ ଛାତ କରି ଘର କରିଥାନ୍ତି। ମାଟି ତଳେ ରହୁଥିବାରୁ ଶୀତଦିନେ ଶୀତ ବାଧେ ନାହିଁ। ସେମାନେ ଛେଳି ଓ ମେଣ୍ଢା ପୋଷି ଚଳନ୍ତି। ଛେଳି ଛୁଆଙ୍କ ବେକ ତଳେ ଉଠିଥିବା ରୋମକୁ ଉଣ୍ଡି ସୁନ୍ଦର ଉଲ୍ ତିଆରି କରନ୍ତି। ମେଣ୍ଢା ବାଳରୁ ସାଧାରଣ ଉଲ୍ ହୁଏ ଓ ମେଣ୍ଢା ମାଂସ ଖିଆଯାଏ। କାଶ୍ମୀରରେ ଗୋହତ୍ୟା ନିଷେଧ।

ବଞ୍ଜାରା ଓ ବକ୍ରିବାଲା ପ୍ରବଳ ପାକିସ୍ଥାନୀ ବିରୋଧୀ। ପର୍ବତମାଳା ଲାଗିଛି ପାକିସ୍ଥାନ ସୀମାନ୍ତକୁ ଓ ସେମାନଙ୍କ ଉପରେ ସବୁବେଳେ ଆକ୍ରମଣର ଭୟ। ତେଣୁ ସ୍ଥାନେ ସ୍ଥାନେ ଆର୍ମି ରଖାଯାଇଛି। ଏମାନେ ସପ୍ତାହରେ ଥରେ ପାହାଡ଼ ତଳେ ବଜାରକୁ ଆସନ୍ତି ଜିନିଷ କିଣାବିକା କରିବା ପାଇଁ ଓ ପାକିସ୍ଥାନୀଙ୍କ ପାଇଁ ସେମାନଙ୍କ ବ୍ୟବସାୟ ବାଧା ପାଉଛି ବୋଲି ଖୋଲାଖୋଲି ଭାବେ କହନ୍ତି। ଥରେ ସନ୍ତ୍ରାସବାଦୀଙ୍କର କୋପ

ଦୃଷ୍ଟିରେ ପଡ଼ିଲେ। ବକ୍ରିବାଲା ଶହ ଶହ ମେଣ୍ଢାଙ୍କୁ ପାହାଡ଼ରେ ଚରେଇ ବହୁତ ବାଟ ଚାଲିଯାଆନ୍ତି ଓ ଫେରିବା ଡେ଼ରି ହେଉଛି ଦେଖିଲେ ଯେକୌଣସି ଗାଁରେ ରହିଯାଆନ୍ତି। ପାହାଡ଼ରେ ବିଜୁଳି ନାହିଁ କିନ୍ତୁ ବିଭିନ୍ନ ଝରଣାରୁ ପାଇପ୍ ସଂଯୋଗ କରି ଜଳ ଯୋଗାଣର ବ୍ୟବସ୍ଥା ହୋଇଛି। ଅନେକ ସ୍ଥାନରେ ଘର ଏମିତି ଯେ ଜଣେ ଠିଆ ହୋଇଥିବା ସ୍ଥାନର ତଳେ ଘରଟେ ଅଛି ବୋଲି ଜାଣିପାରିବ ନାହିଁ। ସେଦିନ ଦଳେ ବ୍ରକିବାଲା ଦୂର ଗାଁରେ ଜଣକ ଘରେ ଆଶ୍ରୟ ନେଲେ। ସେମାନେ ଶୋଇଲା ବେଳେ ଜଣେ ପାଳି କରି ଜଗେ। ଉକ୍ତ ଦିନ ସନ୍ତ୍ରାସବାଦୀମାନେ ଅତି ନିକଟକୁ ଆସି ଫାଇରିଙ୍ଗ ଆରମ୍ଭ କଲେ। କୃଷ୍ଣପକ୍ଷ ହୋଇଥିବାରୁ ବିଚରା ପ୍ରହରୀ ଜାଣିପାରିଲା ନାହିଁ। ତାପରେ ଯାହାହେଲା ମନେ ପଡ଼ିଲେ ଲୋମ ଟାଙ୍କୁରୀ ଉଠେ ଓ ଆଶ୍ଚର୍ଯ୍ୟ ବି ଲାଗେ। ସନ୍ତ୍ରାସବାଦୀର ଗୁଳି ମାଡ଼ର ଜବାବ ବକ୍ରିବାଲାମାନେ ଦେଲେ ଓ ତିନିଜଣ ଟଳି ପଡ଼ିଲେ। ଆଉ ଜଣେ ଅନ୍ଧାରରେ ବନ୍ଧୁକ ଅଣ୍ଡାଳୁଥିଲା କିନ୍ତୁ ଜଣେ ମହିଳା ବନ୍ଧୁକ ଉଠେଇଲେ ଓ ନିର୍ଭୟରେ ଗୁଳିମାଡ଼ କରିଚାଲିଲା। ସନ୍ତ୍ରାସବାଦୀମାନେ ଛତ୍ରଭଙ୍ଗ ଦେଲେ ହେଲେ ପୁଣି କାଳେ ଫେରିବେ ସେଥିଲାଗି ସକାଳ ପର୍ଯ୍ୟନ୍ତ ସେ ମହିଳା ଜଣକ ବନ୍ଧୁକ ଧରି ଠିଆ ହୋଇରହିଲେ। ସେତେବେଳେ କଂଗ୍ରେସ ସରକାର, ସ୍ୱରାଷ୍ଟ୍ରମନ୍ତ୍ରୀ ମୋତେ କହିଲେ ରାଷ୍ଟ୍ରମନ୍ତ୍ରୀ ପ୍ରକାଶ ଜୟସ୍ୱାଲଙ୍କୁ ଖବର ଦିଅନ୍ତୁ। ସେ ଓ ଆପଣ ଯାଆନ୍ତୁ। ଶ୍ରୀ ଜୟସ୍ୱାଲ ତାଙ୍କ ନିର୍ବାଚନ ମଣ୍ଡଳୀରେ ଥିଲେ। ତାଙ୍କୁ ବଡ଼ କଷ୍ଟରେ ଟେଲିଫୋନ୍‌ରେ ପାଇଲି। ଆଣିବା ପାଇଁ ସ୍ୱତନ୍ତ୍ର ପ୍ଲେନ୍ ପଠେଇବିକି ପଚାରିବାରୁ ରାତି ସୁଦ୍ଧା ବିମାନସେବାରେ ଆସିଯିବେ ବୋଲି କହିଲେ। ତା' ଆରଦିନ ସକାଳେ ଶ୍ରୀ ଜୟସ୍ୱାଲ ଓ ମୁଁ ଜାମ୍ମୁ ଗଲୁ ଓ ସେଠାରୁ ହେଲିକପ୍ଟରରେ ଘଟଣାସ୍ଥଳରେ ପହଞ୍ଚିଲୁ। ସେମାନେ କହିଲେ ଯେ ଆମ ଗାଁକୁ ଜଣେ କଲେକ୍ଟର କେବେ ମଧ ଆସି ନାହାଁନ୍ତି। ଯାହାହେଉ ମନ୍ତ୍ରୀ ଓ ଭାରତ ସରକାରଙ୍କର ସେକ୍ରେଟେରୀ ଆସିଲେ (ଯଦିବା ମୁଁ ସ୍ପେଶାଲ ସେକ୍ରେଟେରୀ ଥିଲି)। ସମସ୍ତେ ଡେ଼ଙ୍ଗା, ବଳିଷ୍ଠ, ତକ୍ ତକ୍ ଗୋରା, ଲମ୍ବା ମୁହଁ ଓ ଦାଢ଼ି ରଖିଥିଲେ। ଅନେକଙ୍କ ପିଲାମାନେ ଆରବ ଦେଶମାନଙ୍କରେ କାମ କରି ଟଙ୍କା ପଠାନ୍ତି। ପାଠ ନପଢ଼ିଥିଲେ କ'ଣ ହେଲା କଥାରେ ଶାଳୀନତା ଥାଏ। ତିନିଜଣ ମରିଯିବା ସତ୍ତ୍ୱେ ଅଭିଯୋଗ କି କ୍ରୋଧର ଆଭାସ ନାହିଁ।

ମୁଁ ଅଭିଯୋଗ କ୍ରୋଧ କଥା କହିବାର କାରଣ ଅଛି। ଥରେ ଯାଜପୁରର ବରି ନିକଟ ଏକ ଅଞ୍ଚଳରେ ଦୁଇ ଗୋଷ୍ଠୀ ମଧରେ ମାଡ଼ପିଟ୍ ହୋଇ ଜଣେ ମରିଗଲା। ମୁଁ କଟକର ଅତିରିକ୍ତ ଏସ୍‌ପି ଥିଲି, ଫୋର୍ସ ଧରି ପହଞ୍ଚିଲି। ଭୟରେ କବାଟ କିଳି ଘରେ ରହିଥିବା ଲୋକେ ଫୋର୍ସ ଆସିବା ଦେଖି ସମସ୍ତେ ଗୋଟିଏ ଗୋଟିଏ ଭୀମ

ହୋଇଗଲେ। ଦଳଟିଏ ସମସ୍ୱରରେ ମୋତେ ପଚାରିଲେ 'ଏବେ କାହିଁକି ଆସିଛନ୍ତି? ସାରା ଗାଁଟା ମରିଗଲା ପରେ ଆସିଲେନି? ମାର୍‌ପିଟ୍ ଯେତେବେଳେ ହେଉଥିଲା ଆପଣ କେଉଁଠି ଥିଲେ?' ତାଙ୍କ ମଧ୍ୟରୁ ସବୁଠୁ ବଡ଼ କୁହାଳିଆ ଗାଲରେ ଚପୁଡ଼ାଟେ ପଡ଼ିବା ମାତ୍ରେ ସମସ୍ତଙ୍କ ଭାଷା ବଦଳିଗଲା। ତା'ପରେ ଅନୁରୋଧ ଯେ ଏଠାରେ ଗୋଟିଏ ଫାଣ୍ଡି ହେଉ। ଆମ ପାଠକ ଭାଇମାନଙ୍କୁ ପଚାରିଲେ ଅନେକ ପୋଲିସ ବିରୁଦ୍ଧରେ ଗୁଡ଼ାଏ କଥା କହିବେ। ଯିଏ କେବେ ଥାନା ଦୁଆର ଦେଖିନାହାଁନ୍ତି ସିଏବି କହିବେ ଥାନାକୁ ପଶିଲା ମାତ୍ରେ ପଇସା ମାଗନ୍ତି। ଏକଥା କହିବେ ଅଥଚ ଗାଁ ବାଲା ମିଶି ଦରଖାସ୍ତ ପକେଇବେ ଯେ ଆମ ଗାଁରେ ଗୋଟିଏ ଫାଣ୍ଡି ହେଉ। ଥରେ ମୁଁ ଡିଜି ଥିଲାବେଳେ ତମାଣ୍ଡୋ ପାଖରେ ସକାଳ ସାଢ଼େ ୪ଟା ବେଳେ ଗୋଟିଏ ଜିପ୍ ସାଇକେଲ ବାଲାକୁ ଧକ୍କା ମାରିଲା ଓ ସାଇକେଲ୍ ବାଲା ପଡ଼ି ମରିଗଲା। ସେତେବେଳେ ତମାଣ୍ଡୋ ଫାଣ୍ଡି ଭଡ଼ା ଘରେ ଚାଲିଥାଏ, ଭାରପ୍ରାପ୍ତ ଏଏସ୍‌ଆଇ ଚାରି କି.ମି. ଦୂରରେ ପାଇଥିଲେ ଭଡ଼ା ଘରଟିଏ। ଫାଣ୍ଡି ଜଗିଥିଲା ସିପାହୀଟିଏ। ସିଏ ଖବର ପଠେଇବାରୁ ଏଏସ୍‌ଆଇ ପୋଷାକ ପିନ୍ଧି ଆସି ପହଞ୍ଚିଲେ। ସେତେବେଳକୁ ଜିପ୍ ପୋଡ଼ା ସରି ଫାଣ୍ଡି ଉପରେ ଆକ୍ରମଣ ଓ ନିଆଁ ମାରିବା ସାରିଲେଣି। ବହୁତ କାଗଜ ପତ୍ର ଜଳିଗଲା। ମୁଁ ଏସ୍‌ପିଙ୍କୁ କହିଲି, 'ଯେଉଁଠି ଲୋକମାନେ ଫାଣ୍ଡିକୁ ପୋଡ଼ି ଦେଉଛନ୍ତି ତାଦ୍ୱାରା ପ୍ରମାଣିତ କରୁଛନ୍ତି ଯେ ଫାଣ୍ଡିର କୌଣସି ଆବଶ୍ୟକତା ନାହିଁ। ମୁଁ ଅସ୍ଥାୟୀ ଫାଣ୍ଡିକୁ ବନ୍ଦ କରିବା ପାଇଁ ଆଦେଶ ପଠାଉଛି ଓ ତୁମେ ଲୋକମାନଙ୍କୁ ସେଇ ଖବର ଦେଇଦିଅ।' ଖବର ପାଇଲା ମାତ୍ରେ ସାତ ଆଠ ଜଣ ଲୋକ ଧାଇଁଲେ ମୋ' ପାଖକୁ। ତାଙ୍କ କହିବା କଥା ଥିଲା 'ସାର୍ ଫାଣ୍ଡି ନହେଲେ ଆମେ ଚଳିବୁ କେମିତି?' ମୁଁ ପଚାରିଲି ଫାଣ୍ଡିର ଯଦି ଆବଶ୍ୟକତା ଅଛି ତେବେ ପୋଡ଼ିଲ କାହିଁକି? ସେମାନେ ଏ ପ୍ରଶ୍ନ ଆଶା କରିଥିଲେ। ତେଣୁ ମୋତେ ମିଳିଲା ତୁରନ୍ତ ଉତ୍ତର 'ସାର୍ ଆମ ଲୋକ, ଏ କାମ କରିବେ? ଆଦୌ ନୁହେଁ। ବାହାରୁ ଆସିଥିବା ଗୁଣ୍ଡାମାନେ ଏ କାମ କରିଛନ୍ତି।' ମୁଁ ପଚାରିଲି କୁଆଡୁ ଖୋର୍ଦ୍ଧା, ପିପିଲି, ଜଟଣୀରୁ?

ବ୍ୟଙ୍ଗ ତାଙ୍କୁ ଆଦୌ କାଟୁ କଲାନାହିଁ ଓ ନିର୍ଲିପ୍ତ ଭାବେ ଉତ୍ତର ଦେଲେ 'ସାର୍ ସାଧୁବାବାଙ୍କ ଭଳି ଅସାମାଜିକ ଲୋକମାନଙ୍କ ନିର୍ଦ୍ଦିଷ୍ଟ ସ୍ଥାନ କେଉଁଠି ନଥାଏ।' ଦୁଇଜଣ ମନ୍ତ୍ରୀ ମଧ୍ୟ ଏ ବିଷୟରେ କଥାବାର୍ତ୍ତା କଲେ ଓ ଫାଣ୍ଡି ରହିଲା। ସେ ଲୋକମାନେ କ୍ଷମା ନମାଗିଥିଲେ ମୁଁ ନିଶ୍ଚୟ ଫାଣ୍ଡି ଉଠେଇ ଦେଇଥାନ୍ତି।

ବକ୍ରିବାଲାଙ୍କୁ ପଚାରିଲୁ 'ଡ଼ରଲାଗୁଛି?' ଉତ୍ତର ଥିଲା 'ଡ଼ରିଲେ ଆମେ ଚଳି ପାରିବୁ? ଆମ ପୂର୍ବପୁରୁଷ ଲଢ଼େଇ କରିବା ପାଇଁ ଆସିଥିଲେ।' ସେମାନେ ଠିକ୍

କହୁଥିଲେ। ୬୦୦, ୭୦୦ ବର୍ଷ ତଳେ ସେମାନଙ୍କ ପୂର୍ବପୁରୁଷ ମଧ୍ୟ ଏସିଆରୁ ଆସିଥିଲେ ସୈନିକ ଭାବରେ। ଏବେ ଛେଳି, ମେଣ୍ଢା ପୋଷୁଛନ୍ତି। ମେଷ ପାଳନ ବୃତ୍ତି ଓ ଲଢ଼େଇ କରିବା ପ୍ରବୃତ୍ତି। ଏ ଲୋକମାନଙ୍କୁ ବିଶେଷତଃ ସେ ଭଦ୍ରମହିଳାଙ୍କୁ ଶ୍ରଦ୍ଧା କରିବା କଥା। ତାଙ୍କର ନିର୍ଭୟ ଚହାଣୀ, ସ୍ପଷ୍ଟ କଥା, ଲଢ଼େଇ କରିବାରେ ଆନନ୍ଦ ଓ ମୁଣ୍ଡ ଟେକି ଉତ୍ତର ଦେବା ଦେଖି ମୁଁ ଭାବୁଥିଲି ଯେ ଝାନ୍‌ସୀର ରାଣୀ ଲକ୍ଷ୍ମୀବାଈ ମରିନାହାଁନ୍ତି।

ହେଲିକପ୍ଟରରେ ଜାମ୍ମୁ ଫେରିଆସିଲୁ ଓ ରିପୋର୍ଟ ତିଆରି କରି ଶ୍ରୀ ଜୟସ୍ୱାଲଙ୍କୁ ଦେଇଦେଲି। ସେଇଦିନ ସନ୍ଧ୍ୟାରେ ଫେରି ଆସିଲି ଦିଲ୍ଲୀକୁ ଓ ସକାଳେ ସ୍ୱରାଷ୍ଟ୍ର ମନ୍ତ୍ରୀ ଶିବରାଜ ପାଟିଲଙ୍କୁ ସମ୍ପୂର୍ଣ୍ଣ ବିବରଣୀ ଦେଲୁ।

ଜାମ୍ମୁ କାଶ୍ମୀରରେ ବିଶେଷତଃ କାଶ୍ମୀର ଉପତ୍ୟକାରେ କାଁ ଭାଁ ସନ୍ତ୍ରାସବାଦୀଙ୍କ ଆକ୍ରମଣ ହେଉଥିଲା। କିନ୍ତୁ ସୁରକ୍ଷା ବାହିନୀ ତଥା ସର୍ବସାଧାରଣ ଅଭ୍ୟସ୍ତ ହୋଇଯାଇଥିଲେ। ଯେଉଁଦିନ ଭୟ ସମ୍ପୂର୍ଣ୍ଣ ଭାବେ ଚାଲିଯିବ ସନ୍ତ୍ରାସବାଦକୁ ହତ୍ୟା କରିବା ଦରକାର ପଡ଼ିବ ନାହିଁ। ତାହା ଆପେ ମରିଯିବ।

୨୦୦୪ ଏପ୍ରିଲ ମାସରେ ହୋଇଥିବା ନିର୍ବାଚନରେ ବିଜେପି ଜିତିବ ବୋଲି ଅନେକ ଲୋକଙ୍କ ଦୃଢ଼ ଧାରଣା ଥିଲା। ନିର୍ବାଚନ ୨୦୦୫ରେ ହେବା କଥା; କିନ୍ତୁ ୨୦୦୪ରେ କରେଇ ଦିଆଗଲା କାରଣ ଜାତୀୟ ଅର୍ଥନୈତିକ ଅଭିବୃଦ୍ଧି ଭଲଥିଲା, ଭାରତ ପାକିସ୍ତାନ ମଧ୍ୟରେ ସମ୍ପର୍କ ଭଲ ଆଡ଼କୁ ଗତି କଲା, ଜିନିଷ ଦରଦାମ୍, ନିୟନ୍ତ୍ରିତ, ଆଇନ୍ ଶୃଙ୍ଖଳା ପରିସ୍ଥିତି ଖୁବ୍ ଭଲ, ପ୍ରଧାନମନ୍ତ୍ରୀ ସଡ଼କ ଯୋଜନା ଅନୁଯାୟୀ ବହୁତ ଗାଁକୁ ରାସ୍ତା ହୋଇଗଲା। ସ୍ୱର୍ଣ୍ଣ ଚତୁର୍ଭୁଜ ରାସ୍ତା କାମ ଆରମ୍ଭ ହେଲା। ତା' ସାଙ୍ଗକୁ ସଂଖ୍ୟା ଲଘୁ ସମ୍ପ୍ରଦାୟ ସୁରକ୍ଷିତ ଥିଲେ। ଏ ସମସ୍ତଙ୍କୁ ମିଶେଇ କୁହାଯାଉଥିଲା 'ଭଲ ଧାରଣା (ଫିଲ୍, ଗୁଡ଼ ଫ୍ୟାକ୍ଟର) ଓ ବିଜେପିର ଏକ ଗୋଷ୍ଠୀ ମତ ଦେଲେ ଯେ ବର୍ତ୍ତମାନ ହିଁ ପ୍ରକୃଷ୍ଟ ସମୟ। ଏଇ ଗୋଷ୍ଠୀର ନେତା (ବୋଧହୁଏ ପ୍ରମୋଦ ମହାଜନ) ଏକ ଘରୋଇ ସଂସ୍ଥା ଦ୍ୱାରା ସର୍ବେକ୍ଷଣ କରେଇଥିଲେ ଓ ଉକ୍ତ ସଂସ୍ଥା କହିଲା ଯେ ବିଜେପି କେବଳ ୨୫୦ ସିଟ୍ ପାଇବ ଓ ସହଯୋଗୀ ଦଳ ୬୦ ଉପରେ ସିଟ୍ ପାଇବେ। କିନ୍ତୁ କେନ୍ଦ୍ର ଗୁଇନ୍ଦା ସଂସ୍ଥାର ଅଫିସରଙ୍କ ମତ ଥିଲା ଯେ ହିସାବ ଠିକ୍ ନୁହେଁ। ଉପରକୁ ଦିଶୁଛି ସବୁ ଭଲ କିନ୍ତୁ ଏନଡ଼ିଏ ସରକାର ବିରୋଧରେ ଏକ ଶକ୍ତିଶାଳୀ ଅନ୍ତଃସ୍ରୋତ ବହୁଛି। ଗୋଇନ୍ଦା ବିଭାଗର ସତର୍କବାଣୀକୁ ଗ୍ରହଣ ନକରି ଗୋଡ଼ ଖସିବା ପରେ ଗୁଇନ୍ଦା ବିଭାଗକୁ ଦାୟୀ କରିବା ଚିରାଚରିତ। କାରଗିଲ୍ ଘଟଣାରେ ଆଇବି 'ର'କୁ କେହି କେହି ଦୋଷ ଦିଅନ୍ତି। କିନ୍ତୁ ଏ ବିଷୟରେ ଯିଏ ଜାଣିଛି ସିଏ କହିବ ଯେ ଆଇବି 'ର' ଓ ମିଲିଟାରୀ ଇଣ୍ଟେଲଜେନ୍‌ସ୍ ଦେଇଥିବା ଖବର ସେନାବାହିନୀର କେତେଜଣ ଅଫିସର

ଚାଏଁ ବାଏଁ ଉଡ଼େଇ ଦେଇଥିଲେ। ବରଫ ପଡ଼ିଲେ ଆମ ସୈନ୍ୟମାନେ ନିଜ ଘାଟି ଛାଡ଼ି ଚଲି ଆସନ୍ତି। ପାକିସ୍ତାନୀ ସୈନ୍ୟ ମଧ୍ୟ ଫେରିଯାଆନ୍ତି। କିନ୍ତୁ ସେ ବର୍ଷ ପାକିସ୍ତାନ ସେନାଧ୍ୟକ୍ଷ ଜେନେରାଲ ମୁଶାରଫଙ୍କର ଗୁପ୍ତ ନିର୍ଦ୍ଦେଶ ଥିଲା ନିଜ ଘାଟି ଛାଡ଼ନାହିଁ ଭାରତୀୟ ଘାଟିକୁ ମାଡ଼ିବସ। ପାକିସ୍ତାନୀ ସୈନିକମାନେ ମେଷ ପାଳକ ବେଶରେ ଆସିଲେ, ଅନେକ ଅଜଣା ଅଶୁଣା ଲୋକ ସେ ଅଞ୍ଚଳରେ ବୁଲାଚଲା କରୁଛନ୍ତି ଖବର ଦେବା ସତ୍ତ୍ୱେ କେହି କିଛି ପଦକ୍ଷେପ ନେଲେନାହିଁ ।

କାରଗିଲ ଯୁଦ୍ଧ ସମୟରେ କାଶ୍ମୀରବାସୀ ଭାରତୀୟ ସୈନ୍ୟବାହିନୀଙ୍କୁ ସମ୍ପୂର୍ଣ୍ଣ ସମର୍ଥନ କରିଥିଲେ। ୨୦୦୨ ମସିହାରେ ଏକ ଅନ୍ତର୍ଜାତୀୟ ସଂସ୍ଥା ଆମ କାଶ୍ମୀର ଓ ପାକ୍ ଅଧିକୃତ କାଶ୍ମୀରରେ ଏକ ସର୍ବେକ୍ଷଣ କରିଥିଲେ। ତାଙ୍କର ହିସାବ ଥିଲା ଯଦି କାଶ୍ମୀରରେ ଗଣଭୋଟ ନିଆଯାଏ ତେବେ ଭାରତ ସପକ୍ଷରେ ଶତକଡ଼ା ୫୨ ରୁ ୫୩ ଓ ପାକିସ୍ତାନ ସପକ୍ଷରେ ଶତକଡ଼ା ୪୭ ରୁ ୪୮ ଭୋଟ ଯିବ। ଯଦି କାଶ୍ମୀର ବାସୀଙ୍କୁ କୁହାଯାଏ ଯେ ଭାରତ, ପାକିସ୍ତାନ ଓ ସମ୍ପୂର୍ଣ୍ଣ ସ୍ୱାଧୀନତା ମଧ୍ୟରୁ କେଉଁଟି ବାଛିବ ତେବେ ସମ୍ପୂର୍ଣ୍ଣ ସ୍ୱାଧୀନତା ସପକ୍ଷରେ ଶତକଡ଼ା ୯୫ ଭୋଟ ମିଳିବ। ଏଇ ରିପୋର୍ଟ ହେଉ କିମ୍ବା ଅନ୍ୟାନ୍ୟ କାରଣ ହେତୁ ପାକିସ୍ତାନ ଗଲା ୧୦ ରୁ ୧୨ ବର୍ଷ ହେଲା ଗଣ ଭୋଟ ବିଷୟରେ ବିଶେଷ ଦାବି କରୁନାହିଁ।

କାଶ୍ମୀରରେ କେତେଗୁଡ଼ିଏ ଛୋଟ ଛୋଟ ଦଳକୁ ମିଶାଇ କରାଯାଇଥିଲା ହୁରିୟତ୍। ଏମାନେ ଗୋଟିଏ ଆସେମ୍ବ୍ଲି ସିଟ୍ ପାଇବା ପାଇଁ ମଧ୍ୟ ସକ୍ଷମ ହୋଇନାହାଁନ୍ତି। କିନ୍ତୁ ତାଙ୍କ ମଧ୍ୟରୁ ପାଞ୍ଚ ଛଅ ଜଣ ନେତା ବିରାଟ ଦେଶର ରାଷ୍ଟ୍ର ମୁଖ୍ୟ ଭଳିଆ କଥାବାର୍ତ୍ତା କରନ୍ତି। ଏମାନେ ଭାରତ ବିରୋଧୀ ଓ ପାକିସ୍ତାନ ସପକ୍ଷରେ। କିନ୍ତୁ ୨୦୦୩ରେ ଦୁଇଭାଗ ହୋଇ ଅଧିକାଂଶ ଭାରତ ସପକ୍ଷ ଓ ଅଳ୍ପ ପାକିସ୍ତାନ ସପକ୍ଷରେ ରହିଲେ। ଉପପ୍ରଧାନମନ୍ତ୍ରୀ ଆଡ଼ୱାଣୀ ସାହେବ ଚହିଁଲେ ସେମାନଙ୍କ ସଙ୍ଗେ କଥାବାର୍ତ୍ତା କରିବା ପାଇଁ ଓ ମୁଁ ନିମନ୍ତ୍ରଣ ପତ୍ର ଲେଖି ପଠାଇଲି। ସେମାନେ ଆସିଲେ ଆଡ଼ଭାନୀ ସାହେବଙ୍କୁ ଦେଖାକଲେ ଓ ଯାହା କଥାବାର୍ତ୍ତା କଲେ ତାହା ହୋମ୍ ସେକ୍ରେଟେରୀ ଗୋପାଳ ସ୍ୱାମୀ ଟିପିଲେ। ଏ ମିଟିଂର ଆୟୋଜନ ଆମେ ଗୁପ୍ତରେ କରିଥିଲୁ ଓ କେବଳ ଶେଷ ପର୍ଯ୍ୟାୟରେ ଗଣ ମାଧ୍ୟମ ଜାଣିଲା। ସେମାନଙ୍କ ମଧ୍ୟରୁ ଅନେକ ଆସି ମିଟିଂ ବିଷୟରେ ପଚରିବାରୁ ମୁଁ କହିଥିଲି ଏକ ନୂଆ ଆରମ୍ଭର ଆରମ୍ଭ (ବିଗ୍‌ନିଂ ଅଫ୍ ଏ ନିୟୁ ବିଗ୍‌ନିଂ)। ଏ ବିଷୟରେ ଶ୍ରୀ ଆଡ଼ଭାନୀ ତାଙ୍କ ଆତ୍ମ ଜୀବନୀରେ ମୋତେ ପ୍ରଶଂସା କରିଛନ୍ତି।

ଜୁଲାଇ ମାସ ଦ୍ୱିତୀୟ ସପ୍ତାହ ଆଡ଼କୁ ଜାଣିଲି ଯେ ମୋତେ ଓଡ଼ିଶା ଫେରିଯିବାକୁ ପଡ଼ିବ। ଓଡ଼ିଶା ଚିଫ୍ ସେକ୍ରେଟେରୀ ପ୍ରତୀପ ବାବୁ (ଆଇଏଏସ) ମୋତେ ଫୋନ୍ କରି

କହିଲେ 'ଜିନିଷପତ୍ର ବନ୍ଧାବନ୍ଧି ଆରମ୍ଭ କରନ୍ତୁ, ମୁଖ୍ୟମନ୍ତ୍ରୀ କହିବାରୁ ଆଜି ଫେରେଇ ଆଣିବା ପାଇଁ ଚିଠି ଗଲା। ସଞ୍ଜୀବ ହୋତା ଦିଲ୍ଲୀ ଯାଉଛନ୍ତି ଅନ୍ୟ କାମରେ, ସେ ଚିଠିଟା ଦେଇଯିବେ।' ଚିଠି ମିଳିଲା ବେଳକୁ ହୋମ୍ ସେକ୍ରେଟେରୀ ବଦଳି ସାରିଲେଣି। ଗୋପାଳ ସ୍ୱାମୀ ଗଲେ ଇଲେକ୍ସନ କମିଶନକୁ। ତାଙ୍କ ସ୍ଥାନରେ ଆସିଲେ ଅନୀଲ ବାଇଜଲ। ତାଙ୍କ ସାଙ୍ଗରେ ବ୍ୟକ୍ତିଗତ ସମ୍ପର୍କ ଖୁବ୍ ଭଲ ଓ ସେ କହିଲେ ମୁଁ ଯେପର୍ଯ୍ୟନ୍ତ ଅଛି ତୁମେ ଓଡ଼ିଶା ଫେରିବାର ପ୍ରଶ୍ନ ଉଠୁନାହିଁ। ଅନୀଲ ବାଇଜଲଙ୍କୁ ବଦଳି କରିଦିଆଗଲା କାରଣ ବିଜେପି ସରକାର ସମୟରେ ତାଙ୍କର ପୋଷ୍ଟିଂ ହୋଇଥିଲା ଓ ତାଙ୍କ ସ୍ଥାନରେ ଆସିଲେ ଧରିନ୍ଦର ସିଂହ। ଚିଠିଟି ପାଇ ସେ ହୋମ୍ ମିନିଷ୍ଟରଙ୍କ ପାଖକୁ ପଠେଇଲେ ଓ ମୋତେ ଶ୍ରୀ ଶିବରାଜ ପାଟିଲ ଡକେଇଲେ। ଓଡ଼ିଶା ଯିବା ପାଇଁ କାହିଁକି ଚାହୁଁଛନ୍ତି ପଚାରିବାରୁ ମୁଁ କହିଲି ଯେ ଓଡ଼ିଶା ସରକାର ମୋତେ ଚାହୁଁଛନ୍ତି ଓ ମୋ' ଘର ଓଡ଼ିଶାରେ।

ମୁଁ ଓଡ଼ିଶା ଫେରିନଥାନ୍ତି କିନ୍ତୁ ମୋ' ବନ୍ଧୁ ସଞ୍ଜୀବ ଚନ୍ଦ୍ର ହୋତା ଓ ଭିଜିଲାନ୍ସ ମୁଖ୍ୟ ଗୋପାଳଚନ୍ଦ୍ର ନନ୍ଦ ମୋତେ ବାରମ୍ବାର ପ୍ରବର୍ତ୍ତେଇଲେ। ଯେଉଁଦିନ ଚିଠି ଆସିଲା ଜଣେ ବିଶିଷ୍ଟ ପରାମର୍ଶଦାତା ଦିଲ୍ଲୀରେ ଥିଲେ ଓ ତାଙ୍କ ପାଖରେ ଜଣେ ଆଇଏଏସ୍ ଅଫିସର ବସିଥିଲେ। ତାଙ୍କ ପାଖକୁ ଓଡ଼ିଶାର ଏକ ଫୋନ୍ କଲ୍ ଗଲା ଓ ସ୍ୱରଟା ଏତେ ଉଚ୍ଚ ଥିଲା ଆଇଏଏସ୍ ଅଫିସର ଜଣକ ଶୁଣିପାରିଲେ। ଓଡ଼ିଶାରୁ ଫୋନ୍ କରୁଥିବା ସେ ଭଦ୍ରଲୋକ ପଚାରିଲେ 'ଭାଇନା ଆପଣ ପରା କହିଥିଲେ ଯେ ବିପିନ୍‌ର ଫେରି ଆସିବା ପ୍ରଶ୍ନ ଉଠୁନାହିଁ। କିନ୍ତୁ ଆଜି ଚିଠି ଗଲା ଯେ।' ଅପ୍ରତିଭ ହୋଇ ପରାମର୍ଶଦାତା ପରେ କଥାହେବା କହିଲେ ଓ ଫୋନ୍ କାଟିଦେଲେ। ମୋ' ବିଷୟରେ ଦୁଇ ତିନିଜଣ ଅତି ବରିଷ୍ଠ ଆଇପିଏସ ଅଫିସର ଅନେକ ଅପପ୍ରଚାର କରୁଥିଲେ ଯଥା ମୋତେ ସିଆଇଏସଏଫରୁ ତଡ଼ି ଦିଆଗଲା, ଲଣ୍ଡନରେ ମୁଁ ଏକ ନାଇଟ୍ କ୍ଲବକୁ ଯାଇଥିଲି, କ୍ୟାବିନେଟ୍ ସେକ୍ରେଟେରୀ ଏକ ମିଟିଂରୁ ମୋତେ ବାହାର କରିଦେଲେ, ମୁଁ ପ୍ରାଣ ଭୟରେ କେବେ କାଶ୍ମୀର ଯାଉନାହିଁ ଇତ୍ୟାଦି ଇତ୍ୟାଦି। ଏଇସବୁ ଗୁଜବର ମୂଳ ମଞ୍ଜି ଥିଲେ ମୋ' ଠାରୁ ଜଣେ ସିନିୟର ଆଇପିଏସ୍ ଅଫିସର ଯାହାଙ୍କର ଖଚ ଚୁଗୁଲି କହିବା ହେଉଛି ଆଜନ୍ମ ଅଭ୍ୟାସ। ଅନେକ ଟାଉଟର ଅଛନ୍ତି ଯେଉଁମାନେ ଦୁଇବନ୍ଧୁଙ୍କ ମଧ୍ୟରେ କଳି ଲଗେଇ ପାରନ୍ତି। ସେ ବିଦ୍ୟାରେ ଏ ଭଦ୍ରଲୋକ ଏତେ ନିପୁଣ ଯେ ଟେବୁଲ ଚୌକି, କବାଟ ପରଦା ମଧ୍ୟରେ ମଧ୍ୟ କଳି ଲଗେଇ ଦେଇ ପାରିବେ। ତାଙ୍କର ସଚ୍ଚୋଟତା ନେଇ ବହୁତ ସନ୍ଦେହ। ଭିଜିଲାନ୍ସ ତଦନ୍ତରେ ତାଙ୍କ ଆଡ଼କୁ ଆଙ୍ଗୁଠି ଦର୍ଶାଯାଉଥିଲା ତଥାପି ସେ ସରକାରଙ୍କର ବଡ଼ ପ୍ରିୟ ଥିଲେ। ମୁଁ ଭିଜିଲାନ୍ସ ମୁଖ୍ୟ

ଥିଲାବେଳେ ଜଣେ ସିନିୟର ଅଫିସରଙ୍କ ଘର ଖାନତଲାସ ହେଉଥିଲା ଓ ଅନେକ ଟଙ୍କା ପଇସା ଜବତ ହୋଇଥିଲା। ଗଣମାଧ୍ୟମ ପ୍ରଶଂସା କଲେ; କିନ୍ତୁ ଏ ଭଦ୍ରଲୋକ ଗୋଟିଏ ଦୁଇଟି ସ୍ଥାନରେ (ଏମିତି ସ୍ଥାନ ଯେ ଖବର ନିଶ୍ଚୟ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯିବ) କହିଲେ ଯେ ତାଙ୍କ ଘରୁ ଏକ ନୋଟ୍ ବୁକ୍ ମିଳିଥିଲା ଯେଉଁଥିରେ ଦିଲୀପ ରାୟ, ବିଜୟ ମହାପାତ୍ର ଓ ନଳିନୀ ମହାନ୍ତିଙ୍କ ବିଷୟରେ ବହୁତ ତଥ୍ୟ ଥିଲା। ସେ ନୋଟ୍‌ବୁକ୍ ବିପିନ ମିଶ୍ର ନିଜ ପାଖରେ ରଖିଛନ୍ତି।

## ପୋଲିସ ମୁଖ୍ୟ ହୋଇ ଓଡ଼ିଶା ଫେରିଲି

ମୁଁ ଦେଖିଲି ମୁଁ ଯଦି ଓଡ଼ିଶା ନ ଫେରିବି ମୋ' ନାଁରେ ଅପବାଦର ବହୁତ ଢେଙ୍ଗୁରା ବାଜିବ ଓ ଦିଲ୍ଲୀରୁ ଅବସର ନେଇ ମୁହଁ କଳା କରି ଓଡ଼ିଶାକୁ ଫେରିବି। ତେଣୁ ବାଧ୍ୟ ହୋଇ ଓଡ଼ିଶା ଆସିଲି। ତା'ପରେ ଓଡ଼ିଶାରୁ ଆସିଲା ଘନ ଘନ ଟେଲିଫୋନ୍। ଯାହାର ସାରାଂଶ ହେଲା ସାର୍ କେବେ ଆସୁଛନ୍ତି ମୁଁ ଆଗରୁ ଫୋନ୍ କରିପାରିନଥିଲି ଇତ୍ୟାଦି ଇତ୍ୟାଦି। ଏମାନଙ୍କୁ ଦୋଷ ଦେଇ ଲାଭ ନାହିଁ। ଅଳ୍ପ କେତେ ଜଣ ସୁବିଧାବାଦୀ। ଅନ୍ୟମାନେ ପୋଲିସର ଜଣେ ଦୁଇଜଣ ଉପର ଅଫିସରଙ୍କ ରୋଷ ଦୃଷ୍ଟିରେ ପଡ଼ିବା ପାଇଁ ଚାହିଁଲେ ନାହିଁ। ଆଇଏଏସ୍ ଅଫିସରଙ୍କ ମଧ୍ୟରେ ବିବାଦ ଲାଗିଲେ ତାହା ସଂକୀର୍ଣ୍ଣ କ୍ଷେତ୍ରରେ ସୀମିତ ରହେ କିନ୍ତୁ ଆଇପିଏସ୍‌ରେ ଯୁଦ୍ଧକୁ ନାତି ପଣନାତି ପର୍ଯ୍ୟନ୍ତ ବଢ଼େଇ ଦିଆଯାଏ। ସୁଖର କଥା ଏ ମନୋବୃତ୍ତି ଆସ୍ତେ ଆସ୍ତେ କମିଯାଉଛି। ବର୍ତ୍ତମାନ ଯେକୌଣସି ସର୍ଭିସ୍ ଦେଖନ୍ତୁ - ଆଇଏଏସ୍, ଆଇପିଏସ୍ ଇନ୍‌କମ୍‌ଟ୍ୟାକ୍ସ, ସେଥିରେ ବହୁତ ଅଫିସର ସଂଘର୍ଷ ନକରି ସଂଗ୍ରହରେ ମାତିଛନ୍ତି।

ଦୁଇଜଣଙ୍କୁ ଛାଡ଼ି ବାକିସବୁ ଜଏଣ୍ଟ ସେକ୍ରେଟେରୀ ବହୁତ ଡେପୁଟି ସେକ୍ରେଟେରୀ, ଡାଇରେକ୍ଟର, ଅଣ୍ଡର ସେକ୍ରେଟେରୀ ମୋତେ ଫେୟାରୱେଲ ଓ ଅନେକ ଉପହାର ଦେଲେ। ସିଆଇଏସ୍‌ଏଫ୍ ଓ ଏନ୍‌ଏସ୍‌ଜି ସ୍ୱତନ୍ତ୍ର ଭାବେ ଫେୟାରୱେଲ ଦେଲେ। ଜିନିଷପତ୍ର ପ୍ୟାକ୍ କରି ଆଗତୁରା ପଠେଇ ଦେଲି ଓ ଜୁଲାଇ ୩୧ ସକାଳେ ଏୟାରପୋର୍ଟକୁ ଗଲୁ। ସ୍ୱରାଷ୍ଟ୍ର ମନ୍ତ୍ରଣାଳୟ ତରଫରୁ ଜଏଣ୍ଟ ସେକ୍ରେଟେରୀ ଓ ଜଣେ ଡାଇରେକ୍ଟର ଛାଡ଼ିବା ପାଇଁ ଆସିଥିଲେ। ବମ୍ବେରୁ ଝିଅ ଆସିଥିଲା ପ୍ୟାକିଂ କରିବାରେ ସାହାଯ୍ୟ କରିବା ପାଇଁ। ସେ ରାତିରେ ଫ୍ଲାଇଟ୍‌ରେ ଯିବ ସିଙ୍ଗାପୁର। ସିଆଇଏସଏଫର ଡିଆଇଜି ରଣବୀର ଭରଦ୍ୱାଜ ଓ ତାଙ୍କ ସ୍ତ୍ରୀ ଆଶା ଆମକୁ ବିମାନବନ୍ଦରରେ ବିଦାୟ ଦେଇ ଝିଅକୁ ନେଇଗଲେ ତାଙ୍କ ଘରକୁ। ରାତିରେ ଝିଅ (ଜୟଶ୍ରୀ) ଗଲା ସିଙ୍ଗାପୁର।

ମୋ' ଆସିବା ଖବର ସମ୍ପର୍କରେ ଏକ ଗଣ ମାଧ୍ୟମରେ ବାହାରିଥିଲା 'ପ୍ରାୟ ସବୁ ପୋଲିସ ଅଫିସର କହନ୍ତି ଯେ ସେ ଉଚ୍ଚ କୋଟୀର ଅଫିସର। କିନ୍ତୁ ଅଳ୍ପ କେତେ ଜଣ ଆଇପିଏସ୍ ଅଫିସର କହନ୍ତି ଯେ ତାଙ୍କର ଏକମାତ୍ର ଦୋଷ ହେଉଛି ଆଇଏଏସ୍ ଅଫିସରଙ୍କ ସାଙ୍ଗରେ ଅତ୍ୟଧିକ ବନ୍ଧୁତା। ଯେଉଁ ଅଳ୍ପ କେତେଜଣ ଆଇପିଏସ୍ ଅଫିସର ଆଇଏଏସ୍ ମହଲରେ ସମ୍ମାନର ସହିତ ଗ୍ରହଣୀୟ ହୋଇଥିଲେ ତାଙ୍କ ମଧ୍ୟରୁ ମୁଁ ଜଣେ ହୋଇଥିବାରୁ ସେଇଟା କିପରି ଦୋଷ ହେଲା ମୁଁ ଜାଣିନାହିଁ। ମୁଁ ପାଞ୍ଚୋଟି ଜିଲ୍ଲାରେ ଏସ୍‌ପି ଥିଲି। ତେର ଜଣ କଲେକ୍ଟରଙ୍କ ସାଙ୍ଗେ କାମ କରିଛି, ସମସ୍ତଙ୍କ ସାଙ୍ଗରେ ବନ୍ଧୁତା ଓ ସମ୍ପୂର୍ଣ୍ଣ ସହଯୋଗ ଅଥଚ ନିଜର କିମ୍ବା ବିଭାଗର ସମ୍ମାନ କେବେ ହରେଇନାହିଁ। ବିଭିନ୍ନ ବିଭାଗରେ କାମ କରି ଓ ଅନେକ ପ୍ରକାର ଟ୍ରେନିଂ ପାଇଥିବାରୁ ଆମ ସମୟର ଆଇଏଏସ ଅଫିସରମାନଙ୍କର ଜ୍ଞାନ ଓ ଅଭିଜ୍ଞତା ବେଶ୍ ବିସ୍ତୃତ ଓ ସେମାନଙ୍କ ସାଙ୍ଗେ କଥାବାର୍ତ୍ତା ହେଲେ କିଛି ତାତ୍ତ୍ୱିକ ଲାଭ ମିଳୁଥିଲା। ସେମାନଙ୍କ ମଧ୍ୟରୁ ଅବଶ୍ୟ କେତେଜଣ ପ୍ରବଳ ଗର୍ବୀ। ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ, କୁଳାଏ ଧାନରେ କିଛି ଅଗାଡ଼ି ବାହାରିବା ସ୍ୱାଭାବିକ। ସେମାନଙ୍କ ତୁଳନାରେ ଆମ ଆଇପିଏସ୍ ଅଫିସରମାନଙ୍କର ଆଲୋଚନା ପରିସର ବହୁତ ସୀମିତ। ଖାଲି ବଦଳି ଓ ପ୍ରମୋସନ। ଏବେ ଅବସ୍ଥା ବଦଳୁଛି। ଆଇପିଏସ୍ ଅଫିସରମାନେ ବିଭିନ୍ନ କ୍ଷେତ୍ରରେ ଟ୍ରେନିଂ ପାଉଛନ୍ତି। ସେମାନଙ୍କର ଅଭିଜ୍ଞତାର ପରିସର ବଢ଼ୁଛି, ଚଳଣିଚଳଣ ସଂସ୍କୃତିରେ ପରିବର୍ତ୍ତନ ଘଟୁଛି।

ଅନେକ ଆଇପିଏସ୍ ଅଫିସର ଆସିଥିଲେ ବିମାନ ବନ୍ଦରକୁ। ସାଙ୍ଗେ ସାଙ୍ଗେ କଟକ ଗଲୁ ଓ ମେସ୍‌ରେ ପହଞ୍ଚି ଲଞ୍ଚଖାଇ ପୋଲିସ ପୋଷାକ ପିନ୍ଧିଲି। ସିଆଇଏସଏଫ ଛାଡ଼ିଲା ବେଳେ ସ୍ତ୍ରୀଙ୍କୁ କହିଥିଲି ଆଉ ପୋଷାକ ଦରକାର ପଡ଼ିବ ନାହିଁ। ମୁଁ ଇଚ୍ଛା କରି ସ୍ୱତନ୍ତ୍ର ସଚିବ ହେଲି ଓ ପୋଷାକ ଛାଡ଼ିଲି କିନ୍ତୁ ପୋଷାକ ମୋତେ ଛାଡ଼ିଲା ନାହିଁ। ଡିଜି ନିମାଇଁ ଚରଣ ପାଢ଼ୀଙ୍କ ଠାରୁ ଦାୟିତ୍ୱ ନେଲି। ସେଦିନ ତାଙ୍କୁ ମୋ' ସଭାପତିତ୍ୱରେ ଫେୟାରୱେଲ୍ ଦିଆଗଲା। ପାଠକମାନେ ଜାଣି ବିସ୍ମିତ ହେବେ ଯେ ମୁଁ ଦିଲ୍ଲୀରୁ ଫେରିବାର ଦୁଇ ତିନି ଦିନ ପୂର୍ବରୁ ଶ୍ରୀ ପାଢ଼ୀଙ୍କର ଜଣେ 'ମୁଖ୍ୟ ସେବକ' ମୋତେ ଫୋନ୍ କରି କହିଲେ 'ସାର୍ ତାଙ୍କୁ କେହି ଫେୟାରୱେଲ ଦେବାପାଇଁ ରାଜି ହେଉନାହାଁନ୍ତି। ତେଣୁ ଆମେ ଆପଣଙ୍କୁ ୱେଲ୍‌କମ୍ କରିବୁ; କିନ୍ତୁ ତାଙ୍କୁ ଫେୟାରୱେଲ ଦେବୁନାହିଁ । ତାଙ୍କୁ ମୁଁ କହିଲି ଫେୟାରୱେଲ ଦେବା ଏକ ପରମ୍ପରା। ଯଦି ଭାଙ୍ଗିବ ଦିନେ ତୁମେ ଏ ଦଶା ଭୋଗିବ। ତା'ଛଡ଼ା ସମସ୍ତଙ୍କ ଧାରଣା ହେବ ଯେ ମୁଁ ଫେୟାରୱେଲ ବନ୍ଦ କରେଇଛି। ତେଣୁ ସେମାନେ ଫେୟାରୱେଲ କଲେ କିନ୍ତୁ କେହି

ଜଣେ ଭାଷଣ ଦେଲେନାହିଁ। ଶେଷରେ ବାଧ୍ୟହୋଇ ମୁଁ ଶ୍ରୀ ପାଢ଼ୀଙ୍କୁ ବିଦାୟ ଭାଷଣ ଦେବା ପାଇଁ କହିଲି ଓ ତାଙ୍କ ପରେ ମୁଁ କହିଲି, ଇଏ ହେଲା ଆମ ଆଇପିଏସ୍ ଅଫିସରଙ୍କ ଫେୟାରୱେଲ। ଅଫିସ ଷ୍ଟାଫ୍ କାହିଁକି ଫେୟାରୱେଲ୍ ଦେଲେନାହିଁ ମୁଁ ଜାଣିନାହିଁ।

ଶ୍ରୀ ପାଢ଼ୀ ଦାୟିତ୍ୱ ହସ୍ତାନ୍ତର କରି ରୁମ୍‌ରୁ ବାହାରିଗଲେ, ତାଙ୍କ ସାଙ୍ଗେ ଦୁଆରବନ୍ଧ ପର୍ଯ୍ୟନ୍ତ ଗଲି, ତା'ପରେ ଆସି ଡି.ଜି. ଚୌକିରେ ବସିଲି। ଜଣେ ଆଇପିଏସ ଅଫିସର ଯେତେବେଳେ ଚାକିରିରେ ଯୋଗଦିଏ ସେ ଏଇ ଚୌକିଟିକୁ ସମ୍ମାନର ସହିତ ଦେଖେ। ଯେମିତି ଆଇଏଏସ୍ ଅଫିସର ଜଣେ ଚିଫ୍ ସେକ୍ରେଟେରୀ ଚୌକିକୁ ସମ୍ମାନ କରେ। ବହୁତ ଭଲ ଭଲ ଡି.ଜି. ଓ ଆଇ.ଜି (ସେତେବେଳର ପୋଲିସ ମୁଖ୍ୟ)ଙ୍କ ସାମନାରେ ମୁଁ ବସିଛି। ଯେତେବେଳେ ବ୍ରଜବିହାରୀ ମିଶ୍ର, ନରସିଂହ ସ୍ୱାଇଁ, ଅମୀୟଭୂଷଣ ତ୍ରିପାଠୀଙ୍କ ସାମନାରେ ବସି କଥାବାର୍ତ୍ତା ହୋଇଛି, ରୁମ୍‌ରୁ ଫେରି ଆସିଲା ପରେ ଭାବିଛି ସତେ କ'ଣ ଦିନେ ମୁଁ ଏ ଚୌକିରେ ବସିବି। ଅନ୍ତ କେତେକ ବାଜେ ପୁଲିସ ମୁଖ୍ୟଙ୍କ ସାମନାରେ ମଧ୍ୟ ବସିଛି ଓ ସେତେବେଳେ ଭାବିଛି ନିଶ୍ଚୟ ଏ ଚୌକିର କିଛି ଦୋଷ ଅଛି। କିନ୍ତୁ ଚୌକିର କିଛି ଦୋଷ ଗୁଣ ନାହିଁ କେବଳ ମୂଲ୍ୟ ଅଛି। ପ୍ରତ୍ୟେକ ପୋଲିସ ମୁଖ୍ୟଙ୍କୁ ବିଚାର କରାଯାଏ ଏ ଚୌକିର ସମ୍ମାନ ଓ ମୂଲ୍ୟ ବୃଦ୍ଧି କେତେ କରିଛନ୍ତି। ମୁଁ ଆସିଲି ୩୧ ଜୁଲାଇରେ। ଅବସର ନେଲି ୩୦ ଜୁନ୍ ୨୦୦୫ରେ। ମାତ୍ର ଏଗାର ମାସ। ପୋଲିସ ବିଭାଗ ନେଇ ବହୁତ ସ୍ୱପ୍ନ ଦେଖିଆସିଛି; କିନ୍ତୁ ରାତି କମ୍। କ'ଣ କରିବା ?

ବହୁ ଶୁଭେଚ୍ଛୁମାନେ ଚିଠି ଲେଖିଲେ, ଅନେକ ଟେଲିଫୋନ୍ ମଧ୍ୟ କଲେ। ସମାଜ ଅଫିସ୍‌କୁ ଯାଇ ପଣ୍ଡିତ ଗୋପବନ୍ଧୁ ଦାଶ, ବିଶ୍ୱନାଥ ଦାଶଙ୍କ ପ୍ରତିମୂର୍ତ୍ତିରେ ଶ୍ରଦ୍ଧାଞ୍ଜଳୀ ଜଣାଇଲି। ପ୍ରଜାତନ୍ତ୍ର ଅଫିସକୁ ଗଲି ଡକ୍ଟର ମହତାବଙ୍କ ପ୍ରତିମୂର୍ତ୍ତିକୁ ସମ୍ମାନ ଜଣାଇବା ପାଇଁ। ଦୁଇଦିନ ପରେ କଳିଙ୍ଗ ହସ୍ପିଟାଲ ଗଲି ଅଚେତ ଅବସ୍ଥାରେ ପଡ଼ିଥିବା ନନ୍ଦିନୀ ଶତପଥିଙ୍କୁ ଦେଖିବା ପାଇଁ। ତଥାଗତ ବାବୁ (ଶ୍ରୀ ତଥାଗତ ଶତପଥି ସାଂସଦ ତଥା ଧରିତ୍ରୀର ସମ୍ପାଦକ) ମୋତେ ଆଇସିୟୁକୁ ନେଇଗଲେ। ନନ୍ଦିନୀ ଦେବୀଙ୍କୁ ଦେଖି ବଡ଼ ଦୁଃଖ ଲାଗିଲା। ହାଡ଼ମୟ କ୍ଷୁଦ୍ର ଶରୀର, ନାକରେ ପାଟିରେ ଓ ହାତରେ ଲାଗିଛି ଅନେକ ଟିୟୁବ୍। ବଞ୍ଚିକରି ମଧ୍ୟ ବଞ୍ଚିନାହାଁନ୍ତି। ଏଭଳି ଏକ ଅବସ୍ଥା ଯେଉଁଥିରେ କି ମଣିଷ ଜାଣିପାରେ ନାହିଁ ସୁଖ କ'ଣ ଦୁଃଖ କ'ଣ, ବନ୍ଧୁ କିଏ ଶତ୍ରୁ କିଏ। ମୁଁ ଓ ମୋ' ସ୍ତ୍ରୀ ଦୀର୍ଘ ଶ୍ୱାସ ପକେଇ ଫେରିଲୁ, ତଥାଗତ ବାବୁଙ୍କୁ ସହାନୁଭୁତି ଦେଖେଇ।

ସନ୍ଧ୍ୟାବେଳେ କାଶ୍ମୀରରୁ ଜଣେ ସିନିୟର ଅଫିସର ଫୋନ୍ କଲେ। ସେ ଦୀର୍ଘ ଦିନ ଛୁଟିରେ ଯାଇଥିବାରୁ ଶ୍ରୀନଗରରେ ହୋଇଥିବା ମୋ' ଫେୟାରୱେଲ୍‌କୁ ଆସିପାରିନଥିଲେ। ନୂଆ କାର୍ଯ୍ୟଭାର ମୁଣ୍ଡାଇବା ସତ୍ତ୍ୱେ ମନ ଫେରିଗଲା କାଶ୍ମୀରକୁ। ସୁନ୍ଦର ଶ୍ରୀନଗର ସହର, ଡାଲହ୍ରଦ, ଗୁଲମାର୍ଗ, ପିର୍‌ପାଞ୍ଜାଲ, ବୈଷ୍ଣୋଦେବୀ, କ୍ଷୀରଭବାନୀ, ଅମରନାଥ ଓ ସଦାପ୍ରସନ୍ନ କାଶ୍ମୀରବାସୀଙ୍କ ମୁହଁ। କାଶ୍ମୀର ଭୁଲି ହେବନି ଏବଂ ଭୁଲି ହେବନାହିଁ ଜଣେ ବିଖ୍ୟାତ କାଶ୍ମୀର କବିଙ୍କର କବିତାର କିଛି ଅଂଶ। 'ହେ ଗିରିରାଜ ମୁଁ ଚାଲିଯାଉଛି ବୋଲି ଦୁଃଖ କରୁଛ ? ଏ ଝରଣା ଉପନଦୀରେ ମିଶିବ, ଉପନଦୀ ନଦୀର ଅଂଶ ହେବ। ଏଇ ଉପନଦୀ ଓ ନଦୀର ମାଧ୍ୟମରେ ମୁଁ ସମୁଦ୍ରରେ ପହଞ୍ଚିବି ଓ ମେଘ ହୋଇ ପୁଣି ଫେରି ଆସିବି। ଏଇଠି ବର୍ଷିବି। ତମ ସାଙ୍ଗେ ମୋର ଅତୁଟ ବନ୍ଧନ। ଯିବି ଝରଣା ଭାବରେ ଫେରିବି ମେଘ ହୋଇ।'

କାଶ୍ମୀର ସାଙ୍ଗେ ମୋର ସେଇ ସମ୍ପର୍କ। ଛାଡ଼ିଲି ଝରଣା ଭାବେ ଓ ବହୁ ସମୟ ମାନସିକ ସ୍ତରରେ ଫେରିଯାଏ ମେଘ ହୋଇ।

ଡି.ଜି. କାର୍ଯ୍ୟଭାର ଗ୍ରହଣ କରିବା ପରେ ପୁଅ ସନ୍ଦୀପ୍ ଯିଏକି ହାଇଦ୍ରାବାଦ୍‌ରେ ରହେ ପଚାରିଲା 'ନନା କେମିତି ଲାଗୁଛି ?' ତା'ର ପଚାରିବାର ଏକ ତାତ୍ପର୍ଯ୍ୟ ଥିଲା। ମୁଁ ଯେତେବେଳେ ତାକୁ କହିଥିଲି ମୋର ଓଡ଼ିଶା ଫେରିଯିବାର ହେଉଛି ସେ ବାରଣ କଲା। 'ଦିଲ୍ଲୀରେ ଶିବରାଜ ପାଟିଲ, ମିଃ ଜଗମୋହନ ଜୟପ୍ରକାଶ ଜୟସ୍ୱାଲ, କୋଚିଡ୍ ପ୍ରଧାନମନ୍ତ୍ରୀ ଏବଂ ତାଙ୍କ ସହିତ ହୋମ୍ ସେକ୍ରେଟେରୀ ଓ କ୍ୟାବିନେଟ୍ ସେକ୍ରେଟେରୀଙ୍କ ସଙ୍ଗେ କାମ କରୁଛ। ଓଡ଼ିଶା ଗଲେ ପଲଟିକାଲ ଲୋକମାନେ ଚବିଶ ଘଣ୍ଟା ବଦଳି କରିବା କିମ୍ବା ବଦଳି ବନ୍ଦ କରିବା ପାଇଁ କହିବେ। ଭାରତ ସରକାରଙ୍କ ଅଧୀନରେ କାମ କରିବା ପରେ ରାଜ୍ୟରେ କାମ କରିବାକୁ କଷ୍ଟ ଲାଗିବ।' ସେ ଠିକ୍ କହିଥିଲା। କେନ୍ଦ୍ର ସରକାରଙ୍କ ଅଧୀନରେ କାମ କଲେ ହସ୍ତକ୍ଷେପ ବହୁତ କମ୍। ବିଜେପି ସରକାର ଥିବାବେଳେ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟର ଜଣେ ରାଷ୍ଟ୍ରମନ୍ତ୍ରୀଙ୍କ ସାଙ୍ଗରେ ମୋର ମତଭେଦ ହେଲା। ସେ ଚାହୁଁଥିଲେ ବର୍ଷକୁ ଏକ ହଜାର ବନ୍ଧୁକ ତିଆରି କରିବାକୁ ଜଣକୁ ଲାଇସେନ୍ସ ଦେବା ପାଇଁ। ମୁଁ ମତ ଦେଲି ଯେ ନାଗରିକମାନଙ୍କୁ ଏତେ ସଂଖ୍ୟାରେ ବନ୍ଧୁକ ଦେବା ଉଚିତ୍ ନୁହେଁ କାରଣ ଅପବ୍ୟବହାରର ସମ୍ଭାବନା ବହୁତ ଅଛି। ତେଣୁ ମାତ୍ର ୨୦୦ ବନ୍ଧୁକ ତିଆରି କରିବା ପାଇଁ ଅନୁମତି ଦିଆଯାଉ। ରାଷ୍ଟ୍ରମନ୍ତ୍ରୀ ସ୍ୱରାଷ୍ଟ୍ର ମନ୍ତ୍ରୀଙ୍କୁ ଲେଖିଲେ ତାଙ୍କ ପ୍ରସ୍ତାବ ଗହଣ କରିବା ପାଇଁ। ଏ ବିଷୟରେ ଆଲୋଚନା ମଧ୍ୟ

କଲେ ଓ ବନ୍ଧୁକ ତିଆରି କରିବା ସଂଖ୍ୟା ୨୦୦ କିମ୍ବା ୧୦୦୦ ନହୋଇ ୨୦୦ରୁ ଅଳ୍ପ ଅଧିକ ହେଲା। ସେହିପରି ଟେଲିଫୋନ୍‌ରେ ବିଦେଶୀ ପୁଞ୍ଜିନିବେଶ ଶତକଡ଼ା ୭୩କୁ ବୃଦ୍ଧି କରିବା ପାଇଁ ଉକ୍ତ ବିଭାଗ ଆମର ମତାମତ ମାଗିଲା ଓ ମୁଁ ଲେଖିଥିଲି ଯେ ଶତକଡ଼ା ୨୬ ବିଦେଶୀ ପୁଞ୍ଜିନିବେଶ ଅନୁମତି ଦେଇଥିବା ବେଳେ ମାତ୍ର ଶତକଡ଼ା ୫ ପୁଞ୍ଜିନିବେଶ ହୋଇଛି, ତେଣୁ ୨୬ ଠୁ ୭୩ ନିଷ୍ପ୍ରୟୋଜନ। ଦ୍ୱିତୀୟରେ ପୁଞ୍ଜିନିବେଶ ଯଦି ୭୩ ହେବ ତେବେ ଏହାର ନିୟନ୍ତ୍ରଣ ବେସରକାରୀ ସଂସ୍ଥାକୁ ଚାଲିଯିବ ଓ ଏହା ଆନ୍ତରୀଣ ସୁରକ୍ଷା ପ୍ରତି ବିପତ୍ତି ସୃଷ୍ଟି କରିବ। ଏଥିରେ ମଧ୍ୟ କେହି ମୋତେ ବାଧ୍ୟ କରିନାହାଁନ୍ତି ଯେ କାହାକୁ ସୁହାଇଲା ଭଳିଆ ମତାମତ ଦେବା ପାଇଁ। ସେହିପରି ଜଣେ ଭଦ୍ରଲୋକ ଯାହାଙ୍କ ବିରୁଦ୍ଧରେ ବିଭିନ୍ନ ଟିକସ ଫାଙ୍କିବା କେସ୍ ହୋଇଥିଲା ତାଙ୍କୁ ଗୋଟିଏ କମ୍ପାନୀର ଡାଇରେକ୍ଟର କରିବାରେ ଆମର କିଛି ଆପତ୍ତି ଅଛି କି ପଚରା ହେବାରୁ ମୁଁ ଲେଖିଥିଲି ଏଭଳି ବିବାଦୀୟ ଲୋକଙ୍କୁ ଏକ ଗୁରୁତ୍ୱପୂର୍ଣ୍ଣ କମ୍ପାନୀର ଡାଇରେକ୍ଟର କରିବା ଉଚିତ୍ ନୁହେଁ। ଆମ ମତାମତ ଗ୍ରହଣ କରାଗଲା। ଏଇଠେ କିନ୍ତୁ ଦେଖିଲି ଅବସ୍ଥା ଅନ୍ୟ ପ୍ରକାରର। ମୌଖିକ ଆଦେଶ ଓ ମୌଖିକ ନିବେଦନ। ମୌଖିକ ଆଦେଶ ପାଳନ କରି ନିବେଦନ ଗ୍ରହଣ କରି ତୁମେ ଯଦି ଅଡୁଆରେ ପଡ଼ିଲ ତେବେ ଅନ୍ୟମାନେ ଆଙ୍ଗୁଠି ଦେଖେଇବା ପୂର୍ବରୁ ସେଇମାନେ ପ୍ରଥମେ କହିବେ ଯେ ସେ ଠିକ୍ କରିନଥିବ। ବହୁବର୍ଷ ତଳେ ଜଣେ ମନ୍ତ୍ରୀ ସଡ଼କ ପରିବହନ ବିଭାଗର ମ୍ୟାନେଜିଂ ଡାଇରେକ୍ଟରଙ୍କୁ ଲିଖିତ ନିର୍ଦ୍ଦେଶ ଦେଉଥିଲେ ତାଙ୍କ ନିଜ ଲୋକଙ୍କୁ ନିଯୁକ୍ତି କରିବା ପାଇଁ ଓ ସେ ଏମିତି ଆଦେଶ ପାଳନ କରିବା ସଙ୍ଗେ ସଙ୍ଗେ ନିଜ ଲୋକଙ୍କୁ ମଧ୍ୟ ଭର୍ତ୍ତି କରୁଥିଲେ। ଉଭୟ ମନ୍ତ୍ରୀ ଓ ଏମ୍‌ଡି ଦୟାବଶତଃ ନୁହେଁ ଅନ୍ୟ କାରଣରୁ ଏଭଳି ବେନିୟମ ନିଯୁକ୍ତି କଲେ। ଏ ବିଷୟରେ ଗଣମାଧ୍ୟମ ପ୍ରତିନିଧି ପଚାରିଦେବାରୁ ମନ୍ତ୍ରୀ ବିନା ଦ୍ୱିଧାରେ କହିଲେ 'ଲୋକଙ୍କ ପ୍ରତିନିଧି ହୋଇଥିବାରୁ ଆମେ ସେମାନଙ୍କ ଦୁଃଖ ଗୁହାରି ସରକାରୀ ପ୍ରତିନିଧିଙ୍କୁ ଜଣେଇଲୁ। ସେ ନିୟମ କାନୁନ୍ ଦେଖି କାମ କରିବା କଥା। ଆଖି ବୁଜି ଯେବେ ନିଯୁକ୍ତି ଦେବେ ତାହେଲେ ମୁଁ କ'ଣ କରିବି? ଏଇଭଳି ପରିସ୍ଥିତିର ଶିକାର ହୋଇଥିବାରୁ ସରକାର ଅଦଳ ବଦଳ ହେଲେ ବହୁତ ନିରୀହ ଅଫିସରଙ୍କର ମଧ୍ୟ ଅଦଳ ବଦଳ ହୁଏ। ନୂଆ ମନ୍ତ୍ରିମଣ୍ଡଳ ହେବା ମାତ୍ରେ ଚିଫ୍ ସେକ୍ରେଟେରୀ, ଡିଜି, ବହୁତ ସେକ୍ରେଟେରୀ, ଜିଲ୍ଲାପାଳ ଓ ଏସ୍‌ପିଙ୍କ ବଦଳି ହୁଏ। କୈଫିୟତ ଦିଆଯାଏ ଯେ ପ୍ରଶାସନର ଆଭିମୁଖ୍ୟରେ ଉନ୍ନତି ଆଣିବା ପାଇଁ ଏସବୁ କରାଗଲା। ବାସ୍ତବରେ କିଛି ଉନ୍ନତି ହୁଏ ନାହିଁ, ପ୍ରଶାସନ ସେମିତି ଚାଲେ ମଠେଇ ମଠେଇ ତାଳଚେର ଗାଡ଼ି ପରି।

ମୋତେ ସାମ୍ବାଦିକମାନେ ପଚାରିଲେ ଆପଣଙ୍କ ଆଭିମୁଖ୍ୟ କ'ଣ, ନକ୍ସଲ ସମସ୍ୟାର ସମାଧାନ କେବେ ହେବ, ପୋଲିସ ସର୍ବ ସାଧାରଣଙ୍କ ମଧ୍ୟରେ ଦୂରତା କେବେ କମିବ ଇତ୍ୟାଦି ଇତ୍ୟାଦି। ଏ ପ୍ରଶ୍ନ ସବୁ ନୂଆ ଡିଜିଙ୍କୁ ପଚରାଯାଏ ଓ ସମସ୍ତେ ଉତ୍ତର ଦିଅନ୍ତି ମୁଁ ପାରୁପର୍ଯ୍ୟନ୍ତ ଚେଷ୍ଟା କରିବି। କେତେଦୂର ସଫଳ ହେବି ସମୟ କହିବ।

ସମସ୍ତେ ଆଶା କରିଥିଲେ ଯେ ମୁଁ ବ୍ୟାପକ ଅଦଳ ବଦଳ କରିବି। ଅନେକ ଅଫିସର ଭୟଭୀତ ହୋଇ ରହିଥିଲେ କାରଣ ଅତୀତରେ ସେମାନେ ମୋତେ ଉପେକ୍ଷା କରିଥିଲେ। କେତେବେଳେ କେମିତି ମୋ' ବିରୁଦ୍ଧରେ କଟୁ ମନ୍ତବ୍ୟ ବି ଦେଇଥିଲେ। ମୁଁ କିନ୍ତୁ କାହାକୁ ବଦଳି କଲିନାହିଁ। କୌଣସି ଜିଲ୍ଲାରେ ଏସ୍‌ପି ହୋଇ ପହଞ୍ଚିଲା ମାତ୍ରେ ବ୍ୟାପକ ଅଦଳ ବଦଳ କରିନାହିଁ ତେଣୁ ଡିଜି ହୋଇ କାହିଁକି କରିବି? ଇନ୍ଦ୍ର ବଦଳନ୍ତି ସଚି ରହନ୍ତି। ନୂତନ ଇନ୍ଦ୍ର ସଚିଙ୍କ ପ୍ରତି ବିରକ୍ତ ହେବା ବୋକାମୀ। କାହାକୁ ବଦଳି ନକରି ବରଂ ଜଣେ ଦୁଇଜଣ ଅଫିସରଙ୍କୁ ବହୁତ ଲଘୁ ଦାୟିତ୍ୱ ଦିଆଯାଇଥିଲା ସେମାନଙ୍କ ଦାୟିତ୍ୱ ବଢ଼େଇଲି। କାମ ଠିକ୍ ଚାଲିଲା। ଅତିରିକ୍ତ ଡିଜି ଅମରାନନ୍ଦ ପଟ୍ଟନାୟକ, ଆଇଜି ନାଗେଶ୍ୱର ରାଓ, ସଞ୍ଜୀବ ମାରିକ, ହରିହର ପଣ୍ଡା ଓ ଅତିରିକ୍ତ ଡିଜି ସୁଚିତ ଦାସଙ୍କ ଠାରୁ ସମ୍ପୂର୍ଣ୍ଣ ସହଯୋଗ ମିଳିଲା। କାହାକୁ ବଦଳି ନକରିବାରୁ ଜଣେ ସମ୍ବାଦଦାତା ଲେଖିଲେ 'ଆମେ ଏ ଡି.ଜି.ଙ୍କ ଠାରୁ ବହୁତ୍ କିଛି ଆଶା କରୁଥିଲୁ କିନ୍ତୁ ସେ ଏକ ପକ୍ଷାଘାତ ଦଳଟିକୁ ନେଇ କାମ ଚଳେଇବା ପାଇଁ ଭାବୁଛନ୍ତି।' ସେ ନିରାଶ ହେଲେ ଯେତେବେଳେ ଦେଖିଲେ ତଥାକଥିତ ପକ୍ଷାଘାତ ଦଳଟି ବହୁତ ସକ୍ରିୟ।

ଦାୟିତ୍ୱ ଗ୍ରହଣ କରିବାର ପରଦିନ ମୁଖ୍ୟମନ୍ତ୍ରୀଙ୍କୁ ଦେଖା କରିବାକୁ ଗଲି। ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଏଭଳି ଏକ ବ୍ୟକ୍ତିତ୍ୱ ଯିଏ ସମସ୍ତଙ୍କୁ ସମ୍ମାନ ଦେଇ କଥାବାର୍ତ୍ତା କରନ୍ତି। ଯଦି ନାପସନ୍ଦ କରନ୍ତି ତେବେ କଥାଟା ପରୋକ୍ଷ ଭାବେ କହନ୍ତି। ଯଦି କୁହାଯାଏ ଯେ ଆଦେଶ ବା ନିୟମ ବିରୁଦ୍ଧରେ ଯାଉଛି ତେବେ ସାଙ୍ଗେ ସାଙ୍ଗେ ଆଦେଶ ପାଳନ କରିବାକୁ ମନା କରିଦେବେ। କିନ୍ତୁ ଅଧିକାଂଶ ମନ୍ତ୍ରୀଙ୍କ କଥାବାର୍ତ୍ତା ଭିନ୍ନ ପ୍ରକାର। ଆଦେଶ ବେଆଇନ୍ କହିଲେ ମଧୁର ଭାଷାରେ କହିବେ 'ସବୁବେଳେ ଆଇନ୍‌ଟାକୁ ଧରିବସିଲେ ହେବ? ମୋ' ନିର୍ବାଚନ ମଣ୍ଡଳୀ ଲୋକଙ୍କୁ କ'ଣ କହିବି? ଆଇନ ବହି ଦେଖେଇବି?' ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସମୟରେ ଉତ୍ପାତ ହେଉଥିବା ଜଣେ ମନ୍ତ୍ରୀ କହିଥାନ୍ତେ 'ହଁ, ହଁ, ଆମେ ଜାଣିଛୁ ଆପଣ ଭାରି ନିୟମ ମାନିଲାବାଲା। ଆପଣଙ୍କ ନାଁରେ ହଜାରେ ଅଭିଯୋଗ, ମୋତେ ନିୟମ ଦେଖେଇ ହେଉଛନ୍ତି?' ଭାରତ ସରକାରରେ ଏଭଳି ଅଭିଜ୍ଞତା କେବେ ହୋଇନାହିଁ। ରାଜ୍ୟରେ ଥିବାବେଳେ ଦାୟିତ୍ୱହୀନ କଥାବାର୍ତ୍ତା କରୁଥିବା ନେତା ଦିଲ୍ଲୀରେ ପହଞ୍ଚିଲେ ବଦଳି

ଯାଆନ୍ତି କାରଣ ଦିଲ୍ଲୀ ଦରବାରରେ ତାଙ୍କ ସ୍ଥାନ ଅତି ନଗଣ୍ୟ। ଯେଉଁମାନେ ଉଚ୍ଚ ସ୍ଥାନରେ ଥାଆନ୍ତି ସେମାନେ ଉଚ୍ଚତା ଦେଖେଇ ହୁଅନ୍ତି ନାହିଁ। ଯେଉଁଦିନ ଆଡ୍‌ଭାନୀ ତାଙ୍କ ପଦବୀ ଛାଡ଼ିଲେ ସେ ନର୍ଥ ବ୍ଲକରେ ଥିବା କେତେଜଣ ସିନିୟର ଅଫିସରଙ୍କ ରୁମ୍‌କୁ ଯାଇଥିଲେ ବିଦାୟ ନେବା ପାଇଁ। ମୁଁ ରୁମ୍‌ରୁ ବାହାରୁଛି ତାଙ୍କ ପାଖକୁ ଯିବା ପାଇଁ, ଦେଖିଲା ବେଳକୁ ସେ ରୁମ୍ ବାହାରେ ଠିଆ ହୋଇଛନ୍ତି। ସମସ୍ତ ରକମର ସହଯୋଗ କରିଥିବାରୁ ସେ ମୋତେ ଧନ୍ୟବାଦ ଦେଲେ ଏବଂ ମୁଁ ତାଙ୍କୁ ଉତ୍ତର ଦେଲି "ଭଗବାନ କରନ୍ତୁ ଆପଣଙ୍କ ଅଧୀନରେ ଆଉଥରେ କାମ କରିବା ପାଇଁ ସୁଯୋଗ ମିଳୁ।" ସେ ମୋ' ହାତ ଦୁଇଟାକୁ ଧରି ପକେଇଲେ। ତା' ପର ଦିନ ତାଙ୍କ ଘରେ କେତେଜଣ ମନ୍ତ୍ରୀ ଓ କେତେଜଣ ସିନିୟର ଅଫିସରଙ୍କୁ ଟିପାର୍ଟି ପାଇଁ ଡାକିଲେ। ପ୍ରାୟ ସମସ୍ତେ ଯାଇଥିଲେ କିନ୍ତୁ 'ହଠାତ୍ ଟୁର୍ ପଡ଼ିଯିବାରୁ' ଚାରି ପାଞ୍ଚ ଜଣ ଅଫିସର ଆସିପାରିଲେ ନାହିଁ। ସେମାନଙ୍କ ମଧ୍ୟରୁ ଜଣେ ଓଡ଼ିଶା କ୍ୟାଡ଼ରର ଆଇପିଏସ୍ ଅଫିସର ଥିଲେ। ସେ ଚାହୁଁନଥିଲେ କଂଗ୍ରେସ ସରକାର ଅସନ୍ତୁଷ୍ଟ ହୁଅନ୍ତୁ।

ଆଡ୍‌ଭାନୀଙ୍କ ପରି ନବୀନ ପଟ୍ଟନାୟକ ଭଦ୍ର ଓ ମାର୍ଜିତ। ମନ ମଧ୍ୟରେ ଯାହାବି ଧାରଣା ଥାଉ ବାହାରକୁ ପ୍ରକାଶ କରନ୍ତିନି। ସେ ମୋତେ କହିଲେ ଆପଣ ସବୁ ଜାଣିଛନ୍ତି ତ ଆପଣଙ୍କୁ କିଛି କହିବା ଦରକାର ନାହିଁ। ବର୍ତ୍ତମାନ ଆମର ମୁଖ୍ୟ ସମସ୍ୟା ହେଲା ନକ୍ସଲାଇଟଙ୍କ ମୁକାବିଲା କରିବା ଓ ରାଜ୍ୟରେ ଶିଳ୍ପର ଅଭିବୃଦ୍ଧି କରେଇବା। ମୁଁ କହିଲି 'ନୂତନ ଶିଳ୍ପ ଅଞ୍ଚଳ ବୁଲି ଦେଖିବି। ଶିଳ୍ପପତିଙ୍କୁ ସମସ୍ତ ରକମ ପୋଲିସ ସୁରକ୍ଷା ଦେବାର ଆଶ୍ୱାସନା ଦେବି। ପାଖରେ ବସିଥିବା ସେକ୍ରେଟେରୀ ଯୁଗଳ ମହାପାତ୍ର କହିଲେ ଆଇନ୍ ଶୃଙ୍ଖଳା ପରିସ୍ଥିତି ସହିତ ଜମି ଅଧିଗ୍ରହଣ ମଧ୍ୟ ଏକ ସମସ୍ୟା। ତେଣୁ ମେମ୍ବର ବୋର୍ଡ଼ ଅଫ୍ ରେଭିନ୍ୟୁ ମଧ୍ୟ ଯାଆନ୍ତୁ। ସଞ୍ଜୀବ ଚନ୍ଦ୍ର ହୋତା ମେମ୍ବର ବୋର୍ଡ଼ ଅଫ ରେଭିନ୍ୟୁ ଓ ମୋର ପୁରୁଣା ବନ୍ଧୁ। ବହୁ ଦିନ ପରେ ଏକାଠି ଗସ୍ତ କରିବା ସୁଯୋଗ ମିଳିଲା। ଆମେ ଆଠଗଡ଼, ଢେଙ୍କାନାଳ, ଅନୁଗୁଳ, ଝାରସୁଗୁଡ଼ା, ରାଉରକେଲା ଓ ଯାଜପୁର (କଳିଙ୍ଗନଗର)ରେ ସମସ୍ତଙ୍କୁ ଡକେଇ ଆଲୋଚନା କଲୁ ଓ ସେମାନେ ଆଶ୍ୱସ୍ତ ହେଲେ। ଅଳ୍ପ କିଛି ଦିନ ପରେ ଓଡ଼ିଶା ସରକାରଙ୍କର ବିମାନ ନେଇ କୋରାପୁଟ ଗଲି । ସାଙ୍ଗରେ ଥିଲେ ଗୋଇନ୍ଦା ମୁଖ୍ୟ, ଭାରତ ସରକାରଙ୍କର ଗୋଇନ୍ଦା ବିଭାଗର ଜଣେ ଜଏଣ୍ଟ ଡାଇରେକ୍ଟର ଓ ଆଉ ଜଣେ ଅଫିସର। ସେଦିନ ଭୀଷଣ ବର୍ଷା ଓ ଘନମେଘ। ବିମାନରୁ ଜୟପୁର ସହର ଦିଶୁନଥାଏ। ବିମାନ ଚାଳକ ଓ ଜୟପୁର ସହର ଉପରେ ଚକ୍କର ମାରି ଖୋଜୁଥିଲେ ମେଘ ଭିତରେ ଫାଙ୍କ। ଶେଷରେ ସଫଳ ହେଲେ ଓ ଆମେ ଓହ୍ଲେଇଲୁ। ଜୟପୁରରୁ ଗଲି କୋରାପୁଟ ଓ ନକ୍ସଲାଇଟମାନେ ଆକ୍ରମଣ କରୁଥିବା ସ୍ଥାନଗୁଡ଼ିକ ଦେଖିଲି।

ମୋ' ପୂର୍ବ ଡି.ଜି. ଶ୍ରୀ ପାଢ଼ୀଙ୍କ ସମୟରେ ନକ୍ସଲମାନେ କୋରାପୁଟ ଅସ୍ତ୍ରାଗାର ଟ୍ରେଜେରୀ, ଜେଲ, ଟାଉନଥାନା, ସଦରଥାନା ଓ ଓଏସଏଫ ଅସ୍ତ୍ରାଗାରକୁ ଏକା ସଙ୍ଗେ ଆକ୍ରମଣ କଲେ। ଟ୍ରେଜେରୀ ଆକ୍ରମଣ କରିବା ସମୟରେ ଜଣେ କନେଷ୍ଟବଲ ଥିଲା ବାକି ସମସ୍ତେ ସାଧାପୋଷାକରେ ବଜାରରେ ବୁଲୁଥିଲେ। ଜେଲ ଆକ୍ରମଣରେ ମଧ୍ୟ ସେଇ ଦଶା। ଉପସ୍ଥିତ ଥିବା ଜଣେ ଦୁଇଜଣ ସିପାହୀ ଆତ୍ମ ସମର୍ପଣ କଲେ ବାକି ସବୁ ବାହାରେ ବୁଲୁଥିଲେ। ନକ୍ସଲାଇଟମାନେ ବହୁତ ଅସ୍ତ୍ର, ଗୋଳାବାରୁଦ, ଥାନା ଟ୍ରେଜେରୀରୁ ଗୋଳା ବାରୁଦ ନେଇଗଲେ। କାଳେ ଓଏସ୍ଏପି ଥାନା ପୋଲିସ ସଙ୍ଗରେ ଆସିବ ତାଙ୍କୁ ଲଢ଼େଇରେ ବ୍ୟସ୍ତ ରଖିଲେ। କୋଲାବ ନଗରରୁ ପୋଲିସ ସାହାଯ୍ୟ ପାଇଁ ଆସୁଥିବା ସିଆରପି ଗାଡ଼ି ଲ୍ୟାଣ୍ଡମାଇନ୍ ଲଗେଇ ଉଡ଼େଇ ଦେଲେ। ସରକାରୀ ଅସ୍ତ୍ରାଗାର ଲୁଟ୍ ଭାରତ ଇତିହାସରେ ଏହା ହେଉଛି ଦ୍ୱିତୀୟ ଘଟଣା। ପ୍ରଥମ ଘଟଣା ହୋଇଥିଲା ୭୫ ବର୍ଷ ତଳେ ଚିଟ୍ଟାଗଙ୍ଗରେ (ବର୍ତ୍ତମାନ ବାଂଲାଦେଶ)। ଏତେ କିଛି ହୋଇଗଲା ଅର୍ଥ ଓଡ଼ିଶା ଗୋଇନ୍ଦା ବିଭାଗ ପାଖରେ କିଛି ଖବର ନଥିଲା। ଏ ଘଟଣା ଆମକୁ ଜଣେଇଲା ଆଇ.ବି.। ମୁଁ ସେତେବେଳେ ଦିଲ୍ଲୀରେ ଥିଲି ଓ ଆଭ୍ୟନ୍ତରୀଣ ସୁରକ୍ଷା ମୋର ଦାୟିତ୍ୱ ଥିଲା। ମୁଁ ଓଡ଼ିଶା ଡିଜିଙ୍କୁ ଫୋନ୍ କରି ପଚାରିଲି ଫୋର୍ସ ଦରକାର କି ଓ ସେ ହଁ କରିବାରୁ ସିଆରପି ଡିଜିଙ୍କୁ କହିଲି ତୁରନ୍ତ ସ୍ୱତନ୍ତ୍ର ବିମାନରେ ବିଶାଖାପାଟଣାକୁ ଫୋର୍ସ ପଠାଇବା ପାଇଁ। ଫୋର୍ସ ପହଞ୍ଚିଲା, କୁମ୍ବିଂ ହେଲା। କେହି ଧରାପଡ଼ିଲେ ନାହିଁ। 'ଚୌର ଗତେବା କିମ୍ବୁ ସାବଧାନ।' ଓଡ଼ିଶା ପୋଲିସର ଏଭଳି ଅପାରଗତା ଦିଲ୍ଲୀ ମହଲରେ ସମାଲୋଚିତ ହେଲା। ଅଥଚ ଓଡ଼ିଶା ପୋଲିସ ତରଫରୁ ସଫେଇ ଦିଆଗଲା ଯେ ସେଗୁଡ଼ିକ ସବୁ ପୁରୁଣା ବନ୍ଧୁ ଓ ଆମେ ତାକୁ ତ୍ୟଜ କରିବା ପାଇଁ ବସିଥିଲୁ। ଏ ଖବର ପଢ଼ି ଜଣେ ପୁରୁଣା ଆର୍ମି ମେଜର ଜେନେରାଲ ମୋ' ପାଖକୁ ଚିଠି ଲେଖିଥିଲେ 'ଦୟାକରି ଓଡ଼ିଶା ପୋଲିସର ଉଚ୍ଚ କର୍ତ୍ତୃପକ୍ଷଙ୍କୁ କୁହନ୍ତୁ ସେଇଭଳି ଏକ ପୁରୁଣା ବନ୍ଧୁକ ମୋତେ ଦେବେ ଓ ମୁଁ ତାଙ୍କୁ ଲକ୍ଷ୍ୟକରି ଫାଇରିଙ୍ଗ କରିବି।' ନିର୍ଲ୍ଲଜତାର ସୀମା ଥାଏ, ଲାଜରେ ମୋ' ମୁଣ୍ଡ ତଳକୁ ହୋଇଗଲା। ଆହୁରି ଅଶ୍ୱସ୍ତି ଲାଗିଲା ଯେତେବେଳେ ଖବର ମିଳିଲା ଯେ ଘଟଣା ପରେ ସିନିୟର ଅଫିସର କେତେଜଣ ଗଲେ କୋରାପୁଟ ଓ ସେମାନଙ୍କୁ ଆମୋଦିତ କରିବା ପାଇଁ ବିଶାଖାପାଟଣାରୁ ବେଶ୍ ଦାମିକିଆ ମଦ ବୋତଲ ମଗାଗଲା। ଏଭଳି ରିପୋର୍ଟ ଜଣେ ଯଦି ପାଇବ ଓ ସେ ଯଦି ଓଡ଼ିଶାର ହୋଇଥିବ ତାଙ୍କୁ କେମିତି ଲାଗିବ ପାଠକମାନେ କୁହନ୍ତୁ। ଥରେ ମୋତେ ଜଣେ ସିନିୟର ଅଫିସର କହିଥିଲେ ତୁମେ ଯାହା ଚାହିଁବ ତୁମ ତଳ କର୍ମଚାରୀ ସେଇଆ ଦେବେ। କାମ ଚାହିଁଲେ କାମ ଦେବେ, ଖୋସାମଦି ଇଚ୍ଛା କଲେ ଖୋସାମଦି କରିବେ, ଲୋଭୀ ହୋଇଥିଲେ ପଇସା ଆଣି ଦେବେ।

ପୋଲିସର ମନୋବଳ ଫେରେଇ ଆଣିବା ଆମର ମୁଖ୍ୟ କାର୍ଯ୍ୟ ଥିଲା। ସବୁଆଡ଼େ ବୁଲି ଏସ୍‌ପିମାନଙ୍କୁ କହିଲି ନିୟମ ଅନୁସାରେ କାମକର। ଯଦି କେହି ରାଜନୈତିକ ଚାପ ପକାନ୍ତି କହିଦେବ ଡି.ଜି. ମନା କରିଛନ୍ତି।

ଜଣେ ଏମ୍‌ଏଲ୍‌ଏ, ସ୍ଥାନୀୟ ଥାନା ବାବୁଙ୍କୁ କହିଲେ ଏକ କାନ୍ଥ ଭାଙ୍ଗି ଦେବା ପାଇଁ। ସରକାରୀ ଜାଗାରେ କାନ୍ଥ ହୋଇଥିଲେ ତହସିଲଦାର ଭାଙ୍ଗିବେ, ବେସରକାରୀ ଜାଗାରେ ହୋଇଥିଲେ କୋର୍ଟରେ କେସ୍ ହେବ, ଏଥିରେ ଥାନାବାବୁଙ୍କ ଭୂମିକା ନାହିଁ। ତେଣୁ ସେ ମନାକଲେ। ଦିନେ ଅପେକ୍ଷା କରି ଏମଏଲଏ ଉତ୍‌କ୍ଷିପ୍ତ ହୋଇଗଲେ ଓ ଦଳେ ସମର୍ଥକଙ୍କୁ ଧରି ଥାନାକୁ ଗଲେ। ଥାନା ବାବୁ ଥାନାରେ ନଥାଇ ଘରେ ଖାଉଥିଲେ। ତାଙ୍କୁ ଘର ଭିତରୁ ଘୋଷାଡ଼ି ଆଣି ଧକ୍କା ମାରି ମାରି ଥାନାକୁ ଅଣାଗଲା। ପରେ ଅନ୍ୟ ପୋଲିସବାଲା ଆସିବାରୁ ସେମାନେ ଥାନା ଛାଡ଼ି ଚାଲିଗଲେ। ଏମଏଲଏ ବାବୁ ହେଉଛନ୍ତି ଶାସକ ଦଳର, ତେଣୁ ଇନ୍ଦ୍ରଚନ୍ଦ୍ର ନମାନିବା ସ୍ୱାଭାବିକ। ସରକାର ତାଙ୍କର, ପୋଲିସ ସରକାରଙ୍କର ତେଣୁ ପୋଲିସ ତାଙ୍କର ହେଲା ଇଜିମାଇଲ ସମ୍ପତ୍ତି। ଏଇ ଭାବନାରେ ଅନୁପ୍ରାଣିତ ହୋଇ ଏମ୍‌ଏଲ୍‌ଏ ମହାଶୟ ଥାନାବାବୁଙ୍କୁ ଏଭଳି ବ୍ୟବହାର କଲେ। କିନ୍ତୁ ପରିଣତି କ'ଣ ହେବ ଜାଣିନଥିଲେ। ଏସ୍‌ପି ଏ ଖବର ଦେବା ମାତ୍ରେ ମୁଁ କହିଲି 'ତୁରନ୍ତ ଯାଅ, ସେ ଏମ୍‌ଏଲ୍‌ଏକୁ ଗିରଫ କରି ହାଜତ୍‌ରେ ପୁରାଅ ଓ ତା'ପରେ ମୋତେ ଖବର ଦେବ।' ସଦରମହକୁମାରୁ ଫୋର୍ସ ଆସୁଥିବାର ଜାଣି ଏମ୍‌ଏଲ୍‌ଏ ଅଦୃଶ୍ୟ ହୋଇଗଲେ; ଯଦିବା ପୂର୍ବରୁ ଘୋଷଣା କରୁଥିଲେ 'ମୋତେ ପୁଣି ପୋଲିସ ଗିରଫ କରିବ ? ସାହସ ଅଛି ?' ସେ ଲୁଚିଗଲେ ଓ ଆଗତୁରା ଜାମିନ ପାଇଲା ପରେ ଫେରିଲେ।

ପୋଲିସରେ ପ୍ରମୋଶନ ପାଇବାରେ ବଡ଼ ବିଳମ୍ବ ହେଉଥାଏ। ଆଇପିଏସ୍‌କୁ ପ୍ରମୋଶନ ପାଇବାକୁ ହେଲେ ଆଠ ବର୍ଷ ଡିଏସ୍‌ପି ହୋଇଥିବ ଓ ବୟସ ୫୪ ତଳେ ଥିବ ତେବେ ଯାଇ ଜଣେ ଯୋଗ୍ୟ ବୋଲି ବିବେଚିତ ହେବ। ଏମିତି କେହି ନଥିବାରୁ ସବୁ ପୋଷ୍ଟ ଖାଲିଥିଲା। ସବ୍‌ଇନ୍‌ସପେକ୍ଟର, ଏଏସ୍‌ଆଇରେ ୧୫୦୦ରୁ ଅଧିକ ପୋଷ୍ଟ ଖାଲିଥିଲା। ଷ୍ଟେନୋମାନେ ୨୦ ବର୍ଷ ଚାକିରି କରି ମଧ୍ୟ ପ୍ରମୋଶନ ପାଉନଥିଲେ। ମୁଁ ସରକାରଙ୍କୁ ପ୍ରସ୍ତାବ ଦେଲି ଯେହେତୁ ଥାନାମାନଙ୍କର କାମ ବହୁତ ଗୁରୁତ୍ୱପୂର୍ଣ୍ଣ ହୋଇଗଲାଣି ପ୍ରତ୍ୟେକ ଥାନା ଦାୟିତ୍ୱରେ ଜଣେ ଇନ୍‌ସପେକ୍ଟର ରହନ୍ତୁ। ସର୍କଲ ଇନ୍‌ସପେକ୍ଟରଙ୍କ ସ୍ଥାନରେ ସର୍କଲ ଅଫିସର ହୋଇ ଡିଏସ୍‌ପିମାନେ ରହନ୍ତୁ। ମୁଖ୍ୟମନ୍ତ୍ରୀ ପ୍ରସ୍ତାବରେ ରାଜି ହେଲେ, ଫାଇଲ ଅର୍ଡ଼ର ହେଲା କିନ୍ତୁ ଅର୍ଥ ବିଭାଗ କହିଲା ଆମେ ନୀତିଗତ ଭାବେ ରାଜି ହେଲେ ମଧ୍ୟ ବର୍ତ୍ତମାନ ପଇସା ଯୋଗେଇ ହେବନାହିଁ। ବର୍ଷେ

ପରେ ଆମେ ଅର୍ଥ ଯୋଗାଣ କରିବୁ। ବର୍ଷେ ସ୍ଥାନରେ ସେମାନେ ୨ ବର୍ଷ ନେଲେ, ବୋଧହୁଏ ବେଶି ସମୟ ନେଇଥାନ୍ତେ କିନ୍ତୁ ଡି.ଜି. ଅମରାନନ୍ଦ ପଟ୍ଟନାୟକ ଓ ତାଙ୍କ ପରେ ଗୋପାଳଚନ୍ଦ୍ର ନନ୍ଦ ଲାଗିପଡ଼ି କାର୍ଯ୍ୟକାରୀ କରାଇଲେ।

ପୋଲିସରେ ଷ୍ଟେନୋମାନଙ୍କର ଅବସ୍ଥା ବହୁତ ଖରାପ, ତେଣୁ ପ୍ରସ୍ତାବ ଦେଲି ଯେ ପ୍ରତ୍ୟେକ ଡିଆଇଜିଙ୍କୁ ଜଣେ ପିଏ ଦିଆଯାଉ, ଆଇଜିଙ୍କୁ ପ୍ରାଇଭେଟ୍ ସେକ୍ରେଟେରୀ ଏବଂ ଷ୍ଟେନୋଗ୍ରାଫର ଓ ଡିଜିଙ୍କୁ ପ୍ରାଇଭେଟ୍ ସେକ୍ରେଟେରୀ ଓ ପିଏ ଦିଆଯାଉ। ସେକ୍ରେଟେରୀଏଟ୍‌ର ଜଣେ ଆଡ଼ିସନାଲ ସେକ୍ରେଟେରୀ ଯିଏକି ଡିଆଇଜିଙ୍କ ସମକକ୍ଷ ନୁହଁନ୍ତି ତାଙ୍କୁ ପ୍ରାଇଭେଟ୍ ସେକ୍ରେଟେରୀ ଓ ପିଏ ମିଳେ କିନ୍ତୁ ଡିଆଇଜିଙ୍କୁ ମିଳେ ଷ୍ଟେନୋଗ୍ରାଫର। ମୋ' ପ୍ରସ୍ତାବରେ ହୋମ୍ ସେକ୍ରେଟେରୀ ରାଜି ହେଲେ ମଧ୍ୟ ବହୁତ ବାଧା ହେଲା। ପରେ ଡି.ଜି ଅମରାନନ୍ଦ ପଟ୍ଟନାୟକ ଏହାକୁ କାର୍ଯ୍ୟକାରୀ କରିବାକୁ ଲାଗିଗଲେ ଓ ଡି.ଜି ପ୍ରକାଶ ମିଶ୍ରଙ୍କ ସମୟରେ ତାହା ଆଂଶିକ ଭାବେ ସଫଳ ହେଲା।

ବେଳେ ବେଳେ ଏମିତି ହୁଏ ଯେ ଜଣେ ଟାଙ୍ଗି ଟାଙ୍ଗି ଖରାରେ ଜମି ସମତଳ କରେ, ଗୋଡ଼ି ପଥର ବାଛେ, ଲଙ୍ଗଳ ବୁଲାଏ ଓ ସମୟ ଦେଖି ବିହନ ବୁଣେ। ତା'ପରେ ଆଉ ଜଣେ କଷ୍ଟ କରି ଫସଲକୁ ବଢ଼ାଏ, ପାଣି ଓ ସାର ଦିଏ କିନ୍ତୁ ତା' ସମୟ ସରିଯାଏ ଶସ୍ୟ ହେଲା ବେଳକୁ। ତା'ପରେ ଧାନ କଟା ବେଳକୁ ଦା' ଧରି ପହଞ୍ଚି ଯାଆନ୍ତି ବହୁତ ଜଣ। ସବୁ ବିଭାଗରେ ଏଇଭଳି ହୁଏ। କାମ କରନ୍ତି କେତେ ଜଣ, ନାହିରେ ତେଲ ଦେଇ ଶୁଅନ୍ତି ବାକି ସବୁ। କାମର ପରିଣତି ଯଦି ଭୁଲ ବାଟରେ ଗଲା (ସବୁ ନିଷ୍ପତ୍ତି ଯେ ଠିକ୍ ହେବ ତା'ର କୋଉ ଗ୍ୟାରେଣ୍ଟି ଅଛି ?) ତେବେ ଶୋଇଥିବା ବ୍ୟକ୍ତି ଉଠିପଡ଼ି ରଡ଼ି ଛାଡ଼ିବେ। କିନ୍ତୁ ଯଦି ସଫଳ ହେଲା, କିଆରିରେ ଧାନ ପାଚିଲା ତେବେ ସେଇମାନେ ପ୍ରଥମେ ପହଞ୍ଚିଯିବେ ଧାନ କାଟିବା ପାଇଁ।

ମୁଁ ଭିଜିଲାନ୍‌ସର ମୁଖ୍ୟ ଥିଲା ବେଳେ ମୁଖ୍ୟମନ୍ତ୍ରୀଙ୍କୁ ଆମ ଚାକିରି ପ୍ରତି ହୋଇଥିବା ଅନ୍ୟାୟ ବିଷୟରେ କହିଥିଲି। ମୋ' ସାଙ୍ଗରେ ସବୁବେଳେ ରହୁଥିଲେ ଗୋପାଳ ନନ୍ଦ ଓ ପ୍ରକାଶ ମିଶ୍ର। ମୁଖ୍ୟମନ୍ତ୍ରୀ ଅଧିକ ପୋଷ୍ଟ କାଳେ କରିଦେବେ ସେଇ ଆଶଙ୍କାରେ ଜଣେ ସିନିୟର ଆଇପିଏସ୍ ଅଫିସର ଅଚ୍ଛ କେତେକ ପତ୍ର ପତ୍ରିକା ମାଧ୍ୟମରେ ଅପପ୍ରଚାର ଚଳେଇଲେ ଯେ କୋଟି କୋଟି ଟଙ୍କା ନଷ୍ଟ ହେବାକୁ ଯାଉଛି ଯଦିବା ପ୍ରକୃତ ଖର୍ଚ୍ଚ ପ୍ରାୟ ୨ ଲକ୍ଷରେ ସୀମିତ ଥିଲା। ତାଙ୍କୁ ଦୁଇ ତିନି ଜଣ ଆମଠାରୁ ଜୁନିୟର ଆଇପିଏସ୍ ଅଫିସର ସହଯୋଗ କରୁଥିଲେ। ଏମାନେ ମୂର୍ଖ ନୁହଁନ୍ତି। ତାଙ୍କ ହିସାବ ଥିଲା ଯେ ଯଦି ମୁଁ ଓ ଗୋପାଳ ନନ୍ଦ ସଫଳ ହେବୁ, ତେବେ ସୁଫଳ ସେମାନେ ମଧ୍ୟ ଉପଲବ୍ଧ କରିବେ। କିନ୍ତୁ ସଫଳ ହେଉ କି ବିଫଳ ହେଉ ଡି.ଜି. ପଦବୀରୁ ତଡ଼ା

ଖାଇ ଯାଇଥିବା ଅଫିସରଙ୍କର ସଦିଚ୍ଛା ହାସଲ କରିଥିଲେ ଭବିଷ୍ୟତରେ ତାହା କାମରେ ଆସିବ। କାରଣ ସେ ଭଦ୍ରଲୋକଙ୍କର ଡି.ଜି. ପୋଲିସ ହୋଇ ଫେରି ଆସିବାର ଆଶା ପ୍ରବଳ ଥିଲା। ମୋର ମନେପଡ଼େ ଦିନେ ଛୁଟି ନେଇ ଯାଇଥିଲି ହାଇଦ୍ରାବାଦ ପୁଅ ବୋହୂଙ୍କୁ ଦେଖିବା ପାଇଁ, ଗୋପାଳ ନନ୍ଦ ଫୋନ୍ କରିବାରୁ ମୁଁ ଛୁଟି କାଟି ଫେରି ଆସିଲି ଓ ମୁଖ୍ୟମନ୍ତ୍ରୀ ଓ ମୁଖ୍ୟ ସଚିବଙ୍କୁ ଦେଖାକଲି ଓ ସେଇଦିନ ଆଦେଶ ମିଳିଲା। ନ ଆସିଥିଲେ ସେଦିନ ଫାଇଲ୍ ଅର୍ଥ ବିଭାଗକୁ ଯାଇଥାନ୍ତା ଓ ବର୍ଷ ବର୍ଷ ଧରି ଫେରିନଥାନ୍ତା। ଡେରି କରିବାର ରଣନୀତି କେତେଜଣ ଆଇଏଏସ୍ ଓ ଆଇପିଏସ୍ ଅଫିସର କରିଥିଲେ। ଦ୍ୱିତୀୟରେ ଗୁପ୍ତ ଚରିତ୍ର ପଞ୍ଜିକା ଲେଖିବା। ଡି.ଜି.ଙ୍କର ପାହ୍ୟା ହୋମ୍ ସେକ୍ରେଟେରୀଙ୍କ ଉପରେ ଦରମା ମଧ ବେଶୀ। ଡିଜି ଜଣଙ୍କର ଚରିତ୍ର ପଞ୍ଜିକା ଲେଖିବା ପରେ ତହିଁ ଉପରେ, ହୋମ୍ ସେକ୍ରେଟେରୀ ମନ୍ତବ୍ୟ ଦେବା ଅନୁଚିତ ଏବଂ ଡି.ଜି.ଙ୍କ ପାଇଁ ଅପମାନ ଭଳି। ସେଇଭଳି ଏସ୍‌ପିଙ୍କ ସିସିଆର ଡିଆଇଜି କଲେକ୍ଟର ଲେଖିବା ପରେ କମିଶନର ଲେଖିବାର କିଛି ଆବଶ୍ୟକତା ନାହିଁ। କମିଶନରମାନେ ବର୍ଷ ବର୍ଷ ଧରି ସିସିଆର ପକେଇ ରଖୁଥିଲେ, ଡି.ଜିଙ୍କ ଅବସରକୁ ଅନେଇ ରହୁଥିଲେ। ତାହା କହିବା ଦ୍ୱାରା ତାଙ୍କ ମନ୍ତବ୍ୟ ଶେଷ ମନ୍ତବ୍ୟ ହୋଇ ରହୁଥିଲା। ଏ ସମ୍ପର୍କରେ ମୁଖ୍ୟମନ୍ତ୍ରୀଙ୍କ ସଙ୍ଗରେ ମିଟିଂ ହୋଇଥିଲା, ହୋମ୍ ସେକ୍ରେଟେରୀ ତରୁଣକାନ୍ତି ମିଶ୍ର ବିରୋଧ କଲେ। ଶେଷରେ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଫାଇଲ୍ ଗଲା ଓ ଦିନେ ମୁଖ୍ୟମନ୍ତ୍ରୀଙ୍କ ସେକ୍ରେଟେରୀ ମୋତେ ଫୋନ୍ କରିବାରୁ ଆଲୋଚନା କଲି। ହୋମ୍ ସେକ୍ରେଟେରୀ ଓ କମିଶନରଙ୍କ ଭୂମିକାକୁ ଉଠେଇ ଦିଆଗଲା। ଯଦିବା ଦୁଇଜଣ ହୋମ୍ ସେକ୍ରେଟେରୀଙ୍କ ପାଇଁ ମୋ' ଗୁପ୍ତଚରିତ୍ର ପଞ୍ଜିକା ନଷ୍ଟ ହେବାରୁ ବଞ୍ଚିଗଲା ମୁଁ ଏହାକୁ ଏକ ନୀତିଗତ ପ୍ରଶ୍ନ ଭାବେ ଗ୍ରହଣ କରିଥିଲି। ଏ ଦୁଇଟି ବିଷୟରେ ହାସ୍ୟାସ୍ପଦ କଥା ହେଉଛି ଯେ ପଦବୀ ସୃଷ୍ଟିକୁ ଗୁପ୍ତ ଭାବେ ବିରୋଧ କରୁଥିବା ଓ କୌଣସି ମିଟିଂକୁ ନ ଯାଉଥିବା, ଗୁପ୍ତ ଚରିତ୍ର ପଞ୍ଜିକାକୁ ସଂଶୋଧନ କରିବାକୁ ପ୍ରୟାସ କରିନଥିବା ଜଣେ ଅଫିସର (ପରେ ଡି.ଜି ହେଲେ) କହି ବୁଲିଲେ ଯେ ଏସବୁ ତାଙ୍କ ପାଇଁ ସମ୍ଭବ ହେଲା। ଡି.ଜି ପଦରୁ ଅବ୍ୟାହତ ପାଇବା ପରେ ତାଙ୍କ ବିଷୟରେ କିଛି ଶୁଣାଗଲା ନାହିଁ।

ପୋଲିସରେ ଏକ ସଂଜ୍ଞା ଥିଲା ମହିଳା ପୋଲିସ, ମହିଳା ସବ୍‌ଇନ୍‌ସପେକ୍ଟର ଇତ୍ୟାଦି। ସରକାରୀ ଆଦେଶରେ ମଧ ମହିଳା ସବ୍‌ଇନ୍‌ସପେକ୍ଟର ଲେଖାଯାଉଥିଲା। ଏ ଲିଙ୍ଗ ବୈଷମ୍ୟକୁ ଉଠାଇବା ପାଇଁ ଆଦେଶ ଦେଲି ଓ ଏଣିକି ମହିଳା ସବ୍ ଇନ୍‌ସପେକ୍ଟର ସଂଯୁକ୍ତା ମହାନ୍ତି ପରିବର୍ତ୍ତେ ସବ୍‌ଇନ୍‌ସପେକ୍ଟର ସଂଯୁକ୍ତା ମହାନ୍ତି ହେଲା। କେବଳ ସବ୍ ଇନ୍‌ସପେକ୍ଟର ନୁହେଁ ମହିଳା ଡିଏସ୍‌ପି ଓ ମହିଳା ଇନ୍‌ସପେକ୍ଟରର ସଂଜ୍ଞା ମଧ ଉଠିଗଲା।

ମୋର ଯୁକ୍ତି ଥିଲା ଯେ ଯଦି ମହିଳା ଏସ୍‌ପି, ମହିଳା କଲେକ୍ଟର, ମହିଳା ବିଡ଼ିଓ ଲେଖାଯାଉ ନାହିଁ ତାହେଲେ କାହିଁକି ମହିଳା ସବ୍‌ଇନ୍‌ସପେକ୍ଟର ଲେଖାହେବ ? ଏ ଆଦେଶ ବାହାରିବା ପରେ ମୋତେ ଅନେକ ମହିଳା ଅଫିସର ଆସି ଧନ୍ୟବାଦ ଜଣେଇଲେ। ଏକ ଗୁରୁତ୍ୱପୂର୍ଣ୍ଣ ସାମାଜିକ ସଂଗଠନର ମୁଖ୍ୟ ଦେଖାକରି ଧନ୍ୟବାଦ ଜଣାଇବା ସଙ୍ଗେ ସଙ୍ଗେ ପ୍ରସ୍ତାବ ଦେଲେ ଯେ ଅନେକ ସମୟରେ ରୂପଜୀବିମାନେ ଗିରଫ ହେଉଛନ୍ତି। ତାଙ୍କ ସାଙ୍ଗରେ ତଥାକଥିତ 'ରାଣୀ ମାଛି'ଙ୍କୁ ମଧ ଥାନାକୁ ନିଆଯାଉଛି; ଯଦିବା ସେମାନଙ୍କ ନାଁ ଗୁପ୍ତ ରଖାଯାଉଛି ଗାଁ ଓ ସହର ନାଁ ଗଣମାଧମରେ ଦିଆଯାଉଛି। ଏତଦ୍ୱାରା ଉକ୍ତ ଗାଁ ଏବଂ ସହରର ବଦନାମ ହେଉଛି ଓ ଝିଅମାନଙ୍କର ବିବାହରେ ପ୍ରତିବନ୍ଧକ ସୃଷ୍ଟି ହେଉଛି। ମୁଁ ଦେଖିଲି ଭଦ୍ରମହିଳା ଠିକ୍ କହୁଛନ୍ତି। ତେଣୁ ଆଦେଶ ଗଲା ଯେ ଏଣିକି ସେମାନଙ୍କ ଗାଁ ଏବଂ ଠିକଣା କୁହାଯିବ ନାହିଁ। କେତେକ ଛୋଟ କାଗଜର ସାମ୍ବାଦିକ ଏ ଆଦେଶକୁ ଗଣମାଧମର ସ୍ୱାଧୀନତା ଉପରେ ହସ୍ତକ୍ଷେପ ବୋଲି କହି ପ୍ରତିବାଦ କଲେ। କିନ୍ତୁ ସେ ପ୍ରତିବାଦର କୌଣସି ପ୍ରଭାବ ପଡ଼ିଲା ନାହିଁ।

ଥାନାରେ କେସ୍ ରୁଜୁ ହୁଏ ନାହିଁ ବୋଲି ଅଭିଯୋଗ ହୁଏ। ତେଣୁ ମୁଁ ଖବର କାଗଜ ମାଧମରେ ଜଣେଇଲି ଯେ ଆଇନ୍ କହୁଛି ଯଦି ଥାନା ଅଫିସର କେସ୍ ରୁଜୁ ନ କରନ୍ତି ଲିଖିତ ଅଭିଯୋଗ ରେଜେଷ୍ଟ୍ରି ଚିଠି ଦ୍ୱାରା ଜିଲ୍ଲା ଏସ୍‌ପିଙ୍କୁ ଜଣାଇଲେ ସେ କେସ୍ ରୁଜୁ କରିବା ପାଇଁ ଆଦେଶ ଦେବେ। ଯଦି କେହି ତ୍ରୁଟି କରନ୍ତି, ତେବେ ଯେକୌଣସି ଭଦ୍ରଲୋକ ଭଦ୍ରମହିଳା ମୋତେ ସିଧାସଳଖ ଦରଖାସ୍ତ ପଠେଇବେ। କେସ୍ ରୁଜୁ କରାଯିବ ଏବଂ ସମ୍ପୃକ୍ତ ଅଫିସରଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ। ଏସବୁ ସତ୍ତ୍ୱେ ବେଶି କିଛି ଚିଠି ମୁଁ ପାଇନାହିଁ କାରଣ ନିରାଶ ହୋଇଥିବା ଅଭିଯୋଗକାରୀ ଏସ୍‌ପିଙ୍କୁ ଚିଠି ଲେଖିଲେ।

ପାଠକମାନେ ମନେ ପକେଇପାରନ୍ତି ୨୦୦୫ ମସିହା ପୂର୍ବର ଟ୍ରାଫିକ୍ ପୋଲିସଙ୍କ ପୋଷାକ। ଖାକି ପୋଷାକ ଓ ମୁଣ୍ଡରେ ପ୍ରାୟ ତିନି କେଜି ଓଜନର ହେଲମେଟ୍। ଟ୍ରାଫିକ୍ ପୋଲିସ୍ ଥାନା ପୋଲିସ ଠାରୁ ଅଲଗା ଦିଶିବା କଥା ଏବଂ ତାଙ୍କ ଡ୍ରେସ୍ ସାଧାରଣ ପୋଲିସ ଡ୍ରେସ୍ ଠାରୁ ଅଧିକ ସୁନ୍ଦର ଦିଶିବା ଉଚିତ। ଯେକୌଣସି ପର୍ଯ୍ୟଟକ (ଦେଶୀ ଓ ବିଦେଶୀ)ଙ୍କ ଦୃଷ୍ଟିରେ ପଡ଼େ ଟ୍ରାଫିକ୍ ପୋଲିସ ଓ ଗାଁ ପରିମଳ ଧୋବା ତୁଠରୁ ଜଣାପଡ଼ିବା ପରି ଟ୍ରାଫିକ୍ ପୋଲିସର ପୋଷାକ ଓ ଦକ୍ଷତାକୁ ଦେଖି ପୋଲିସର ଦକ୍ଷତା ଉପରେ ଧାରଣା ହେବ। ଆଡ଼ିସ୍‌ନାଲ ଡି.ଜି ଅମରାନନ୍ଦ ପଟ୍ଟନାୟକ ଓ କେତେଜଣ ଅଫିସରଙ୍କୁ ପଚାରି ନେଭି ବ୍ଲୁ ପ୍ୟାଣ୍ଟ, ଧଳା ଫୁଲ୍ ସାର୍ଟ, ହାତରେ ଗ୍ଲୋଭସ୍ କଳା ଚଷମା ଓ ହାଲ୍‌କା ଟୋପି ଦିଆଗଲା। ସେମାନଙ୍କୁ ଆଉ ଖରା ବାଧିଲା

ନାହିଁ। ହଠାତ୍ ଗୋଟିଏ ଦିନ ସର୍ବସାଧାରଣ ଦେଖିଲେ ଯେ ନୂଆ ପୋଷାକରେ ଟ୍ରାଫିକ୍ ପୋଲିସ ଠିଆ ହୋଇଛନ୍ତି ଓ ଅନେକ ଭଦ୍ରବ୍ୟକ୍ତି ଫୋନ୍‌କରି ଆନନ୍ଦ ଓ ଆଶ୍ଚର୍ଯ୍ୟ ପ୍ରକାଶ କଲେ।

ଦିନେ ଜଣେ ଭଦ୍ରମହିଳା ମୋତେ ଦେଖାକରି ଅଭିଯୋଗ କଲେ ଯେ ତାଙ୍କ ପୁଅ ପାଇଁ ଭଲ ବୋହୂ ମିଳୁନାହିଁ। ମୁଁ କ'ଣ କରିବି, ମୁଁ ତ ପୁରୋହିତ ନୁହେଁ କି ମଧ୍ୟସ୍ଥି ନୁହେଁ। କିନ୍ତୁ ତାଙ୍କୁ ପୁଣି କହିବା ପାଇଁ ଦେଲି। ତାଙ୍କ ପୁଅ ଓଏସ୍‌ଏପିରେ ଜମାଦାର। ଓଏସ୍‌ଏପି ବ୍ୟାଟାଲିୟନର ମୁଖ୍ୟ ହେଲେ କମାଣ୍ଡାଣ୍ଟ। ତାଙ୍କ ତଳକୁ ଡ଼େପୁଟି କମାଣ୍ଡାଣ୍ଟ, ଆସିଷ୍ଟାଣ୍ଟ କମାଣ୍ଡାଣ୍ଟ, ସୁବେଦାର ମେଜର ଓ ସୁବେଦାର। ସୁବେଦାର ତଳକୁ ହେଲେ ଜମାଦାର। ସୁବେଦାର, ଜମାଦାର ଏସବୁ ହେଲା ପାର୍ସୀ ଶବ୍ଦ। ଦାୟିତ୍ୱରେ ଥିବା ଅଫିସରକୁ ଜିମେଦାର କୁହାଯାଉଥିଲା, ସେଇଠୁ ଅପଭ୍ରଂଶ ହୋଇଗଲା ଜମାଦାର। କିନ୍ତୁ ଅନେକ ଲୋକ ବୁଝିଲେ ଯେ ଜମାଦାର ହେଉଛି ମେହେନ୍ତର କିମ୍ବା ସିନିୟର ପିଅନ। ଯଦିବା ଜମାଦାର ସବ୍‌ଇନ୍ସପେକ୍ଟର ଓ ସର୍ଜେଣ୍ଟ ଗୋଟିଏ ପରୀକ୍ଷା ମାଧ୍ୟମରେ ମୁକରିର୍ ହୁଅନ୍ତି ବହୁତ ଲୋକ ଜମାଦାରଙ୍କୁ ଜଣେ ସିନିୟର ପିଅନ କିମ୍ବା ମେହେନ୍ତର ଭାବୁଥିବାରୁ ସେମାନଙ୍କ ସାମାଜିକ ଭାବମୂର୍ତ୍ତି କମ୍ ଥିଲା। ତେଣୁ ସରକାରଙ୍କୁ ପ୍ରସ୍ତାବ ଦେଲି ଯେ ଏହି ପାହ୍ୟାକୁ ଜମାଦାର କୁହାନଯାଇ ଡେପୁଟି ସୁବେଦାର କୁହାଯାଉ। କିଛି ମାସ (ମୁଁ ଅବସର ନେବା ପରେ) ପରେ ସେ ଭଦ୍ରମହିଳା ନିମନ୍ତ୍ରଣ କାର୍ଡ଼ଟିଏ ଧରି ଆସିଲେ ଏବଂ ପୁଅର ବାହାଘର ପାଇଁ ନିମନ୍ତ୍ରଣ ଜଣେଇଲେ। ସେ ବିଧବା ମହିଳାଙ୍କର କୃତଜ୍ଞତାପୂର୍ଣ୍ଣ ଚାହାଣୀ ଭୁଲିବାର ନୁହେଁ।

ପାଠକମାନେ ଲକ୍ଷ୍ୟ କରିଥିବେ ଯେ, ବହୁତ ପୋଲିସ୍ ଅଫିସରଙ୍କ ପେଟ ଆଗେ ଆଗେ ଚାଲେ ଓ ସେମାନେ ପଛେ ପଛେ। ଥାନାରେ ବାର ଚଉଦ ଘଣ୍ଟା ବସି ଚା ଜଳଖିଆ ଖାଇବା, ମଝିରେ ମଝିରେ ଢ଼ାବା ଖାଦ୍ୟ ଖାଇବାର ପରିଣାମ ସେମାନେ ଭୋଗୁଥିଲେ। ବହୁତ ପୋଲିସ ଅଫିସରଙ୍କର ଉଚ୍ଚ ରକ୍ତଚାପ ଓ ମଧୁମେହ ବେମାରୀ ହେଉଛି। ତା'ର କାରଣ ହେଉଛି ଅହିତକାରୀ ଜୀବନଯାପନ ପ୍ରଣାଳୀ। ମୁଁ ଆଦେଶ ଦେଲି ଯେ ଯେଉଁମାନେ ଅତ୍ୟଧିକ ମୋଟା ସେମାନଙ୍କୁ ଥାନା ଏବଂ ଟ୍ରାଫିକ୍‌ରୁ ତଡ଼ିଦିଆଯାଉ। ଅଧିକାଂଶ ପୋଲିସ ଅଫିସରଙ୍କ ମନ ଥାନା ଓ ଟ୍ରାଫିକ୍‌ରେ। ତେଣୁ ମୋଟାପଣିଆ କାହିଁକି ପ୍ରତିବନ୍ଧକ ହେବ? ମାସେ ସମୟ ଦିଆଗଲା। ବହୁତ ପୋଲିସ ଅଫିସର ସକାଳୁ ଦୌଡ଼ିବା ଓ ବ୍ୟାୟାମ କରିବା ଦେଖାଗଲା। ଏ ଖବର ଗଣମାଧ୍ୟମରେ ପ୍ରଚାରିତ ହେବାରୁ ମୋ' ଆଦେଶର କପି ରାଜସ୍ଥାନ, ମହାରାଷ୍ଟ୍ର ଓ ଅନ୍ୟ କେତେକ ପ୍ରଦେଶର ପୋଲିସ ମଗେଇଲେ ଓ ତାଙ୍କ ପ୍ରଦେଶରେ ପ୍ରଚଳନ କଲେ। ଏ ବିଷୟରେ

ଏକ କୌତୂହଳପୂର୍ଣ୍ଣ କଥା ଅଛି । ମୋ' ଝିଅ ରହେ ବମ୍ବେରେ ଓ ମୁଁ ବର୍ଷକେ ଥରେ ଯାଏ । ସକାଳୁ ପ୍ରାତଃ ଭ୍ରମଣ କରିବା ସମୟରେ ଦେଖିଲି ଜଣେ ଭଦ୍ରଲୋକ ଦୌଡୁଛନ୍ତି । ପେଟ ବେଶ ମୋଟା କିନ୍ତୁ ହେୟାର ଷ୍ଟାଇଲରୁ ଜଣାପଡୁଛି ପୋଲିସ ଅଫିସର । ସକାଳୁ ଦୌଡ଼ିବାର କାରଣ ପଚାରିବାରୁ ସେ କହିଲେ "କ'ଣ କହିବି ଆମ ଡିପାର୍ଟମେଣ୍ଟ କଥା ଏଇଭଳି । କିଛି ନବୁଝି ଆଦେଶଟେ ଦେଇଦେବେ । ଓଡ଼ିଶାର କିଏ ଜଣେ ପାଗଳ ଡି.ଜି ଥିଲା ସେ ଆଦେଶ ଦେଲା ଯେ ମୋଟା ଲୋକଙ୍କୁ ଥାନାରେ ଟ୍ରାଫିକ୍‌ରେ ପୋଷ୍ଟିଂ ହେବନାହିଁ ଓ ଯେଉଁମାନେ ଅଛନ୍ତି ଯଦି ମାସକ ମଧ୍ୟରେ ଓଜନ ନ କମାନ୍ତି ତାଙ୍କୁ ବାହାର କରିଦିଆଯିବ । ଆମ ପୋଲିସ ସେଇଭଳି ଆଦେଶ ଦେବେ ବୋଲି ଶୁଣାଯାଉଛି ଓ ମୋତେ ଆମ ଏସ୍‌ପି କହିଛନ୍ତି ଏବେଠୁ ଓଜନ କମେଇବା ପାଇଁ । ଆପଣ କହିଲେ ଖାଲି କ'ଣ ଆମ ଓଜନ କମିବ ? ଆଇପିଏସ୍ ଅଫିସରଙ୍କର ଓଜନ କମିବ ନା ନାହିଁ । ଯେଉଁ ଜିଲ୍ଲାରେ ଥାନା ଅଫିସରମାନେ ପତଳା ସେଠି ମୋଟା ଏସ୍‌ପି କାହିଁକି ପୋଷ୍ଟିଂ ହେବେ ?" ସେ ଠିକ୍ କହୁଥିଲେ । ସେ ସମୟରେ ମୋର ସରକାରଙ୍କୁ ପ୍ରସ୍ତାବ ଦେବା ଉଚିତ୍ ଥିଲା ଯେ ଜିଲ୍ଲା ପୋଲିସ୍‌ରେ ସିନିୟର ଅଫିସରମାନଙ୍କୁ ମଧ୍ୟ ପତଳା ହେବା ପାଇଁ ବାଧ୍ୟ କରାଯାଉ । ମୋର ଆଦେଶ ଅନେକ ତଳିଆ କର୍ମଚାରୀଙ୍କୁ କ୍ଷୁବ୍ଧ କରିଥିଲା କିନ୍ତୁ ପରେ ସେମାନେ ବୁଝିଲେ ଏହା ସେମାନଙ୍କ ହିତ ପାଇଁ କରାଯାଇଥିଲା ।

ଥାନାରେ କେବଳ ପତଳା ଅଫିସର ପୋଷ୍ଟିଂ ହୁଅନ୍ତୁ ସେଥିରେ କଥାକୁ ସୀମିତ ରଖିବା ଉଚିତ୍ ନୁହେଁ । ମୋ' ସମୟରେ ସବ୍‌ଇନ୍‌ସପେକ୍ଟର, ଏଏସ୍‌ଆଇ ପଦବୀରେ ପ୍ରାୟ ୧୫୦୦ ସ୍ଥାନ ଖାଲି ଥିଲା । ବିଭିନ୍ନ କାରଣରୁ ପରୀକ୍ଷା ହୋଇପାରିନଥିଲା । ଭାରତରେ ଲକ୍ଷେ ଲୋକରେ ୧୨୧ ଜଣ ପୋଲିସ । କିନ୍ତୁ ଓଡ଼ିଶାରେ ୯୫ ସେଥିରେ ପୁଣି ଅନେକ ସ୍ଥାନ ଖାଲି କାମ କେମିତି ହେବ ? ପୋଲିସର ବିଫଳତା ବିଷୟରେ ବହୁତ ଆଲୋଚନା ହୁଏ, ସମସ୍ୟା ଉପରେ ବହୁତ କମ୍ କଥାବାର୍ତ୍ତା ହୁଏ ପୋଲିସରେ ସଂସ୍କାର ଆଣିବା ପାଇଁ । ଅନେକ କମିଶନ କମିଟି ରିପୋର୍ଟ ଦେଲାଣି କିନ୍ତୁ ନେତା, ପ୍ରଶାସନିକ ଅଧିକାରୀ ଚାହାଁନ୍ତି ନାହିଁ ସଂସ୍କାର ହେଉ । ପୋଲିସ୍‌କୁ ହାତରୁ ଛାଡ଼ିବା ପାଇଁ କେହି ରାଜି ନୁହଁନ୍ତି । କଥାକଥାକେ ଏମଏଲଏ କହନ୍ତି ମୋ' ଇନ୍‌ସପେକ୍ଟର, ମୋ ଡିଏସ୍‌ପି । ସୁପ୍ରିମ୍‌କୋର୍ଟଙ୍କ ଆଦେଶ (୨୦୦୬) ମିଳିବା ସତ୍ତ୍ୱେ ଗଲା ଆଠ ବର୍ଷ ହେଲା ବିଭିନ୍ନ ରାଜ୍ୟ ସରକାର ସଂସ୍କାର ରାସ୍ତାରେ ଯେତେ ପ୍ରକାର ହମ୍ପ ତିଆରି କରାଯାଇପାର କରୁଛନ୍ତି ।

ସରକାର ସଂସ୍କାର ଯେବେ କରୁଛନ୍ତି କରୁଥାନ୍ତୁ କିନ୍ତୁ ଆମ ହାତରେ ଅନେକ କଥା ଅଛି ଯାହା ଆମେ କରିପାରିବୁ । ମୁଁ ଯେତିକି ପରିବର୍ତ୍ତନ କଲି ସେଥିପାଇଁ ଆଇନର ଆବଶ୍ୟକତା ନଥିଲା । ସେଇ ପରିବର୍ତ୍ତନ ଯୋଜନାରେ ରଖିଲି ଥାନା ପୋଲିସଙ୍କର

ପୋଷାକ ପରିବର୍ତ୍ତନ। ୧୮୪୮ ମସିହାରେ ସୈନ୍ୟବାହିନୀରେ ଖାକି ପୋଷାକ ପିନ୍ଧା ହେଲା ଓ ସେଇ ପୋଷାକ ପୋଲିସରେ ମଧ୍ୟ ପିନ୍ଧାହେଲା। ରାଜସ୍ଥାନରେ ଥିବା ସୈନ୍ୟବାହିନୀକୁ ଛାଡ଼ିଦେଲେ ବାକି ସବୁ ସୈନ୍ୟବାହିନୀ ଅଲିଭ୍ ଗ୍ରୀନ୍ ପୋଷାକ ପିନ୍ଧୁଛନ୍ତି କିନ୍ତୁ ପୋଲିସ ସେଇ ଖାକିରେ ରହିଛି। ବିଭିନ୍ନ ଅର୍ଦ୍ଧସାମରିକ ବାହିନୀ, କମ୍ପାନୀର ସୁରକ୍ଷା ବାହିନୀ, ବେସରକାରୀ ସୁରକ୍ଷା ବଳ ମଧ୍ୟ ଖାକି ପିନ୍ଧୁଛନ୍ତି। କିଏ ପୋଲିସ ଓ ପୋଲିସ ନୁହେଁ ତାହା ଜାଣିବା କଷ୍ଟ। ତା'ଛଡ଼ା ଇତିହାସ ଖାକି ବିରୁଦ୍ଧରେ। ଅସହଯୋଗ ଆନ୍ଦୋଳନକାରୀଙ୍କ ଉପରେ ଲାଠିଚାର୍ଜ କରିବା, ଗୁଳିମାଡ଼ କରିବା, ଗିରଫ କରିବା କାର୍ଯ୍ୟ କରୁଥିଲେ ଖାକି ପିନ୍ଧା ପୋଲିସ (ଯଦିବା ମାଜିଷ୍ଟ୍ରେଟଙ୍କ ଆଦେଶରେ)। ସ୍ୱାଧୀନତା ପରେ ମାଜିଷ୍ଟ୍ରେଟ୍‌ମାନେ (ଅଧିକାଂଶ ଆଇସିଏସ୍) ସରକାରଙ୍କର 'ଭଲପିଲା' ହୋଇଗଲେ। ଆଦେଶ ଦେଲେ ସେମାନେ ନିନ୍ଦିତ ହେଲା ପୋଲିସ ଓ ତା' ସଙ୍ଗରେ ଖାକି। ପୋଲିସ ଜନସାଧାରଣଙ୍କୁ ନିୟନ୍ତ୍ରଣ କରିବା ପାଇଁ ନାହିଁ ସେବା କରିବା ପାଇଁ ଅଛି। ନିୟନ୍ତ୍ରଣ କରିବ ଅସାମାଜିକ ବ୍ୟକ୍ତିଙ୍କୁ। ଭୟଜାତ କରିବା ପୋଲିସର ଲକ୍ଷ୍ୟ ହେବା ଉଚିତ ନୁହେଁ। ପୋଲିସକୁ ଭୟ କରିବା ଉଚିତ୍ କେବଳ ଅସାମାଜିକ ବ୍ୟକ୍ତି, ଚୋର ଓ ଖଣ୍ଡ। ସର୍ବସାଧାରଣଙ୍କ ଠାରୁ ଦୂରତା କମେଇବା ପାଇଁ ପ୍ରଥମ ପଦକ୍ଷେପ ସ୍ୱରୂପ ଖାକି ପୋଷାକର ପରିବର୍ତ୍ତନ କଥା ମୁଁ ଚିନ୍ତା କଲି। ଅଳ୍ପ କେତେଜଣ ସିନିୟର ଅଫିସରଙ୍କୁ ପଚାରି ବିଭିନ୍ନ ରକମର ପୋଷାକ ମଗେଇ କେତେଜଣ କନେଷ୍ଟବଳଙ୍କ ଫଟୋ ଉଠାଗଲା। ଉଦ୍ଦେଶ୍ୟ ଥିଲା ଯେ ସରକାରଙ୍କୁ ପ୍ରସ୍ତାବ ସହିତ ବିଭିନ୍ନ ଫଟୋ ଦେବା ଓ ମଞ୍ଜୁର କରେଇବା। କିଏ ଜଣେ ଗୁପ୍ତରେ ଏକଥା ଗଣମାଧ୍ୟମକୁ କହିଦେଲା (ବିଭାଗରେ ଏଭଳି ଅନେକ ଭଦ୍ର ବ୍ୟକ୍ତି ଅଛନ୍ତି) ଓ ଏକ ପ୍ରମୁଖ ଖବରକାଗଜରେ ବିରାଟ ଆଲେଖ୍ୟ ବାହାରିଲା ଓ ସେଥିରେ ଲେଖାଥିଲା ଯେ ବଡ଼ ବଡ଼ ଅଫିସରମାନେ କମିଶନ ପାଇବା ପାଇଁ ଏଭଳି କାର୍ଯ୍ୟ କରୁଛନ୍ତି। କୁତ୍ସିତ ମାନସିକତା।

ପୋଲିସ ହେଲା ସରକାରଙ୍କର ମୁଖ୍ୟ ଅସ୍ତ୍ର। ଇତିହାସ ପୋଲିସ ବିପକ୍ଷରେ କାରଣ ପୋଲିସକୁ ସ୍ୱାଧୀନତା ଆନ୍ଦୋଳନ ବିରୁଦ୍ଧରେ ଲଗାଯାଇଥିଲା। ଯେଉଁ ନେତାମାନେ ଇଂରେଜ ସରକାର ପୋଲିସ୍ ଅପବ୍ୟବହାର କରୁଛି ବୋଲି ପ୍ରଚାର କରୁଥିଲେ, ସ୍ୱାଧୀନତା ପାଇବାର ଅଳ୍ପ କେତେ ବର୍ଷ ପରେ ସେଇ ନେତାମାନେ ପୋଲିସ୍‌ର ଅପପ୍ରୟୋଗ କଲେ। କ୍ଷମତାର ଲୋଭ ଓ ପୋଲିସ୍‌କୁ ଅପବ୍ୟବହାରର ଲୋଭ କେହି ଛାଡ଼ିପାରିଲେ ନାହିଁ। ଅନେକ ପୋଲିସ୍ ଅଫିସ୍‌ର ତଥା ପୋଲିସ୍ ମୁଖ୍ୟ ଏହାର ବିରୋଧ କରି ଅପ୍ରିୟ ହୋଇଛନ୍ତି। ଶାସକଙ୍କୁ ଦରକାର ଚଟୁକାର, ଯେଉଁମାନେ ଇଙ୍ଗିତ ପାଇଲା ମାନେ କାମ କରିଯିବେ, ପ୍ରଶ୍ନ ପଚାରିବେ ନାହିଁ।

'ସୁଲଭ ପୁରୁଷ ରାଜନ୍ ସତତଃ ପ୍ରିୟ ବାଦିନମ୍
ଅପ୍ରେୟସ ପଥ୍ୟସ୍ୟ ବକ୍ତା ଶ୍ରୋତାଃଷ୍ଟ ଦୁର୍ଲଭ ।'

ହେ ରାଜନ ପ୍ରିୟ କଥା କହିବା ପାଇଁ ସମସ୍ତେ ଆଗଭର ହେବେ କିନ୍ତୁ ଯାହା ତୁମ ପାଇଁ ହିତକର ଅପ୍ରିୟ ହେଲେ ମଧ ସେଭଳି ଉପଦେଶ ଦେବାପାଇଁ ବହୁତ କମ୍ ଲୋକ ଅଛନ୍ତି । ଶୁଣିବା ପାଇଁ ମଧ ସେପରି କମ୍ ଲୋକ ଅଛନ୍ତି ।

ଡି.ଜି ହେଲେ ଆଇନ୍ ଶୃଙ୍ଖଳା ବିଷୟରେ ସରକାରଙ୍କର ପରାମର୍ଶଦାତା କିନ୍ତୁ ଡିଜି ଓ ସରକାରଙ୍କ କ୍ଷେତ୍ରରେ 'ବକ୍ତା, ଶ୍ରୋତାଶ୍ଚ ଦୁର୍ଲଭ' ପ୍ରଯୁଜ୍ୟ ।

ମୋର ସେଇ ଅସୁବିଧା ହୋଇଥିଲା, ମୋ ପୂର୍ବରୁ ଅଳ୍ପ କେତେ ପୋଲିସ୍ ମୁଖ୍ୟ ମଧ ସେ ସମସ୍ୟାର ସମ୍ମୁଖୀନ ହୋଇଥିଲେ । ପ୍ରତ୍ୟେକ ଏସ୍‌ପି ଓ ଥାନା ଅଫିସର ରାଜନୈତିକ ହସ୍ତକ୍ଷେପର ମୁକାବିଲା କରିବା ପାଇଁ ବାଧ ହୁଅନ୍ତି । ଜିଲ୍ଲାପାଳମାନେ ମଧ ସେଇ ଦଶା ଭୋଗନ୍ତି କିନ୍ତୁ ଜଣେ ଆଇଏଏସ୍ ଅଫିସର ଥରେ ଜିଲ୍ଲାପାଳ ହେଲାପରେ ତାଙ୍କ ଉପରେ ରାଜନୈତିକ ହସ୍ତକ୍ଷେପ କରିବାର କାରଣ ବହୁତ କମ୍ ରହେ । ତେଣୁ ପୋଲିସ୍ ଅଫିସର ବାରମ୍ବାର ହସ୍ତକ୍ଷେପର ସମ୍ମୁଖୀନ ହୁଏ । ଶାସନ ଦୁର୍ବଳ ହୁଏ । ହଁ କହିଲେ ବିରୋଧୀ ଦଳ ସମାଲୋଚନା କରିବେ ନା କହିଲ ବଦଳିର ଅସ୍ତ୍ର ପ୍ରୟୋଗ କରାଯିବ । ମୋର ପ୍ରଥମ ୧୯ ବର୍ଷ ଚାକିରି ମଧରେ ୧୭ ଥର ବଦଳି ହୋଇଥିଲା । ସବୁଥର ବଦଳି ବର୍ଷ ମଝିରେ । ମୋ ପିଲା ବେଶ୍ ହଇରାଣ ହୋଇଥିଲେ ଯେଉଁ କଥା ମୁଁ ଆଗରୁ ଲେଖିଛି । ନିଜେ ହଇରାଣ ହୋଇଥିଲି ବୋଲି ମୁଁ ନିଷତି ନେଇଥିଲି ଯେ କାହାକୁ ହଇରାଣ ହେବାକୁ ହେବନାହିଁ । କୌଣସି ବଦଳି ପ୍ରସ୍ତାବ (ସବୁ ମୌଖିକ)କୁ ଗ୍ରହଣ କଲି ନାହିଁ । ଅଳ୍ପ କେତେକ ପ୍ରସ୍ତାବ ମୁଖ୍ୟମନ୍ତ୍ରୀଙ୍କ ଅଫିସରୁ ଆସିଥିଲା । 'ସାର ମୁଖ୍ୟମନ୍ତ୍ରୀ ଚାହୁଁଛନ୍ତି ଇତ୍ୟାଦି ଇତ୍ୟାଦି' ଓ ଅସୁବିଧା ଦେଖାଇ ମୁଁ ମନା କରିଥିଲି । ରଜାଙ୍କ ଅପେକ୍ଷା ରଜାଙ୍କ ପାଖଲୋକଙ୍କ ପ୍ରକୋପ ବେଶୀ, ଏକଥା ସମସ୍ତେ ଜାଣନ୍ତି ।

ଝାରସୁଗୁଡ଼ା ପାଖରେ ଗଡ଼ପୋଷ ବୋଲି ଏକ ରେଲଷ୍ଟେସନ ଓ ସେଇଠାରେ ସମଲେଶ୍ୱରୀ ଏକ୍ସପ୍ରେସ୍ ଟ୍ରେନ୍ ରହେ । ରେଳ ବିଭାଗ ଦେଖିଲା ଯେ ତିନିବର୍ଷରେ ଗୋଟିଏ ମାତ୍ର ଟିକେଟ୍ ବିକ୍ରି ହୋଇଛି । ତେଣୁ ଟ୍ରେନ୍ ରହିବା ବନ୍ଦୋବସ୍ତକୁ ନରଖିବା ପାଇଁ ରେଳବାଇ ଘୋଷଣା କଲା । ପ୍ୟାସେଞ୍ଜର ଥାଆନ୍ତୁ କି ନଥାନ୍ତୁ ସେଇଟା ବଡ଼ କଥା ନୁହେଁ, ନେତାଙ୍କ ସମ୍ମାନ ହେଲା ବଡ଼କଥା । ମୋ' ସମୟରେ ଷ୍ଟେସନ ବନ୍ଦ ହୋଇଗଲା । ଏଭଳି ଅପବାଦ କୌଣସି ନେତା ମୁଣ୍ଡେଇବା ପାଇଁ ପ୍ରସ୍ତୁତ ନୁହଁନ୍ତି ତେଣୁ ସାଙ୍ଗେ ସାଙ୍ଗେ ରେଳ ରୋକ୍ । ରେଳ ଲାଇନ୍ ଉପରେ ଖଟିଆ ପକେଇ ନେତାମାନେ ବସିଗଲେ । ସେଥି ମଧରେ ଦୁଇଜଣ ଏମ୍‌ପି ଓ ଦୁଇଜଣ ଏମ୍‌ଏଲ୍‌ଏ ଥିଲେ । ମୁମ୍ବାଇ

ହାଓ୍ୱଡ଼ା ମେଲ୍ ଗୀତାଞ୍ଜଳି ଏକ୍ସପ୍ରେସ୍ ଓ ବହୁତ ଟ୍ରେନ୍ ଅଟକି ରହିଗଲା। ଏମ୍‌ପି, ଏମ୍‌ଏଲ୍‌ଏ ହେଲେ ବିଜେଡ଼ି ଓ ବିଜେପିର। ସରକାରଙ୍କୁ କୁହାଯିବା ସତ୍ତ୍ୱେ ଦଳ ତରଫରୁ କୌଣସି ନିର୍ଦ୍ଦେଶ ଗଲାନାହିଁ। ଜିଲ୍ଲାପାଳ, ଏସ୍‌ପି ଚୁପ୍ ରହିଲେ। ଅନେକ ପାସେଞ୍ଜର ମୋତେ ଓ ହୋମ୍ ସେକ୍ରେଟାରୀଙ୍କୁ ଫୋନ୍ କରି ମନଇଚ୍ଛା ଗାଳିଦେଲେ। ସେମାନେ କେମିତି ବା ଜାଣିବେ ଲାଠି ଚାର୍ଜ, ଟିୟର ଗ୍ୟାସ୍ ଅର୍ଡ଼ର ମାଜିଷ୍ଟ୍ରେଟ୍ ଦେଇପାରିବେ ଡି.ଜି ନୁହେଁ ବୋଲି ?

ସେହିପରି ଚମ୍ପୁଆ ଘଟଣା। ଚୋରି ଅଭିଯୋଗରେ ଜଣେ ଲୋକକୁ ଗାଁ ଲୋକମାନେ ପିଟାପିଟି କରି ଥାନାକୁ ଆଣିଲେ ଓ ଥାନା ବାରଣ୍ଡାରେ ତା'ର ମୃତ୍ୟୁ ହେଲା। କେତେଜଣ ରାଜନୈତିକ ନେତା ବିଶେଷତଃ ବିଜେଡ଼ି ଓ ବିଜେପି ଥାନାବାବୁଙ୍କ ଉପରେ ଅସନ୍ତୁଷ୍ଟ ଥିଲେ। ସାଙ୍ଗେ ସାଙ୍ଗେ ସହରରେ ପ୍ରଚାର ହୋଇଗଲା ଯେ ପୋଲିସ୍ ଜଣେ ନିରୀହ ଲୋକଙ୍କୁ ପିଟିପିଟି ମାରିଦେଲା ଓ ବହୁସଂଖ୍ୟାରେ ଲୋକ ଥାନାକୁ ଘେରିଗଲେ ଓ ଭୀଷଣ ଟେକା ପଥର ମାଡ଼ ହେଲା। ଅନେକ ପୋଲିସ୍ ଖଣ୍ଡିଆ ଖାବରା ହେଲେ। ଟିୟର ଗ୍ୟାସ ଓ ଲାଠି ଚାର୍ଜ ଅସଫଳ ଓ ଅବସ୍ଥା ଅସମ୍ଭାଳ ହେବାରୁ ମାଜିଷ୍ଟ୍ରେଟ୍ ଫାଇରିଙ୍ଗ୍ ଅର୍ଡ଼ର ଦେଲେ। ତା'ପରେ ଅବସ୍ଥା ଶାନ୍ତ ପଡ଼ିଲା। ଖବର ପାଇ ମୁଁ ଡିଆଇଜି ରାଉରକେଲାଙ୍କୁ ପଠେଇଲି। ମୁଁ ସେତେବେଳେ ସମ୍ବଲପୁରରେ ଥିଲି। ଖବର ପାଇଲି ସନ୍ଧ୍ୟାବେଳେ । ମୁଖ୍ୟମନ୍ତ୍ରୀଙ୍କ ଅଫିସରୁ ଜଣେ ମୋତେ ଫୋନ କରି ପଚାରିଲେ ଯଦି ଆପଣ ଯିବା ପାଇଁ ଚାହୁଁଛନ୍ତି ଆମେ ହେଲିକପ୍ଟର ବନ୍ଦୋବସ୍ତ କରିବୁ। ମୁଁ କହିଲି ଯେ ହେଲିକପ୍ଟର ବନ୍ଦୋବସ୍ତ କରୁ କରୁ ଘଣ୍ଟେ ଦୁଇ ଘଣ୍ଟା ଲାଗିଯିବ ତେଣୁ ଆଜି ଯାଇ ହେବ ନାହିଁ। ମୁଁ କଟକ ଫେରିଯାଉଛି ଓ ସକାଳ ସୁଦ୍ଧା ଡିଆଜିଙ୍କ ଠାରୁ ପରିସ୍ଥିତି ବିଷୟରେ ସୂଚନା ପାଇବି। ଯଦି ଅବସ୍ଥା ଖରାପ ଆଡ଼କୁ ଗତି କରୁଛି ବୋଲି ଜାଣିଲି ତେବେ ନିଶ୍ଚୟ ଯିବି, ଯଦି ସୁଧୁରିଯିବ ତେବେ ଯିବା ଦରକାର କ'ଣ ? ପରେ ମୁଁ ଶୁଣିଲି ଯେ ମୁଖ୍ୟମନ୍ତ୍ରୀ ଚାହିଁଲେ ମୁଁ ଯିବା ପାଇଁ କିନ୍ତୁ ମୋତେ ସେକଥା କୁହାଗଲା ନାହିଁ। ମୋତେ କୁହାଗଲା ଆପଣ ଯଦି ଚାହୁଁଛନ୍ତି।' ପୁଣି ମୁଁ କହିଥିଲି ଅବସ୍ଥା ଖରାପ ଆଡ଼କୁ ଗତି କଲେ ମୁଁ ଯିବି। ମୁଖ୍ୟମନ୍ତ୍ରୀଙ୍କୁ କୁହାଗଲା ଯେ ଡି.ଜି ମନା କଲେ। ଅବସର ନେଲା ପରେ ମୋତେ ଜଣେ ସିନିୟର ଅଫିସର ଏକଥା କହିଲେ କିନ୍ତୁ ସତ୍ୟାସତ୍ୟ ଉପରେ ମୁଁ ନିଶ୍ଚିତ ନୁହେଁ।

ସେଇ ସମୟରେ ଭୁବନେଶ୍ୱରରେ ଦୁଇଟି ଗୁରୁତ୍ୱପୂର୍ଣ୍ଣ ମିଟିଂ ହେଉଥିଲା। ନକ୍ସଲାଇଟ୍‌ମାନଙ୍କର ଛାମୁଆ ସଂସ୍ଥାମାନେ ଭୁବନେଶ୍ୱରରେ ମିଟିଂ କରିବା ପାଇଁ ଚାହିଁଲେ ଓ ଆମେ ଅନୁମତି ଦେଲୁ। ତିନିଜଣ ନେତା (ବାରବରା ରାଓ, ଶ୍ରୀ ତିୱାରୀ ଓ

ଦଣ୍ଡପାଣୀ ମହାନ୍ତି) ମୁଖ୍ୟମନ୍ତ୍ରୀଙ୍କୁ ଦେଖାକରି ଏକ ସ୍ମାରକ ପତ୍ର ଦେବେ ବୋଲି ଅନୁରୋଧ କଲେ। ଦେଖାକଲେ କିଛି ଅସୁବିଧା ନାହିଁ ବୋଲି ମୁଁ ଉପଦେଶ ଦେଲି। ମିଟିଂ ପୂର୍ବରୁ ସେମାନେ ମୁଖ୍ୟମନ୍ତ୍ରୀଙ୍କୁ ଦେଖାକଲେ ଓ ସେ ଧୈର୍ଯ୍ୟର ସହିତ ସବୁ ଶୁଣି ସ୍ମାରକ ପତ୍ର ରଖିଲେ ଓ ସରକାର ନକ୍ସଲାଇଟ୍‌ଙ୍କ ସହିତ ଆଲୋଚନା କରିବା ପାଇଁ ପ୍ରସ୍ତୁତ ବୋଲି ଜଣାଇଲେ। ମିଟିଂ ଆସିଥିବା ଲୋକଙ୍କୁ ପୋଲିସ୍ ଭଲ ବ୍ୟବହାର କରିଛି ଏବଂ ସେମାନଙ୍କୁ ପାଣି ପିଇବାର ବନ୍ଦୋବସ୍ତ ମଧ କରିଛି ତଥାପି ନାନାଦି ମିଛ ଅଭିଯୋଗ (ଯଥା ପୋଲିସ ଆମକୁ ଧମକେଇଲା, ରାସ୍ତାରେ ରୋକିଲା, ହଜାର ହଜାର ଲୋକ ବାଟରେ ଅଟକି ରହିଛନ୍ତି) ଇତ୍ୟାଦିର ଆଶ୍ରୟ ନିଆଗଲା। ଗାଳି ଶୁଣିବା ପୋଲିସ୍‌ର ପୁରୁଣା ଅଭ୍ୟାସ। ଘୋଡ଼ୀ ପେଟରୁ ଜନ୍ମ ହୋଇ ଛାଟକୁ ଡରିଲେ ହେବ? ଏଇ ବିରାଟ ଦଳ ମଧରେ କେତେଜଣ ଥିଲେ ଯେଉଁମାନଙ୍କୁ ସ୍ଥାନୀୟ ପୋଲିସ୍ ଖୋଜୁଥିଲା କିନ୍ତୁ ଭୁବନେଶ୍ୱର ପୋଲିସ୍ ତାଙ୍କୁ ଚିହ୍ନି ନ ଥିଲା। ସେମାନଙ୍କ ମଧରୁ ଅଳ୍ପ କେତେଜଣ ଫେରିଲା ବେଳକୁ ମାଲକାନାଗିରି ପୋଲିସ ତାଙ୍କୁ ଗିରଫ କଲା। ସେମାନେ ବହୁ ଗୁରୁତର ଅପରାଧରେ ଜଡ଼ିତ ଥିଲେ। ତାଙ୍କୁ ପୋଲିସ ଗିରଫ କରିବା ପାଇଁ ବାଧ୍ୟ; ଏକଥା ଜାଣିବା ସତ୍ତ୍ୱେ ଗଣମାଧମର ଏକ ଅଂଶ ବିଶ୍ୱାସଘାତକତା କରାଗଲା ବୋଲି ଚିତ୍କାର କଲା। ଯିଏ ହତ୍ୟା କଲେ ତାଙ୍କୁ ଆଙ୍ଗୁଠି ନ ଦେଖେଇ ଧରିବା ଲୋକଙ୍କ ପ୍ରତି ଆଙ୍ଗୁଠି ଦେଖେଇଲେ। ଏକଥା ଶୁଣାଯାଏ ଯେ ନକ୍ସଲାଇଟ୍‌ମାନେ ନିଜର ଭାବମୂର୍ତ୍ତି ବଢ଼େଇବା ପାଇଁ କେତେକ ସମ୍ବାଦଦାତାଙ୍କୁ ହାତରେ ରଖିଥାନ୍ତି।

ଅନେକ ଗୁରୁତ୍ୱପୂର୍ଣ୍ଣ ଘଟଣା ଥିଲା। କଂଗ୍ରେସ ଦଳର ଭୁବନେଶ୍ୱରରେ ବିରାଟ ସାଧାରଣ ସଭା। ସରକାର ଗାଦିଛାଡ଼ ଡାକରା ଦେଇ କଂଗ୍ରେସ ଦଳ ବିରାଟ ସଭାର ଆୟୋଜନ କଲା। ମୁଖ୍ୟମନ୍ତ୍ରୀଙ୍କୁ ବହୁ ବିଭ୍ରାନ୍ତିକର ରିପୋର୍ଟ ଦିଆଗଲା ଯଥା ଅନେକ ପୋଲିସ ଅଫିସର କଂଗ୍ରେସବାଲାଙ୍କ ସହ ହାତ ମିଳାଇ ଫାଆରରିଙ୍ଗ କରିବା ପାଇଁ ଯୋଜନା କରୁଛନ୍ତି। ଜାଣି ଜାଣି ବ୍ୟାରିକେଡ଼ ଦୁର୍ବଳ କରାଯିବ, ଯାହାଦ୍ୱାରା ବ୍ୟାରିକେଡ଼ ଭାଙ୍ଗି ସେମାନେ ଆସେମ୍ବ୍ଲିରେ ପଶିବେ, କେତେଜଣ ମନ୍ତ୍ରୀଙ୍କ ଘର ଉପରେ ଆକ୍ରମଣ ହେବ ଇତ୍ୟାଦି। ଏଇସବୁ ସାଙ୍ଗରେ ଆଶ୍ୱାସନା 'ଆମେ ଚେଷ୍ଟା କରୁଛୁ ଅବସ୍ଥା ସମ୍ଭାଳିବା ପାଇଁ।' ଡାହାଣୀ ହୋଇ ଲାଗିବା ଗୁଣିଆ ହୋଇ ଛଡ଼େଇବା ଏକ ପୁରୁଣା ମନ୍ତ୍ର। ଏସବୁ ଚମତ୍କାର ପରିକଳ୍ପନା ଜଣେ ଅବସରପ୍ରାପ୍ତ ପୋଲିସ୍ ଅଫିସର ଦେଉଥିଲେ ତାଙ୍କ ଗୁରୁଦେବଙ୍କୁ ଓ ସେ ଦେଉଥିଲେ ମୁଖ୍ୟମନ୍ତ୍ରୀଙ୍କୁ ବୋଲି ଶୁଣାଗଲା। ମୁଁ ମୁଖ୍ୟମନ୍ତ୍ରୀଙ୍କୁ କହିଥିଲି କୌଣସି କିଛି ଗଣ୍ଡଗୋଳ ହେବ ନାହିଁ। ଆମେ କେତେଜଣ ନେତାଙ୍କୁ ଚିହ୍ନଟ କଲୁ, କଂଗ୍ରେସ ଅମଳରେ ତାଙ୍କ ଅଞ୍ଚଳରେ ଥାନାବାବୁ ଯିଏ ଥିଲେ ତାଙ୍କୁ ଡକେଇ ସେ

ନେତାମାନଙ୍କ ଉପରେ ଦୃଷ୍ଟି ଦେବା ପାଇଁ ମୁଁ ଆଦେଶ ଦେଲି। ଶକ୍ତ ବ୍ୟାରିକେଡ଼ ହେଲା। ମିଟିଂର ପୂର୍ବଦିନ କଂଗ୍ରେସର କେତେଜଣ ବରିଷ୍ଠ ନେତା ମୋତେ ଭୁବନେଶ୍ୱରରେ ଦେଖା କଲେ ଓ ମିଟିଂ ଶାନ୍ତିପୂର୍ଣ୍ଣ ଭାବେ କରିବେ ବୋଲି ପ୍ରତିଶ୍ରୁତି ଦେଲେ। ତା ସଙ୍ଗରେ ଅନୁରୋଧ କଲେ ଯେ ପୋଲିସ କୌଣସି ଆକ୍ରମଣାତ୍ମକ ଭଙ୍ଗୀ ନକରୁ। ମୁଁ ନିର୍ଭର ପ୍ରତିଶ୍ରୁତି ଦେଲି ଯେ ପୋଲିସ୍ ତରଫରୁ କୌଣସି ପ୍ରକାର ଅପ୍ରୀତିକର ପଦକ୍ଷେପ ନିଆଯିବ ନାହିଁ ଯଦି ଶାନ୍ତି ଶୃଙ୍ଖଳାର ସହିତ ସଭା କରାଯାଏ। ସଭାରେ ମୁଖ୍ୟ ପୁରୋଧା ଥିଲେ ଜାନକୀ ବଲ୍ଲଭ ପଟ୍ଟନାୟକ। ମିଟିଂରେ ଭାଷାର ସଂଯମତା ଥିଲା କିନ୍ତୁ ଜଣେ ନେତା ଭାବପ୍ରବଣ ହୋଇ କହି ପକେଇଲେ "ଶୁଣ ନବୀନ ପଟ୍ଟନାୟକ, ଶୁଣ ଡିଜି ପୋଲିସ୍ ତମମାନଙ୍କର ସମୟ ସରିଆସିଲା। ଆମକୁ କିଛି କରିବାକୁ ପଡ଼ିବ ନାହିଁ। ସର୍ବସାଧାରଣ ତୁମକୁ ଗାଦିରୁ ନିକାଳି ଦେବେ।" ଏ ହେଲା ୨୦୦୫ ମସିହା କଥା। ନବୀନ ପଟ୍ଟନାୟକ ଏପର୍ଯ୍ୟନ୍ତ ଗାଦିରେ ବସିଛନ୍ତି। ମୁଁ ଯଥା ସମୟରେ ଅବସର ନେଇ ଭୁବନେଶ୍ୱରରେ ଅଛି। ଉକ୍ତ ବରିଷ୍ଠ ନେତାଙ୍କ ସଙ୍ଗରେ କେବେ କେମିତି ଦେଖା ସାକ୍ଷାତ ହୁଏ ରାଜଭବନ ଟିପାର୍ଟିରେ କିମ୍ବା କୌଣସି ମିଟିଂରେ। ସେ କ'ଣ କହିଛନ୍ତି ସେ ଭୁଲି ଗଲେଣି (ଏମିତି କେତେ ଲୋକଙ୍କ ବିଷୟରେ କେତେ ଜାଗାରେ କହିଥିବେ)। କିନ୍ତୁ ମୁଁ ଭୁଲିନାହିଁ, ଯଦି ବା ମୋର ତିକ୍ତତା ନାହିଁ। ପଲିଟିକାଲ ଲୋକ ଏମିତି କୁହନ୍ତି, ବେଳେ ବେଳେ ବ୍ୟତିକ୍ରମ ହୁଏ। ଜାନକୀ ପଟ୍ଟନାୟକଙ୍କ ସରକାର ସମୟରେ ନରସିଂହ ମିଶ୍ର ଜନତାପାର୍ଟିରେ ଥିଲେ ଓ ବସ୍ତୁତଃ ବିରୋଧୀ ଦଳ ନେତାର କାର୍ଯ୍ୟ କରୁଥିଲେ। ମୁଁ ସେତେବେଳେ ଆଇ.ଜି ପ୍ରଶାସନ ଥିଲି ଓ ଆସେମ୍ବ୍ଲିରେ ସରକାରୀ କର୍ମଚାରୀ ଗ୍ୟାଲେରୀରେ ବସୁଥିଲି। ମୁଖ୍ୟମନ୍ତ୍ରୀ ପୋଲିସ୍ ବଜେଟ୍ ଉପସ୍ଥାପନା କରିବା ପରେ ନରସିଂହ ମିଶ୍ର ଭାଷଣ ଆରମ୍ଭ କଲେ ମୋ' ପ୍ରଶଂସାରେ। କହିଲେ "ମୁଖ୍ୟମନ୍ତ୍ରୀ ମହାଶୟ ଆପଣଙ୍କର ଜଣେ ବେଶ୍ ଦକ୍ଷ ସଚ୍ଚୋଟ ଆଇ.ଜି ପ୍ରଶାସନ ଅଛନ୍ତି ତଥାପି ପୋଲିସ୍ ପ୍ରଶାସନରେ ସଂସ୍କାର କାହିଁକି ହୋଇପାରୁ ନାହିଁ?" ବିରୋଧୀ ଦଳ ନେତା ଆସେମ୍ବ୍ଲିରେ ପୋଲିସ୍‌ରୁ ପ୍ରଶଂସା କରିବା ଲଙ୍କାରେ ହରି ଶବ୍ଦ ପରି। ଆଉ ଜଣେ ବିରୋଧୀ ଦଳ ନେତା ପ୍ରସନ୍ନ ଦାସଙ୍କ କଥା କହୁଛି। ମୁଁ ମୟୂରଭଞ୍ଜରେ ଏସ୍‌ପି ଥିଲା ବେଳେ ନୀଳମଣି ରାଉତରାୟଙ୍କ ଜନତାଦଳ ସରକାର ଥିଲା ଓ ପ୍ରସନ୍ନ ଦାସ ବିରୋଧୀ ଦଳର ଜଣେ ନେତା ଥିଲେ । ମୋ ଧାରଣା ଯେ ସେ ଜଣେ ସଚ୍ଚୋଟ ଏବଂ ସରଳ ଲୋକ। ଅନେକ ସମୟରେ ମୋ' ପାଖକୁ ଆସିଛନ୍ତି ବିଭିନ୍ନ ସମସ୍ୟା ନେଇ ଓ ସମାଧାନ କରିଛି। ମିଥ୍ୟା ଅଭିଯୋଗ ଓ ମୁଁ ବଦଳି ପାଇଁ ଅନୁରୋଧ କରନ୍ତି ନାହିଁ। ତାଙ୍କ ସାହାଯ୍ୟରେ ଆମେ ଶୁଳିଆପଦାରେ ସାନ୍ତାଳମାନଙ୍କୁ ଏକତ୍ରିତ କରି ଲୋଧାମାନଙ୍କ

ଆକ୍ରମଣକୁ ପ୍ରତିରୋଧ କରିବା ପାଇଁ ପ୍ରବର୍ତ୍ତାଇଲୁ। ବଜେଟ୍ ସେସନ୍ ପୂର୍ବରୁ ସେ ମୋ' ପାଖକୁ ଆସି ଦେଖା କରି ମୟୂରଭଞ୍ଜ ପୋଲିସର ଆବଶ୍ୟକତା ଟିପି ନିଅନ୍ତି ଓ ଆସେମ୍ବ୍ଲି ଭିତରେ ହଟ୍ଟଗୋଳ କରନ୍ତି। ସେଥିପାଇଁ ଆମର ଅନେକ ଖାଲି ପୋଷ୍ଟ ପୂରଣ ହୋଇଗଲା। ଏସବୁ କହିବାର କାରଣ ହେଉଛି ଅନେକ ରାଜନୈତିଜ୍ଞ ଅଛନ୍ତି ଯେଉଁମାନେ ସକରାତ୍ମକ। ପୋଲିସର ପ୍ରକୃତ ଅସୁବିଧା କ'ଣ ଜାଣିବା ପାଇଁ ଚାହାଁନ୍ତି ଓ ସମାଧାନର ବାଟ ଖୋଜନ୍ତି ।

ମୁଁ ଡି.ଜି ଥିଲା ବେଳେ ସନ୍ତୋଷ କୁମାର ଥିଲେ ହୋମ୍ ସେକ୍ରେଟେରୀ। ଫାଇଲ୍‌ରେ ନିଷ୍ପତ୍ତି ନେବାରେ ସମୟ ବହୁତ ନିଅନ୍ତି କିନ୍ତୁ ଯେଉଁ ପ୍ରସ୍ତାବ ପ୍ରସ୍ତୁତ କରନ୍ତି ତାହା ଯିଏ ସିଏ ପ୍ରଶଂସା କରିବ। ଏଇଭଳି ଗୁଣ ଥିଲା ସୁଧାଂଶୁ ମୋହନ ପଟ୍ଟନାୟକଙ୍କର। ଏମାନେ ହେଲେ ହସ୍ତ ଶିଳ୍ପୀ, ସମୟ ନିଅନ୍ତି କିନ୍ତୁ ଚମତ୍କାର ମୂର୍ତ୍ତି ତିଆରି କରନ୍ତି। କିନ୍ତୁ ବର୍ତ୍ତମାନ ଶାସନରେ ଆଖିବୁଜି ଦସ୍ତଖତ ମାରୁଥିବା ଅଫିସରଙ୍କ ଆଦର ବେଶି। ସନ୍ତୋଷ କୁମାର ଅତି ସଚ୍ଚୋଟ ହେଲେ ମଧ ଅବସର ପରେ ଓଡ଼ିଶା ସରକାର ତାଙ୍କୁ କିଛି ଚାକିରି ଦେଲେ ନାହିଁ ଓ ସେ ଦିଲ୍ଲୀ ଫେରିଗଲେ।

ଡି.ଜି ଅଫିସରେ ଏକ ନୂତନ ବ୍ୟବସ୍ଥା କରିଥିଲି ଯେ, ପ୍ରତ୍ୟେକ ସୋମବାର ଦିନ ଏକ ଘଣ୍ଟା ସିନିୟର ଅଫିସରଙ୍କ ସଙ୍ଗେ ଆଲୋଚନା। ଏ ବ୍ୟବସ୍ଥା ଭାରତ ସରକାରଙ୍କର ଅଛି। ଆଲୋଚନା ମାଧ୍ୟମରେ ଅନେକ ନିଷ୍ପତ୍ତି ନିଆଯାଏ ଓ ଫାଇଲରେ ଲମ୍ବା ଲମ୍ବା ତର୍ଜମା ଲେଖିବା ପରିବର୍ତ୍ତେ ଅଳ୍ପକେ ସରିଯାଏ। ମୁଁ ଅବସର ନେଲାପରେ ଏ ବ୍ୟବସ୍ଥା ବନ୍ଦ କରିଦିଆଗଲା।

ଏସ୍‌ପିମାନେ ଅଫିସ୍ ନ ଯିବା କିମ୍ବା ଡ଼େରିରେ ଯିବା ଅଭ୍ୟାସରେ ପରିଣତ କରିଥିଲେ। ପ୍ରତ୍ୟେକ ଦିନ ସାତ ଆଠ ଜଣ ଏସ୍‌ପିଙ୍କର ଅଫିସର ଲ୍ୟାଣ୍ଡଲାଇନ୍‌କୁ ଫୋନ୍ କରିବା ପାଇଁ ତାଙ୍କ ଉପସ୍ଥିତି ଜାଣିବା ପାଇଁ ମୁଁ ଅଫିସରମାନଙ୍କୁ ନିର୍ଦ୍ଦେଶ ଦେଇଥିଲି। ତା'ପରେ ଏସ୍‌ପିମାନେ ଠିକ୍ ସମୟରେ ଅଫିସ୍ ଆସିବା ଆରମ୍ଭ କଲେ। ମୁଁ ଅନେକ ଏସ୍‌ପିଙ୍କ ସାଙ୍ଗରେ ଫୋନ୍‌ରେ ଆଇନ୍ ଶୃଙ୍ଖଳା ପରିସ୍ଥିତି ବିଷୟରେ ଆଲୋଚନା କରୁଥିଲି ଓ ତାଙ୍କୁ ଉତ୍ସାହିତ କରୁଥିଲି। ଯେଉଁ ଏସ୍‌ପିମାନେ ନକ୍ସଲାଇଟ୍ ଏରିଆରେ ଭଲ କାମ କରୁଥିଲେ ସେମାନଙ୍କୁ ଶାନ୍ତିପୂର୍ଣ୍ଣ ଜିଲ୍ଲାକୁ ବଦଳି କରାଗଲା ଏବଂ ଏପ୍ରିଲ ୧ରେ ସମ୍ବର୍ଦ୍ଧିତ କରାଗଲା। ମୁଁ ଡି.ଜିଙ୍କ ଡିସ୍କ ପ୍ରଚଳନ କଲି ଯାହାକି ମେଡ଼ାଲ ଭଳି ମାରି ହେବ। ଅନେକ ଅଫିସର ଏହି ଡିସ୍କ ପ୍ରତିବର୍ଷ ପାଆନ୍ତି।

ଡି.ଜି କାର୍ଯ୍ୟଭାର ଗ୍ରହଣ କରିବା ପରେ ମୁଁ ମୁଖ୍ୟମନ୍ତ୍ରୀଙ୍କୁ ଦେଖା କଲି ଓ ସନ୍ଧ୍ୟାରେ ଗଲି ପୁରୀ ପ୍ରଭୁ ଜଗନ୍ନାଥଙ୍କ ଆଶୀର୍ବାଦ ପାଇବା ପାଇଁ। ପୁରୀରେ ପୋଲିସ

ଗେଷ୍ଟ ହାଉସ୍‌ରେ ରହିଲୁ। ଗେଷ୍ଟ ହାଉସ ଲନ୍‌ର ଗୋଟିଏ କଣକୁ ଦେଖିଲି ଯେ, ବହୁତଗୁଡ଼ିଏ ଭଙ୍ଗା ମଦ ବୋତଲ ପଡ଼ିଛି। ଅଳ୍ପ କେତେକ ଆଇପିଏସ୍ ଅଫିସର ଗେଷ୍ଟ ହାଉସ୍‌କୁ ସାଙ୍ଗମାନଙ୍କୁ ଆଣନ୍ତି, ମଦ୍ୟପାନ ଓ ଦିବ୍ୟ ଭୋଜନ କରନ୍ତି ଏବଂ ଥରେ ମଦ୍ୟପାନ କଲେ ପାଟିରୁ ଯେଉଁ ଶବ୍ଦ ବାହାର କରିବା କଥା ବାହାର କରନ୍ତି। ସେମାନଙ୍କ ମଧ୍ୟରୁ ଜଣଙ୍କର ଦୌରାତ୍ମ୍ୟ ଅସହ୍ୟ ଥିଲା ତେଣୁ ମୁଁ ନିର୍ଦ୍ଦେଶ ଦେଲିଯେ କୌଣସି ପୋଲିସ୍ ଗେଷ୍ଟ ହାଉସ୍‌ରେ ମଦ୍ୟପାନ ହୋଇପାରିବ ନାହିଁ। ଗଣମାଧ୍ୟମ ଏହାକୁ ପ୍ରଶଂସା କଲେ କିନ୍ତୁ କେତେଜଣ ଅବସରପ୍ରାପ୍ତ ପୋଲିସ୍ ଅଫିସରଙ୍କୁ କଥାଟା ଭଲ ଲାଗିଲା ନାହିଁ। ମୋ ଅବସର ପରେ ଗେଷ୍ଟ ହାଉସ୍‌ରେ ପୁଣି ମଦ ପଶିଲା ଓ ମୋ ଠାରୁ ଜଣେ ସିନିୟର ଅଫିସର କହିଲେ- 'ଡି.ଜି ଗଲେ ତାଙ୍କ ସଙ୍ଗେ ତାଙ୍କ ଆଦେଶ ବି ଗଲା।' ତାଙ୍କୁ କହିପାରିଥାନ୍ତି ଯେ ଆମ୍ବେଦକର ଗଲେ କିନ୍ତୁ ସମ୍ବିଧାନ ଅଛି।

୨୦୦୫ ଜାନୁୟାରୀ ୧ ତାରିଖ। ନୂଆ ବର୍ଷରେ ସିନିୟର ଅଫିସରଙ୍କୁ ଦେଖାକରି ଶୁଭେଚ୍ଛା ଜଣେଇବାର ପରମ୍ପରା ସବୁ ବିଭାଗରେ ଅଛି। ଶୁଭେଚ୍ଛା ଜଣେଇବା ହେଉଛି ଗ୍ୟାସ ପରି, ଊର୍ଦ୍ଧ୍ୱମୁଖୀ ଅର୍ଥାତ ଅଫିସରମାନେ ତାଙ୍କ ଉପର ଅଫିସରମାନଙ୍କୁ ଶୁଭେଚ୍ଛା ଜଣାଇବାକୁ ଯିବେ, ଉପର ଅଫିସର ତଳ ଅଫିସରଙ୍କୁ ଶୁଭେଚ୍ଛା ଜଣେଇବା ପାଇଁ ଯାଆନ୍ତି ନାହିଁ। ଡି.ଜିଙ୍କ ବାସଭବନକୁ ବହୁତ ଅଫିସର ଆସନ୍ତି, ମୁଁ ଖବର ଦେଲି ଯେ ଦୟାକରି ସମସ୍ତେ ଅଫିସକୁ ଆସନ୍ତୁ। ଅଫିସ କ୍ୟାଣ୍ଟିନ୍‌କୁ ବରାଦ ଦେଇଦେଲି ଯେ ସମସ୍ତଙ୍କ ପାଇଁ ଚା ଏବଂ ଜଳଖିଆ ବନ୍ଦୋବସ୍ତ କରିବା ପାଇଁ। ଡି.ଜି ଅଫିସ ସାମ୍ନା ପଡ଼ିଆରେ ସାମିଆନା ପକାଗଲା ଓ ସମସ୍ତଙ୍କୁ ଶୁଭେଚ୍ଛା ଜଣେଇଲି, କେତେକ ସାମ୍ବାଦିକ ବନ୍ଧୁ ମଧ୍ୟ ଆସିଥିଲେ। ସମସ୍ତେ ଗଲାପରେ ମୁଁ ଭୁବନେଶ୍ୱର ଗଲି ମୁଖ୍ୟମନ୍ତ୍ରୀଙ୍କୁ ଦେଖା କରିବା ପାଇଁ। ସାରା ଦିନଟା କେବଳ ଦେଖାଦେବା ଏବଂ ଦେଖା କରିବାରେ ଗଲା। ସନ୍ଧ୍ୟା ୫ଟାରେ ବସି ରାତି ୧୦ଟାରେ ସେଦିନ ଫାଇଲ ସାରିଦେଇ ଘରକୁ ଆସିଲି। ସେଇଦିନ କ୍ୟାଣ୍ଟିନ୍‌ବାଲା (ପ୍ରାଇଭେଟ୍ ଲୋକ)କୁ ଡାକି ଚେକ୍‌ରେ ତାଙ୍କ ଜଳଖିଆ ଖର୍ଚ୍ଚ ଦେଇଦେଲି କିନ୍ତୁ ଦୁଇଦିନ ପରେ ଗୋଟିଏ ଛୋଟକାଟିଆ ଖବରକାଗଜରେ ଖବର ବାହାରିଲା ଯେ ଡି.ଜି ଜଳଖିଆ ଦେଲେ ଭଲକଥା କିନ୍ତୁ ପଇସାଟା ଗରିବ ସିପାହୀଙ୍କର ଜନମଙ୍ଗଳ ପାଣ୍ଠିରୁ ଦିଆଯିବାରୁ ପ୍ରବଳ ଅସନ୍ତୋଷ ଜାତ ହେଉଛି। ଏ ସମ୍ବାଦପତ୍ରର ଜଣେ କର୍ମକର୍ତ୍ତା ମୋତେ ଫୋନ୍ କରି ଜଣକ ବଦଳି ପାଇଁ ଅନୁରୋଧ କରିଥିଲେ। ମୁଁ ସମ୍ଭବ ନୁହେଁ ବୋଲି କହି ଦେଇଥିଲି ସେଥିପାଇଁ ବୋଧେ ଏଇ ସମ୍ବାଦ। ସମ୍ବାଦଦାତାମାନଙ୍କୁ ମୁଁ ଭଲଭାବେ

ଜାଣେ, ସେମାନଙ୍କ ମଧ୍ୟରୁ କେତେକ ଚରିତ୍ର ସଂହାରକାରୀ ଖବର ଲେଖନ୍ତି ଓ ପଇସା ପାଇଗଲେ ଚୁପ୍ ରୁହନ୍ତି। ମୁଁ କୋରାପୁଟ ଏସ୍‌ପି ଥିଲାବେଳେ ମାତ୍ର ୨୦୦ରୁ ୪୦୦ କପି ବିକ୍ରି ହେଉଥିବା ଏକ ସମ୍ବାଦପତ୍ରର ମାଲିକ ତଥା ସମ୍ପାଦକ ମଝିରେ ମଝିରେ ତାଙ୍କ ସମ୍ବାଦପତ୍ର ଖଣ୍ଡିଏ ପଠାନ୍ତି ଓ ସେଥିରେ ମୁଖ୍ୟ ସମ୍ବାଦ ଥାଏ 'ଗ୍ରାମସେବକ ଗ୍ରାମସେବିକାଙ୍କ ଖୁଲମଖୁଲା ପ୍ୟାର୍', ଟ୍ରାଫିକ୍ ହାବିଲ୍‌ଦାରଙ୍କର ବଟି ଆଦାୟ, ରାସ୍ତା ନିର୍ମାଣରେ ଲକ୍ଷ ଲକ୍ଷ ଟଙ୍କା ଆତ୍ମସାତ, - କୁମ୍ଭକର୍ଣ୍ଣ ନିଦ୍ରାରେ ବି.ଡ଼ି.ଓ ଇତ୍ୟାଦି। ସବୁ ସମ୍ବାଦ ଶେଷରେ ଲେଖା ଯାଇଥାଏ ବାକି ଆରଥରକୁ। 'ବାକି ଆରଥରକୁ ର ଅନ୍ତର୍ନିହିତ ବାର୍ତ୍ତା ହେଉଛି କିଛି ପଇସା ଦିଅ ନହେଲେ ପୁଣି ଲେଖିବି। ଏ ଭଦ୍ରଲୋକ ଯେତେବେଳେ କୌଣସି ପୋଲିସ ବାଲା ବିରୁଦ୍ଧରେ ଲେଖନ୍ତି ମୋ' ପାଖକୁ କାଗଜ ଖଣ୍ଡେ ପଠେଇ ଦିଅନ୍ତି ଓ ମୁଁ ତାକୁ ଦେଖି ଥୋଇଦିଏ। ନିଜେ ମୋତେ ଦେଖାକରି ପଚାରିଲେ 'ସାର୍ ମୋ' ଖବରକାଗଜ ପଢ଼ୁଛନ୍ତି ତ ଓ ମୋ' ଉତ୍ତର ଥିଲା ପଢ଼ିବା ପାଇଁ ସମୟ ପାଉନାହିଁ। ତେଣୁ ନିରାଶ ହୋଇ କହିଲେ 'ତା'ହେଲେ କାହିଁକି ପଠେଇବି ?' ମୁଁ କହିଲି ଦେଖନ୍ତୁ ମୋର ସମାଜ, ପ୍ରଜାତନ୍ତ୍ର ଆସେ ଗୋଟିଏ କାଗଜ ଉତ୍କଳମଣି ଗୋପବନ୍ଧୁଙ୍କର ଓ ଆଉ ଗୋଟିଏ ମହତାବଙ୍କର। ମୁଁ ଟୁର୍‌ରେ ଗଲାବେଳେ ଯୋତା, ଚପଲ ଗୁଡ଼େଇବା ପାଇଁ ଖବରକାଗଜ ଦରକାର ହୁଏ। ସମାଜ କିମ୍ବା ପ୍ରଜାତନ୍ତ୍ରରେ ମୋ' ଚପଲ ଗୁଡ଼େଇ ଉତ୍କଳମଣି ଗୋପବନ୍ଧୁ ଦାସ ଓ ଡକ୍ଟର ମହତାବଙ୍କୁ କେବେ ଅପମାନିତ କରିପାରିବି ନାହିଁ। ଆପଣଙ୍କ କାଗଜ ସେଇ କାମରେ ଆସେ ତେଣୁ ପଠେଇ ଚାଲନ୍ତୁ। ବିରୁଡ଼ି ମାଡ଼ ଖାଇଲା ଭଳି ଲୋକଟା ପଳେଇଲା। ତା'ପରେ ଜୟପୁର ଥାନା ବାବୁଙ୍କ ନାଁରେ ବାରମ୍ବାର ଲେଖିଲା ଏବଂ ପ୍ରତ୍ୟେକ ଲେଖା ଶେଷରେ ଉଲ୍ଲେଖ ଥିବ ଯେ ଏଥିରେ ଏସ୍‌ପି ସାହେବଙ୍କ ଭାଗ କେତେ ? ମୁଁ ଜାଣେ ସମ୍ବାଦକୁ ଉପେକ୍ଷା କଲେ ସମ୍ବାଦଦାତାଙ୍କୁ ବହୁତ ବାଧେ। ମୁଁ ଚୁପ୍ ରହିବି। କିନ୍ତୁ କ'ଣ ହଟଚମଟ ହେଲା କେଜାଣି ହଠାତ୍ ଥାନାବାବୁଙ୍କୁ ପ୍ରଶଂସା କରି ଦୀର୍ଘ ଆଲେଖ୍ୟମାନ ବାହାରିଲା ଓ ସେ ପ୍ରଶଂସାରୁ ମେଞ୍ଚେ ମୋତେ ମିଳିଲା। ଜଣେ ଗୁପ୍ତିଆ ଅଫିସରଙ୍କୁ କାରଣ ଜାଣିବା ପାଇଁ ପଠେଇଲି। ସେ ଯାହା ରିପୋର୍ଟ ଦେଲେ ମୁଁ ହସି ହସି ବେଦମ୍। ସାମ୍ବାଦିକ ବାବୁଙ୍କ ଅଭ୍ୟାସ ଥିଲା ଥାନା ବାରଣ୍ଡାରେ ଚୌକିରେ ବସି ବସ୍‌କୁ ଅପେକ୍ଷା କରିବା। ବାରଣ୍ଡାରେ ବସିଥିବା ସମୟରେ ତାଙ୍କ ପାଇଁ ପରଟା ମାଂସ ବନ୍ଦୋବସ୍ତ ହୁଏ। ପ୍ରାଇଭେଟ୍ ବସ୍‌ବାଲାଙ୍କୁ କୁହାଯାଏ ମାଗଣାରେ ନେବା ପାଇଁ। ତା' ସାଙ୍ଗକୁ ମାସକୁ ପଚାଶ ଟଙ୍କାର ଭେଟି। ଭେଟି ମିଳୁଥିବା ପର୍ଯ୍ୟନ୍ତ ଥାନା

ଅଫିସରମାନେ ଥିଲେ ରାମ, ଲକ୍ଷ୍ମଣ। ନୂଆ ଥାନା ବାବୁ ଭେଟି ବନ୍ଦୋବସ୍ତ ବନ୍ଦ କରିଦେବାରୁ ସମସ୍ତେ ହେଲେ ଖରଦୂଷଣ ଓ ମୁଁ ହେଲି ରାବଣ। ତେବେ ନଦୀର ସ୍ରୋତ ଓଲଟା ଦିଗରେ ଗଲା କେମିତି? ଥାନା ବାବୁଙ୍କ ନାଁରେ ବାରମ୍ବାର ଲେଖିବା ଦ୍ୱାରା ସେ ଭୀଷଣ ବିରକ୍ତ ହେଲେ, ସେ ସାମ୍ବାଦିକଙ୍କୁ ଡକେଇ ବହୁତ ଖୋସାମତି କରି ଏକ ନିଭୃତ ଡାକ ବଙ୍ଗଳାକୁ ନେଇଗଲେ। ସେଇଠି ମିଳିଲା ଗୋଗଛ ପାହାର ତା'ପରେ ଦୁଇ ଦୁଇଟା ଖାଲି ଷ୍ଟାମ୍ପ ପେପରରେ ଦସ୍ତଖତ ଓ ଧମକ। 'ଯଦି କୋରାପୁଟରେ କୌଣସି ପୋଲିସ ବିରୁଦ୍ଧରେ ଲେଖିବୁ ତୁ ବର୍ଷକୁ ୨୦% ସୁଧରେ ଦୁଇ ଲକ୍ଷ ଟଙ୍କା ଧାର ନେଇଛୁ ବୋଲି ଷ୍ଟାମ୍ପ ପେପରରେ ଲେଖାହେବ।' ତା'ପରେ ସାମ୍ବାଦିକ ବାବୁଙ୍କ ମନ ଘର ଧରିଲା।

ମୋ' ବିରୁଦ୍ଧରେ କୁରୁଚିପୂର୍ଣ୍ଣ ସମ୍ବାଦ ଲେଖିଥିବା ଓ ମୁଁ ଉପେକ୍ଷା କରିବାରୁ ଖବରକାଗଜର କର୍ମକର୍ତ୍ତାମାନେ ଚୁପ୍ ରହିବାକୁ ବାଧ୍ୟ ହେଲେ। କିନ୍ତୁ ବେଳେ ବେଳେ ଖବର ସଂଗ୍ରହ ନକରି ତିଆରି କରନ୍ତି ଯଥା 'ଡି.ଜିଙ୍କୁ ଡକେଇ ମାନ୍ୟବର ରାଜ୍ୟପାଳ ଭୀଷଣ ବିରକ୍ତ ହେଲେ,' 'ଅମୁକ ଦିନ ଡି.ଜି ମୁଖ୍ୟମନ୍ତ୍ରୀଙ୍କ ଚ୍ୟାମ୍ବରରୁ ବାହାରିଲା ବେଳକୁ ତାଙ୍କ ମୁହଁ କଳା ପଡ଼ିଯାଇଥିଲା।' ଏ ସମ୍ବାଦ ପଢ଼ି ମୁଁ ମନେ ମନେ ବହୁତ ହସେ। କାରଣ ଏ ମୂର୍ଖ ସାମ୍ବାଦିକ ବୁଝିପାରନ୍ତି ନାହିଁ ଯେ ଡି.ଜିଙ୍କ ମୁହଁ କଳା ପଡ଼ିଯିବା କିମ୍ବା ରାଜ୍ୟପାଳ ଡି.ଜିଙ୍କୁ ଡାକି ବିରକ୍ତ ହେବା ସାଧାରଣତଃ କେହି ବିଶ୍ୱାସ କରିବେ ନାହିଁ । ଯଦି ବିରକ୍ତ ହେଲେ ଏଇଟା ଅସ୍ୱାଭାବିକ କାହିଁକି ହେବ? କିନ୍ତୁ ଏକଥା ପ୍ରମାଣିତ ହେଉଛି ଯେ ଡି.ଜି ରାଜ୍ୟପାଳ, ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯାଆନ୍ତି। ଥରେ ଦୁଇଜଣ ସାମ୍ବାଦିକ ମୋତେ ପଚାରିଲେ 'ସାର୍ ଅମୁକ କାଗଜରେ ବାହାରିଛି ଯେ ଆପଣ ମୁଖ୍ୟମନ୍ତ୍ରୀଙ୍କ ଘରରୁ ବାହାରି ଆସିଲା ବେଳେ ଆପଣଙ୍କ ମୁହଁ କଳା ପଡ଼ିଯାଇଥିଲା' ସତ? ମୁଁ କହିଲି ନାଇଁ ହୋ ବାହାରିଲା ବେଳକୁ ମୁଁ ଠିକ୍ ଥିଲି କିନ୍ତୁ ବାରଣ୍ଡାରେ ଦେଖିଲି ଉକ୍ତ ସାମ୍ବାଦିକଙ୍କୁ, ଅଦ୍ୟ ପ୍ରାତଃରେବ ଅନିଷ୍ଟ ଦର୍ଶନ (ସକାଳୁ ସକାଳୁ ଅନିଷ୍ଟ ଦୃଷ୍ଟି ଦର୍ଶନ) ଭାବି ମୁଁ ସାମାନ୍ୟ ବିଚଳିତ ହୋଇଗଲି। ହସାହସି ହୋଇ ଦୁଇ ସାମ୍ବାଦିକ ଗଲେ ଓ ଉକ୍ତ ସାମ୍ବାଦିକକୁ କ'ଣ କହିଲେ କେଜାଣି ସେ ଦୁଇଦିନ ପରେ ମୋତେ ଦେଖାକରି କହିଲେ 'ସାର୍ ଆପଣ ଯାହା କହିଲେ ଯଦି ଖବରକାଗଜରେ ବାହାରିଥାନ୍ତା ମୋର ଯେ କେତେ ବଦନାମ ହୋଇଥାନ୍ତା? ମୁଁ କହିଲି ଅଯଥା ପରିଶ୍ରମ କାହିଁକି କରୁଛ? ମୋ' ଦ୍ୱାରା ଦୁଇ ପଇସା ଉପାର୍ଜନ କରିପାରିବ ନାହିଁ, ବଦଳି କରେଇବା କିମ୍ବା ବଦଳି ବନ୍ଦ କରିବା ମୋ' ମାଧ୍ୟମରେ

ହୋଇପାରିବ ନାହିଁ। ତୁମର କ୍ଷୁଦ୍ର ସମ୍ବାଦପତ୍ର ମୋତେ ପ୍ରଶଂସା କରିବା କିମ୍ବା ନିନ୍ଦା କରିବା ପିମ୍ପୁଡ଼ିର ହାତୀକୁ ଅଭିଶାପ ଦେବା କିମ୍ବା ପ୍ରଶଂସା କରିବା ସଙ୍ଗେ ସମାନ। ସେ ଧମକ ଦେଲେ ମୁଁ ଲେଖିବି ଡି.ଜି ଗଣମାଧ୍ୟମକୁ ପିମ୍ପୁଡ଼ି କହିଲେ। ମୁଁ କହିଲି ସେଭଳି ସମ୍ବାଦ ବାହାରିଲେ ମୁଁ ସ୍ପଷ୍ଟୀକରଣ ଦେବି ଯେ ମୁଁ ଗଣମାଧ୍ୟମକୁ ନକହି ଏକ ନିର୍ଦ୍ଦିଷ୍ଟ ଖବରକାଗଜକୁ ପିମ୍ପୁଡ଼ି କହିଲି। ପିମ୍ପୁଡ଼ି ହେବା'ଟା ମଧ୍ୟ ଖରାପ କଥା ନୁହେଁ। କାରଣ ପିମ୍ପୁଡ଼ିମାନେ ପରିଶ୍ରମୀ ଓ ସେମାନଙ୍କ ସମ୍ମିଳିତ ଆକ୍ରମଣ ବେଶ କ୍ଷତିକାରକ। ଯୁଦ୍ଧ ବିରତି ଘୋଷଣା କରି ଏ ଭଦ୍ରଲୋକ ଗଲେ। ଏଭଳି ବହୁତ ଘଟଣା ମନେ ପଡ଼ିଯାଉଥିଲା। ଗୋଟିଏ ଜିଲ୍ଲାରେ ଏସ୍‌ପି ଥିଲାବେଳେ ଜଣେ ସାଂସଦ ପୋଷ୍ଟକାର୍ଡ଼ ମାଧ୍ୟମରେ ମୋତେ ଦୁଇ ଧାଡ଼ିଆ ଚିଠିଟିଏ ଲେଖିଲେ 'ଏସ୍‌ପି ମୁଁ ଅମକ ତାରିଖ ଦିନ ଆପଣଙ୍କ ଜିଲ୍ଲାରେ ପହଞ୍ଚୁଛି। ଏହା ଆପଣଙ୍କ ଗୋଚରାର୍ଥେ।' ଏଭଳି ଚିଠି କଲେକ୍ଟରଙ୍କୁ ମଧ୍ୟ ଲେଖିଲେ। ଚିଠି ପଢ଼ି ରଖିଦେଲି। ଓ ଭୁଲିଗଲି। ଅନେକ ଦିନ ପରେ ସକାଳୁ ସକାଳୁ ଟେଲିଫୋନ୍ କଲ ଆସିଲା 'ମୁଁ ଅମୁକ ଲୋକ କହୁଛି ଏମ୍‌ପି' ଓ ମୁଁ ଉତ୍ତର ଦେଲି ନମସ୍କାର କୁହନ୍ତୁ। ସେ ବୋଧେ 'ସାର୍' ମାନ୍ୟତା ଖୋଜୁ ଥିଲେ। ତେଣୁ ଜୋର୍ ଦେଇ କହିଲେ ମୁଁ କହିଲି ପରା ଏମ୍‌ପି କହୁଛି। ଯଥା ସମ୍ଭବ ବାକ୍ ସଂଯମ ରକ୍ଷା କରି କହିଲି ହଁ ହଁ ମୁଁ ବୁଝିଲି ଆପଣ ଏମ୍‌ପି କହୁଛନ୍ତି। ତା'ପରେ ପଚାରିଲେ 'ଆପଣ ମୋ' ଚିଠି ପାଇଥିଲେ। ମୁଁ ହଁ କହିବାରୁ ଫୋନ୍ ଥୋଇଦେଲେ। କଲେକ୍ଟରଙ୍କର ମଧ୍ୟ ଅନୁରୂପ ଅନୁଭୂତି ହେଲା। ଏହାର କିଛିଦିନ ପରେ ଏକ ଛୋଟ ଖବରକାଗଜରେ ବାହାରିଲା ଯେ ଏକ ଅସହାୟ ବିଧବା ବୁଢ଼ୀକୁ ବନ୍ଧୁକ ମୁନ ଦେଖାଇ ଅଳ୍ପ କିଛି ପଇସା ଫୋପାଡ଼ି କଲେକ୍ଟର ଓ ଏସ୍‌ପି ଏକର ଏକର ଜମି ମାଡ଼ି ବସିଲେ। ଏମ୍‌ପିଙ୍କୁ ଚିଠି ଖଣ୍ଡିଏ ଲେଖିଲି ଯେ ସମ୍ବାଦପତ୍ର ସାମ୍ବାଦିକ କହୁଛନ୍ତି ଏ ଖବର ଆପଣ ଦେଇଛନ୍ତି। ଆପଣ ସମ୍ବାଦକୁ ଖଣ୍ଡନ କରିବେ ନା ମୁଁ ଆପଣଙ୍କ ନାଁରେ ମାନହାନି ମକଦ୍ଦମା କରିବି ଯେହେତୁ ଏପରି କିଛି ଘଟଣା ଘଟିନାହିଁ। ସାଙ୍ଗେ ସାଙ୍ଗେ ଦୁଃଖ ପ୍ରକାଶ କରି ସେ ଉତ୍ତର ଦେଇ ଦେଲେ ଏବଂ କଥା ଆଗକୁ ବଢ଼ିବା ପାଇଁ ମୁଁ ଦେଇନାହିଁ।

ଅବସର ସମୟ ପାଖେଇ ଆସୁଥିଲା। ଡି.ଜି ଅଫିସ ବାରଣ୍ଡାରେ ବସି ସନ୍ଧ୍ୟା ବେଳେ ଫେରି ଯାଉଥିଲି ପଛକୁ। ଘଟଶାଳୀ, ବଳିଆ ମାଷ୍ଟ୍ରେ, ଢ଼େଙ୍କାନାଳର ଜର୍ଜ ଉପ୍ରାସ୍କୁଲ ଓ ବିବି ହାଇସ୍କୁଲ, ସମ୍ବଲପୁରର ଟାଉନ୍ ହାଇସ୍କୁଲ, ରେଭେନ୍‌ସା କଲେଜ

ଓ ତା'ପରେ ଆହ୍ଲାବାଦ ବିଶ୍ୱ ବିଦ୍ୟାଳୟ ଓ ଚାକିରି ଜୀବନ ତା'ସାଙ୍ଗେ ବିବାହ ପୁଅ ଝିଅଙ୍କ ଜନ୍ମ, ବାପା ମାଆଙ୍କ ସଂସାରରୁ ବିଦାୟ, ପିଲାମାନଙ୍କର ପାଠପଢ଼ା, ବିବାହ ଓ ଦେଖୁ ଦେଖୁ ଷାଠିଏ ବର୍ଷ ଆସି ଦୁଆର ବାଡ଼େଇଲାଣି। ଚାକିରି ଆରମ୍ଭ କଲା ସମୟରେ ସାଇକେଲ ଚଢ଼ି ବୁଲୁଥିଲି। ଥରେ ଅଧେ ଗାଁ ଅଞ୍ଚଳରେ ଯିବାବେଳେ ଶଗଡ଼ରେ ବସିଛି। ଅନେକ ସମୟରେ ଆସନ୍ନ ମୃତ୍ୟୁରୁ ରକ୍ଷା ପାଇଛି। ପ୍ରଶଂସା ମିଳିଛି ବହୁତ। ନିନ୍ଦା କାଁ ଭାଁ । ବହୁ ଗୁରୁଦାୟିତ୍ୱ ମିଳିଛି। ସବୁ କଥା ମନେ ପକେଇ ବସିଲେ ଦିନ ସରିଯିବ ରାତି ସରିଯିବ କିନ୍ତୁ କଥା ସରିବ ନାହିଁ। କଥା କେବେ ସରେ ନାହିଁ। ମଣିଷ ମରିଗଲେ ମଧ୍ୟ ତା' କଥା ରହିଯାଏ।

## ଅବସର

ଜୁନ୍ ତିରିଶରେ ଚାକିରିରୁ ଅବସର ନେଲି। ଆମେ ସ୍ୱାମୀ ସ୍ତ୍ରୀ ନିଷ୍ପତ୍ତି ନେଲୁ ଜୁଲାଇ ୧ରେ ଭୁବନେଶ୍ୱର ନିଜ ଘରକୁ ଫେରିଯିବୁ। ଜଣେ ଡି.ଜି ଶ୍ରୀ ବିଜୟ କୁମାର ପାଣିଗ୍ରାହୀ ଯେଉଁଦିନ ଅବସର ନେଲେ ସେଇଦିନ ସକାଳୁ ବାସଭବନ ଖାଲି କରି ଦେଇଥିଲେ ଓ ଅଫିସରୁ ସିଧାଗଲେ ତୁଳସୀପୁରରେ ଥିବା ତାଙ୍କ ନିଜ ଘରକୁ। ସେ ଯେତିକି ଦକ୍ଷ ସେତିକି ସଚ୍ଚୋଟ ଥିଲେ; କିନ୍ତୁ ଏମିତି ଅଫିସର ଅଛନ୍ତି (ଖାଲି ଅଫିସର କାହିଁକି ଅନେକ ଭୂତପୂର୍ବ ଏମପି, ଏମଏଲଏ) ପଦବୀ ଗଲାପରେ ମଧ୍ୟ ନିର୍ଲଜ୍ଜ ପରି ସରକାରୀ ଘର ମାସ ମାସ ବର୍ଷ ବର୍ଷ ମାଡ଼ି ବସନ୍ତି। ସରକାର ଘର ଛାଡ଼ ନୋଟିସ୍ ଦିଅନ୍ତି । ବଜାର ଦରରେ ଘର ଭଡ଼ା ନେବା ପାଇଁ ଧମକ ଦିଅନ୍ତି କିନ୍ତୁ ସେସବୁ କୁମ୍ଭୀର ପିଠିକୁ ଚିମୁଟିବାର କାମଦିଏ। ଘରୁ ଧକ୍କା ମାରି ବାହାର ନକରିବା ପର୍ଯ୍ୟନ୍ତ ଅନେକ ଜନସେବକ ସରକାରୀ ଘର ମାଡ଼ିବସନ୍ତି। ଘର ମାଡ଼ି ବସିବାରେ ବହୁତ ଲାଭ। ବଜାର ଦରରେ ଘରଭଡ଼ା ମଧ୍ୟ ପ୍ରକୃତ ବଜାର ଦରଠୁ ବହୁତ କମ୍। ସେପର୍ଯ୍ୟନ୍ତ ଭଡ଼ାରେ ଲାଗିଥିବା ନିଜ ଘରୁ ବେଶ୍ ଭଲ ଭଡ଼ା ଆଦାୟ ହେଉଥିବ। ମୁଁ ଚାହିଁଥିଲି ଜୁନ୍ ତିରିଶରେ ଫେୟାରୱେଲ ନେଇ ଜୁଲାଇ ୧ ସକାଳୁ ଚାଲିଯିବି ଭୁବନେଶ୍ୱରର ନିଜ ଘରକୁ। କିନ୍ତୁ ତାହା ସମ୍ଭବ ହେଲାନାହିଁ। କାରଣ ମୋ' ଘର ଭଡ଼ା ନେଇଥିବା କମ୍ପାନୀ ଆଉ ମାସେ ଟାଇମ୍ ମାଗିଲା, ତେଣୁ ମୁଁ ଜୁଲାଇ ମାସ କଟକରେ ରହିବା ପାଇଁ ବାଧ୍ୟ ହେଲି ଓ ଅଗଷ୍ଟ ୧ରେ ଘର ଛାଡ଼ିଲି। ନୟାପଲ୍ଲୀ ଆଇଆରସି ଭିଲେଜର ଘର। ମୋ' ସ୍ତ୍ରୀ ଠିଆ ହୋଇ ଘର ତିଆରି କରିଛନ୍ତି। ଯେଉଁଦିନ ତଳମହଲା ଛାତ ପଡ଼ିଲା ମୁଁ

ଚୌକିଟିଏ ପକାଇ ବିରକ୍ତ ହୋଇ ବସିଥାଏ। କାରଣ ଗୋଟିଏ ସିମେଣ୍ଟର ମିକ୍ସର ଶବ୍ଦ ଗଗନ ଭେଦି କର୍ଣ୍ଣକଟୁ ତା' ସାଙ୍ଗକୁ ଧୂଳି ଉଡ଼ି ସମଗ୍ର ଶରୀର ଆଚ୍ଛାଦିତ। ସ୍ତ୍ରୀ ଛାତ ଉପରେ ଚଢ଼ି କାମ ଦେଖୁଥାନ୍ତି ମୁଁ ତଳେ ବସି ମନେ ମନେ ତାଙ୍କୁ ଗାଳି ଦେଉଥାଏ। ବିଡ଼ିଏରୁ ଘରଟିଏ କିଣି ଦେଇଥିଲେ କେତେ ଭଲ ହୋଇଥାନ୍ତା! ଘର କରିବା, ଜମି ପାଇବାଠୁ ଆରମ୍ଭ କରି ଲୋନ୍ ପାଇବା, ଡିଜାଇନ୍ କରିବା, ମିସ୍ତ୍ରୀଙ୍କ ପଛରେ ଗୋଡ଼େଇବା କେତେ ଯେ କଷ୍ଟ ଅନୁଭବୀ ହିଁ ଜାଣନ୍ତି। ଘର ତିଆରି କରିବାକୁ ଏକ ଦାର୍ଶନିକ ଭଙ୍ଗୀରେ ଦେଖି ମୁଁ ଏକ ଉପନ୍ୟାସ ଲେଖିଛି 'ଦିଗନ୍ତର ପଥେ'। ଅନେକ ପ୍ରତିଷ୍ଠିତ ସାହିତ୍ୟିକ ଉପନ୍ୟାସକୁ ପଢ଼ି ବେଶ୍ ପସନ୍ଦ କରିଛନ୍ତି।

ହଁ, ମୁଁ ବସିବା କଥା କହୁଥିଲି। ଦେହସାରା ଧୂଳି ସାଲୁବାଲୁ, ପବନରେ ବାଳ ଫୁରୁଫୁରୁ ଉଡୁଛି। ଦର୍ପଣରେ ନିଜକୁ ଦେଖିଥିଲେ ନିଜେ ନିଜକୁ ବଡ଼ ଛୋଟ ମନେ କରିଥାନ୍ତି। ଦେଖୁଥାଏ ଜମିଟାକୁ। ସରକାରୀ ଜମି କେତେ କଷ୍ଟରେ ମିଳିଲା। ଛତ୍ରପୁରରୁ ଆସିଥିଲି ଭୁବନେଶ୍ୱର ଅଫିସକୁ ରେଜିଷ୍ଟ୍ରେସନ ପାଇଁ। ଯେହେତୁ ମୁଁ ଜଣେ ଏସ୍‌ପି ସବ୍‌ରେଜିଷ୍ଟ୍ରର ଯଥାମାନ୍ୟ ଦେଇ ପାଖରେ ବସେଇଲେ, 'ଚା' ମଗେଇଲେ ଓ ଜଣେ କ୍ଲର୍କକୁ ମୁଁ ଆଣିଥିବା କାଗଜ ଦେଲେ ଚେକ୍ କରିବା ପାଇଁ। କ୍ଲର୍କ ବାବୁଙ୍କର କଳା ନିଶ ଖସିଆସିଛି ଓଠର ବହୁ ତଳକୁ। ଦୁଇ ଚଉଡ଼ା କଲି ଲମ୍ବି ଆସିଛି କାନର ଆହୁରି ଇଞ୍ଚେ ତଳକୁ। ମୁଣ୍ଡ ଉପରଟି ସାହାରା ମରୁଭୂମି ଓ ଘେରିପଟେ ବୁଦୁବୁଦିଆ ଜଙ୍ଗଲ ଓ ପାନ ଖାଇ ଓଠ ଲାଲ୍ କରି ଏ ଖର୍ବାକୃତି ବାବୁଟି କାଗଜ ନେଇଗଲେ ଏବଂ ସାର୍ ଏବେ ଚେକ୍ କରୁଛି ବୋଲି କହିଲେ ଓ ଦଶ ମିନିଟ୍ ପରେ ଆସି କହିଲେ ସାର୍ କ'ଣ କରିବା ୭୫ ପଇସାର କାଗଜ ଅଧିକା ଦରକାର। ମୁଁ କହିଲି ଗଞ୍ଜାମର ସବ୍‌ରେଜିଷ୍ଟ୍ରର ହିସାବ କରିଦେଇଥିଲେ ଭୁଲତ ହେବା କଥା ନୁହେଁ? ତାଙ୍କ ଉତ୍ତର ଥିଲା 'ସାର୍ ସେ କେମିତି କ'ଣ ଭୁଲ୍ କରିଦେଇଥିବେ ମୁଁ ଠିକ୍ ହିସାବ ଦେଉଛି।' ସବ୍ ରେଜିଷ୍ଟ୍ରର ନୂଆ ନୂଆ ଆସିଥାନ୍ତି, ବିଚରା ଅସହାୟତା ପ୍ରକାଶ କଲେ। ମୋତେ ପୁଣି ୯୭୫ ଟଙ୍କାର କାଗଜ କିଣିବାକୁ ପଡ଼ିବ। କ୍ଲର୍କ ବାବୁ କହିଲେ ସାର୍ ଆପଣ ଗୋଟିଏ ଦରଖାସ୍ତ ଦିଅନ୍ତୁ ଆମେ କଲେକ୍ଟରଙ୍କୁ ପଠେଇଦେବା ଓ ଦୁଇ ମାସ ମଧ୍ୟରେ ଫଇସଲା ଆସିଯିବ। ମୁଁ ଗଲି ଏଡ଼ିଏମ୍‌ଙ୍କ ପାଖକୁ । ବେଶ୍ ପୋଖତ ଲୋକ। ବାରମ୍ବାର ହିସାବ କରି କହିଲେ ଆପଣ ୩ ଟଙ୍କା ୫୦ ପଇସାର ଅଧିକା ଷ୍ଟାମ୍ପ ପେପର ବ୍ୟବହାର କରିଛନ୍ତି ତେଣୁ ରେଜିଷ୍ଟ୍ରେସନରେ କିଛି ଅସୁବିଧା ନାହିଁ। ଉକ୍ତ କ୍ଲର୍କଙ୍କୁ ଡକେଇବାରୁ ସେ ସାଙ୍ଗେ ସାଙ୍ଗେ ଧାଇଁଲେ ଓ ସଙ୍ଗେ ସଙ୍ଗେ ରେଜିଷ୍ଟ୍ରେସନ

ହୋଇଗଲା । ଖୁସିରେ ସିଧା ଫେରିଲି ଛତ୍ରପୁର, ନାଚୁଣୀ ପାଖେ ଗାଡ଼ି ରଖି ଡ୍ରାଇଭରଙ୍କୁ ମୋ' ପାଇଁ ଓ ତା' ପାଇଁ 'ଚା' ଆଣିବା ପାଇଁ ୫୦ ଟଙ୍କିଆ ନୋଟ୍‌ଟିଏ ଦେଲି । ଡ୍ରାଇଭର ଚା ଖର୍ଚ୍ଚ ଏବଂ ଆଉ ଚାଳିଶ ଟଙ୍କା ରଖି ବାକି ପଇସା ଫେରାଇ ଦେଲା ଓ ନିଜ ଆଡୁ କହିଲା ରେଜିଷ୍ଟ୍ରେସନ ଅଫିସର ସେ ନିଶୁଆ କ୍ଲର୍କ କହିଛନ୍ତି ଏସ୍‌ପି ସାହେବ କହିଛନ୍ତି ୪୦ ଟଙ୍କା ଦିଅ, କହି ନେଇଗଲା । ଭାବିଥିଲି ଭୁବନେଶ୍ୱର ଏଡ଼ିଏମଙ୍କୁ ଚିଠି ଲେଖିବି । ବାଘ ପାଟିରୁ ପିଠା ଛଡ଼େଇ ଖାଉଥିବା ଲୋକଟିକୁ ଧରିବା । କିନ୍ତୁ ସ୍ତ୍ରୀ କହିଲେ ଛାଡ଼ ଯାହାହେଲେବି ତଳିଆ କର୍ମଚାରୀ ।

ରଫଖାତାରେ ବହୁତ ଗାବରାଯାଏ । ସବୁ କଥା ତ ଲେଖିହୁଏ ନାହିଁ । ଏମିତି ଅନେକ କଥା ଅଛି ଯାହା ଲେଖିଲେ ସରକାର କିମ୍ବା ବ୍ୟକ୍ତିବିଶେଷଙ୍କ ପ୍ରତି ବିଶ୍ୱାସଘାତକତା ହେଲା ବୋଲି କୁହାଯିବ । କେତେକ କଥା ଅଛି ଯାହା ଖୋଲି କହିଲେ କେନ୍ଦ୍ର ସରକାର କିମ୍ବା ରାଜ୍ୟ ସରକାରଙ୍କର ସୁରକ୍ଷା ବନ୍ଦୋବସ୍ତ ତଥା ସ୍ୱାର୍ଥରେ ଆଞ୍ଚ ଆସିବ । ଆଜିକାଲି ବହୁତ ଭୂତପୂର୍ବ ସରକାରୀ କର୍ମଚାରୀ ଅନେକ 'ଭିତିରିଆ କଥା' ଖବରକାଗଜରେ ଛାପୁଛନ୍ତି କିମ୍ବା ପୁସ୍ତକ ଆକାରରେ ପ୍ରକାଶିତ କରୁଛନ୍ତି । ନୀତି ଦୃଷ୍ଟିରୁ ତାହା କେତେ ସ୍ପୃହଣୀୟ ତାହା ସେମାନେ କଳନା କରୁନାହାନ୍ତି । କିନ୍ତୁ ଲୋକ ଚରିତ୍ରକୁ ନେଇ କେତେକ ଘଟଣାକୁ ବର୍ଣ୍ଣନା କଲେ କିଛି ଅସୁବିଧା ନାହିଁ ।

ଆମ୍ଭେମାନେ ଯେତେବେଳେ ଆଇପିଏସ୍‌ରେ ପ୍ରବେଶ କଲୁ ସେତେବେଳେ ଭାବିଲୁ ଯେ ଆମେ ସବୁଠୁ ବେଶି ବୁଦ୍ଧିମାନ; କିନ୍ତୁ ଏଠି କେତେଗୁଡ଼ିଏ ଘଟଣା ବର୍ଣ୍ଣନା କରିବା ପାଇଁ ଯାଉଛି ଯାହାକୁ ପାଠକେ ଅନୁମାନ କରିବେ ଯେ ଆମେମାନେ କେତେ ନିର୍ବୋଧ ଥିଲୁ ।

୧୯୬୯ରେ ମୁଁ ପୁରୀରେ ପହଞ୍ଚିଲି ଜିଲ୍ଲା ଟ୍ରେନିଂ ପାଇବା ପାଇଁ । ଏସ୍‌ପି ଶ୍ରୀ ଏନ୍.କେ. ସିଂହ ଅଫିସରେ ସୁନ୍ଦର ରୁମ୍‌ଟିଏ ବନ୍ଦୋବସ୍ତ କରିଦେଇଥିଲେ । ଉପରମହଲା, ପ୍ରଶସ୍ତ ବାରଣ୍ଡା, ସମୁଦ୍ର ଦୃଶ୍ୟମାନ । ତା' ସାଙ୍ଗକୁ ରୁମ୍‌ରେ ଲାଗିଛି କିଚେନ୍ ଓ ଟଏଲେଟ୍ । ଏସ୍‌ପିଙ୍କ ନିର୍ଦ୍ଦେଶ ଅନୁସାରେ ସର୍ଜେଣ୍ଟ ମେଜର ଭଲ ରୋଷେଇ ଜାଣିଥିବା ଜଣେ ଅର୍ଡ଼ର୍ଲି କନେଷ୍ଟବଳ ଦେଲେ । ମୁଁ ଯେତେବେଳେ କହିଲି ଯେ ରୋଷେଇ ହେବନାହିଁ, ପ୍ରତ୍ୟେକ ଦିନ ପୁରୀ ହୋଟେଲରୁ ଟିଫିନ୍ କ୍ୟାରିୟରରେ ଲଞ୍ଚ ଆସିବ ସେ ବିଚରା ମୁହଁଟା ଶୁଖେଇ ଦେଲା । ରୋଷେଇ ହେଲେ ବଜାର ସଉଦା, ବଜାର ସଉଦା ହେଲେ ବାଟମାରଣ କିମ୍ବା ସ୍ଥାନୀୟ ପୋଲିସକୁ କହି କିଛି

ଡାଲି, ଚାଉଳ, ପନିପରିବା, ତେଲ, ମସଲା ଆଣିବା। ଏସବୁ ଚିନ୍ତା କରି ଆସିଥିବା ଲୋକଟିର ଯୋଜନା ଭଣ୍ଡୁର ହୋଇଯିବା ଦେଖି ବେଶ୍ ବିଚଳିତ ହେଲା। ତା' କାମଥିଲା କେବେ କେମିତି ଚା' ବନେଇ ଦେବା ସକାଳ ଜଳଖିଆ ମୁଁ ନିଜେ ତିଆରି କରିଦେଉଥିଲି (ବ୍ରେଡ୍, ବଟର ଓ ଗୋଟିଏ ଫଳ)। ଲୋକଟା କିନ୍ତୁ ଟିକିଏ ବୋକା ବୋକା ଭଳି ଜଣାପଡୁଥିଲା, ଜୋତାରେ ରଙ୍ଗ ମାରିଲେ ବେଶି ରଙ୍ଗ ମାରୁଥିଲା ତେଣୁ ପ୍ୟାଣ୍ଟରେ ଲାଗିଯାଉଥିଲା। ଦିନେ ଏସଡ଼ିଓ ମଦନମୋହନ ଖଟୁଆ ଆସିଲେ ଗପସପ କରିବା ପାଇଁ ଓ ଅର୍ଡ଼ର୍ଲି ମିଶ୍ରକୁ କହିଲି ଚା' ଆଣିବା ପାଇଁ। ସେ କପେ ଚା' ନେଇ ଆସିଲା। ବିସ୍ମିତ ହେଲି କିନ୍ତୁ ଏସଡ଼ିଓଙ୍କୁ ମୁଁ ବୁଝେଇଲି ଯେ ମୁଁ ଏବେ ଚା' ପିଇଛି ସେଥିପାଇଁ କପେ ଚା' ଆସିଲା। ସେ ଗଲାପରେ ମିଶ୍ରକୁ ବିରକ୍ତ ହେଲି 'ତମର ଏତିକି କାଣ୍ଡ ଜ୍ଞାନ ନାହିଁ ଚା' ମାଗିଲେ ମାତ୍ର କପେ ଚା' ଆଣୁଛ? ' ମୁଣ୍ଡ ପୋତି 'ସାର୍ ଭୁଲ୍ ହୋଇଗଲା' ବୋଲି ସେ କହିଲା। ତା' ଆରଦିନ ସକାଳେ ଚା' ମାଗିଲି ଓ ସେ ଦୁଇ କପ୍ ଚା' ଆଣି ଥୋଇଦେଲା। ପଚାରିବାରୁ କୈଫିୟତ ଦେଲା 'ସାର୍ କହିଥିଲେ ପରା ମାଗିଲେ ଦୁଇ କପ୍ ଦେବା ପାଇଁ।' ଲୋକଟାର ଅସହ୍ୟ ବୋକାମୀ ଦେଖି ତାକୁ ଫେରେଇ ଦେଲି ଓ ତିନି ଚାରି ଦିନ ପରେ ସର୍ଜେଣ୍ଟ ମେଜରଙ୍କୁ ପଚାରିଲି 'ସେ ବୋକା କନେଷ୍ଟବଳ ଏବେ କ'ଣ କରୁଛି? ' ସେ ମୁଣ୍ଡ ପୋତି ମୁରୁକି ହସା ଦେଲେ ଓ ବାଧ କଲାରୁ ଉତ୍ତର ଦେଲେ 'ସାର୍ ସେ ଆଦୌ ବୋକା ନୁହେଁ। ବରଗଛ ତଳେ ବସି ଅନ୍ୟ ସିପାହୀମାନଙ୍କୁ କହୁଥିଲା, 'ଇଏ କେମିତି ଆଇପିଏସ୍ ହେଲେ? ଏକ ନମ୍ବର ବୁଡ଼ବକ୍। ଗୋଟିଏ ଦୁଇଟା ଟ୍ରିକ୍ ଦେଖେଇ ଦେଲି ଆପେ ଫେରେଇ ଦେଲେ, ମୋତେ କହିବା ପାଇଁ ପଡ଼ିଲା ନାହିଁ।' ମନଖୋଲା ହସ ହସିଲି ଓ ସର୍ଜେଣ୍ଟ ମେଜର ଆଶ୍ଚର୍ଯ୍ୟ ହେଲେ ଯେ ମୁଁ ରାଗିବା ପରିବର୍ତ୍ତେ ହସୁଥିଲି। ସେ କହିଲେ, 'ସାର୍ ମୁଁ ତାକୁ ଏସ୍‌ପିଙ୍କ ସାମ୍‌ନାରେ ପେଶ୍ କରିବି ପନିସ୍‌ମେଣ୍ଟ ପାଇଁ।' କିନ୍ତୁ ମନା କଲି। ଲୋକଟାର ବୁଦ୍ଧି ଅଛି କିନ୍ତୁ ଭୁଲ୍ ବାଟରେ ଯାଉଛି। ତାକୁ ପୁଣିଥରେ ମୋ' ଅର୍ଡ଼ର୍ଲି କରି ଆଣିଲି। ବିଚରା ବହୁକୁଟୁମ୍ବୀ ଲୋକଟି ତାକୁ ମାସକୁ ଦଶଟି ଟଙ୍କା ଦେବାରୁ କୃତ୍ୟାକୃତ୍ୟ ହୋଇଗଲା ଓ ଶେଷ ପର୍ଯ୍ୟନ୍ତ ବହୁତ ଭଲ କାମ କଲା।

ଏସ୍‌ପିଙ୍କ ଅଫିସରେ ରଥ ବୋଲି ଜଣେ କନେଷ୍ଟବଳ ଥାଏ। ଘର ସଦରଥାନା ଅନ୍ତର୍ଗତ ବ୍ରହ୍ମଗିରି ରାସ୍ତାର ଏକ ଗାଁରେ। ମୁଁ କେତେବେଳେ କେମିତି ସଦରଥାନା ଗଲେ ଦେଖେ ଥାନା ବାରଣ୍ଡାରେ ସେ ଲୋକଟି ମୁହଁ ଶୁଖେଇ ବସିଛି ଓ ପଚାରିଲେ କହେ କାମଅଛି କିନ୍ତୁ କାମ ହୋଇପାରୁନି। ଏମିତି ଚାରି ପାଞ୍ଚଥର ଦେଖିବା ପରେ

ନିଜେ ଥାନାବାବୁଙ୍କ ଉପରେ ଭୀଷଣ ବିରକ୍ତ ହେଲି। 'ତମେ ଜଣେ କନେଷ୍ଟବଲର ଅଭିଯୋଗ ଶୁଣୁନାହଁ, ସାଧାରଣ ଲୋକଙ୍କୁ କି ପ୍ରକାର ବ୍ୟବହାର କରୁଥିବ ମୁଁ ଜାଣିପାରୁନାହିଁ। ଏସ୍‌ପିଙ୍କୁ କହିବି?' ଥାନାବାବୁ ଭାରି ଭଲ ଓ ସଚ୍ଚୋଟ ଲୋକ ଏବଂ ତାଙ୍କର ଉତ୍ତର ଥିଲା 'ସାର୍ ସେ ନିଜ ବିଷୟ ନକହି ଆଉଜଣଙ୍କ ବିଷୟ କହୁଛି।' ମୁଁ କହିଲି ତା'ହେଲେ ଏଫଆଇଆର ନକରି ଷ୍ଟେସନ ଡାଏରୀ କର ଓ ଆରଜଣ ଲୋକଙ୍କୁ ଡାକି ପଚାର। ଏ ଘଟଣାର ଚାରି ପାଞ୍ଚ ମାସ ପରେ ରଥ ମୋ' ରହିବା ରୁମ୍‌କୁ ଆସି ସିଧା ମୋ' ଗୋଡ଼ ତଳେ ପଡ଼ିଗଲା। 'ହଜୁର ଯାହା ବର୍ଷ ବର୍ଷ ଧରି ହେଉନଥିଲା ଆପଣଙ୍କ ପଦେ କଥାରେ ହୋଇଗଲା। ଆପଣ ଦିନେ ନା ଦିନେ ଆଇ.ଜି ହେବେ (ସେତେବେଳେ ଆଇ.ଜି ସବୁଠାରୁ ବଡ଼ ପୋଷ୍ଟ ଥିଲା)। ଆପଣଙ୍କ ବିରୁଦ୍ଧରେ ଯିଏ କହିବ ତା' ମୁହଁ ପୋଡ଼ିଯିବ, ଆପଣଙ୍କ ବିରୁଦ୍ଧରେ ଯିଏ ଲେଖିବ ତା' ଆଙ୍ଗୁଠି ଭାଙ୍ଗିଯିବ।' ତା'ପରେ ପଇତାକୁ ଧରି 'ସାର୍ ମୁଁ ନୈଷ୍ଠିକ ବ୍ରାହ୍ମଣ, ସବୁଦିନ ତିନିଥର ପୂଜା କରେ। ଯେହେତୁ ଆପଣଙ୍କ ଠାରୁ ବୟସରେ ବଡ଼ ତେଣୁ ଆପଣଙ୍କୁ ଆଶୀର୍ବାଦ କରୁଛି ମୋ' କଥା ସତ୍ୟ ହେବ।' ତାଙ୍କ ଆଶୀର୍ବାଦ ହେଉ କିମ୍ବା ଅନ୍ୟ କାରଣରୁ ହେଉ ମୋତେ ଯେତେବେଳେ ଯିଏ କ୍ଷତି କରିବା ପାଇଁ ଚାହିଁଛନ୍ତି ସେମାନେ କ୍ଷତିରେ ପଡ଼ିଛନ୍ତି। ତେବେ ମୁଁ ତାଙ୍କର କ'ଣ ଉପକାର କଲି ପାଠକେ ଶୁଣନ୍ତୁ।

ରଥ ବହୁଦିନ ଗଞ୍ଜାମ ଜିଲ୍ଲାରେ ଥିଲାବେଳେ ତାଙ୍କ ଗାଁ ଜମିଗୁଡ଼ାକୁ କେତେଜଣ ଲୋକ ମାଡ଼ି ବସିଲେ। ରଥ କେସ୍ କଲା କିନ୍ତୁ କେସ୍ ଚାଲିଲା ଗେଣ୍ଡା ପରି। ଥାନାକୁ ଗଲା। ଥାନାବାଲା କହିଲେ ସିଭିଲ କେସ୍‌ରେ ଆମେ କ'ଣ କରିବୁ? ରଥ ଏମିତି ଯାଉଥାଏ ଦିନେ ଦେଖିଲା କାର୍‌ରୁ ଓହ୍ଲେଇଲେ ଜଣେ ଆଭିଜାତ୍ୟପୂର୍ଣ୍ଣ ବଙ୍ଗାଳୀ ଲୋକ। ତାଙ୍କର ପୁରୀ ପାଖରେ ଏକ ବିରାଟ ପୋଖରୀ ଓ ରାଧାକୃଷ୍ଣ ମନ୍ଦିର ଏବଂ ରହିବା ପାଇଁ ଦୁଇବଖରା ଘର ଅଛି। ରଥଯାତ୍ରା ସମୟରେ ଆସି ସେ ସେଇ ଘରେ ଦଶ ପନ୍ଦର ଦିନ ରହନ୍ତି। କିନ୍ତୁ ସେ ପାଗଳ ସମ ହୋଇଗଲେ ଯେତେବେଳେ ଦେଖିଲେ ଯେ କେତେଜଣ ବଦମାସ ଲୋକ ସେ ଘର ମାଡ଼ି ବସିଛନ୍ତି। ଥାନାବାବୁ ଏହାକୁ ସିଭିଲ କେସ୍ କହି ଚୁପ୍‌ଚାପ୍ ରହୁଥିଲେ ଓ ସେ ଭଦ୍ରଲୋକ ମୁହଁ ଶୁଖେଇ ଫେରିଗଲା ବେଳେ ରଥ କହିଲା 'ସାର୍ ମୁଁ ସେ କାମ କରିଦେବି?' ମୁଁ କହିବା ପରେ ପୋଲିସ କେସ୍ କଲା, ୧୪୪ ଧାରା ଜାରି କଲା ଓ ଗୁଣ୍ଡାମାନେ ପଳେଇଲେ। ବଙ୍ଗାଳୀ ଜମିଦାର ରଥ ଉପରେ ଭାରି ଖୁସି, ତାକୁ ହଜାରେ ଟଙ୍କା ଯାଚିଲେ। କିନ୍ତୁ

ରଥ ମନାକଲା, କେବଳ କହିଲା ଯେ ମୋ' ଜମିଗୁଡ଼ିକ ଆପଣ ମୁକୁଳେଇ ଦିଅନ୍ତୁ। ଉପାୟ ମଧ୍ୟ ବତେଇ ଦେଲା। କଲିକତାର ଆଲିପୁର କୋର୍ଟରେ ଜମି ମାଡ଼ିବସିଥିବା ଲୋକଙ୍କ ନାଁରେ କେସ୍ କରି ୱାରେଣ୍ଟ ପଠେଇଦେଲେ ସେମାନେ ଆପେ ଜମି ଫେରେଇ ଦେବେ। ବଙ୍ଗାଳୀ ଜମିଦାରଙ୍କର ସଦର ଥାନାରେ ସିନା ବୁଦ୍ଧି ହଜିଯାଉଥିଲା କିନ୍ତୁ ଆଲିପୁର କୋର୍ଟରେ କେସ୍ କରିବା ପାଇଁ ଅସୁବିଧା କ'ଣ? ଏକ ମନଗଢ଼ା କାହାଣୀ କରି ବିଭିନ୍ନ ଜଘନ୍ୟ ଅପରାଧରେ ଜଡ଼ିତ କରି ଜମି ମାଡ଼ିବସିଥିବା ଲୋକଙ୍କ ନାଁରେ ୱାରେଣ୍ଟ ଆସିଲା ସଦର ଥାନାକୁ। ପୋଲିସ ସେମାନଙ୍କୁ ହାତକଡ଼ି ପକେଇ ନେଇଗଲା ଓ ରଥ କଲିକତା ଯାଇ ଜମିଦାରଙ୍କ ଘରେ ରହିଲା। ତାଙ୍କ ଗାଡ଼ିରେ ମହାନଗରୀ ବୁଲିଲା ଓ କଚେରୀ ବାରଣ୍ଡାରେ ସେମାନଙ୍କୁ ପଚାରିଲା 'କ'ଣ ଭାଇ କଲିକତା ସହର ବୁଲିବା ପାଇଁ ଆସିଥିଲ ତ?' ବଡ଼ କଷ୍ଟରେ ସେମାନେ ଜାମିନ୍ ପାଇଲେ ଓ ଫେରିଆସି ରଥ ସଙ୍ଗେ ସନ୍ଧି କଲେ। ଜମି ଫେରସ୍ତ, ସାତବର୍ଷ ଫସଲର ମୂଲ୍ୟ ଓ ଶତକଡ଼ା ୧୦ ସୁଧ ତଣ୍ଡିଲେ ଓ ରଥଙ୍କ ଠାରୁ ମୁଁ ଆଶୀର୍ବାଦ ପାଇଲି।

ଚନ୍ଦ୍ରଶେଖର ମିଶ୍ର ବୋଲି ଜଣେ ଟାଉନ୍ ହାବିଲଦାର ଥିଲେ। ମୁଁ ରାତି ୧୧ରୁ ୩ ପର୍ଯ୍ୟନ୍ତ ସାଇକେଲରେ ସାରା ସହର ବୁଲେ ଯାହାଦ୍ୱାରା ଚୋରି ବହୁତ କମିଗଲା। ମୁଁ ମାର୍କ କଲି ହାବିଲଦାର ମିଶ୍ର ସାମାନ୍ୟ ଛୋଟଉଛନ୍ତି ଓ ବାମ ହାତଟା ଟିକିଏ ବଙ୍କା। ସେ ବିଷୟରେ ପଚାରିବାରୁ ସେ ଯାହା ଜବାବ୍ ଦେଲେ ସେଥିରେ ମୁଁ ସାମାନ୍ୟ ଲଜ୍ଜିତ ହେଲି। ତାଙ୍କ ଉତର ଥିଲା 'ସାର୍ ବହୁତ ଲମ୍ବା କାହାଣୀ। ବର୍ତମାନ ଡ୍ୟୁଟି ସମୟ, ଡ୍ୟୁଟି ସମୟରେ ଅନ୍ୟ ବିଷୟରେ କଥାବାର୍ତା ହେବା ଉଚିତ୍ ନୁହେଁ।' ଦେଖିଲି ଲୋକଟି ଠିକ୍ କହୁଛି। ଲୋକଟି ଯେଉଁ ସ୍ତରର ହେଇଥାଉ, ତା' ଜ୍ଞାନ ଯେତେ ସୀମିତ ଥାଉ ତଥାପି ପ୍ରତ୍ୟେକ ଲୋକ ଠାରୁ କିଛି ନା କିଛି ଶିଖିବାର ଅଛି। ଦୁଇଦିନ ପରେ ରବିବାର ସକାଳେ ମୁଁ ଚା' ପିଉଛି ହାବିଲଦାର ମିଶ୍ର ଆସିଲେ ଓ ମେଡ଼ାଲ ଦେଖାଇଲେ । ଅପୂର୍ବ ସାହସିକତା ପାଇଁ ସେ ରାଷ୍ଟ୍ରପତିଙ୍କ ଠାରୁ ମେଡ଼ାଲ ପାଇଥିଲେ। ମିଶ୍ର ରାତ୍ରି ପ୍ରହରା ଦେବା ସମୟରେ ଦେଖିଲେ ୬ ଜଣ ଲୋକ ସନ୍ଦେହଜନକ ଭାବେ ଷ୍ଟେସନ ଆଡ଼କୁ ଯାଉଛନ୍ତି। ସମସ୍ତେ ବଙ୍ଗାଳୀ ଓ ଦୁଇ ତିନିଟା ପ୍ରଶ୍ନ ପଚାରିବାରୁ ଘବରେଇ ଯାଇ ଦୌଡ଼ିବା ଆରମ୍ଭ କଲେ। ମିଶ୍ର ଜଣକୁ ମାଡ଼ି ବସିଲା। ବାକି ପାଞ୍ଚ ଜଣ ଛଡ଼େଇବା ପାଇଁ ବହୁ ଚେଷ୍ଟା କଲେ ବିଧା, ଚପୁଡ଼ା, ଗୋଇଠା ବର୍ଷି ଆଙ୍ଗୁଠିକୁ ପାଦରେ ଚକଟି ଦେଲେ। ଜଣେ ବାଡ଼ି ଗୋଟେ ଆଣି ମୁଣ୍ଡରୁ ଗୋଡ଼ ପର୍ଯ୍ୟନ୍ତ ପିଟି ଚାଲିଲା। ତା'ସତ୍ତ୍ୱେ ମିଶ୍ର ସେ ଚୋରକୁ ମାଡ଼ି ବସିଥାଏ ଓ ହୁଇସିଲ ବାରମ୍ବାର

ଫୁଙ୍କୁଥାଏ। ହୁଇସିଲ ଶୁଣି ଦୁଇଜଣ ପୋଲିସ ଆସି ପହଞ୍ଚ ଆଉ ଦୁଇଜଣଙ୍କୁ ଧରି ପକେଇଲେ ଓ ବାକି ସମସ୍ତେ ପଳେଇଲେ। ସେମାନେ ପରେ ଧରାପଡ଼ିଲେ ବର୍ଦ୍ଧମାନ ଜିଲ୍ଲାରୁ। ମିଶ୍ରଙ୍କୁ ମୃତବତ ଅବସ୍ଥାରେ କଟକ ପଠାଗଲା। ତାଙ୍କର ହାତ, ଗୋଡ଼, ଦୁଇଟା ଆଙ୍ଗୁଠି, କାନ୍ଧ ହାଡ଼ ଭାଙ୍ଗି ଯାଇଥିଲା। ତା' ସାଙ୍ଗେ ମୁଣ୍ଡରେ ତିନି ଜାଗାରେ ଗାତ। କଟକରେ ଡାକ୍ତରମାନେ ଆପ୍ରାଣ ଚେଷ୍ଟାକରି ତାକୁ ବଞ୍ଚେଇଲେ ଓ ମିଶ୍ର ସୁସ୍ଥ ହୋଇ କାମରେ ଯୋଗଦେଲେ। ତାଙ୍କୁ ଆଇ.ଜି ଏଏସଆଇ କରିଦେବେ ବୋଲି କହିଲେ କିନ୍ତୁ ମିଶ୍ର ମନା କଲେ। ମୁଁ କାରଣ ପଚାରିବାରୁ କହିଲେ 'ସାର୍ ଯେ ପକ୍ଷୀ ଉଡ଼େ ଯେତେ ଦୂର। ମୋ' ପାଠ ପଞ୍ଚମ। ମୁଁ ଏଏସଆଇ ଜମାଦାର ହୋଇ କେମିତି କାଗଜପତ୍ର ଇଂରାଜୀରେ ଲେଖିଥାନ୍ତି? ଚାକିରି ଚାଲିଯାଇଥାନ୍ତା।' ମୁଁ ସହମତ ହେଲି, ମିଶ୍ର କେବଳ ସାହସୀ ନୁହଁନ୍ତି ବୁଦ୍ଧିମାନ ମଧ୍ୟ।

ନୟାଗଡ଼ ଓ ଖୋର୍ଦ୍ଧା ଅଞ୍ଚଳରେ ନାରଣ ଡାକୁର ଉତ୍ପାତ ୬୦ ରୁ ୭୦ ମସିହାରେ ଉତ୍ପାତ ବହୁପରିମାଣରେ ହେଉଥିଲା। ସେ ଗରିବ ଲୋକଙ୍କୁ ସାହାଯ୍ୟ କରୁଥିବାରୁ ଗାଁ ଲୋକେ ତାକୁ ସହଯୋଗ କରୁଥିଲେ। କେତେକ ପୋଲିସ ଅଫିସର ମଧ୍ୟ ଡରୁଥିଲେ। ନିରୋଦ ମହାନ୍ତି ବୋଲି ଜଣେ ଏସ୍‌ପି ପୋଲିସ ଫୋର୍ସ ନେଇ ଖୋଜିଲେ କିନ୍ତୁ ନାରଣର କୌଣସି ଟେର ପାଇଲେ ନାହିଁ। ଅନେକ ପୋଲିସ ଅଫିସର ଚୁପ୍ ରହିଲେ କିନ୍ତୁ ଗୋଟିଏ ଥାନାର ଜଣେ ଏ.ଏସ୍.ଆଇ ଡାକୁମାନଙ୍କ ବିଷୟରେ ଗାଁ ଗାଁ ବୁଲି ଖବର ସଂଗ୍ରହ କଲେ। ଉତ୍ତରରେ ପାଇଲେ ଧମକପୂର୍ଣ୍ଣ ଚିଠି। କିନ୍ତୁ ସେ ହଟିଗଲେନି ଓ ଡାକୁମାନେ ପ୍ରତିଶୋଧ ନେଲେ। ଖରାଦିନ ଥାନା ପାଖ ନିଜ କ୍ୱାର୍ଟରରେ ଏଏସଆଇ ଓ ତାଙ୍କ ସ୍ତ୍ରୀ ଝରକା ଖୋଲି ଶୋଇଥିଲେ। ରାତି ଅଧରେ ଥାନା ପ୍ରହରା ଦେଉଥିବା ସିପାହୀ ନାରଣ ମିଶ୍ର। ଗୁଳି ଫୁଟିବା ଶବ୍ଦ ସହିତ ଜଣେ ମହିଳାଙ୍କର 'ଦୌଡ଼ି ଆସ ମୋ' ବାବୁଙ୍କୁ ମାରି ପକେଇଲେ' ଚିତ୍କାର ଶୁଣିଲା। ମିଶ୍ରର ପ୍ରତ୍ୟୁପନ୍ନମତିତାକୁ ଧନ୍ୟ। ସେ ସାଙ୍ଗେ ସାଙ୍ଗେ ଅନୁମାନ କରିଦେଲା ଯେ ଜମାଦାର ବାବୁଙ୍କ ଘର ଉପରେ ଡାକୁମାନେ ଚଢ଼ଉ କରିଛନ୍ତି ଓ ସାଙ୍ଗରେ ବନ୍ଧୁକ ଆଣିଛନ୍ତି। ଖଣ୍ଡେ ଲାଠିରେ ତାଙ୍କ ସଙ୍ଗେ ଲଢ଼େଇ କରିବା ବୋକାମୀ। ଯେହେତୁ ସେମାନେ ନିଶ୍ଚୟ ଥାନାକୁ ଆସିବେ ଓ ରେକର୍ଡ଼ପତ୍ର ପୋଡ଼ି ଦେବେ ସେ ସାଙ୍ଗେ ସାଙ୍ଗେ ଦୁଇ କବାଟ ଭିତରଆଡୁ ବନ୍ଦ କରିଦେଲା। ଡାକୁମାନେ ଆସି କବାଟକୁ ବେଶ୍ ବାଡ଼େଇଲେ, ଧକ୍କା ମାରିଲେ। କନେଷ୍ଟବଳଙ୍କୁ ବହୁତ ଧମକେଇଲେ, ପ୍ରଲୋଭନ ମଧ୍ୟ ଦେଖେଇଲେ (୫୦୦ ଟଙ୍କା ଦେବୁ)। କିନ୍ତୁ ମିଶ୍ର କବାଟ ଖୋଲିଲା ନାହିଁ।

ପୁରୁଣାକାଳିଆ କବାଟ, ଯେତେ ଧକ୍କା ମାରିଲେ ମଧ୍ୟ ଖୋଲିଲା ନାହିଁ। ଡାକୁମାନେ ନିରାଶ ହୋଇ ଫେରିଲେ। ସେମାନେ ଗଲାପରେ ମିଶ୍ର କବାଟ ଖୋଲି ଦେଖିଲା ଏଏସଆଇ ମରିଯାଇଛନ୍ତି ଓ ତାଙ୍କ ସ୍ତ୍ରୀ ଭୋ ଭୋ ରଡ଼ି ପକାଉଛନ୍ତି । କିଛି ସମୟ ପରେ ଗାଁ ଲୋକ ଦୌଡ଼ି ଆସିଲେ। କେତେଜଣ ଆଶ୍ୱାସନା ଦେଲେ ଓ ଅଳ୍ପ କେତେଜଣ ଡକାୟତଙ୍କୁ ନିନ୍ଦା କରିବା ପରିବର୍ତ୍ତେ ଜମାଦାର ବାବୁଙ୍କର ତଥାକଥିତ ବୋକାମୀକୁ ନାପସନ୍ଦ କଲେ। ଦିନେ ପରେ ଏସ୍‌ପି ଆସିଲେ ଓ ୨ ଦିନ ପରେ ଡି.ଆଇ.ଜି। ନାରଣ ମିଶ୍ରଙ୍କୁ ‘କର୍ତ୍ତବ୍ୟରେ ଖିଲାପ’ ‘କାପୁରୁଷତା’ ପାଇଁ ସସ୍‌ପେଣ୍ଡ କରି ପ୍ରୋସିଡ଼ିଂ କରାଗଲା। ମୁଁ ପୁରୀରେ ଜଏନ୍ କଲାମାତ୍ରେ ଏସ୍‌ପି ମୋତେ ସେ ପ୍ରୋସିଡ଼ିଂ ଦେଲେ। ନାରଣ ମିଶ୍ର ମୋତେ ଲେଖିଲେ ‘ସାହେବ, ଯାହା ଘଟଣା ଲେଖା ହୋଇଛି ସବୁ ସତ ତେଣୁ ସେ ବିଷୟରେ ପ୍ରୋସିଡ଼ିଂ କରି ସମୟ ନଷ୍ଟ କରିବା ଉଚିତ ନୁହେଁ। କେବଳ ତତ୍କାଳୀନ ଏସ୍‌ପି ଓ ଡିଆଇଜି ଯେଉଁ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ସେ ସମ୍ପର୍କରେ କୈଫିୟତକୁ ପଢ଼ାଯାଉ।’ ତେଣୁ ପ୍ରୋସିଡ଼ିଂ କରିବା ମୋ’ ପକ୍ଷରେ ସହଜ ଥିଲା। ତାଙ୍କୁ କୈଫିୟତ ମାଗିଲି ଓ ସେ କୈଫିୟତ ଦେଲେ। କାହାକୁ ନପଚାରି ନିଜ ହାତରେ ଲେଖିଥାନ୍ତି, ‘ଏକଥା ସତ ଯେ ଡକାୟତଙ୍କ ସାଙ୍ଗରେ ମୁକାବିଲା ନକରି ମୁଁ ଥାନା କବାଟ ବନ୍ଦ କରି ଭିତରେ ରହିଗଲି। ମୋ’ ପାଖରେ ସେତେବେଳେ ଛୋଟ ବାଡ଼ି ଖଣ୍ଡେ ଥିଲା, ବାଡ଼ି ଖଣ୍ଡିଏ ଧରି ମୁଁ ଡକାୟତଙ୍କୁ ମୁକାବିଲା କରିଥିଲେ ମୁଁ ନିଜେ ମରିଥାନ୍ତି ଓ ସେମାନେ ଥାନାର ସବୁ ରେକର୍ଡ଼ ପୋଡ଼ି ଦେଇଥାନ୍ତେ । ମୁଁ ମରିଥିଲେ ଡିପାର୍ଟମେଣ୍ଟର କ’ଣ ଲାଭ ହୋଇଥାନ୍ତା ? ମୁଁ କବାଟ ବନ୍ଦ କରିବାରୁ ଥାନାର ସବୁ ରେକର୍ଡ଼ ବଞ୍ଚିଗଲା। ଦ୍ୱିତୀୟରେ କାପୁରୁଷତା କଥା କୁହାଯାଉଛି। ଜଣେ ଲୋକ ବାଡ଼ି ଧରି ଜଙ୍ଗଲରେ ଯାଉଥିବା ବେଳେ ହାତୀଟିଏ ଦେଖିବ ଓ ହାତୀକୁ ଦେଖି ପଳେଇବାଟା ବୁଦ୍ଧିମାନର କାର୍ଯ୍ୟ ନା କାପୁରୁଷତା ? ତା’ଛଡ଼ା ଘଟଣାର ଦୁଇଦିନ ପରେ ଦିନବେଳା ଡିଆଇଜି ସାହେବ ଆସିଲେ, ସାଙ୍ଗରେ ସୁରକ୍ଷା ପାଇଁ ଗାଡ଼ି। ରହିଲେ ଆଠ କି.ମି. ଦୂର ଏକ ଡାକ ବଙ୍ଗଳାରେ। ସାମ୍ନା ପଟେ ଓ ପଛ ପଟେ ବନ୍ଧୁକଧାରୀ ଗାର୍ଡ଼ ରହିଲେ। ସନ୍ଧ୍ୟା ପୂର୍ବରୁ ଡିଆଇଜି ସାହେବ ଫେରିଗଲେ। ଘଟଣାର ଦୁଇଦିନ ପରେ, ଦିନବେଳରେ ଘଟଣାସ୍ଥଳରୁ ଆଠ କି.ମି. ଦୂରରେ ଥାଇ ଯଦି ଡିଆଇଜି ସାହେବଙ୍କ ପାଇଁ ଦୁଇଟି ଗାଡ଼ି ଲାଗିଲା ଓ ମୁଁ ଯଦି ରାତି ଅଧରେ କବାଟ ବନ୍ଦ କରିରହିଲି ତେବେ କିଏ କାପୁରୁଷ ?’

ମୁଁ ବଡ଼ ଅଡୁଆରେ ପଡ଼ିଲି। କାରଣ ଉକ୍ତ ଡିଆଇଜି ସେ ପର୍ଯ୍ୟନ୍ତ ଥିଲେ ଓ ନିଷ୍ଠେ ସେ ଏକଥା ଜାଣିବେ। ପଚାରିବାରୁ ନାରଣ ମିଶ୍ରେ କହିଲେ ପ୍ରତ୍ୟେକ ଅକ୍ଷର ସତ। ଆପଣ ନିଜେ ପଚାରି ବୁଝନ୍ତୁ। ସର୍ଜେଣ୍ଟ ମେଜରଙ୍କ ଠାରୁ ରେକର୍ଡ଼ ମଗେଇ ଦେଖିଲି ସେ ଯାହା କହିଛନ୍ତି ସତ। ତେଣୁ ଲେଖିଦେଲି ଯେ 'ସେ ସମ୍ପୂର୍ଣ୍ଣ ଦୋଷମୁକ୍ତ ଓ ପରିତାପର ବିଷୟ ଯେ ତାଙ୍କୁ ପ୍ରଶଂସା କରିବା ପରିବର୍ତ୍ତେ ସସ୍‌ପେଣ୍ଡ କରାଯାଇଛି। ଏବଂ ପ୍ରୋସିଡ଼ିଂ କରାଯାଇଛି।' ସେଦିନ ସନ୍ଧ୍ୟାରେ ଖାଇବା ସମୟରେ ଏସ୍‌ପିଙ୍କୁ ମୁଁ ଏକଥା କହିଲି ଓ ଅନୁମାନ କଲି ଯେ ଡିଆଇଜି ନିଶ୍ଚୟ ମୋ' ଉପରେ ରାଗିବେ। ଏସ୍‌ପିଙ୍କ ଉତ୍ତର ଥିଲା 'ଠିକ୍ କଥା ତ ଲେଖିଛ। ତମ ମତକୁ ଗ୍ରହଣ କରି କାଲିଠାରୁ ତାଙ୍କ ସସ୍‌ପେନ୍‌ସନ୍‌କୁ ବନ୍ଦ କରିଦେବି ଓ କ୍ଷତିପୂରଣ ସ୍ୱରୂପ ସେ ଯେଉଁଠିକୁ ଯିବାକୁ ଚାହିଁବେ ସେଠି ପୋଷ୍ଟିଂ କରିଦେବି।' ତା' ଆରଦିନ ମିଶ୍ର ଦୋଷମୁକ୍ତ ହେଲେ ଓ ସନ୍ଧ୍ୟା ବେଳେ କିଛି ଶୁଖିଲା ପ୍ରସାଦ ଧରି ଆସିଲେ। ହାତଯୋଡ଼ି କହିଲେ ସାର୍ ଆପଣ ଯେତିକି ସାହସ ଦେଖେଇଲେ ଆଉ କେହି ଦେଖେଇନଥାନ୍ତେ। ଦୟାକରି ଶୁଖିଲା ପ୍ରସାଦ ରଖନ୍ତୁ। ଆପଣଙ୍କ ଦୟାରୁ ଆଜିଠାରୁ ମୋ' ପରିବାର ଭଲଭାବେ ଗଣ୍ଡେ ଖାଇବାକୁ ପାଇବେ। କାହାଠାରୁ କୌଣସି ଜିନିଷ ମାଗଣା ରଖିବା ମନା କିନ୍ତୁ ମିଶ୍ରଙ୍କୁ ନିରାଶ କରିବା ପାଇଁ ଚାହିଁଲି ନାହିଁ। ପାଞ୍ଚୋଟି ଟଙ୍କା ଦେଲି ଓ କହିଲି ପିଲାମାନଙ୍କ ପାଇଁ କିଛି ଭଲ ମିଠା ନେଇଯାଅ। ବହୁଦିନ ପରେ ମୁଁ ଆଇ.ଜି ଥିଲାବେଳେ କୃଷି ବିଭାଗର ଜଣେ ଅଫିସର ମୋତେ ଦେଖାକରିବା ପାଇଁ ଆସିଲେ ଓ ଆସିବାର କାରଣ ପଚାରିବାରୁ କହିଲେ 'ସାର୍ କେବଳ ଆପଣଙ୍କୁ ଦେଖିବା ପାଇଁ ଆସିଲି। ଆପଣଙ୍କ ପାଇଁ ମୋ' ବାପାଙ୍କ ଚାକିରି ରହିଗଲା ଓ ମୁଁ ଓଭରସିୟର ହୋଇପାରିଲି।' ବାପାଙ୍କ ନାଁ କ'ଣ ବୋଲି ପଚାରିବାରୁ କହିଲେ କନେଷ୍ଟବଳ ନାରଣ ମିଶ୍ର।

କେତେଜଣ ଦକ୍ଷ ଓ ବିଚକ୍ଷଣ କର୍ମନିଷ୍ଠ ପୋଲିସ କର୍ମଚାରୀଙ୍କ ବିଷୟରେ ଲେଖିଥିଲି। ସ୍ଥାନ ଅଭାବରୁ ଲେଖିପାରିଲି ନାହିଁ ଯେ ସୀମା ଆନ୍ଦୋଳନ ସମୟରେ କେମିତି ସାରା ପୁରୀ ସହର ଗଣ୍ଡଗୋଳକାରୀଙ୍କ ଅକ୍ତିଆରକୁ ଚାଲିଗଲା। କଲେକ୍ଟର ଏସ୍‌ପିଙ୍କ ଘର ଉପରେ ଚଢ଼ଉ କରି ବ୍ୟାପକ କ୍ଷୟକ୍ଷତି କରାଗଲା। ସର୍ଜେଣ୍ଟ ମେଜର ମୁଲେନ୍‌ଙ୍କ ଘର ଉପରେ ଚଢ଼ଉ କରି ତାଙ୍କୁ ନପାଇ ତାଙ୍କ ସ୍ତ୍ରୀଙ୍କୁ ପ୍ରବଳ ମାଡ଼ ଦିଆଗଲା ଏବଂ ଅସଦ୍ ବ୍ୟବହାର କରାଗଲା। ଥାନା ପୋଡ଼ି ଦିଆଗଲା। ଅନେକ ଅସାମାଜିକ ବ୍ୟକ୍ତି ଗଲେ ଟ୍ରେଜେରୀ ଲୁଟ୍ କରିବା ପାଇଁ। କାଳେ ତାଙ୍କ ପିଲାମାନଙ୍କୁ

କ୍ଷତି ପହଞ୍ଚାଇବେ ସେଇ ଭୟରେ ସବୁ କନେଷ୍ଟବଳ ପଳେଇଲେ। କେବଳ ହାବିଲଦାର ଜଣେ ରହିଲେ। ଜନତାଙ୍କୁ ପାଟିକରି କହିଲେ - ସରକାରଙ୍କ ଟଙ୍କା ପଇସା ରକ୍ଷା କରିବା ଦାୟିତ୍ୱ ମୋର। ମୋତେ ମାରିବା ପରେ ଆପଣମାନେ ଯାହା କରିବେ। ମୋ' ପାଖରେ ୨୦ ରାଉଣ୍ଡ ଗୁଳି ଅଛି ତେଣୁ ୨୦ ଜଣଙ୍କୁ ମାରିସାରିବା ପରେ ମୁଁ ମରିବି। ବନ୍ଧୁକକୁ ଉଞ୍ଚେଇ ସେ ପ୍ରାୟ ୨୪ ଘଣ୍ଟା ଠିଆ ହୋଇ ରହିଲେ। ତୁହାକୁ ତୁହା ଲୋକ ଆସୁଥାନ୍ତି ଓ ଯାଉଥାନ୍ତି ଓ ଦୃଢ଼ ପ୍ରତିଜ୍ଞ ହାବିଲଦାରକୁ ଦେଖି ଫେରି ଯାଉଥାନ୍ତି। ଓଡ଼ିଶା ପୋଲିସର ଗୁର୍ଖା ବାହିନୀ ପହଞ୍ଚିବା ପରେ ପୁରୀ ସହର ଥଣ୍ଡା ହେଲା ଓ ସେମାନେ ପହଞ୍ଚିବା ପରେ ହାବିଲଦାର ଠିଆ ହୋଇଥିବା ଅବସ୍ଥାରେ ଅଚେତ ହୋଇଗଲେ। ଏଇଭଳି ଲୋକଙ୍କୁ ସାଲ୍ୟୁଟ୍ ମାରିବା କଥା।

ଜାଲି ନୋଟ୍ ପ୍ରମାଣିତ କରେ ଯେ ଅସଲି ନୋଟ୍ ଅଛି। ଅସାଧୁ ଅଫିସର ଥିବାରୁ ସଚ୍ଚୋଟ ଅଫିସରଙ୍କର ସମ୍ମାନ ଥାଏ। ଖରାପ ଓ ଖଳ ବୁଦ୍ଧି କର୍ମଚାରୀଙ୍କ ପାଇଁ ନିଷ୍ଠାପର ଅଫିସର ଆଦର ପାଆନ୍ତି। ଅଳ୍ପ କେତୋଟି ଖଳବୁଦ୍ଧି କର୍ମଚାରୀଙ୍କର ଦୃଷ୍ଟାନ୍ତ ଦେଉଛି।

ବଡ଼ବିଲ ଥାନା ଏକ ମୁଣ୍ଡିଆ ଉପରେ ଓ ଥାନା ପଛ ପଟେ ଜଙ୍ଗଲ। ମୁଁ ସହକାରୀ ଆରକ୍ଷୀ ଅଧୀକ୍ଷକ (ଏଏସ୍‌ପି) ଭାବେ ଯୋଗଦେଇଥାଏ। ଦିନେ ଗୋଟିଏ ଆଦିବାସୀ ଝିଅଟିଏ ମୋ' ଘରେ ପହଞ୍ଚି ଅଭିଯୋଗ କଲା 'ସାହେବ ସେ ମିଲିଟାରୀବାଲା ମୋ' ଇଜ୍ଜତ ନେଇଗଲା ତୁ ବିଚାର କର।' ଇଜ୍ଜତ ନେଇଗଲାର ଅର୍ଥ ବୁଝିଲି ଓ ସାଙ୍ଗେ ସାଙ୍ଗେ ଥାନାବାବୁ ଭଗବାନ ମିଶ୍ରଙ୍କୁ ଡକେଇ ସେ ଝିଅକୁ ଗାଡ଼ିରେ ବସେଇ ଧର୍ଷଣ ସ୍ଥାନରେ ପହଞ୍ଚିଲି। ସେ ସ୍ଥାନରେ ଧସ୍ତାଧସ୍ତିର ପ୍ରମାଣ ଥିଲା ଏବଂ ସେ ବର୍ଣ୍ଣନା କଲା ଯେ ଶୁଖିଲା କାଠ ସଂଗ୍ରହ କରିବା ପାଇଁ ଯାଇଥିବା ବେଳେ ଜଣେ ମିଲିଟାରୀବାଲା ତାକୁ ମାଡ଼ିବସି ଧର୍ଷଣ କଲା। ସେତେବେଳେ ମୁହଁ ସଞ୍ଜ, ତାକୁ ଥାନାକୁ ଆଣି ସକାଳୁ କିଛି ଖାଇନଥିବାରୁ ଜଳଖିଆ ଦେଲି। ଚୌକିରେ ବସ କହିବାରୁ ତଳେ ବସିଲା। ଦୁଇଜଣ ଅଫିସରଙ୍କୁ ଜିପ୍‌ରେ ପଠାଗଲା ସେ ମିଲିଟାରୀବାଲାକୁ ଖୋଜିବା ପାଇଁ ଓ ଅଧ ଘଣ୍ଟା ମଧ୍ୟରେ ସେମାନେ ଫେରିଆସି

କହିଲେ ସହରରେ କେହି ମିଲିଟାରୀବାଲାକୁ ଦେଖିନାହାଁନ୍ତି। ମିଲିଟାରୀବାଲା ଆସିଲେ ଲୋକ ଜାଣିଥାନ୍ତେ। କାରଣ ସହରଟି ବେଶ୍ ଛୋଟ।

ସନ୍ଧ୍ୟା ହେଲାଣି ଅଥଚ ଥାନା ବାରଣ୍ଡା ଲାଇଟ୍ ଜଳୁନାହିଁ। ଅନ୍ଧାରରେ ବାହାରକୁ ଆସି ପ୍ରହରା ଦେଉଥିବା କନେଷ୍ଟବଲକୁ ପଚାରିଲି ଲାଇଟ୍ କାହିଁକି ଲିଭେଇଛ ଓ ସେ ଉତ୍ତର ଦେଲା 'ସାର୍ ଲାଇଟ୍ ଲଗେଇଲେ ବହୁତ ପୋକ ଆସିବେ।' ବଡ଼ ଦ୍ୱିଧାରେ ସେ ଲାଇଟ୍ ଜଳେଇଲା। ଇତି ମଧ୍ୟରେ ସେ ଝିଅଟି ବାରଣ୍ଡାକୁ ପଳେଇ ଆସିଥିଲା ଓ ସେ କନେଷ୍ଟବଲକୁ ଦେଖି ଚମକିପଡ଼ି କହିଲା - ସାହେବ ଏଇ ସେଇ ମିଲିଟାରୀ ବାବୁ। ବିଶେଷ ପଚରା ଉଚରାରୁ ଜଣାପଡ଼ିଲା କି ଡ୍ୟୁଟି ଆସିବା ପୂର୍ବରୁ କନେଷ୍ଟବଲ ଜଣକ ଝିଅଟି ଜଙ୍ଗଲ ଆଡ଼କୁ ଯିବା ଦେଖି ତା' ପିଛା କରିଥିଲା ଓ ସୁବିଧା ସ୍ଥାନ ଦେଖି ତାକୁ ଧର୍ଷଣ କରିଛି। କାଳେ ସେ ଝିଅ ଚିହ୍ନି ପକେଇବ ସେଇଥିପାଇଁ ସେ ବାରଣ୍ଡାର ଲାଇଟ୍ ଲଗାଉନଥିଲା। ସେ କନେଷ୍ଟବଲକୁ ସାଙ୍ଗେ ସାଙ୍ଗେ ଗିରଫ କରି ହାଜତରେ ପୂରେଇଲି ଓ ତା' ଆରଦିନ ସକାଳେ ହାତକଡ଼ି ପକେଇ ସହରରେ ଚଲେଇଲି ଏବଂ ଚମ୍ପୁଆ କୋର୍ଟକୁ ପଠେଇବାରୁ ସେ ଜେଲ୍‌ରେ ରହିଲା। ବିଚାର ବେଳେ ସେ ଝିଅ ଅଭିଯୋଗରୁ ଓହରିଯିବାରୁ ସେ ଦଣ୍ଡ ସିନା ପାଇଲାନି ଚାକିରିରୁ ଡିସ୍‌ମିସ୍ ହେଲା।

୧୯୭୪ ମସିହାରେ ମୁଁ ନୂଆ ଏସ୍‌ପି ହୋଇ ରାଉରକେଲାରେ ଥାଏ। ଦିନେ ଜଣେ ଲୋକ ଅଫିସକୁ ଫୋନ୍ କରି ମୋତେ ପଚାରିଲା 'ସାର୍ ଆପଣଙ୍କର ହରି ନାଏକ ବୋଲି (ଛଦ୍ମନାମ) ଜଣେ କନେଷ୍ଟବଲ ଅଛି କି? ମୁଁ ଥିବ ବୋଲି କହିବାରୁ ପୁଣି କହିଲା ସାର୍ ସେ ବିରମହାରାଜପୁର (ସେତେବେଳେ ବଲାଙ୍ଗୀର ଏବେ ସୋନପୁର) ଅଞ୍ଚଳର ଲୋକ। ତା' ଘରୁ ଫୋନ୍ ଆସିଥିଲା ଯେ ତା' ଗାଁରେ ନିଆଁ ଲାଗି ସବୁ ଘର ପୋଡ଼ିଯାଇଛି ଓ ହରିର ସ୍ତ୍ରୀ ଓ ଦୁଇ ପିଲା ଜଳି ମରିଯାଇଛନ୍ତି।' ଖବରପାଇ ବଡ଼ ବ୍ୟସ୍ତ ହେଲି। ବିଚରା କନେଷ୍ଟବଲଟିଏ କେତେବଡ଼ ଦଣ୍ଡ ପାଇଲା। ସାଙ୍ଗେ ସାଙ୍ଗେ ଜଣେ ଅଫିସର ପଠାଇ ତାକୁ ଅଣାଗଲା ଓ ମୁଁ ଖବର ଦେବାରୁ ସେ କରଚଡ଼ି ହୋଇ ପଡ଼ିଗଲା ଓ ଭୀଷଣ କାନ୍ଦିଲା। ବଡ଼ କଷ୍ଟରେ ସାଷ୍ଟାମ କରାହେବାରୁ ସେ ଦରଖାସ୍ତଟିଏ ଲେଖିଲା ଯାହାକୁ ମୁଁ ଭଲଭାବେ ନପଢ଼ି ୫୦୦ ଟଙ୍କା ଧାର ୨୦୦

ଟଙ୍କା ଆର୍ଥିକ ଅନୁଦାନ ଓ ୨୦ ଦିନ ଛୁଟି ଦେଲି। ହରି ନାଏକ ଚାଲିଯିବା ପରେ ମୋତେ ସର୍ଜେଣ୍ଟ ମେଜର କହିଲେ 'ସାର୍ ସେ ବଲାଙ୍ଗୀର ଯିବା ପୂର୍ବରୁ ବିଲ୍‌କୁଲ୍ ଦୁଃଖିତ ଦିଶୁନଥିଲା ତେଣୁ ଯାହା କହିଲା ସେ ବିଷୟରେ ତଦନ୍ତ କରାଯାଉ, 'ସବୁବେଳେ ତୁମେମାନେ ତଳିଆ କର୍ମଚାରୀଙ୍କୁ ସନ୍ଦେହ ଦୃଷ୍ଟିରେ ଦେଖ– କହି ବିରକ୍ତ ହେଲି ସିନା ବୀରମହାରାଜପୁର ଥାନାବାବୁଙ୍କୁ ଏ ବିଷୟରେ ରିପୋର୍ଟ ଦେବାପାଇଁ ଲେଖିଲି। ଉତ୍ତର ଆସିଲା ଯେ ହରି ନାଏକ ଗାଁରେ ଘରପୋଡ଼ି ହୋଇନାହିଁ ଓ ସେ ରାଉରକେଲାରୁ ଆସି ବନ୍ଧୁବାନ୍ଧବଙ୍କୁ ଭଲ ଭୋଜିଟିଏ ଦେଲା ଓ ବୋକା ଏସ୍‌ପିଙ୍କୁ କିପରି ଚିଟା କାଟିଲା ସେ ବିଷୟରେ ଭଲ ଭାବେ ବର୍ଣ୍ଣନା କଲା। ସେ ଫେରିବା ମାତ୍ରେ ତାକୁ ସସ୍‌ପେଣ୍ଡ କଲି ଓ କୈଫିୟତ ମାଗିଲି। ସାଙ୍ଗେ ସାଙ୍ଗେ କୈଫିୟତ ମିଳିଲା ଏଇ ଭାଷାରେ - ହଜୁର ଅଧୀନ ହରି ନାଏକ ଗତ ଦଶବର୍ଷ ହେଲା ଉତ୍ତମ ରୂପେ ନିଜର କାର୍ଯ୍ୟ ସମ୍ପାଦାନ କରିଆସୁଅଛି। ଉକ୍ତଦିନ ମାନ୍ୟବର ଏସ୍‌ପି ସାହେବ ମୋତେ ଡକେଇ କହିଲେ ଯେ ତମର ଘର ପୋଡ଼ି ଯାଇଛି ଓ ତମର ପୁଅଝିଅ ପୋଡ଼ି ମରିଯାଇଛନ୍ତି। ଏ ଖବର ଶୁଣି ମୁଁ ଚେତାଶୂନ୍ୟ ହୋଇଗଲି। ଏସ୍‌ପି ସାହେବ ଏଭଳି ଭୁଲ୍ ଖବର ମୋତେ ଦେଲେ କାହିଁକି? ଯଦି ମୋର ହାର୍ଟଆଟାକ ହୋଇଥାନ୍ତା କିଏ ଦାୟୀ ହୋଇଥାନ୍ତା? ମୋତେ ଏସ୍‌ପି ସାହେବ କହିବା ମୁତାବକ ମୁଁ ଦରଖାସ୍ତ ଲେଖିଲି ଓ ଏସ୍‌ପି ସାହେବ ନିଜେ ଲୋନ୍ ଏବଂ ସାହାଯ୍ୟ ଟଙ୍କା ଦେଲେ। ଗାଁରେ ପହଞ୍ଚି ଯେତେବେଳେ ଦେଖିଲି ସବୁକିଛି ଠିକ୍ ଅଛି ତେଣୁ ଆନନ୍ଦରେ ଭୋଜିଟିଏ ଦେଲି। ଏସ୍‌ପି ସାହେବ ବୋକା ବୋଲି ମୁଁ କହିନାହିଁ ବରଂ କହିଲି ଯେ ଏସ୍‌ପି ସାହେବ ମୋତେ ବୋକା ବନେଇଲେ।' ଏ କୈଫିୟତ ପଢ଼ି ମୋ' ଅକଲ ଗୁଡୁମ୍। ହରି ନାଏକଙ୍କୁ ମୁଁ ଦୋଷମୁକ୍ତ କରିବା ପାଇଁ ବାଧ୍ୟ ହେଲି। କିନ୍ତୁ ଆଉ ଗୋଟିଏ ପ୍ରୋସିଡ଼ିଂରେ ସେ ଡିସ୍‌ମିସ୍ ହେଲା।

ରାଉରକେଲା ପ୍ଲାଣ୍ଟ ସାଇଟ୍ ଥାନାର କନେଷ୍ଟବଲ ରାମଚନ୍ଦ୍ର ମହାପାତ୍ର (ଛଦ୍ମନାମ) ଇନ୍‌ସପେକ୍ଟର ଫକୀର ମହାନ୍ତିଙ୍କ ସହ ସେ ଗଲେ ରାତ୍ରି ପ୍ରହରା ଚେକ୍ କରିବା ପାଇଁ। ଇନ୍‌ସପେକ୍ଟର ଫକୀର ମହାନ୍ତି ପୁରୁଣା ଅଫିସର ଓ ତାଙ୍କ ସନ୍ଧାନୀ ଚକ୍ଷୁରେ ସେ ତରବର ହୋଇ ଯାଉଥିବା ଗୋଟିଏ ଲୋକକୁ ଧରିପକେଇଲେ।

ମୁହଁରେ ଟର୍ଚ୍ଚ ଲାଇଟ୍ ପକେଇବାରୁ ଜଣାପଡ଼ିଲା ସେ ପୁରୁଣା ଦାଗୀଟେ। ମହାପାତ୍ରକୁ କୁହାଗଲା ଦାଗୀକୁ ନେଇ ଥାନା ହାଜତରେ ପୂରେଇବା ପାଇଁ। ପାଖରେ ରସି କିମ୍ବା ହାତକଡ଼ି ନଥିଲା, ତେଣୁ ମହାପାତ୍ର ଲାଲ ପଗଡ଼ି ଖୋଲି ଦାଗୀକୁ ବାନ୍ଧି ପକେଇଲା ଓ ନେଇ ଚାଲିଲା ଥାନା ଆଡ଼କୁ। ବାଟରେ ସେ ଅନୁରୋଧ କଲା 'ଏକ' କରିବା ପାଇଁ ଓ ଗଛ ପଛ ଆଡ଼କୁ ଗଲା। ମୁହୂର୍ତ୍ତ ମଧ୍ୟରେ ସେ ଫେରାର୍। ମହାପାତ୍ର ଦେଖିଲା ଇନ୍ସପେକ୍ଟର ଫକୀର ମହାନ୍ତି ତା' ଚାକିରି ଖାଇଯିବ। ତେଣୁ ଖୋଜିଲା ଏକ ବଦଳ। ସାକ୍‌ସେନା ବୋଲି ଜଣେ ଷ୍ଟିଲ ପ୍ଲାଣ୍ଟର ମ୍ୟାନେଜର ସ୍ତ୍ରୀଙ୍କ ସଙ୍ଗରେ ସେକେଣ୍ଡ ସୋ ଦେଖି ଚାଲି ଚାଲି ଫେରୁଥିଲେ। ତାଙ୍କୁ ଭକ୍ତିପୂର୍ଣ୍ଣ ଭଙ୍ଗୀରେ ନମସ୍କାରଟିଏ ପକେଇ ମହାପାତ୍ର କହିଲା 'ସାର୍ ଥାନାବାବୁ ଡାକୁଛନ୍ତି।' ସାକ୍‌ସେନା ଜଣେ ଭଲ ଫଟୋଗ୍ରାଫର ଓ ଅନେକ ପୋଲିସ କେସ୍‌ରେ ସେ ମାଗଣାରେ ଫଟୋ ଉଠେଇ ପୋଲିସବାଲାଙ୍କୁ ସାହାଯ୍ୟ କରନ୍ତି । ପୋଲିସବାଲା ତାଙ୍କୁ ସମ୍ମାନ ଦେଖାଉଥିବାରୁ ପ୍ଲାଣ୍ଟରେ ତାଙ୍କର ବେଶ୍ ଖାତିର୍ । ତାଙ୍କୁ ମୁଁ ମଧ୍ୟ ବ୍ୟକ୍ତିଗତ ଭାବେ ଜାଣିଥିଲି। କିଛି ଦରକାର ଥିବ ଜାଣି ସାକ୍‌ସେନା ମହାପାତ୍ର ସଙ୍ଗେ ଥାନାକୁ ଆସିଲେ ଓ ରାତି ଅଧରେ ନୂଆ ହୋଇ ଆସିଥିବା ଜଣେ ଟ୍ରେନିଂ ସବ୍‌ଇନ୍ସପେକ୍ଟରଙ୍କୁ ମହାପାତ୍ର ରିପୋର୍ଟ କଲା 'ସାର୍ ଏ ଲୋକଟାକୁ ଇନ୍ସପେକ୍ଟର ଧରିଛନ୍ତି ଓ ଆପଣଙ୍କୁ ଦେବା ପାଇଁ କହିଲେ।' ନିଜ କର୍ମତତ୍ପରତା ଦେଖାଇବା ପାଇଁ ଟ୍ରେନିଂ କରୁଥିବା ବାବୁ କହିଲେ 'ଭର୍ତ୍ତି କରିଦିଅ ହାଜତରେ' ଓ ବିଚରା ସାକ୍‌ସେନା ପରିସ୍ଥିତି ଜାଣିବା ପୂର୍ବରୁ ହାଜତରେ ପଶିଲେ। ସେ ଭୀଷଣ ପାଟିତୁଣ୍ଡ କଲେ ଓ ବାରମ୍ବାର କହିଲେ ଏସ୍‌ପି ସାହେବଙ୍କୁ ଖବର ଦିଅ। ବାଧ୍ୟ ହୋଇ ସେ ମୋତେ ଫୋନ୍ କଲା ଓ ରାତି ଅଧରେ ଜଣେ ଆସାମୀ କାହିଁକି ଖୋଜୁଛି, ନିଶ୍ଚୟ କିଛି ଗୁପ୍ତ କଥା କହିବ ଭାବି ଗାଡ଼ି ଚଲେଇ ଥାନାରେ ପହଞ୍ଚିଲି। ସାକ୍‌ସେନାଙ୍କୁ ଦେଖି ଯେତିକି ବିସ୍ମିତ ହେଲି ସେତିକି ରାଗିଲି ସ୍ଥାନୀୟ ପୋଲିସ ଉପରେ। ଇନ୍ସପେକ୍ଟର ଫକୀର ମହାନ୍ତିଙ୍କୁ ସସ୍‌ପେଣ୍ଡ କରିବା ପାଇଁ ବସିଥିଲି ଭାଗ୍ୟକୁ ସେ କନେଷ୍ଟବଲ ସହ ଆସିଗଲେ। ସିଏ ମୋ' ସାମ୍ନାରେ କନେଷ୍ଟବଲଙ୍କୁ ପଚାରିବାରୁ ଗାଲୁଆ କନେଷ୍ଟବଲ କହିଲା 'ସାର୍ ଶେଷକୁ ମାର୍ ମାର୍ ଭଣ୍ଡାରୀଆକୁ ମାର୍ ନୀତି ? ଆପଣ କହିଲେ ଅମୁକ କ୍ୱାଟରର ଜଣେ ବାବୁ ଅଛନ୍ତି ତାଙ୍କୁ ଧରିନେଇ ହାଜତରେ ପୂରେଇଦିଅ। ଆଦେଶ ପାଳନ କରିବା କ'ଣ ଦୋଷ ?' ସେ ଟାଉଟରିଆ

କନେଷ୍ଟବଲଙ୍କୁ ସାଙ୍ଗେ ସାଙ୍ଗେ ଗିରଫ କରି ହାଜତରେ ପୂରେଇଲି ଓ ତା' ଆରଦିନ ସେ ଜେଲ୍ ଗଲା। ଚାକିରିରୁ ମଧ୍ୟ ଡିସ୍‌ମିସ୍ ହୋଇ ସେ ତା' ଜନ୍ମସ୍ଥାନ ସାକ୍ଷୀଗୋପାଳର ଏକ ଗାଁକୁ ଫେରିଗଲା। ପରେ ସେ ପଞ୍ଚାୟତ ସମିତିର ମେମ୍ବର ହେଲା ବୋଲି ମୁଁ ଶୁଣିଲି।

୧୯୮୬ ମସିହାରେ କଟକରେ ଏସ୍‌ପି ଥିଲି। ଦିନେ ଛୁଟି ନେଇ ଭୁବନେଶ୍ୱର ଗଲି ଏକ ବ୍ୟକ୍ତିଗତ କାମରେ। ଡ୍ରାଇଭର ନନେଇ ନିଜେ ଗାଡ଼ି ଚଲେଇ ସ୍ତ୍ରୀ ଓ ପିଲାଙ୍କୁ ନେଲି। ମଧୁପାଟଣା ଛକରେ ଡାହାଣ ପଟକୁ ବୁଲିଲା ବେଳକୁ ଦେଖିଲି ରାସ୍ତାକୁ ଆବୁରି ଟ୍ରକଟିଏ ଠିଆ ହୋଇଛି। ଇଞ୍ଜିନ ଚାଲୁଛି ଡ୍ରାଇଭର ନିଜ ସ୍ଥାନରେ ବସିଛନ୍ତି ଓ ପୋଷାକ ପିନ୍ଧିଥିବା ଜଣେ ଟ୍ରାଫିକ୍ କନେଷ୍ଟବଳ ଫୁଟ୍‌ବୋଡ଼ରେ ଠିଆହୋଇ ବହୁତ ଯୁକ୍ତିତର୍କ କରୁଛନ୍ତି। କନେଷ୍ଟବଳ କହୁଥାନ୍ତି ଓ ଡ୍ରାଇଭର ଖାଲି ମୁଣ୍ଡ ହଲଉଥାନ୍ତି। ମୁଁ ବ୍ୟସ୍ତ ହେଲି ଯିବା ପାଇଁ, ତେଣୁ ବାରମ୍ବାର ହର୍ଣ୍ଣ ବଜେଇଲି। ବାରମ୍ବାର ହର୍ଣ୍ଣ ଶବ୍ଦ ଶୁଣି କନେଷ୍ଟବଳ ବିରକ୍ତ ହୋଇ ମୋ' ଆଡ଼କୁ ମାଡ଼ି ଆସିଲେ ଓ ଉଚ୍ଚ ସ୍ୱରରେ କୈଫିୟତ ମାଗିଲେ 'କାହିଁକି ବାରମ୍ବାର ହର୍ଣ୍ଣ ମାରୁ ....'। କହିବା ପୂର୍ବରୁ ମୋତେ ଦେଖି ଚମକି ପଡ଼ିଲେ। କାହିଁକି ହର୍ଣ୍ଣ ମାରୁଛୁ କି ମାରୁଛନ୍ତି କହିଥାନ୍ତେ କେଜାଣି କିନ୍ତୁ ମୋତେ ସାଲ୍ୟୁଟ୍ ମାରିଲେ। ସାଲ୍ୟୁଟ୍ ମାରିବାର ଭଙ୍ଗୀ ଠିକ୍ ଥିଲା। କେବଳ ବୁଢ଼ା ଆଙ୍ଗୁଠି ସଙ୍ଗେ ମିଶିବା ପରିବର୍ତ୍ତେ କାଣି ଆଙ୍ଗୁଠିର ମୂଳ ସହିତ ମିଶିଥିଲା ଓ ଫାଙ୍କରେ ଗୁଞ୍ଜା ହୋଇଥିଲା ଦୁଇଟି ଦଶଟଙ୍କିଆ ନୋଟ୍। ମୁଁ ସେ ଟ୍ରକର ନମ୍ବର ଓ ଡ୍ରାଇଭର ନାଁ ଟିପିଲି। ୨୦ ଟଙ୍କା ଜବତ କଲି ଓ ତା'ପରଦିନ ଅଫିସକୁ ଆସି ସେ କନେଷ୍ଟବଳକୁ ସସ୍‌ପେଣ୍ଡ କଲି। କୈଫିୟତ୍ ମାଗିବାରୁ ସେ ଲିଖିତ କୈଫିୟତ ଦେଲେ ଏମନ୍ତ 'ହଜୁର ଯାହା ସବୁ ଘଟଣା ଲେଖାଯାଇଛି ସବୁ ସତ କିନ୍ତୁ ମୋ' ଉଦ୍ଦେଶ୍ୟ ବିଷୟରେ ଯାହା ଲେଖା ଯାଇଛି ତାହା ଭୁଲ୍। ଉକ୍ତ ଡ୍ରାଇଭର ମୋ'ଠାରୁ ପଚାଶ ଟଙ୍କା ଧାର ନେଇଥିଲା ଓ ଟଙ୍କା ଫେରସ୍ତ ମାଗିବାରୁ ମୋ' ସାଙ୍ଗରେ ଲୁଚକାଳି ଖେଳିଲା। ସେଦିନ ମୁଁ ତା' ଗାଡ଼ି ଅଟକେଇ କହିଲି 'କିଓ ମୁଁ ଗରିବ ଲୋକ ମୋ' ଟଙ୍କା ଫେରାଉନ କାହିଁକି?' ବହୁତ ନେହୁରା ହେବାରୁ ସେ ମାତ୍ର ୨୦ ଟଙ୍କା ଫେରେଇଲେ। ଅଧିକ ପଇସା ଦେଇଥାନ୍ତେ କିନ୍ତୁ ଏସ୍‌ପି ସାହେବ ହର୍ଣ୍ଣ ମାରିବାରୁ ମୁଁ

ଫେରିଆସି ତାଙ୍କୁ ଯଥାମାନ୍ୟ ସମ୍ମାନ ଦେଲି। ମୁଁ ତାଙ୍କଠାରୁ କରଜ ଅସୁଲ କରୁଥିଲି, ଲାଞ୍ଚ ମାଗୁନଥିଲି ଏକଥା ସଲଗ୍ନ ହୋଇ ଥିବା ତାଙ୍କର ସତ୍ୟପାଠ କହିବ। ତେଣୁ ହଜୁର ଯାହା ବିଚାର କରିବେ। ଏସବୁ ଲେଖିସାରିବା ପରେ ବିଶେଷ ଦ୍ରଷ୍ଟବ୍ୟ ଲେଖି ସେ ଅଧିକ କୈଫୟତ ଦେଲେ 'ମାନ୍ୟବର ଏସ୍‌ପି ସାହେବଙ୍କୁ ମୁଁ ସ୍ମରଣ କରେଇ ଦେଉଛି ଯେ ଉକ୍ତଦିନ ସେ ଛୁଟିରେ ଥିଲେ କିନ୍ତୁ ଟଙ୍କା ଜବତ କରିବା ଟ୍ରକ୍‌ର ନମ୍ବର ଟିପିବା ଏସବୁ ସରକାରୀ କାର୍ଯ୍ୟ। ତାହା ସେ କିପରି କଲେ ? ଅବଶ୍ୟ ଏ ପ୍ରଶ୍ନ ମୁଁ ବର୍ତ୍ତମାନ ଉଠାଉନାହିଁ।'

କୈଫିୟତ ପଢ଼ି ମୋ' ବୁଦ୍ଧି ହଜିଲା। ବେକ ମୋଡ଼ି ହୋଇ ତାକୁ ଦୋଷ ମୁକ୍ତ କଲି। କିନ୍ତୁ ଟ୍ରାଫିକ୍‌ରୁ ଟ୍ରେଜେରୀ ଗାର୍ଡ଼କୁ ବଦଳି କଲି। ବେଶ୍ ଚାଲାକ୍ କନେଷ୍ଟବଲ ଶିବ ଦାସ (ଛଦ୍ମନାମ) ଟ୍ୟାକ୍ସି, ବସ, ଟ୍ରକ ଅଟକାଇବା ପରିବର୍ତ୍ତେ ଟ୍ରେଜେରୀରେ ବନ୍ଧୁକ ଧରି ଠିଆହେଲା। ଏ ଘଟଣାର ପ୍ରାୟ ଦୁଇ ମାସ ପରେ ମୁଁ ପ୍ରମୋଶନ ପାଇ କେନ୍ଦ୍ର ସରକାରଙ୍କ ଅଧୀନକୁ ଗଲି। ସେଇ ବର୍ଷ ଉଲ୍ଲେଖନୀୟ ସେବା ପାଇଁ ଭାରତ ସରକାରଙ୍କ ପୋଲିସ ମେଡ଼ାଲ ପାଇଲି ଓ ଭୁବନେଶ୍ବରକୁ କାରରେ ଆସିଲି ରାଜଭବନରେ ମେଡ଼ାଲ ପାଇବା ନିମନ୍ତେ। ଓଏମ୍‌ପି ଛକ ପାଖରେ ଦେଖିଲି ଶିବ ଦାସ ପିନ୍ଧିଛନ୍ତି ଟ୍ରାଫିକ୍ କନେଷ୍ଟବଲ ପୋଷାକ ଓ ଯୁକ୍ତିତର୍କ କରୁଥାନ୍ତି ଜଣେ ଟ୍ୟାକ୍ସିବାଲା ସାଙ୍ଗରେ, ବୋଧହୁଏ 'ଋଣ ଅସୁଲ ପାଇଁ।'

ନୟାପଲ୍ଲୀ ଆଇ.ଆର୍.ସି ଭିଲେଜ। ୧୯୬୪ ମସିହାରେ ଏଇ ବାଟଦେଇ କେତେଥର ଯାଇଛି ବାଣୀବିହାର ଲାଇବ୍ରେରୀରୁ ବହି ଆଣିବା ପାଇଁ। ଦିନବେଳେ ସାହସ ବାନ୍ଧି ଯାଇହୁଏ କିନ୍ତୁ ସନ୍ଧ୍ୟାବେଳେ ମୁଁ ଆଚାର୍ଯ୍ୟବିହାର ରାସ୍ତାରେ ଫେରେ। ସେତେବେଳେ ହାତୀ, ଭାଲୁ, ବିଲୁଆ ବୁଲୁଥିଲେ, ବିଶେଷତଃ ସନ୍ଧ୍ୟାବେଳେ। ସତସ୍ତରୀ ମସିହାରେ କିଛି କିଛି ଘର ତିଆରି ହେଲା। କିନ୍ତୁ ବର୍ତ୍ତମାନ ଯେଉଁଠି ଆଇ.ଆର.ସି ଭିଲେଜ ପାଖରେ ବୁଦ୍‌ବୁଦିଆ ଜଙ୍ଗଲ ଥିଲା ସେଠି ୨୦୦୫କୁ ଅବସ୍ଥାର କେତେ ପରିବର୍ତ୍ତନ। ଅନେକ ସରକାରୀ ବାସଭବନ, ଅନେକ ଅବସରପ୍ରାପ୍ତ ଅଫିସରଙ୍କର ଘର। ଅବସରପ୍ରାପ୍ତ କର୍ମଚାରୀଙ୍କର ସଂଖ୍ୟାଗରିଷ୍ଠତା ପ୍ରଥମେ ହେଲା ସହିଦନଗରରେ। ତା'ପରେ ବିଜେବି ନଗର ଓ ତା'ପରେ ଆଇ.ଆର.ସି ଭିଲେଜ।

ସରକାରଙ୍କ ବ୍ୟବସ୍ଥାରେ ମୋ' ହାତ ବିଶେଷ ଲମ୍ବା ନଥିବାରୁ ମୋତେ ସହିଦନଗର କିମ୍ବା ବିଜେବି ନଗରରେ ଜାଗା ମିଳିଲା ନାହିଁ। ତେଣୁ ଭାଗ୍ୟକୁ ଆଦରି ଆଇ.ଆର.ସି ଭିଲେଜରେ ଘର କଲି। ବର୍ତ୍ତମାନ ଏଇଠି ଉପର ମହଲାରେ ସ୍ୱାମୀ ସ୍ତ୍ରୀ ରହିଗଲୁ। ପୁଅ ଗଲା ୯୧ ମସିହାରେ ଇଞ୍ଜିନିୟରିଂ ପଢ଼ିବା ପାଇଁ, ଇଞ୍ଜିନିୟରିଂ ସାରି ଏମ୍‌ବିଏ ପଢ଼ିଲା ଓ ତା'ପରେ ଚାକିରି କଲା। ଝିଅ ଗଲା ୧୯୯୫ ମସିହାରେ ମ୍ୟାନେଜମେଣ୍ଟ ପଢ଼ିବା ପାଇଁ ତା'ପରେ ଚାକିରି କରି ବାହାସାହା ହୋଇ ବାହାରକୁ ଗଲା। ସେମାନେ କେତେବେଳେ କେମିତି ଆସନ୍ତି ଓ ଆମେ ବି ଯାଉ। 'ଗଲା ପୁତ୍ର ବାହୁଡ଼ି ନୋହିଲାଲୋ କୋଇଲି' ଗାଇବା ପରିବର୍ତ୍ତେ ମୁଁ ସବୁବେଳେ ନିଜକୁ ଆଶ୍ୱାସନା ଦେଇଛି ଯେ ଜୀବନ ଆରମ୍ଭ ହେଲା ୧ରେ, ପରେ ହେଲା ୨, ତା'ପରେ ହେଲା ୪। ପୁଣି ୪ରୁ କମି ୨ ହେଲା ଓ ଦୁଇ କମି ୧ ହେବ ଓ ଜଳୁଥିବା ବତି ଦିନେ ନା ଦିନେ ଲିଭିବ। ଶୂନ୍ୟରେ ପହଞ୍ଚିବା ଆମେ। ଏଇ ତ ଜୀବନ।

ଗଲା ୩୮ ବର୍ଷ ହେଲା ବ୍ୟସ୍ତତା ମଧ୍ୟରେ ରହିଲି, ସବୁବେଳେ କାମ କାମ କାମ । କୈଫିୟତ ଦିଅ ଏବଂ କୈଫିୟତ ମାଗ। ଡି.ଜି ଥିଲାବେଳେ ବହୁତ ଦାୟିତ୍ୱ। ବାରମ୍ବାର ଟେଲିଫୋନ୍। ଯେହେତୁ ଚାକିରି ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଟେଲିଫୋନ୍ ସବୁବେଳେ ନିଜେ ଉଠାଏ (ଯେତେବେଳେ ନଉଠାଏ ଲୋକେ ଜାଣନ୍ତି ମୁଁ ବାଥ୍ ରୁମ୍‌ରେ ଅଛି କିମ୍ବା ପୂଜା କରୁଛି) ତେଣୁ ବହୁତ ସମୟ ଯାଏ ଅଭିଯୋଗ, ଉପଦେଶ କିମ୍ବା ଆଦେଶ ଶୁଣିବାରେ। ବର୍ତ୍ତମାନ ସେ ସବୁକିଛି ନାହିଁ। କର୍ମମୟ ଜୀବନରେ ଯେତେବେଳେ ସମୟ ଟିକେ ପାଇଛି କ୍ଲବ ଯିବା, କାହା ସାଙ୍ଗେ ଗପସପ କରିବା ଇତ୍ୟାଦି ପରିବର୍ତ୍ତେ କିଛି ପଢ଼ିଛି କିମ୍ବା କିଛି ଲେଖିଛି। ଚାକିରି ସରିଲା ବେଳକୁ ବହି ସଂଖ୍ୟା ତିରିଶ ପାଖାପାଖି ହେଲାଣି। ବହି ସଂଖ୍ୟା ଦେଖି ଜଣେ ବନ୍ଧୁ ଅଭିନନ୍ଦନ ଜଣେଇବାରୁ ମୁଁ କହିଥିଲି ମୂଷା ମେଞ୍ଚେ ମେଞ୍ଚେ ଛୁଆ ଜନ୍ମ କରେ ଓ ସେ ବହେ ହସିଥିଲେ। ବର୍ତ୍ତମାନ ବହି ଲେଖିବା ପାଇଁ ବହୁତ ସମୟ ମିଳିବ। କିନ୍ତୁ ଜୀବନଟା ଗୋଟେ ନିର୍ଦ୍ଦିଷ୍ଟ ଫର୍ମୁଲାରେ ପଡ଼ିଯାଇଥିଲା ସେ ପୁଣି ଦିନେ ଦୁଇଦିନ ନୁହେଁ ପ୍ରାୟ ୩୮ ବର୍ଷ। 'ପୂର୍ଣ୍ଣରୁ ପୂର୍ଣ୍ଣ ଗଲେ ପୂର୍ଣ୍ଣ ରହେ' ବୋଲି ମାଣ୍ଡୁକ୍ୟ ଉପନିଷଦ କହେ। କିନ୍ତୁ ସରକାରୀ ଚାକିରିଆଙ୍କ ପାଇଁ ପୂର୍ଣ୍ଣରୁ ପୂର୍ଣ୍ଣ ଗଲେ ଶୂନ୍ୟ ରହେ। ସରକାରୀ ଗାଡ଼ି,

ଡ୍ରାଇଭର, ବଙ୍ଗଳୋ, ପିଏସ, ଟେଲିଫୋନ୍, ବିଗୁଲ ସବୁ ଗଲା। ଯେଉଁମାନେ ଅନ୍ୟକୁ ଅପମାନିତ କରିବାରେ ଅସାର ଆନନ୍ଦ ପାଆନ୍ତି ତାଙ୍କ ପାଇଁ ଅବସର ଜୀବନଟା ଉଚ୍ଚ ସ୍ଥାନରୁ ତଳ ପାହାଚକୁ ଓହ୍ଲେଇବା ନହୋଇ ବ୍ରହ୍ମ କଟଡ଼ାରେ ପରିଣତ ହୁଏ। ସେମାନେ ପରସ୍ପର ମଧ୍ୟରେ କଥାବାର୍ତ୍ତା ହୁଅନ୍ତି ଯଥା, ମୁଁ ଯେତେବେଳେ କଲ୍‌ଚର, (ଡ଼ିପାର୍ଟମେଣ୍ଟ)ରେ ଥିଲି ସେତେବେଳେ ଅମୁକ ଲୋକର ପ୍ରମୋଶନ ଫାଇଲଟା ମୋ' ପାଖରେ ଥିଲା ତ ସେଥିପାଇଁ ସେ ବାରମ୍ବାର ମୋ' ପାଖକୁ ଧାଉଁଥିଲା। ଆଉଜଣେ - ହଁ, ମ ଏବେ ସିନା ଡିଆଇଜି ହୋଇଛି ପରେବେ ତାକୁ ମୁଁ ହୋମ୍‌ରେ ଥିଲାବେଳେ କେତେଥର ମୋ' ପାଖକୁ ଆସିଛି। ସରକାର ପ୍ରତ୍ୟେକ ଚାକିରିଆକୁ ଗୋଟିଏ ଗୋଟିଏ ଆଲାଉଦିନ୍‌ଙ୍କ ଦୀପ ଦିଅନ୍ତି। ଯେଉଁ ଦୀପ ବଳରେ ତଳରୁ ଉପରକୁ ଓ ଉପରୁ ତଳକୁ ଖସେଇ ହେବ, ଜଣକ ପଦୋନ୍ନତି ପଥରେ ଅସଂଖ୍ୟ ହମ୍ପ ତିଆରି କରିହେବ। ଅବସର ଦିନ ସେ ଦୀପଟି ଦଇବ ଛଡ଼େଇ ନେଲା, ଗାଣ୍ଡିବହୀନ ଅର୍ଜୁନ ପରି ବିଚରା କର୍ମଚାରୀଟି ବାରମ୍ବାର ସୁନେଲି ଅତୀତର ରୋମନ୍ଥନ କରେ ସେଇମାନଙ୍କ ଆଗରେ, ଯେଉଁମାନଙ୍କର ଅନୁରୂପ ଆସ୍ଫାଳନ ଶୁଣିବା ପାଇଁ ସେ ପ୍ରସ୍ତୁତ।

ସନ୍ଧ୍ୟାବେଳେ ବାହାରିଲି ଭ୍ରମଣରେ। ବିନିମୟରେ ପାଇଲି ଧୂଆଁ ଓ ଧୂଳି। ତେଣୁ ପ୍ରାତଃ ଭ୍ରମଣରେ ବାହାରିଲି। ନବାଗତ, ସରକାରୀ ଜୀବନର ପଦବୀରେ ବିଭିନ୍ନ ପାହାଚ ଥିବାରୁ ସେଇ ମନୋଭାବଟା ଅବସର ସମୟରେ ମଧ୍ୟ ବହୁଦିନ ପର୍ଯ୍ୟନ୍ତ ରହିଯାଏ। କାଳି ଗାଈର ଭିନ୍ନ ଗୋଠ ପରି ଏକୁଟିଆ ଯାଉଥାଏ ଓ ବିଭିନ୍ନ ଦଳର କଥାବାର୍ତ୍ତା କାନରେ ବାଜୁଥାଏ। ଖାଲି ସରକାରୀ କଥା। କିଏ କ'ଣ ଲେଖିଲା କିଏ କିପ୍ରକାର ପଦୋନ୍ନତି ପାଇଲା ଅଧିକାଂଶଙ୍କର ପିଲାଛୁଆ ପାଖରେ ନାହାନ୍ତି ବିଚରା ଏକୁଟିଆ ମଣିଷ ଗୁଡ଼ିକ, ସରକାରଙ୍କ ସହିତ ଏକ ମାତ୍ର ସମ୍ପର୍କ ମାସକୁ ଥରେ ପେନ୍‌ସନ୍। ତେଣୁ କ'ଣ କରିବେ? ଅତୀତକୁ ଜାବୁଡ଼ି ଧରିବା ଛଡ଼ା ଅନ୍ୟପନ୍ଥା ନାହିଁ। କିନ୍ତୁ ଅଳ୍ପ କେତେ ଜଣ ବହୁତ ଆଗରୁ ନିଜ ବାଟ କାଟିଛନ୍ତି। ମୋର ପଡ଼ୋଶୀ ଶ୍ରୀ ରାଜକିଶୋର ମିଶ୍ର କିଛି ନା କିଛି କାମରେ ଲାଗିଥାନ୍ତି, କୌଣସି ନା କୌଣସି କମିଟିରେ ଥାନ୍ତି। ତିନିଘର ଛାଡ଼ି ରହନ୍ତି ଚନ୍ଦ୍ରଶେଖର ବାବୁ। ସବୁବେଳେ କିଛି ନା କିଛି

ଲେଖନ୍ତି ଓ କେତେବେଳେ କେମିତି ମିଟିଂକୁ ଯାଆନ୍ତି। ସେଇଭଳି ଡକ୍ଟର ମହେଶ ପ୍ରସାଦ ଦାଶ, ତାଙ୍କୁ ଅନେକ ସଂସ୍ଥା ଆବଶ୍ୟକ କରନ୍ତି। ଅବସର ନେଇ ମଧ ସେ ଜଣେ ବ୍ୟସ୍ତ ମଣିଷ ଓ ତାଙ୍କର ପ୍ରଶଂସା କରିବା ପାଇଁ ଚାହୁଁନାହିଁ। କାରଣ କିଏ କାଳେ କହିବ ନିଜ କକେଇ ଶ୍ୱଶୁରଙ୍କର ଗୁଣଗାନ କରୁଛନ୍ତି। ଏଇ ଆଇଆରସି ଭିଲେଜରେ ରହନ୍ତି ସିକନ୍ଦର ଆଲାମ୍ (ଏବେ ଆଉ ନାହାନ୍ତି) ତାଙ୍କ ସଙ୍ଗେ କେଉଁ କାଳୁ ପରିଚୟ। ଓଡ଼ିଶାର ଜଣେ ସୁପୁତ୍ର ଏବଂ ବିଶିଷ୍ଟ କଳାକାର ଓ କଳାକାରଙ୍କର ଅବସର ହୁଏ ଅନ୍ତିମ ଦିନରେ। ସେଇଭଳି ରାଜନୀତିଜ୍ଞ ନିରଞ୍ଜନ ପଟ୍ଟନାୟକ କଲେଜ ବେଳୁ ଜଣାଶୁଣା, ସୂର୍ଯ୍ୟନାରାୟଣ ପାତ୍ର (ମୁଁ ଗଞ୍ଜାମ ଏସ୍‌ପି ଥିଲାବେଳେ ପରିଚୟ ହେଲା) ଓ ବାଳଗୋପାଳ ମିଶ୍ର (ବ୍ୟକ୍ତିଗତ ପରିଚୟ ନାହିଁ ଯଦିବା ସେ ଜଣେ ଜଣାଶୁଣା ଲୋକ)। ଏମାନେ ରାଜନୀତିରେ ଅଛନ୍ତି, ସରକାରୀ କର୍ମଚାରୀଙ୍କ ସଙ୍ଗେ ତୁଳନୀୟ ନୁହଁନ୍ତି। ସରକାରୀ କର୍ମଚାରୀଙ୍କର ନିର୍ଦ୍ଦିଷ୍ଟ ଆୟୁଷ (ଓଡ଼ିଶା ସରକାର ୫୮, କେନ୍ଦ୍ର ସରକାର ୬୦) ଅଥଚ ନିରଞ୍ଜନ ବାବୁ ଇତ୍ୟାଦି ଭୀଷ୍ମ ପିତାମହଙ୍କ ସହ ତୁଳନୀୟ। ଭୀଷ୍ମ ପାଇଥିଲେ ଇଚ୍ଛା ମୃତ୍ୟୁବର, ଏମାନେ ପାଇଛନ୍ତି ଇଚ୍ଛା ଅବସରର। ପୁଣି ଅବସର ନେଇ ମଧ ରାଜନୀତିକୁ ଫେରିପାରିବେ, ସେ ସୁବିଧା ସରକାରୀ କର୍ମଚାରୀର ନାହିଁ କାରଣ ଏମାନେ ଅବସର ନିଅନ୍ତି। ସରକାରୀ କର୍ମଚାରୀଙ୍କୁ ଅବସର ଦିଆଯାଏ।

ସ୍ୱାମୀ ସ୍ତ୍ରୀ ସନ୍ଧ୍ୟାବେଳେ ବାରଣ୍ଡାରେ ବସୁ, ପିଲାମାନଙ୍କ କଥା ମନେପକାଉ। ବହୁତ ସୁଖଦୁଃଖ ଦେଇ ଗତି କରିଛୁ। ଏହା ସ୍ୱାଭାବିକ, ଜୀବନଟା ସୁଖ ଦୁଃଖର ସମଷ୍ଟି, ପଙ୍କ ସଙ୍ଗେ ପଦ୍ମ, ଗୋଲାପ ସାଙ୍ଗେ କଣ୍ଟା ଥିଲାଭଳି। ଅତୀତ ମନ ମଧ୍ୟକୁ ଫେରିଆସେ ସବୁ ଘଟଣାକୁ ସାଙ୍ଗରେ ନେଇ। ଯଦି ମନେପଡ଼େ ଚାକିରି ସମୟରେ ମିଳିଥିବା ଯନ୍ତ୍ରଣା ତା' ମନକୁ ମନ କେହି ଜଣେ ସ୍ମରଣ କରେଇଦିଏ ବି ଯନ୍ତ୍ରଣା ସହିତ ମିଳିଥିବା ସୁଖ ସ୍ୱାଚ୍ଛନ୍ଦ୍ୟ ଓ ସମ୍ମାନ। ଭାଗ୍ୟ ଭଲ ଯେ ଦିନେ ହେଲେ କୌଣସି ଗୁରୁତର ଅଭିଯୋଗ ହୋଇନାହିଁ ଦୁର୍ନୀତି ଅଭିଯୋଗ ତ ଦୂର କଥା, କୋର୍ଟ କଚେରୀକୁ ଡକରା ହୋଇନାହିଁ କିମ୍ବା ତଦନ୍ତ କମିଶନ ବସିନାହିଁ କିମ୍ବା କୌଣସି ଅପବାଦ ହୋଇନାହିଁ। ଅବଶ୍ୟ ଅନେକ କ୍ଷତି କରିବା ପାଇଁ ଚେଷ୍ଟା କରିଛନ୍ତି କିନ୍ତୁ ମୁଁ ସବୁବେଳେ ସେଇ ବିରାଟ ଅଦୃଶ୍ୟ ହାତ ଉପରେ ବିଶ୍ୱାସ କରିଛି। ସେ ହିଁ ରକ୍ଷା

କରିଛନ୍ତି ବିଭିନ୍ନ ମାଧ୍ୟମରେ। ଏଇ ଅଳ୍ପ କିଛିଦିନ ହେଲା ମୁଁ ଚାକିରି ଜୀବନର ଗୁପ୍ତ ଚରିତ୍ର ପଞ୍ଜିକାର ନକଲ ସରକାରଙ୍କ ଠୁ ମଗେଇଲି। ସରକାର ଦେଲେ କାରଣ ଏହା ମୋର ପ୍ରାପ୍ୟ। ମୁଁ ଆଶ୍ଚର୍ଯ୍ୟ ହେଲି ଯେ ବିଭାଗରେ ଅତ୍ୟନ୍ତ ବନ୍ଧୁତାପୂର୍ଣ୍ଣ ମନୋଭାବ ଦେଖାଉଥିବା ଜଣେ ଦୁଇଜଣ ଅଫିସର ମୋ' ବିରୁଦ୍ଧରେ ଲେଖିଛନ୍ତି କିନ୍ତୁ ଯେଉଁମାନଙ୍କ ସାଙ୍ଗରେ କିଛି ବ୍ୟକ୍ତିଗତ ସମ୍ପର୍କ ହିଁ ନଥିଲା ସେମାନେ ଖୁବ୍ ପ୍ରଶଂସା କରି ଲେଖିଛନ୍ତି ଅର୍ଥାତ୍ ନିଜର ମନେ କରୁଥିବା ଲୋକଟି ପର ଓ ପର ମନେ କରୁଥିବା ଲୋକଟି ନିଜର। ମଣିଷକୁ ଚିହ୍ନିବା ଭାରି କଷ୍ଟ, ମଣିଷ ମନର ଗଭୀରତା ପୃଥିବୀ ଠାରୁ, ଶନି ଗ୍ରହର ଦୂରତା ଠାରୁ ବି ବହୁତ ବେଶି। ଦଶରଥ କୈକେୟୀଙ୍କ ମନ କଥା ବୁଝିପାରିଲେ ନାହିଁ ମୁଁ କିବା ଛାର।

ସନ୍ଧ୍ୟାବେଳେ ବାରଣ୍ଡାରେ ବସି ଅତୀତକୁ ନିରୀକ୍ଷଣ କରିବା ସମୟରେ ବହୁତ ଗୁଡ଼ିଏ 'ଯଦି', 'ମାତ୍ର', 'କିନ୍ତୁ' ମନ ମଧ୍ୟକୁ ଆସେ । ଇଣ୍ଟରମିଡ଼ିଏଟ୍ (ବିଜ୍ଞାନ) ପଢୁଥିଲା ବେଳେ ଗୋଠ ମାତିଲେ ଖଣ୍ଡିଆ ମାତିଲା ଭଳିଆ ମୁଁ ଇଞ୍ଜିନିୟରିଂ ପଢ଼ିବା ପାଇଁ ଚାହିଁଲି। ସେତେବେଳେ ଯାହାକୁ ପଚାରିବ ସେ କହିବ ଯେ ଜୀବନର ଲକ୍ଷ୍ୟ ଇଞ୍ଜିନିୟର ସେ ପୁଣି ସିଭିଲ ଇଞ୍ଜିନିୟରିଂ। ସେତେବେଳେ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ। ସେ ଓଡ଼ିଶା ପାଇଁ ୧୪୫୦ କୋଟି ଟଙ୍କାର ସ୍ୱତନ୍ତ୍ର ଯୋଜନାର ଅଟକଳ କରି ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କୁ ଦେଇଥିଲେ। ସେତେବେଳେ ବହୁତ ଘୋଷଣା କରାଯାଇଥିଲା ଯେ ଟିକରପଡ଼ାରେ ବନ୍ଧ ହେବ, ଅନେକ କେନାଲ ହେବ ପ୍ରତ୍ୟେକ ପଞ୍ଚାୟତରେ ଏକ ଶିଳ୍ପ ହେବ। ସବୁ ଘର ଟାଇଲ ହେବ। ଏସବୁକୁ ଦୃଷ୍ଟିରେ ରଖି ପିଲାମାନେ ବାହାରିଲେ ସିଭିଲ ଇଞ୍ଜିନିୟର ହେବାପାଇଁ। ଯେଉଁମାନେ ଇଣ୍ଟରମିଡ଼ିଏଟ୍ ପରୀକ୍ଷାରେ ଖୁବ୍ ଭଲ କଲେ ସେମାନେ ସିଭିଲ ଇଞ୍ଜିନିୟର ହେଲେ। ସେମାନେ ଫାଷ୍ଟ ଡିଭିଜନ କିମ୍ବା ଉପର ସେକେଣ୍ଡ ଡିଭିଜନର ସଫଳ ଛାତ୍ର। ମୁଁ ପାଇଲି ଥାର୍ଡ଼ ଡିଭିଜନ। ଏବେ ଭାବୁଛି ମୋତେ ତ ଦଇବ ରଖିଲା। ମୁଁ ଯଦି ଫାଷ୍ଟ ଡିଭିଜନ କିମ୍ବା ଭଲ ସେକେଣ୍ଡ ଡିଭିଜନ ପାଇଥାନ୍ତି ତେବେ ଚାରିବର୍ଷ ପରେ ଇଞ୍ଜିନିୟରିଂ କଲେଜରୁ ବାହାରି ଦେଖିଥାନ୍ତି, ଚାକିରି ବଜାରରେ ଇଞ୍ଜିନିୟରଙ୍କର କିଛି ଆବଶ୍ୟକତା ନାହିଁ। କାମରାଜ ଯୋଜନା ଅନୁସାରେ ବିଜୁ ପଟ୍ଟନାୟକ ତାଙ୍କ ପଦବୀରୁ ଗଲେ, ତାଙ୍କ

ସାଙ୍ଗେ ସାଙ୍ଗେ ଯୋଜନା। ମୁଁ ଇଣ୍ଟରମିଡ଼ିଏଟ୍ ପରେ ବିଏ ଇତିହାସ (ସମ୍ମାନ) ପଢ଼ିଲି, ତା'ପରେ ଆହ୍ଲାବାଦରେ ଏମଏ ପଢ଼ିଲି ଓ ଏମ୍ଏ ପରୀକ୍ଷାର ପରୀକ୍ଷା ଫଳ ବାହାରିବା ପୂର୍ବରୁ ଆଇପିଏସ ପାଇଲି। ମୋ'ଠାରୁ ଯେଉଁମାନେ ଭଲ ଛାତ୍ର ଥିଲେ ସେମାନେ ଇଞ୍ଜିନିୟରିଂ ପାସ୍ କରି ଚାକିରି ଖୋଜିଲେ ଓ ଅଧିକାଂଶ ଓଜନ ମାପ ଇନ୍ସପେକ୍ଟର ହେଲେ। ଆହା ବିଚରା। ସେମାନଙ୍କର କେତେ ବୁଦ୍ଧି ! କେତେ ପରିଶ୍ରମ ନ କରିଛନ୍ତି ! ବାପା ମାଆ କେତେ ଆଶା ବାନ୍ଧି ନଥିଲେ କିନ୍ତୁ ଭାଗ୍ୟ ତାଙ୍କ ବିପକ୍ଷରେ। କୃଷ୍ଣ ଯାହାଙ୍କର ଅନୁଗତ ଭୀମ ଅର୍ଜୁନ ଯାହାଙ୍କର ଭାଇ ସେହ ଯୁଧିଷ୍ଠିରଙ୍କୁ ଅଜ୍ଞାତବାସ କରିବାକୁ ପଡ଼ିଲା। ମୋ' ବନ୍ଧୁମାନଙ୍କର ଅନୁରୂପ ଦଶା ଦେଖିଲେ ଦୁଃଖ ଲାଗେ। ଅବଶ୍ୟ ସେମାନଙ୍କ ମଧ୍ୟରୁ ଅଳ୍ପ କେତେଜଣ ଡାକ୍ତର ହେଲେ। ଜଣେ ପ୍ରଫେସର ହେଲେ ଅନ୍ୟମାନେ ସିଡିଏମ୍ଓ କିମ୍ବା ଆଡିସ୍‌ନାଲ ସିଡ଼ିଏମଓ ହେଲେ।

ଅଦୃଶ୍ୟ ଶକ୍ତି ବାଟ କଢ଼େଇ ଦେଇଛି। ଏକଦା ମୁଁ ନିଷ୍ପତ୍ତି ନେଇଥିଲି ଡାକ୍ତରୀ ପଢ଼ିବି କିନ୍ତୁ ମୋଟା ମୋଟା ବହି, କଙ୍କାଳ ଓ ଟଙ୍ଗା ହୋଇଥିବା ପଚ଼ ଶବକୁ ଦେଖି ଭୟଭୀତ ହେଲି ଓ ବିଏ ପଢ଼ିଲି। ଠିକ୍ ସମୟରେ ଠିକ୍ ନିଷ୍ପତ୍ତି ନେଲେ ସଫଳ ପଥରେ ମଣିଷ ଆଗେଇ ଯାଏ।

ଏଣୁତେଣୁ ବହୁତ କଥା ହୁଏ। ରାସ୍ତାରେ ଯାଉଥିବା ଲୋକମାନେ ଓ ଗାଡ଼ିଗୁଡ଼ିକ ସମସ୍ତେ ନିଜ ନିଜ ବାଟରେ ଯାଉଛନ୍ତି କିଛି କାମ କରିବା ପାଇଁ, ଅଥଚ ମୁଁ ବସିଛି ନିଦାବିଷ୍ଣୁଙ୍କ ପରି। ଦେହରେ ଶକ୍ତି ଅଛି, ମନରେ ବଳ ଅଛି କିନ୍ତୁ ହାତରେ କାମ ନାହିଁ। ଜଣେ ଲେଖକ ହିସାବରେ ପଢ଼ିବା ଲେଖିବାରେ କେତେ ସମୟ ବ୍ୟସ୍ତ ରହିବ। ଚାରିଘଣ୍ଟା, ପାଞ୍ଚ ଘଣ୍ଟା ? ତା'ପରେ ? ଜନ୍ତାରେ ଥିବା ଜନ୍ତୁଟିଏ ସେପଟୁ ଏପଟ, ଏପଟରୁ ସେପଟ ହେଲାଭଳି ବାରଣ୍ଡାରୁ ଘର ଭିତରକୁ, ଘର ଭିତରୁ ବାରଣ୍ଡାକୁ ଟହଲ ମାରିବା କଥା। କେହି କେହି କହିଲେ ଉପଦେଷ୍ଟା କାମ କରନ୍ତୁ, ଯେଉଁମାନେ ସିବିଆଇ କିମ୍ବା ଭିଜିଲାନ୍ସ୍ କେସ୍‌ରେ ପଡ଼ିଛନ୍ତି ସେମାନଙ୍କୁ ମୁକୁଳିବାର ବାଟ ବତାନ୍ତୁ। ସମୟ କଟିବ ଓ ଭଲ ପଇସା ମଧ୍ୟ ମିଳିବ। ଭାବୁଥିଲି ସେଇଆ କରିବି କିନ୍ତୁ ବିରତ ହେଲି। ଅସାଧୁ ଅଫିସରଙ୍କୁ ଧରିବାରେ ବହୁତ ପରିଶ୍ରମ କରିଛି, ଭିଜିଲାନ୍ସ୍‌ରେ ଥିଲାବେଳେ। ଆଜି ସେଇମାନଙ୍କୁ ମୁକୁଳିବାର ବାଟ ବତେଇବି ? ବିବେକ

ମନାକଲା। ଥରେ ଏ କାର୍ଯ୍ୟ କରିଥିଲେ ଅନେକ ଅଫିସର ମୋ' ଆଡ଼କୁ ଆଙ୍ଗୁଠି ଦେଖେଇଥାନ୍ତେ।

ତୃଷାର୍ତ୍ତଙ୍କୁ ଜଳଦାନ ମିଳିବା ପରି ହଠାତ୍ ଭାରତ ସରକାରଙ୍କର ଗୋଟେ ଚିଠି ଆସିଲା ଯେ କେନ୍ଦ୍ରିୟ ପ୍ରଶାସନିକ ଟ୍ରିବ୍ୟୁନାଲର ସଦସ୍ୟ ପାଇଁ ମୁଁ ମନୋନୀତ ହୋଇଛି। ଟ୍ରିବ୍ୟୁନାଲ ହେବାଦିନୁ ମାତ୍ର ଦୁଇଜଣ ପୋଲିସ ଅଫିସର ସଦସ୍ୟ ହୋଇପାରିଥିଲେ, ମୁଁ ହେଲି ତୃତୀୟ ଓ ଓଡ଼ିଶାରୁ ପ୍ରଥମ। ଭାରତ ସରକାରଙ୍କ ସେକ୍ରେଟେରୀଙ୍କ ଦରମା, ମର୍ଯ୍ୟାଦାପୂର୍ଣ୍ଣ କାର୍ଯ୍ୟ ଏବଂ ସମ୍ପୂର୍ଣ୍ଣ ସ୍ୱାଧୀନ। ମୋତେ ଜଣେ ଦୁଇଜଣ କହିଥିଲେ ଯେ ଆଡ଼ଭୋକେଟ୍‌ମାନେ ଆପଣଙ୍କୁ ଅସହଯୋଗ କରିବେ କାରଣ ଆପଣ ଜଣେ ପୋଲିସ ଅଫିସର। ଏ ଅନୁମାନ ସମ୍ପୂର୍ଣ୍ଣ ଭୁଲ୍ ଥିଲା। ଓକିଲମାନଙ୍କଠୁ ସମ୍ପୂର୍ଣ୍ଣ ସମର୍ଥନ ପାଇଲି। ଏବେ ମଧ ସେମାନେ ଦେଖାହେଲେ ଉଚିତ ସମ୍ମାନ ଦେଖାନ୍ତି। ପ୍ରାୟ ଦେଢ଼ବର୍ଷ ରହିଲି ଓ ୬୨ ବର୍ଷ ହେବାରୁ ସେଠାରୁ ଅବସର ନେଲି। ବର୍ତ୍ତମାନ ବୟସ ବଢ଼ିଲାଣି। ଦିନକୁ ଚାରି ପାଞ୍ଚ ଘଣ୍ଟା ପରିଶ୍ରମ ଯଥେଷ୍ଟ। ବହି ପଢ଼େ ଗପ ଉପନ୍ୟାସ ଲେଖେ। ସ୍ତମ୍ଭକାର ଭାବରେ ଖବରକାଗଜରେ ଦିନର ରାଜନୈତିକ ସାମାଜିକ ସମସ୍ୟା ଉପରେ ଆଲୋଚନା କରେ।

ଭୁବନେଶ୍ୱର ମ୍ୟାନେଜମେଣ୍ଟ ଆସୋସିଏସନର ପ୍ରେସିଡ଼େଣ୍ଟ ରହିଲି ଚାରିବର୍ଷ, ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଆଡ଼ମିନ୍‌ଷ୍ଟ୍ରେସନର ଭାଇସ ଚେୟାରମ୍ୟାନ୍ ହେଲି ଚାରିବର୍ଷ। ବର୍ତ୍ତମାନ ଅଧକ୍ଷ ଅଛି। ପ୍ରଶାସନର ବିଭିନ୍ନ ଦିଗ ପ୍ରତି ଆଲୋକପାତ କରିବା ଏ ସଂସ୍ଥାର ଲକ୍ଷ୍ୟ। ସର୍ବ ଭାରତୀୟ ସ୍ତରରେ ଏହାର ମୁଖ୍ୟ ହେଉଛନ୍ତି ଉପରାଷ୍ଟ୍ରପତି ମହାଶୟ।

ଦେବାନାଂ ଜାନନ୍ତି କୁତଃ ମନୁଷ୍ୟଃ, ଦେବତାମାନେ ମଧ କହିପାରିବେ ନାହିଁ (ମନୁଷ୍ୟ କିବା ଛାର) ଆୟୁଷ କେତେ? ଜୀବନଟା ହେଉଛି ଏକ ଜଳୁଥିବା ମହମବତି। କେତେବେଳେ ହଠାତ୍ ଲିଭିଯିବ। ନ ଲିଭିଲେ ସରିଯିବ। ଜନ୍ମ ହେବା ମୁହୂର୍ତ୍ତରୁ ଆମେ ମୃତ୍ୟୁ ଆଡ଼କୁ ଧାଉଁଛେ। ସେଇଟା ଅନ୍ତିମ ସତ୍ୟ। ତେଣୁ ପ୍ରତିବର୍ଷ ଜନ୍ମଦିନକୁ ଦାର୍ଶନିକ ବ୍ୟାଖ୍ୟା କଲେ ଜଣେ ରାଜି ହେବ ଯେ ଗୋଟିଏ ବର୍ଷ ଆୟୁଷ କମିଲା। କେହି କେହି ଭାବନ୍ତି ଯେ ଗୋଟିଏ ବର୍ଷ ଆଗେଇଲି ଓ ଜନ୍ମଦିନ ମହା

ସାଙ୍ଗେ ସାଙ୍ଗେ ଯୋଜନା। ମୁଁ ଇଣ୍ଟରମିଡ଼ିଏଟ୍ ପରେ ବିଏ ଇତିହାସ (ସମ୍ମାନ) ପଢ଼ିଲି, ତା'ପରେ ଆହ୍ଲାବାଦରେ ଏମଏ ପଢ଼ିଲି ଓ ଏମ୍ଏ ପରୀକ୍ଷାର ପରୀକ୍ଷା ଫଳ ବାହାରିବା ପୂର୍ବରୁ ଆଇପିଏସ ପାଇଲି। ମୋ'ଠାରୁ ଯେଉଁମାନେ ଭଲ ଛାତ୍ର ଥିଲେ ସେମାନେ ଇଞ୍ଜିନିୟରିଂ ପାସ୍ କରି ଚାକିରି ଖୋଜିଲେ ଓ ଅଧିକାଂଶ ଓଜନ ମାପ ଇନ୍ସପେକ୍ଟର ହେଲେ। ଆହା ବିଚରା। ସେମାନଙ୍କର କେତେ ବୁଦ୍ଧି। କେତେ ପରିଶ୍ରମ ନ କରିଛନ୍ତି। ବାପା ମାଆ କେତେ ଆଶା ବାନ୍ଧି ନଥିଲେ କିନ୍ତୁ ଭାଗ୍ୟ ତାଙ୍କ ବିପକ୍ଷରେ। କୃଷ୍ଣ ଯାହାଙ୍କର ଅନୁଗତ ଭୀମ ଅର୍ଜୁନ ଯାହାଙ୍କର ଭାଇ ସେଇ ଯୁଧିଷ୍ଠିରଙ୍କୁ ଅଜ୍ଞାତବାସ କରିବାକୁ ପଡ଼ିଲା। ମୋ' ବନ୍ଧୁମାନଙ୍କର ଅନୁରୂପ ଦଶା ଦେଖିଲେ ଦୁଃଖ ଲାଗେ। ଅବଶ୍ୟ ସେମାନଙ୍କ ମଧ୍ୟରୁ ଅଳ୍ପ କେତେଜଣ ଡାକ୍ତର ହେଲେ। ଜଣେ ପ୍ରଫେସର ହେଲେ ଅନ୍ୟମାନେ ସିଡିଏମ୍ଓ କିମ୍ବା ଆଡିସ୍‌ନାଲ ସିଡ଼ିଏମଓ ହେଲେ।

ଅଦୃଶ୍ୟ ଶକ୍ତି ବାଟ କଢ଼େଇ ଦେଇଛି। ଏକଦା ମୁଁ ନିଷ୍ପତ୍ତି ନେଇଥିଲି ଡାକ୍ତରୀ ପଢ଼ିବି କିନ୍ତୁ ମୋଟା ମୋଟା ବହି, କଙ୍କାଳ ଓ ଟଙ୍ଗା ହୋଇଥିବା ପଚା ଶବକୁ ଦେଖି ଭୟଭୀତ ହେଲି ଓ ବିଏ ପଢ଼ିଲି। ଠିକ୍ ସମୟରେ ଠିକ୍ ନିଷ୍ପତ୍ତି ନେଲେ ସଫଳ ପଥରେ ମଣିଷ ଆଗେଇ ଯାଏ।

ଏଣୁତେଣୁ ବହୁତ କଥା ହୁଏ। ରାସ୍ତାରେ ଯାଉଥିବା ଲୋକମାନେ ଓ ଗାଡ଼ିଗୁଡ଼ିକ ସମସ୍ତେ ନିଜ ନିଜ ବାଟରେ ଯାଉଛନ୍ତି କିଛି କାମ କରିବା ପାଇଁ, ଅଥଚ ମୁଁ ବସିଛି ନିଦାବିଷ୍ଟୁଙ୍କ ପରି। ଦେହରେ ଶକ୍ତି ଅଛି, ମନରେ ବଳ ଅଛି କିନ୍ତୁ ହାତରେ କାମ ନାହିଁ। ଜଣେ ଲେଖକ ହିସାବରେ ପଢ଼ିବା ଲେଖିବାରେ କେତେ ସମୟ ବ୍ୟସ୍ତ ରହିବ। ଚାରିଘଣ୍ଟା, ପାଞ୍ଚ ଘଣ୍ଟା? ତା'ପରେ? ଜନ୍ତାରେ ଥିବା ଜନ୍ତୁଟିଏ ସେପଟୁ ଏପଟ, ଏପଟରୁ ସେପଟ ହେଲାଭଳି ବାରଣ୍ଡାରୁ ଘର ଭିତରକୁ, ଘର ଭିତରୁ ବାରଣ୍ଡାକୁ ଟହଲ ମାରିବା କଥା। କେହି କେହି କହିଲେ ଉପଦେଷ୍ଟା କାମ କରନ୍ତୁ, ଯେଉଁମାନେ ସିବିଆଇ କିମ୍ବା ଭିଜିଲାନ୍‌ସ୍ କେସ୍‌ରେ ପଡ଼ିଛନ୍ତି ସେମାନଙ୍କୁ ମୁକୁଳିବାର ବାଟ ବତାନ୍ତୁ। ସମୟ କଟିବ ଓ ଭଲ ପଇସା ମଧ୍ୟ ମିଳିବ। ଭାବୁଥିଲି ସେଇଆ କରିବି କିନ୍ତୁ ବିରତ ହେଲି। ଅସାଧୁ ଅଫିସରଙ୍କୁ ଧରିବାରେ ବହୁତ ପରିଶ୍ରମ କରିଛି, ଭିଜିଲାନ୍‌ସ୍‌ରେ ଥିଲାବେଳେ। ଆଜି ସେଇମାନଙ୍କୁ ମୁକୁଳିବାର ବାଟ ବତେଇବି? ବିବେକ

ମନାକଲା। ଥରେ ଏ କାର୍ଯ୍ୟ କରିଥିଲେ ଅନେକ ଅଫିସର ମୋ' ଆଡ଼କୁ ଆଙ୍ଗୁଠି ଦେଖେଇଥାନ୍ତେ।

ତୃଷାର୍ତ୍ତଙ୍କୁ ଜଳଦାନ ମିଳିବା ପରି ହଠାତ୍ ଭାରତ ସରକାରଙ୍କର ଗୋଟେ ଚିଠି ଆସିଲା ଯେ କେନ୍ଦ୍ରିୟ ପ୍ରଶାସନିକ ଟ୍ରିବ୍ୟୁନାଲର ସଦସ୍ୟ ପାଇଁ ମୁଁ ମନୋନୀତ ହୋଇଛି। ଟ୍ରିବ୍ୟୁନାଲ ହେବାଦିନୁ ମାତ୍ର ଦୁଇଜଣ ପୋଲିସ ଅଫିସର ସଦସ୍ୟ ହୋଇପାରିଥିଲେ, ମୁଁ ହେଲି ତୃତୀୟ ଓ ଓଡ଼ିଶାରୁ ପ୍ରଥମ। ଭାରତ ସରକାରଙ୍କ ସେକ୍ରେଟେରୀଙ୍କ ଦରମା, ମର୍ଯ୍ୟାଦାପୂର୍ଣ୍ଣ କାର୍ଯ୍ୟ ଏବଂ ସମ୍ପୂର୍ଣ୍ଣ ସ୍ୱାଧୀନ। ମୋତେ ଜଣେ ଦୁଇଜଣ କହିଥିଲେ ଯେ ଆଡ଼ଭୋକେଟ୍‌ମାନେ ଆପଣଙ୍କୁ ଅସହଯୋଗ କରିବେ କାରଣ ଆପଣ ଜଣେ ପୋଲିସ ଅଫିସର। ଏ ଅନୁମାନ ସମ୍ପୂର୍ଣ୍ଣ ଭୁଲ୍ ଥିଲା। ଓକିଲମାନଙ୍କଠୁ ସମ୍ପୂର୍ଣ୍ଣ ସମର୍ଥନ ପାଇଲି। ଏବେ ମଧ ସେମାନେ ଦେଖାହେଲେ ଉଚିତ ସମ୍ମାନ ଦେଖାନ୍ତି। ପ୍ରାୟ ଦେଢ଼ବର୍ଷ ରହିଲି ଓ ୬୨ ବର୍ଷ ହେବାରୁ ସେଠାରୁ ଅବସର ନେଲି। ବର୍ତ୍ତମାନ ବୟସ ବଢ଼ିଲାଣି। ଦିନକୁ ଚାରି ପାଞ୍ଚ ଘଣ୍ଟା ପରିଶ୍ରମ ଯଥେଷ୍ଟ। ବହି ପଢ଼େ ଗପ ଉପନ୍ୟାସ ଲେଖେ। ସ୍ତମ୍ଭକାର ଭାବରେ ଖବରକାଗଜରେ ଦିନର ରାଜନୈତିକ ସାମାଜିକ ସମସ୍ୟା ଉପରେ ଆଲୋଚନା କରେ।

ଭୁବନେଶ୍ୱର ମ୍ୟାନେଜମେଣ୍ଟ ଆସୋସିଏସନର ପ୍ରେସିଡ଼େଣ୍ଟ ରହିଲି ଚାରିବର୍ଷ, ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଆଡ଼ମିନ୍‌ଷ୍ଟ୍ରେସନର ଭାଇସ ଚେୟାରମ୍ୟାନ୍ ହେଲି ଚାରିବର୍ଷ। ବର୍ତ୍ତମାନ ଅଧକ୍ଷ ଅଛି। ପ୍ରଶାସନର ବିଭିନ୍ନ ଦିଗ ପ୍ରତି ଆଲୋକପାତ କରିବା ଏ ସଂସ୍ଥାର ଲକ୍ଷ୍ୟ। ସର୍ବ ଭାରତୀୟ ସ୍ତରରେ ଏହାର ମୁଖ୍ୟ ହେଉଛନ୍ତି ଉପରାଷ୍ଟ୍ରପତି ମହାଶୟ।

ଦେବାନାଂ ଜାନନ୍ତି କୁତଃ ମନୁଷ୍ୟଃ, ଦେବତାମାନେ ମଧ କହିପାରିବେ ନାହିଁ (ମନୁଷ୍ୟ କିବା ଛାର) ଆୟୁଷ କେତେ? ଜୀବନଟା ହେଉଛି ଏକ ଜଳୁଥିବା ମହମବତି। କେତେବେଳେ ହଠାତ୍ ଲିଭିଯିବ। ନ ଲିଭିଲେ ସରିଯିବ। ଜନ୍ମ ହେବା ମୁହୂର୍ତ୍ତରୁ ଆମେ ମୃତ୍ୟୁ ଆଡ଼କୁ ଧାଉଁଛେ। ସେଇଟା ଅନ୍ତିମ ସତ୍ୟ। ତେଣୁ ପ୍ରତିବର୍ଷ ଜନ୍ମଦିନକୁ ଦାର୍ଶନିକ ବ୍ୟାଖ୍ୟା କଲେ ଜଣେ ରାଜି ହେବ ଯେ ଗୋଟିଏ ବର୍ଷ ଆୟୁଷ କମିଲା। କେହି କେହି ଭାବନ୍ତି ଯେ ଗୋଟିଏ ବର୍ଷ ଆଗେଇଲି ଓ ଜନ୍ମଦିନ ମହା

ସାଙ୍ଗେ ସାଙ୍ଗେ ଯୋଜନା। ମୁଁ ଇଣ୍ଟରମିଡ଼ିଏଟ୍ ପରେ ବିଏ ଇତିହାସ (ସମ୍ମାନ) ପଢ଼ିଲି, ତା'ପରେ ଆହ୍ଲାବାଦରେ ଏମଏ ପଢ଼ିଲି ଓ ଏମ୍‌ଏ ପରୀକ୍ଷାର ପରୀକ୍ଷା ଫଳ ବାହାରିବା ପୂର୍ବରୁ ଆଇପିଏସ ପାଇଲି। ମୋ'ଠାରୁ ଯେଉଁମାନେ ଭଲ ଛାତ୍ର ଥିଲେ ସେମାନେ ଇଞ୍ଜିନିୟରିଂ ପାସ୍ କରି ଚାକିରି ଖୋଜିଲେ ଓ ଅଧିକାଂଶ ଓଜନ ମାପ ଇନ୍‌ସପେକ୍ଟର ହେଲେ। ଆହା ବିଚରା। ସେମାନଙ୍କର କେତେ ବୁଦ୍ଧି। କେତେ ପରିଶ୍ରମ ନ କରିଛନ୍ତି। ବାପା ମାଆ କେତେ ଆଶା ବାନ୍ଧି ନଥିଲେ କିନ୍ତୁ ଭାଗ୍ୟ ତାଙ୍କ ବିପକ୍ଷରେ। କୃଷ୍ଣ ଯାହାଙ୍କର ଅନୁଗତ ଭୀମ ଅର୍ଜୁନ ଯାହାଙ୍କର ଭାଇ ସେଇ ଯୁଧିଷ୍ଠିରଙ୍କୁ ଅଜ୍ଞାତବାସ କରିବାକୁ ପଡ଼ିଲା। ମୋ' ବନ୍ଧୁମାନଙ୍କର ଅନୁରୂପ ଦଶା ଦେଖିଲେ ଦୁଃଖ ଲାଗେ। ଅବଶ୍ୟ ସେମାନଙ୍କ ମଧ୍ୟରୁ ଅଳ୍ପ କେତେଜଣ ଡାକ୍ତର ହେଲେ। ଜଣେ ପ୍ରଫେସର ହେଲେ ଅନ୍ୟମାନେ ସିଡିଏମ୍‌ଓ କିମ୍ବା ଆଡିସ୍‌ନାଲ ସିଡ଼ିଏମଓ ହେଲେ।

ଅଦୃଶ୍ୟ ଶକ୍ତି ବାଟ କଢ଼େଇ ଦେଉଛି। ଏକଦା ମୁଁ ନିଷ୍ପତ୍ତି ନେଇଥିଲି ଡାକ୍ତରୀ ପଢ଼ିବି କିନ୍ତୁ ମୋଟା ମୋଟା ବହି, କଙ୍କାଳ ଓ ଟଙ୍ଗା ହୋଇଥିବା ପଚା ଶବକୁ ଦେଖି ଭୟଭୀତ ହେଲି ଓ ବିଏ ପଢ଼ିଲି। ଠିକ୍ ସମୟରେ ଠିକ୍ ନିଷ୍ପତ୍ତି ନେଲେ ସଫଳ ପଥରେ ମଣିଷ ଆଗେଇ ଯାଏ।

ଏଣୁତେଣୁ ବହୁତ କଥା ହୁଏ। ରାସ୍ତାରେ ଯାଉଥିବା ଲୋକମାନେ ଓ ଗାଡ଼ିଗୁଡ଼ିକ ସମସ୍ତେ ନିଜ ନିଜ ବାଟରେ ଯାଉଛନ୍ତି କିଛି କାମ କରିବା ପାଇଁ, ଅଥଚ ମୁଁ ବସିଛି ନିଦାବିଷ୍ଟଙ୍କ ପରି। ଦେହରେ ଶକ୍ତି ଅଛି, ମନରେ ବଳ ଅଛି କିନ୍ତୁ ହାତରେ କାମ ନାହିଁ। ଜଣେ ଲେଖକ ହିସାବରେ ପଢ଼ିବା ଲେଖିବାରେ କେତେ ସମୟ ବ୍ୟସ୍ତ ରହିବ। ଚାରିଘଣ୍ଟା, ପାଞ୍ଚ ଘଣ୍ଟା? ତା'ପରେ? ଜନ୍ତାରେ ଥିବା ଇନ୍ଦୁଟିଏ ସେପଟୁ ଏପଟ, ଏପଟରୁ ସେପଟ ହେଲାଭଳି ବାରଣ୍ଡାରୁ ଘର ଭିତରକୁ, ଘର ଭିତରୁ ବାରଣ୍ଡାକୁ ଟହଲ ମାରିବା କଥା। କେହି କେହି କହିଲେ ଉପଦେଷ୍ଟା କାମ କରନ୍ତୁ, ଯେଉଁମାନେ ସିବିଆଇ କିମ୍ବା ଭିଜିଲାନ୍‌ସ୍ କେସ୍‌ରେ ପଡ଼ିଛନ୍ତି ସେମାନଙ୍କୁ ମୁକୁଳିବାର ବାଟ ବତାନ୍ତୁ। ସମୟ କଟିବ ଓ ଭଲ ପଇସା ମଧ୍ୟ ମିଳିବ। ଭାବୁଥିଲି ସେଇଆ କରିବି କିନ୍ତୁ ବିରତ ହେଲି। ଅସାଧୁ ଅଫିସରଙ୍କୁ ଧରିବାରେ ବହୁତ ପରିଶ୍ରମ କରିଛି, ଭିଜିଲାନ୍‌ସ୍‌ରେ ଥିଲାବେଳେ। ଆଜି ସେଇମାନଙ୍କୁ ମୁକୁଳିବାର ବାଟ ବତେଇବି? ବିବେକ

ମନାକଲା। ଥରେ ଏ କାର୍ଯ୍ୟ କରିଥିଲେ ଅନେକ ଅଫିସର ମୋ' ଆଡ଼କୁ ଆଙ୍ଗୁଠି ଦେଖେଇଥାନ୍ତେ।

ତୃଷାର୍ତ୍ତକୁ ଜଳଦାନ ମିଳିବା ପରି ହଠାତ୍ ଭାରତ ସରକାରଙ୍କର ଗୋଟେ ଚିଠି ଆସିଲା ଯେ କେନ୍ଦ୍ରିୟ ପ୍ରଶାସନିକ ଟ୍ରିବ୍ୟୁନାଲର ସଦସ୍ୟ ପାଇଁ ମୁଁ ମନୋନୀତ ହୋଇଛି। ଟ୍ରିବ୍ୟୁନାଲ ହେବାଦିନୁ ମାତ୍ର ଦୁଇଜଣ ପୋଲିସ ଅଫିସର ସଦସ୍ୟ ହୋଇପାରିଥିଲେ, ମୁଁ ହେଲି ତୃତୀୟ ଓ ଓଡ଼ିଶାରୁ ପ୍ରଥମ। ଭାରତ ସରକାରଙ୍କ ସେକ୍ରେଟେରୀଙ୍କ ଦରମା, ମର୍ଯ୍ୟାଦାପୂର୍ଣ୍ଣ କାର୍ଯ୍ୟ ଏବଂ ସମ୍ପୂର୍ଣ୍ଣ ସ୍ୱାଧୀନ। ମୋତେ ଜଣେ ଦୁଇଜଣ କହିଥିଲେ ଯେ ଆଡ଼ଭୋକେଟ୍‌ମାନେ ଆପଣଙ୍କୁ ଅସହଯୋଗ କରିବେ କାରଣ ଆପଣ ଜଣେ ପୋଲିସ ଅଫିସର। ଏ ଅନୁମାନ ସମ୍ପୂର୍ଣ୍ଣ ଭୁଲ୍ ଥିଲା। ଓକିଲମାନଙ୍କଠୁ ସମ୍ପୂର୍ଣ୍ଣ ସମର୍ଥନ ପାଇଲି। ଏବେ ମଧ ସେମାନେ ଦେଖାହେଲେ ଉଚିତ ସମ୍ମାନ ଦେଖାନ୍ତି। ପ୍ରାୟ ଦେଢ଼ବର୍ଷ ରହିଲି ଓ ୬୨ ବର୍ଷ ହେବାରୁ ସେଠାରୁ ଅବସର ନେଲି। ବର୍ତ୍ତମାନ ବୟସ ବଢ଼ିଲାଣି। ଦିନକୁ ଚାରି ପାଞ୍ଚ ଘଣ୍ଟା ପରିଶ୍ରମ ଯଥେଷ୍ଟ। ବହି ପଢ଼େ ଗପ ଉପନ୍ୟାସ ଲେଖେ। ସ୍ତମ୍ଭକାର ଭାବରେ ଖବରକାଗଜରେ ଦିନର ରାଜନୈତିକ ସାମାଜିକ ସମସ୍ୟା ଉପରେ ଆଲୋଚନା କରେ।

ଭୁବନେଶ୍ୱର ମ୍ୟାନେଜମେଣ୍ଟ ଆସୋସିଏସନର ପ୍ରେସିଡ଼େଣ୍ଟ ରହିଲି ଚାରିବର୍ଷ, ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଆଡ଼ମିନ୍‌ଷ୍ଟ୍ରେସନର ଭାଇସ ଚେୟାରମ୍ୟାନ୍ ହେଲି ଚାରିବର୍ଷ। ବର୍ତ୍ତମାନ ଅଧକ୍ଷ ଅଛି। ପ୍ରଶାସନର ବିଭିନ୍ନ ଦିଗ ପ୍ରତି ଆଲୋକପାତ କରିବା ଏ ସଂସ୍ଥାର ଲକ୍ଷ୍ୟ। ସର୍ବ ଭାରତୀୟ ସ୍ତରରେ ଏହାର ମୁଖ୍ୟ ହେଉଛନ୍ତି ଉପରାଷ୍ଟ୍ରପତି ମହାଶୟ।

ଦେବାନାଂ ଜାନନ୍ତି କୁତଃ ମନୁଷ୍ୟଃ, ଦେବତାମାନେ ମଧ କହିପାରିବେ ନାହିଁ (ମନୁଷ୍ୟ କିବା ଛାର) ଆୟୁଷ କେତେ? ଜୀବନଟା ହେଉଛି ଏକ ଜଳୁଥିବା ମହମବତି। କେତେବେଳେ ହଠାତ୍ [illegible] ନ ଲିଭିଲେ ସରିଯିବ। ଜନ୍ମ ହେବା ମୁହୂର୍ତ୍ତରୁ ଆମେ ମୃତ୍ୟୁ ଆଡ଼କୁ ଧାଉଁଛେ। ସେଇଟା ଅନ୍ତିମ ସତ୍ୟ। ତେଣୁ ପ୍ରତିବର୍ଷ ଜନ୍ମଦିନକୁ ଦାର୍ଶନିକ ବ୍ୟାଖ୍ୟା କଲେ ଜଣେ ରାଜି ହେବ ଯେ ଗୋଟିଏ ବର୍ଷ ଆୟୁଷ କମିଲା। କେହି କେହି ଭାବନ୍ତି ଯେ ଗୋଟିଏ ବର୍ଷ ଆଗେଇଲି ଓ ଜନ୍ମଦିନ ମହା

ଆଡ଼ମ୍ବରରେ ପାଳନ କରନ୍ତି । ଜନ୍ମଦିନକୁ ମୁଁ ଏକ ସାଧାରଣ ଘଟଣା ଭଳି ଧରିନିଏ, ଏଥିରେ ଉଲ୍ଲସିତ ହେବାର ନାହିଁ କି ଦୁଃଖିତ ହେବାର ନାହିଁ । ଯେକୌଣସି ଦିନପରି ଏହାବି ଏକ ଦିନ ।

ସାହିତ୍ୟ ବହୁତ ଆନନ୍ଦ ଦେଇଛି । ଓଡ଼ିଶା ସାହିତ୍ୟ ଏକାଡେମୀ, ଓଡ଼ିଶା ବିଜ୍ଞାନ ଏକାଡ଼େମୀ, କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଓ ଶାରଳା ସାହିତ୍ୟ ଅନୁଷ୍ଠାନ ମୋତେ ସମ୍ମାନ ଦେଇଛନ୍ତି । ଓଡ଼ିଶା ସାହିତ୍ୟର ଇତିହାସ ଯଦି କେହି ଲେଖନ୍ତି ନିଶ୍ଚୟ ମୋ' ବିଷୟରେ ଧାଡ଼ିଏ ଲେଖାଯିବ ବୋଲି ମୋର ବିଶ୍ୱାସ ।

ଛାତ୍ର ଜୀବନରେ ବହୁତ ଉତ୍ଥାନ, ପତନ ହୋଇଛି । ମୁଁ ଜଣେ ସାଧାରଣ ସ୍ତରର ଛାତ୍ର ଥିଲି; କିନ୍ତୁ ପରିଶ୍ରମ ଓ ନିଷ୍ଠା ଦ୍ୱାରା ଆଇପିଏସ ପାଇଲି । ଯେତେଥର ସର୍ବଭାରତୀୟ ସେବା ପାଇଁ ପରୀକ୍ଷା ଦେଇଛି, ଲିଖିତ ପରୀକ୍ଷାରେ ସଫଳ ହେଇଛି । ଚାକିରି ଆରମ୍ଭ କଲି ମଶୌରୀ ଏକାଡ଼େମୀର ନିର୍ଦ୍ଦେଶକ ଚରିତ୍ର ପଞ୍ଜିକାରେ ଲେଖିଲେ ଜଣେ ଯୁବକ ଓ ଦର୍ଶନୀୟ ବ୍ୟକ୍ତି ହେଲେ ମଧ୍ୟ ଅଫିସର ଭାବରେ ମନ୍ଦ ନୁହଁନ୍ତି । ଅବସର ନେଲା ବେଳକୁ ମୁଁ ଖୁବ୍ ଭଲ ଅଫିସର ବୋଲି ଆଡ୍‌ଭାନୀ ମହାଶୟ ଓ ପରେ ଶ୍ରୀ ନବୀନ ପଟ୍ଟନାୟକ ମହାଶୟ ମୋ' ଗୁପ୍ତ ଚରିତ୍ର ପଞ୍ଜିକାରେ ଲେଖିଯାଇ ଲେଖିଲେ ।

ଏଇଠି ମୋ କଥା ସାରୁଛି ।

□□□



ମୋ ନନା ସ୍ୱର୍ଗତ ବିଶ୍ୱମୋହନ ମିଶ୍ର ଓ ବୋଉ ସ୍ୱର୍ଗୀୟା ସୌଭାଗିନୀ ମିଶ୍ର



ମୁଁ ଓ ମୋର ସହଧର୍ମିଣୀ



ମୋର ବୋହୂ ମଧୁ, ପୁଅ ସନ୍ଦୀପ୍ ଓ ନାତୁଣୀ ଶ୍ରେୟା



ପୁଅ ସନ୍ଦୀପ୍, ମୁଁ, ପତ୍ନୀ ଓ ଝିଅ ଜୟଶ୍ରୀ




ମୋର ଜୋଇଁ ଅଭିଜିତ୍, ନାତୁଣୀ ଆନିକା ଓ ଝିଅ ଜୟଶ୍ରୀ



ଭାରତର ପୂର୍ବତନ ରାଷ୍ଟ୍ରପତି ଡଃ ଶଙ୍କର ଦୟାଲ ଶର୍ମାଙ୍କ ସହ
ଏକ ଅନ୍ତରଙ୍ଗ ମୁହୂର୍ତ୍ତରେ



ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପେୟୀଙ୍କ ସହ ଆଲୋଚନାରତ



ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ଇନ୍ଦ୍ର କୁମାର ଗୁଜରାଲ
ମୋର ବନ୍ଧୁ ସଂଜୀବ ହୋତା (I.A.S.) ଓ ମୁଁ



ଭାରତର ପୂର୍ବତନ ଉପ-ପ୍ରଧାନମନ୍ତ୍ରୀ ଲାଲକୃଷ୍ଣ ଆଡଭାନୀ
ଆନ୍ଧ୍ର ପଦେଶର ମୁଖ୍ୟମନ୍ତ୍ରୀ ଚନ୍ଦ୍ରବାବୁ ନାଇଡୁ ଓ ମୁଁ



ଓଡ଼ିଶାର ପୂର୍ବତନ ରାଜ୍ୟପାଳ ବିଶ୍ୱମ୍ଭର ନାଥ ପାଣ୍ଡେ
ମୋତେ ଭାରତୀୟ ସେବା ମେଡାଲ ପ୍ରଦାନ କରୁଛନ୍ତି



ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ
ବିଶିଷ୍ଟ ସେବା ମେଡାଲ ମୋତେ ପ୍ରଦାନ କରୁଛନ୍ତି



ଏକ ଅନ୍ତରଙ୍ଗ ମୁହୂର୍ତ୍ତରେ ମୁଁ ଓ ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ



ଭାରତର ସର୍ବୋଚ୍ଚ ପୋଲିସ ଅଧିକାରୀଙ୍କ ଗହଣରେ



ଜେରୁଜେଲମ ସହରରେ ଏକ ମନୋରମ ପରିବେଶରେ





ପାକିସ୍ତାନ ସୀମାନ୍ତ (କାଶ୍ମୀର) ବଙ୍କର ଭିତରେ



ସୀମାନ୍ତର ଫଙ୍ଗାର ପାହାଡମାଳା ଉପରେ (କାଶ୍ମୀର)ଅଧିକାରୀମାନଙ୍କ ଗହଣରେ

